# ଭାରତରନ୍

ଡକ୍ଟର ରବିନାରାୟଣ ରଥ



ଝରଣା ରଥ ପବ୍ଲିସର୍ସ

# ଭାରତରତ୍ନ

ଡକ୍ଟର ରବିନାରାୟଣ ରଥ
୪୦୯, ବନ୍ଦନା ଆପାର୍ଟମେଣ୍ଟ
ବିବେକାନନ୍ଦ ମାର୍ଗ, ଭୁବନେଶ୍ୱର-୨,
ମୋବାଇଲ୍ : ୯୯୩୭୯୪୯୮୦୬
ଟେଲିଫୋନ୍ : ୦୬୭୪୨୪୩୩୦୭୧

---

ପ୍ରକାଶକ : ଝରଣା ରଥ ପବ୍ଲିସର୍ସ
ଦ୍ୱିତୀୟ ପରିବର୍ଦ୍ଧିତ ସଂସ୍କରଣ : ୨୦୧୫
ମାର୍ଜନା : ଅଧ୍ୟାପିକା ବିଜୟିନୀ ସିଂହଦେଓ
ପ୍ରଚ୍ଛଦ: ଭୀମସେନ ଜେନା
ମୂଲ୍ୟ : ୨୦୦ ଟଙ୍କା ( ଦୁଇ ଶହ ଟଙ୍କା ମାତ୍ର)

---

*ବିତରକ :*

**ଏ. କେ. ମିଶ୍ର ଏଜେନ୍ସୀଜ୍ ପ୍ରା: ଲି:**
ବାଦାମବାଡ଼ି, କଟକ ଏବଂ
ମେଟ୍ରୋ ବିଲ୍ଡିଂ, ଭୁବନେଶ୍ୱର

---

**Bharataratna**

**Dr. Rabinarayan Roth**
409, Vandana Apartment
Vivekanand Marg, Bhubaneswar-2
Mob: 9937949806
Tel. Phone: 06742433071
2nd Enlarged Edition - 2015
Published by Jharana Roth Publishers
Price: 200/- (Rupees Two hundred only)

---

# ଉତ୍ସର୍ଗ



**ଏ.ପି.ଜେ.ଅବଦୁଲ୍ କଲାମ**

**ଜନ୍ମ ୧୫ ଅକ୍ଟୋବର** ୧୯୩୧ (ରାମେଶ୍ୱରମ୍, ତାମିଲନାଡୁ)

**ମହାପ୍ରୟାଣ ୨**୭ ଜୁଲାଇ ୨୦୧୫ (ସିଲଂ, ମେଘାଳୟ)

**ଭାରତର ୧**୧ଶ ରାଷ୍ଟ୍ରପତି (୨୫ ଜୁଲାଇ ୨୦୦୨ - ୨୫ ଜୁଲାଇ ୨୦୦୭)

**ଭାରତ** ରତ୍ନ ୧୯୯୭

ହେ ଅଜେୟ, ଅମର, ଅଦ୍ୱିତୀୟ ମହାନାୟକ !
ଜନତାର ରାଷ୍ଟ୍ରପତି ତୁମେ,
ଯୁବ ସମାଜର ତୁମେ ପ୍ରେରଣା - ମଶାଲ୍
ତୁମ ଆଗେ 'ମୃତ୍ୟୁ'ର ବି ମଥା ନଇଁଯାଏ
ତୁମ ଯଶ, ତୁମ କୀର୍ତ୍ତି ଶାଶ୍ୱତ ଭାସ୍କର ।

ବିନମ୍ର **ଶ୍ରଦ୍ଧାଞ୍ଜଳି ସହ -**

**ରବି ରଥ**

# ସୂଚୀପତ୍ର

# ଭାରତରତ୍ନ

ଆମ ଦେଶରେ ଜାତୀୟ ସ୍ତରରେ କଳା, ସାହିତ୍ୟ, ବିଜ୍ଞାନ ଏବଂ ସମାଜସେବା ଆଦି କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ଥିବା ବ୍ୟକ୍ତିମାନଙ୍କୁ କେନ୍ଦ୍ର ସରକାର ସମ୍ମାନିତ କରିଥାନ୍ତି । ବେସାମରିକ ସମ୍ମାନମାନଙ୍କ ମଧ୍ୟରେ ସର୍ବୋଚ୍ଚ ନାଗରିକ ସମ୍ମାନ ଭାବେ 'ଭାରତରତ୍ନ' ଦିଆଯାଇଥାଏ । ଏହି ସମ୍ମାନ ପାଉଥିବା ବ୍ୟକ୍ତି ତାକୁ ପଦବୀ ବା ଉପାଧି ଭାବେ ବ୍ୟବହାର କରି ହୁଏ ନାହିଁ । ତେବେ ଦେଶରେ ସେମାନଙ୍କୁ ସର୍ବାଧିକ ସମ୍ମାନନୀୟ ବ୍ୟକ୍ତିଭାବେ ଗ୍ରହଣ କରାଯାଇଥାଏ । ଭାରତର ପ୍ରଥମ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ଦ୍ୱାରା ୧୯୫୪ ମସିହା ଜାନୁଆରୀ ୨ ତାରିଖ ଦିନ ଏହି ପୁରସ୍କାର ପ୍ରତିଷ୍ଠିତ ହୋଇଥିଲା । ଏହା ସହିତ ପଦ୍ମବିଭୂଷଣ, ପଦ୍ମଭୂଷଣ ଏବଂ ପଦ୍ମଶ୍ରୀ ଆଦି ଉପାଧି ମଧ୍ୟ ପ୍ରଦାନ କରାଯାଇଥିଲା । ଭାରତରତ୍ନ ପୁରସ୍କାର ୧୩.୭.୧୯୭୭ ଠାରୁ ୨୬.୧.୧୯୮୦ ପର୍ଯ୍ୟନ୍ତ ସ୍ଥଗିତ ରଖାଯାଇଥିଲା ।

ଏ ପର୍ଯ୍ୟନ୍ତ ଏହି ପୁରସ୍କାର ୪୧ ଜଣ ମହାନ୍ ବ୍ୟକ୍ତିଙ୍କୁ ପ୍ରଦାନ କରାଯାଇଛି । ଏହି ତାଲିକା ମଧ୍ୟରେ ଦୁଇଜଣ ଅଣ ଭାରତୀୟ ଏବଂ ଜଣେ ବିଦେଶୀ ନାଗରିକଙ୍କୁ ଭାରତୀୟ ନାଗରିକତ୍ୱ ପ୍ରଦାନ କରାଯାଇ ଭାରତରତ୍ନ ଉପାଧି ପ୍ରଦାନ କରାଯାଇଅଛି । ତାମିଲ୍‌ନାଡୁ ରାଜ୍ୟରୁ ଏ ପର୍ଯ୍ୟନ୍ତ ସର୍ବାଧିକ ୮ ଜଣ ଏବଂ ଉତ୍ତର ପ୍ରଦେଶରୁ ୭ ଜଣ ଏହି ପୁରସ୍କାର ପାଇଛନ୍ତି । ବର୍ତ୍ତମାନ ପୁରସ୍କାର ବାବଦରେ ଯେଉଁ ଫଳକଟି ପ୍ରଦାନ

କରାଯାଇଛି ତାହା ଅଶ୍ୱତ୍ଥ ପତ୍ର ଆକାରରେ ନିର୍ମିତ । ତହିଁରେ ଦେବନାଗରୀ ଲିପିରେ ଭାରତରତ୍ନ ଲେଖାଯାଇଛି । ଏହାର ବିପରୀତ ପାର୍ଶ୍ୱରେ ରାଷ୍ଟ୍ରର ଏମ୍ବ୍ଲେମ୍ ଏବଂ ନୀତି ରହିଥାଏ । ୨ ଇଞ୍ଚ ଓସାରର ଏକ ରିବନ୍‌ରେ ବନ୍ଧାହୋଇ ଏହା ପୁରସ୍କୃତ ବ୍ୟକ୍ତିଙ୍କ ଗଳାରେ ଝୁଲାଇ ଦିଆଯାଇଥାଏ ।

ପ୍ରଥମେ ୧୯୫୪ ମସିହାରେ ଭାରତରତ୍ନ ପୁରସ୍କାର ମରଣୋତ୍ତର କୌଣସି ବ୍ୟକ୍ତିଙ୍କୁ ଦେବାର ବିଧାନ ନ ଥିଲା । ବୋଧହୁଏ, ସେଇଥିପାଇଁ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କୁ ଏହି ପୁରସ୍କାର ଦିଆଯାଇନାହିଁ । ପରେ ୧୯୫୫ ମସିହା ଜାନୁଆରୀ ମାସରେ ମରଣୋତ୍ତର ଭାବେ ପୁରସ୍କାର ଦିଆଯିବାର ବିଧି ଗୃହୀତ ହେଲା । ଫଳସ୍ୱରୂପ ପରବର୍ତ୍ତୀ କାଳରେ ୧୨ ଜଣ ପ୍ରଖ୍ୟାତ ବ୍ୟକ୍ତିଙ୍କୁ ମରଣୋତ୍ତର ଭାବେ ଏହି ସମ୍ମାନ ପ୍ରଦାନ କରାଯାଇଥିଲା । ଏପରିକି ୧୯୯୨ ମସିହାରେ ନେତାଜୀ ସୁବାଷ ଚନ୍ଦ୍ର ବୋଷଙ୍କୁ ଏହି ପୁରସ୍କାର ପ୍ରଦାନ କରାଯିବାର ପ୍ରସ୍ତାବ ପାରିତ ହୋଇଥିଲା । କିନ୍ତୁ ତହିଁରେ କେତେକ ଆଇନଗତ ସମସ୍ୟା ଉପୁଜିବାରୁ ଏହି ପୁରସ୍କାରଟି ଫେରସ୍ତ ନିଆଗଲା । ଭାରତରତ୍ନ ପୁରସ୍କାର ପ୍ରଦାନ ଇତିହାସରେ ଏହା ଏକମାତ୍ର ବ୍ୟତିକ୍ରମ ହୋଇଛି ।

ଭାରତରତ୍ନ ପୁରସ୍କାର ପାଇବା ପାଇଁ ନିର୍ଦ୍ଦିଷ୍ଟ ବ୍ୟକ୍ତି ଜଣେ ଭାରତୀୟ ନାଗରିକ ହେବା ବାଧ୍ୟତାମୂଳକ ବୋଲି କୌଣସିଠାରେ ଉଲ୍ଲେଖ ନାହିଁ । ୧୯୮୦ ମସିହାରେ ସ୍ୱାଭାବିକ ଭାବେ ଭାରତୀୟ ନାଗରିକତା ଗ୍ରହଣ କରିଥିବା ମଦର ଟେରେସାଙ୍କୁ ଏହି ପୁରସ୍କାର ଦିଆଯାଇଥିଲା ଏବଂ ତାଙ୍କ ଛଡ଼ା ୧୯୮୭ ମସିହାରେ ଖାନ୍ ଅବ୍‌ଦୁଲ୍ ଗଫର ଖାଁ ଏବଂ ୧୯୯୦ ମସିହାରେ ନେଲ୍‌ସନ୍ ମାଣ୍ଡେଲା ଉଭୟ ଅଣ ଭାରତୀୟଙ୍କୁ ପୁରସ୍କାର ପ୍ରଦାନ କରାଯାଇଥିଲା ।

ଭାରତୀୟ ସ୍ୱାଧୀନତା ସଂଗ୍ରାମୀ ନେତାଜୀ ସୁବାଷ ଚନ୍ଦ୍ର ବୋଷ ତାଙ୍କର ଉଗ୍ର ଜାତୀୟବାଦ ପାଇଁ ସାରା ବିଶ୍ୱରେ ପ୍ରସିଦ୍ଧ । ୧୯୯୨ ମସିହାରେ ତାଙ୍କୁ ଭାରତରତ୍ନ ସମ୍ମାନ ମରଣୋତ୍ତର ପ୍ରଦାନ କରାଯିବ ବୋଲି ଘୋଷଣା କରାଗଲା । କିନ୍ତୁ ସୁବାଷଚନ୍ଦ୍ରଙ୍କ ସ୍ମୃତି ସମ୍ପର୍କିତ କେତେକ ଅନୁଷ୍ଠାନ ତରଫରୁ ଏହି ଘୋଷଣା ବିପକ୍ଷରେ ଏକ ଜନସ୍ୱାର୍ଥ ମାମଲା ରୁଜୁ କରାଗଲା । ସୁବାଷଚନ୍ଦ୍ର ବୋଷଙ୍କ ମୃତ୍ୟୁର

କୌଣସି ସନ୍ତୋଷଜନକ ପ୍ରମାଣ ଦେବାରେ ପୁରସ୍କାର କମିଟି ଅସମର୍ଥ ହେବା ଯୋଗୁଁ ଏହି ମରଣୋତ୍ତର ପୁରସ୍କାରକୁ ଫେରାଇ ନେବା ପାଇଁ କୋର୍ଟ ଆଦେଶ ଦେଇଥିଲେ ।

ଭାରତର ପ୍ରଥମ ଶିକ୍ଷାମନ୍ତ୍ରୀ ଅବୁଲ୍ କାଲାମ ଆଜାଦ୍‌ଙ୍କୁ ଭାରତରତ୍ନ ପୁରସ୍କାର ପ୍ରଦାନ କଲାବେଳେ ସେ ଏହା ଗ୍ରହଣ କରିବା ପାଇଁ ଅସ୍ୱୀକାର କରିଥିଲେ । ସେ କହିଥିଲେ ଯେ, ଚୟନ କମିଟିରେ ସଭ୍ୟ ଥିବା କୌଣସି ବ୍ୟକ୍ତିଙ୍କୁ ଏହା ଦିଆଯିବା ଉଚିତ ନୁହେଁ । ପରବର୍ତ୍ତୀ ସମୟରେ ଏହି ପୁରସ୍କାର ଅବୁଲ୍ କାଲାମ୍ ଆଜାଦ୍‌ଙ୍କୁ ମରଣୋତ୍ତର ଭାବେ ୧୯୯୨ ମସିହାରେ ପ୍ରଦାନ କରାଯାଇଥିଲା ।

## ଭାରତରତ୍ନ ଉପାଧି ଭୂଷିତ ବ୍ୟକ୍ତିମାନଙ୍କ ତାଲିକା:

| କ୍ରମିକ ସଂଖ୍ୟା | ନାମ | ଜନ୍ମ/ମୃତ୍ୟୁ | ପୁରସ୍କାର ପାଇବା ବର୍ଷ | ସଂକ୍ଷେପରେ ବ୍ୟକ୍ତିତ୍ୱ | କେଉଁ ରାଜ୍ୟ ବା ରାଷ୍ଟ୍ରର |
|---|---|---|---|---|---|
| ୧ | ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ | ୧୮୮୮-୧୯୭୫ | ୧୯୫୪ | ଦ୍ୱିତୀୟ ରାଷ୍ଟ୍ରପତି, ପ୍ରଥମ ଉପରାଷ୍ଟ୍ରପତି, ବିଶ୍ୱ ପ୍ରସିଦ୍ଧ ଦାର୍ଶନିକ | ତାମିଲ୍‌ନାଡୁ |
| ୨ | ସି. ରାଜଗୋପାଳାଚାରୀ | ୧୮୭୮-୧୯୭୨ | ୧୯୫୪ | ଶେଷ ଗଭର୍ଣ୍ଣର ଜେନେରାଲ୍ ଦୂରଦ୍ରଷ୍ଟା, ରାଷ୍ଟ୍ରନେତା, ସ୍ୱୟଂଶାସକ | ତାମିଲ୍‌ନାଡୁ |
| ୩ | ସି.ଭି. ରମଣ | ୧୮୮୮-୧୯୭୦ | ୧୯୫୪ | ବୈଜ୍ଞାନିକ ନୋବେଲ୍ ପୁରସ୍କାର ବିଜୟୀ ପଦାର୍ଥବିତ୍ | ତାମିଲ୍‌ନାଡୁ |
| ୪ | ଭଗବାନ୍ ଦାସ | ୧୮୬୯-୧୯୫୮ | ୧୯୫୫ | ରାଷ୍ଟ୍ରନୀତିଜ୍ଞ, ସ୍ୱୟଂଶାସକ, ଭାରତୀୟ ସାହିତ୍ୟବିତ୍ | ଉତ୍ତରପ୍ରଦେଶ |

| | | | | | |
|---|---|---|---|---|---|
| ୫ | ମୋକ୍ଷଗୁଣ୍ଡମ୍ ବିଶ୍ୱେଶ୍ୱରୟା | ୧୮୬୧-୧୯୬୨ | ୧୯୫୫ | ସିଭିଲ୍ ଇଞ୍ଜିନିୟର୍, ନଦୀବନ୍ଧର ପ୍ରଖ୍ୟାତ ବିଜ୍ଞାନୀ, ମହୀଶୂର ରାଜ୍ୟର ଦିୱାନ୍ | କର୍ଣ୍ଣାଟକ |
| ୬ | ପଣ୍ଡିତ ଜବାହାର୍ ଲାଲ୍ ନେହେରୁ | ୧୮୮୯-୧୯୬୪ | ୧୯୫୫ | ପ୍ରଥମ ପ୍ରଧାନମନ୍ତ୍ରୀ, ସ୍ୱାଧୀନତା ସଂଗ୍ରାମୀ, ପ୍ରଖ୍ୟାତ ଐତିହାସିକ | ଉତ୍ତରପ୍ରଦେଶ |
| ୭ | ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ | ୧୮୮୭-୧୯୬୧ | ୧୯୫୭ | ସ୍ୱାଧୀନତା ସଂଗ୍ରାମୀ, ପ୍ରଥମ ଗୃହମନ୍ତ୍ରୀ | ଉତ୍ତରପ୍ରଦେଶ ବର୍ତ୍ତମାନର ଉତ୍ତରାଖଣ୍ଡ |
| ୮ | ଦଣ୍ଡକେଶବ କାର୍ବେ | ୧୮୫୮-୧୯୬୨ | ୧୯୫୮ | ଶିକ୍ଷାବିତ୍, ସମାଜ ସଂସ୍କାରକ, | ମହାରାଷ୍ଟ୍ର |
| ୯ | ଡକ୍ଟର ବିଧାନଚନ୍ଦ୍ର ରାୟ | ୧୮୮୨-୧୯୬୨ | ୧୯୬୧ | ଚିକିତ୍ସକ, ରାଜନୀତିଜ୍ଞ, ପଶ୍ଚିମବଙ୍ଗର ପୂର୍ବତନ ମୁଖ୍ୟମନ୍ତ୍ରୀ | ପଶ୍ଚିମବଙ୍ଗ |
| ୧୦ | ପୁରୁଷୋତ୍ତମ ଦାସ ଟଣ୍ଡନ | ୧୮୮୨-୧୯୬୨ | ୧୯୬୧ | ସ୍ୱାଧୀନତା ସଂଗ୍ରାମୀ, ଶିକ୍ଷାବିତ୍ | ଉତ୍ତରପ୍ରଦେଶ |
| ୧୧ | ରାଜେନ୍ଦ୍ର ପ୍ରସାଦ | ୧୮୮୪-୧୯୬୩ | ୧୯୬୨ | ପ୍ରଥମ ରାଷ୍ଟ୍ରପତି, ସ୍ୱାଧୀନତା ସଂଗ୍ରାମୀ, ବିଚାରପତି | ବିହାର |
| ୧୨ | ଜାକିର ହୁସେନ | ୧୮୯୭-୧୯୬୯ | ୧୯୬୩ | ପୂର୍ବତନ ରାଷ୍ଟ୍ରପତି, ଏବଂ ବିଜ୍ଞବ୍ୟକ୍ତି | ଆନ୍ଧ୍ରପ୍ରଦେଶ |
| ୧୩ | ପାଣ୍ଡୁରାମ ବମନ କାନେ | ୧୮୮୦-୧୯୭୨ | ୧୯୬୩ | ଭାରତୀୟ ତତ୍ତ୍ୱବିତ୍, ସଂସ୍କୃତ ଶାସ୍ତ୍ରବିତ୍ | ମହାରାଷ୍ଟ୍ର |
| ୧୪ | ଲାଲ୍ ବାହାଦୁର ଶାସ୍ତ୍ରୀ | ୧୯୦୪-୧୯୬୬ | ୧୯୬୬ (ମରଣୋତ୍ତର) | ଭାରତର ୨ୟ ପ୍ରଧାନମନ୍ତ୍ରୀ, ସ୍ୱାଧୀନତା ସଂଗ୍ରାମୀ | ଉତ୍ତର ପ୍ରଦେଶ |
| ୧୫ | ଇନ୍ଦିରା ଗାନ୍ଧୀ | ୧୯୧୭-୧୯୮୪ | ୧୯୭୧ | ପୂର୍ବତନ ପ୍ରଧାନମନ୍ତ୍ରୀ | ଉତ୍ତର ପ୍ରଦେଶ |
| ୧୬ | ଭିଭି ଗିରି | ୧୮୯୪-୧୯୮୦ | ୧୯୭୫ | ପୂର୍ବତନ ରାଷ୍ଟ୍ରପତି, ଶ୍ରମିକ ସଂଗଠନର ନେତା | ଓଡ଼ିଶା |

| | | | | | |
|---|---|---|---|---|---|
| ୧୭ | କେ. କାମରାଜ୍ | ୧୯୦୩-୧୯୭୫ | ୧୯୭୬ (ମରଣୋତ୍ତର) | ସ୍ୱାଧୀନତା ସଂଗ୍ରାମୀ, ତାମିଲ୍‌ନାଡୁର ପୂର୍ବତନ ମୁଖ୍ୟମନ୍ତ୍ରୀ | ତାମିଲ୍‌ନାଡୁ |
| ୧୮ | ମଦର ଟେରେସା | ୧୯୧୦-୧୯୯୭ | ୧୯୮୦ | ୧୯୭୯ରେ ନୋବେଲ ଶାନ୍ତି ପୁରସ୍କାର ବିଜୟିନୀ | ପଶ୍ଚିମବଙ୍ଗ |
| ୧୯ | ବିନୋବା ଭାବେ | ୧୮୯୫-୧୯୮୨ | ୧୯୮୩ (ମରଣୋତ୍ତର) | ସମାଜ ସଂସ୍କାରକ, ସ୍ୱାଧୀନତା ସଂଗ୍ରାମୀ | ମହାରାଷ୍ଟ୍ର |
| ୨୦ | ଖାନ୍ ଅବ୍‌ଦୁଲ୍ ଗଫର ଖାଁ | ୧୮୯୦-୧୯୮୮ | ୧୯୮୭ | ସ୍ୱାଧୀନତା ସଂଗ୍ରାମୀ, ପ୍ରଥମ ଅଣଭାରତୀୟ ଭାବେ ଏହି ପୁରସ୍କାର ବିଜୟୀ | ପାକିସ୍ତାନ |
| ୨୧ | ଏମ୍. ରାମଚନ୍ଦ୍ରନ୍ | ୧୯୧୭-୧୯୮୭ | ୧୯୮୮ (ମରଣୋତ୍ତର) | ତାମିଲ୍‌ନାଡୁର ପୂର୍ବତନ ମୁଖ୍ୟମନ୍ତ୍ରୀ, ପ୍ରଖ୍ୟାତ ଅଭିନେତା | ତାମିଲ୍‌ନାଡୁ |
| ୨୨ | ବି.ଆର୍ ଆମ୍ବେଦ୍‌କର | ୧୮୯୧-୧୯୫୬ | ୧୯୯୦ (ମରଣୋତ୍ତର) | ଭାରତୀୟ ସମ୍ବିଧାନର ମୁଖ୍ୟ ପ୍ରଣେତା, ସମାଜ ସଂସ୍କାରକ, ଅର୍ଥଶାସ୍ତ୍ରବିତ୍ ଏବଂ ବିଜ୍ଞବ୍ୟକ୍ତି | ମହାରାଷ୍ଟ୍ର |
| ୨୩ | ନେଲ୍‌ସନ୍ ମାଣ୍ଡେଲା | ଜନ୍ମ-୧୯୧୮ | ୧୯୯୦ | ଦ୍ୱିତୀୟ ଅଣ ଭାରତୀୟ ଭାବେ ଏହି ପୁରସ୍କାର ବିଜୟୀ, ବର୍ଣ୍ଣବୈଷମ୍ୟ ପ୍ରତିରୋଧ ଆନ୍ଦୋଳନର ନେତା | ଦକ୍ଷିଣ ଆଫ୍ରିକା |
| ୨୪ | ରାଜୀବ ଗାନ୍ଧୀ | ୧୯୪୪-୧୯୯୧ | ୧୯୯୧ (ମରଣୋତ୍ତର) | ପୂର୍ବତନ ପ୍ରଧାନ ମନ୍ତ୍ରୀ | ନୂଆଦିଲ୍ଲୀ |
| ୨୫ | ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ | ୧୮୭୫-୧୯୫୦ | ୧୯୯୧ (ମରଣୋତ୍ତର) | ସ୍ୱାଧୀନତା ସଂଗ୍ରାମୀ, ପ୍ରଥମ ଗୃହମନ୍ତ୍ରୀ | ଗୁଜୁରାଟ |
| ୨୬ | ମୋରାରଜୀ ଦେଶାଇ | ୧୮୯୬-୧୯୯୫ | ୧୯୯୧ | ପୂର୍ବତନ ପ୍ରଧାନମନ୍ତ୍ରୀ, ସ୍ୱାଧୀନତା ସଂଗ୍ରାମୀ | ଗୁଜୁରାଟ |
| ୨୭ | ଅବୁଲ୍ କାଲାମ୍ ଆଜାଦ୍ | ୧୮୮୮-୧୯୫୮ | ୧୯୯୨ (ମରଣୋତ୍ତର) | ସ୍ୱାଧୀନତା ସଂଗ୍ରାମୀ, ଭାରତର ପ୍ରଥମ ଶିକ୍ଷାମନ୍ତ୍ରୀ | ପଶ୍ଚିମବଙ୍ଗ |

| | | | | | |
|---|---|---|---|---|---|
| ୨୮ | ଜେ.ଆର.ଡ଼ି ଟାଟା | ୧୯୦୪-୧୯୯୩ | ୧୯୯୨ | ଶିଳ୍ପ ମାଲିକ ଏବଂ ମାନବ ପ୍ରେମୀ ବ୍ୟକ୍ତି | ମହାରାଷ୍ଟ୍ର |
| ୨୯ | ସତ୍ୟଜିତ୍ ରାୟ | ୧୯୨୨-୧୯୯୨ | ୧୯୯୨ | ଚଳଚ୍ଚିତ୍ର ନିର୍ଦ୍ଦେଶକ | ପଶ୍ଚିମବଙ୍ଗ |
| ୩୦ | ଏ.ପି.ଜେ ଅବ୍ଦୁଲ୍ କାଲାମ୍ | ଜନ୍ମ-୧୯୩୧ | ୧୯୯୭ | ବୈଜ୍ଞାନିକ, ପୂର୍ବତନ ରାଷ୍ଟ୍ରପତି | ତାମିଲ୍‌ନାଡୁ |
| ୩୧ | ଗୁଲ୍‌ଜାରୀ ଲାଲ୍ ନନ୍ଦା | ୧୮୯୮-୧୯୯୮ | ୧୯୯୭ | ସ୍ୱାଧୀନତା ସଂଗ୍ରାମୀ, ପୂର୍ବତନ ପ୍ରଧାନମନ୍ତ୍ରୀ | ପଞ୍ଜାବ |
| ୩୨ | ଅରୁଣା ଆସଫ୍ ଅଲ୍ଲୀ | ୧୯୦୮-୧୯୯୬ | ୧୯୯୭ (ମରଣୋତ୍ତର) | ସ୍ୱାଧୀନତା ସଂଗ୍ରାମୀ | ପଶ୍ଚିମବଙ୍ଗ |
| ୩୩ | ଏମ୍.ଏସ୍ ଶୁବ୍ବଲକ୍ଷ୍ମୀ | ୧୯୧୬-୨୦୦୪ | ୧୯୯୮ | ଶାସ୍ତ୍ରୀୟ କର୍ଣ୍ଣାଟକୀ ସଂଗୀତଜ୍ଞ | ତାମିଲ୍‌ନାଡୁ |
| ୩୪ | ଚିଦାମ୍ବରମ୍ ସୁବ୍ରମାନିୟମ୍ | ୧୯୧୦-୨୦୦୦ | ୧୯୯୮ | ସ୍ୱାଧୀନତା ସଂଗ୍ରାମୀ, କୃଷିମନ୍ତ୍ରୀ | ତାମିଲ୍‌ନାଡୁ |
| ୩୫ | ଜୟପ୍ରକାଶ ନାରାୟଣ | ୧୯୦୨-୧୯୭୯ | ୧୯୯୮ (ମରଣୋତ୍ତର) | ସ୍ୱାଧୀନତା ସଂଗ୍ରାମୀ, ସମାଜ ସଂସ୍କାରକ | ବିହାର |
| ୩୬ | ରବିଶଙ୍କର | ଜନ୍ମ-୧୯୨୦ | ୧୯୯୯ | ସୀତାର ବାଦକ, ସଂଗୀତଜ୍ଞ | ଆମେରିକା |
| ୩୭ | ଅମର୍ତ୍ତ୍ୟ ସେନ୍ | ଜନ୍ମ-୧୯୩୩ | ୧୯୯୯ | ଅର୍ଥ ଶାସ୍ତ୍ରବିତ୍, ନୋବେଲ୍ ପୁରସ୍କାର ବିଜୟୀ | ପଶ୍ଚିମ ବଙ୍ଗ |
| ୩୮ | ଗୋପୀନାଥ ବର୍ଦ୍ଦୋଲୋଇ | ୧୮୯୦-୧୯୫୦ | ୧୯୯୯ (ମରଣୋତ୍ତର) | ସ୍ୱାଧୀନତା ସଂଗ୍ରାମୀ, ଆସାମର ପୂର୍ବତନ ମୁଖ୍ୟମନ୍ତ୍ରୀ | ଆସାମ |
| ୩୯ | ଲତା ମଙ୍ଗେସ୍କର | ଜନ୍ମ-୧୯୨୯ | ୨୦୦୧ | ଗାୟିକା | ମହାରାଷ୍ଟ୍ର |
| ୪୦ | ବିସ୍ମିଲ୍ଲା ଖାଁ | ୧୯୧୬-୨୦୧୦ | ୨୦୦୧ | ଶାସ୍ତ୍ରୀୟ ସଂଗୀତଜ୍ଞ, ସେହେନାଇର ସିଦ୍ଧହସ୍ତ ବାଦକ | ବିହାର |
| ୪୧ | ଭୀମସେନ୍ ଯୋଶୀ | ଜନ୍ମ-୧୯୨୨ | ୨୦୦୮ | ହିନ୍ଦୁସ୍ତାନୀ ଶାସ୍ତ୍ରୀୟ କଣ୍ଠଶିଳ୍ପୀ | ମହାରାଷ୍ଟ୍ର |

# ସର୍ବପଲ୍ଲୀ ଡକ୍ଟର ରାଧାକ୍ରିଷ୍ଣନ୍



**୧୮୮୮-୧୯୭୫**

**ଭାରତରତ୍ନ-୧୯୫୪**

**ସ**ର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ଭାରତର ଦ୍ୱିତୀୟ ରାଷ୍ଟ୍ରପତି ରୂପେ ଅଧିଷ୍ଠିତ ହୋଇଥିଲେ । ସେ ଜଣେ ଉଚ୍ଚକୋଟୀର କୂଟନୀତିଜ୍ଞ, ଦାର୍ଶନିକ ଏବଂ ରାଷ୍ଟ୍ରନୀତିଜ୍ଞ ଥିଲେ । ବର୍ତ୍ତମାନ ଆନ୍ଧ୍ରପ୍ରଦେଶର ହିନ୍ଦୁସ୍ଥାନୀରେ ସେ ୧୮୮୮ ମସିହା ସେପ୍ଟେମ୍ବର ୫ ତାରିଖ ଦିନ ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ସର୍ବପଲ୍ଲୀ ବିଡ଼ାସ୍ୱାମୀ ଏବଂ ମାତା ଚିତାମ୍ମା ଉତ୍କଟ ଦାରିଦ୍ର୍ୟରେ ପ୍ରପୀଡ଼ିତ ଥିଲେ । ବୃତ୍ତି ପାଇବା ଯୋଗୁଁ ହିଁ ରାଧାକ୍ରିଷ୍ଣନ୍ ଶିକ୍ଷା ପାଇବାକୁ ସମର୍ଥ ହୋଇଥିଲେ । ତିରୁପେନେରେ ତାଙ୍କର ପ୍ରାଥମିକ ଶିକ୍ଷା ଏବଂ ତିରୁପତିଠାରେ ଲୁଥେରାନ ମିଶନ୍ ସ୍କୁଲ୍‌ରେ ମାଟ୍ରିକ୍ୟୁଲେସନ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ତପ୍ରରେ

ସେ ଭେଲୋରରେ ଥିବା ୱୁରି ମହାବିଦ୍ୟାଳୟରେ ଯୋଗଦେଲେ । ଏହି ମହାବିଦ୍ୟାଳୟ ବର୍ତ୍ତମାନର ବେଙ୍ଗାଲୁରୁ ନଗରୀଠାରୁ ୬୦ କିଲୋମିଟର ଦୂରରେ ଅବସ୍ଥିତ । ପରେ ସେ ମାଡ୍ରାସ ଖ୍ରୀଷ୍ଟିୟାନ କଲେଜରେ ଅଧ୍ୟୟନ କଲେ । ସେହିଠାରେ ଦର୍ଶନଶାସ୍ତ୍ରରେ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କଲେ ।

ଡକ୍ଟର ରାଧାକ୍ରିଷ୍ଣନ୍ ପାଶ୍ଚାତ୍ୟ ଜଗତର ଦାର୍ଶନିକ ମାନଙ୍କର ଚିନ୍ତନରେ ଅତିଶୟ ମୁଗ୍ଧ ହୋଇଥିଲେ ଏବଂ ପ୍ୟାଣ୍ଡ, ପ୍ଲାଟୋ, ପ୍ଲୋଟିନସ, ବ୍ରାଡ୍ଲି ଏବଂ ବର୍ଗସନ୍ଙ୍କ ପରି ଦାର୍ଶନିକମାନଙ୍କ ଦ୍ୱାରା ବହୁଳ ଭାବେ ପ୍ରଭାବିତ ଥିଲେ । ସେ ଇଂରାଜୀ ସାହିତ୍ୟରେ ବି ରୁଚି ରଖୁଥିଲେ । ତାଙ୍କ ପୁସ୍ତକାବଳୀରେ ସେକ୍ସପିଅର, ୱାର୍ଡସ୍‌ୱର୍ଥ, ମେଥ୍ୟୁଆର୍ନୋଲ୍ଡ ଏବଂ ବ୍ରାଉନି ତଥା ଦାନ୍ତେ ଏବଂ ୱେଲ୍‌ଙ୍କର ଅନେକ ଉଦ୍ଧୃତାଂଶ ରହୁଥିଲା ।

ମହିଶୁର ବିଶ୍ୱବିଦ୍ୟାଳୟରେ ୧୯୧୮ ମସିହାରେ ରାଧାକ୍ରିଷ୍ଣନ୍ ଦର୍ଶନର ପ୍ରଫେସର୍ ଭାବେ ମନୋନୀତ ହୋଇଥିଲେ । ସେହି ସମୟରେ ସେ ଅନେକ ପୁସ୍ତକ ରଚନା କରି ଆନ୍ତର୍ଜାତୀୟ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କଲେ । ତାଙ୍କର ପ୍ରଥମ ବହି ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଦର୍ଶନ ୧୯୧୮ ମସିହାରେ ପ୍ରକାଶିତ ହେଲା । ଏହି ପୁସ୍ତକ ଖୁବ୍ ଲୋକପ୍ରିୟ ହୋଇଥିଲା । ଦୁଇ ବର୍ଷ ପରେ ସମସାମୟିକ ଦର୍ଶନ ଶାସ୍ତ୍ରରେ ଧର୍ମର ଶାସନ ନାମକ ଅନ୍ୟ ଏକ ପୁସ୍ତକ ପ୍ରକାଶିତ ହେଲା । କଲିକତା ବିଶ୍ୱବିଦ୍ୟାଳୟର ଉପକୁଳପତି ସାର୍ ଆଶୁତୋଷ ମୁଖାର୍ଜୀ ତାଙ୍କର ପ୍ରତିଭାର ସୂଚନା ପାଇ କଲିକତା ବିଶ୍ୱବିଦ୍ୟାଳୟର ଦର୍ଶନ ଶାସ୍ତ୍ର ଅଧ୍ୟାପକ ପଦ ପାଇଁ ତାଙ୍କୁ ଆମନ୍ତ୍ରଣ କଲେ । ୧୯୨୧ ମସିହାରେ ଏହି ସମ୍ମାନନୀୟ ପଦବୀରେ ସେ ଅଧିଷ୍ଠିତ ହେଲେ । ଡକ୍ଟର ରାଧାକ୍ରିଷ୍ଣନଙ୍କ ସ୍ମୃତିଶକ୍ତି ଏତେ ପ୍ରଖର ଥିଲା ଯେ ସେ ତାଙ୍କର ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କର ନାମ ମନେ ରଖିଥିଲେ । କହିବା ବାହୁଲ୍ୟ ସେ ସମସ୍ତ ଛାତ୍ରଛାତ୍ରୀଙ୍କର ପ୍ରିୟଭାଜନ ହୋଇପାରିଥିଲେ । ଯେତେବେଳେ ସେ ମହୀଶୂର ବିଶ୍ୱବିଦ୍ୟାଳୟ ଛାଡ଼ି ଚାଲିଗଲେ ସମସ୍ତ ଛାତ୍ରଛାତ୍ରୀ ଦୁଃଖରେ ମ୍ରିୟମାଣ ହୋଇପଡ଼ିଥିଲେ । ଛାତ୍ରଛାତ୍ରୀମାନେ ଏକ ବିରାଟ ଶୋଭାଯାତ୍ରାରେ ତାଙ୍କୁ ଗୋଟିଏ କୋଚ୍‌ରେ ବସାଇ ଛାତ୍ରମାନେ ଟାଣି ଟାଣି ରେଳଷ୍ଟେସନ ପର୍ଯ୍ୟନ୍ତ ଆଣିଥିଲେ ।

ଡକ୍ଟର ରାଧାକ୍ରିଷ୍ଣନ୍ ୧୯୨୩ ମସିହାରେ ତାଙ୍କର ସର୍ବଶ୍ରେଷ୍ଠ, ସର୍ବବୃହତ୍ ଗ୍ରନ୍ଥ ଭାରତୀୟ ଦର୍ଶନ ଶାସ୍ତ୍ର ରଚନା କଲେ । ଏହାକୁ ଦର୍ଶନଶାସ୍ତ୍ରର ଏକ ଅତୁଳନୀୟ ଏବଂ ମାଷ୍ଟରପିସ୍ ବୋଲି କୁହାଗଲା । ଡକ୍ଟର ରାଧାକ୍ରିଷ୍ଣନଙ୍କର ଏହି ପୁସ୍ତକ ବଳରେ

ଭାରତୀୟ ଦର୍ଶନ ଶାସ୍ତ୍ରକୁ ସାରା ବିଶ୍ୱରେ ସମ୍ମାନ ଏବଂ ସ୍ୱୀକୃତି ପ୍ରାପ୍ତ ହେଲା । ୧୯୨୬ ମସିହାରେ ସେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର ହ୍ୟାରିକ୍ସ ମେଞ୍ଚେଷ୍ଟର କଲେଜରେ ଅବ୍‌ଟନ୍ ଭାଷଣ ଦେବାପାଇଁ ଆମନ୍ତ୍ରିତ ହେଲେ । ତାଙ୍କର ବିଷୟବସ୍ତୁ ଥିଲା ଜୀବନ ପ୍ରତି ହିନ୍ଦୁ ଦୃଷ୍ଟିକୋଣ । ଏହି



ଭାଷଣ ପରେ ସେ ବ୍ରିଟିଶ୍ ଦର୍ଶନ ତତ୍ତ୍ୱବିତ୍ ଏବଂ ବିଜ୍ଞ ବ୍ୟକ୍ତିମାନଙ୍କର ଦୃଷ୍ଟି ଆକର୍ଷଣ କଲେ । ସେମାନଙ୍କ ମଧ୍ୟରେ ପାର୍ଡ଼ିଂ ନାମକ ଜଣେ ଧର୍ମ ତତ୍ତ୍ୱବିତ୍ ଥିଲେ । ରାଧାକ୍ରିଷ୍ଣନ୍‌ଙ୍କର ମନମୁଗ୍ଧକର ଭାଷଣରେ ମୁଗ୍ଧ ହୋଇ ସେ ପ୍ରାଚ୍ୟ ଜଗତର ଧର୍ମ ଏବଂ ନୀତି ବିଷୟରେ ଏକ ପ୍ରଫେସର ପଦ ସୃଷ୍ଟି କରି ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ତାଙ୍କୁ ଅବସ୍ଥାପିତ କଲେ । ଯେଉଁ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ଥରେ ସେ ଛାତ୍ର ହୋଇ ଅଧ୍ୟୟନ କରିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ, ସେହିଠାରେ ସୌଭାଗ୍ୟକ୍ରମେ ତାଙ୍କୁ ପ୍ରଫେସର ପଦ ପ୍ରାପ୍ତ ହେଲା । ପ୍ରଥମଥର ପାଇଁ କୌଣସି ଭାରତୀୟ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ଶିକ୍ଷାଦାନ କଲେ । ଫଳରେ ଏକା ସମୟରେ ସେ ଦୁଇଟି ମହାଦେଶରେ ଦୁଇଟି ଭିନ୍ନ ଭିନ୍ନ ପଦବୀରେ ଅଧିଷ୍ଠିତ ହେଲେ । ପ୍ରଥମଟି ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ଏବଂ ଦ୍ୱିତୀୟଟି କଲିକତା ବିଶ୍ୱବିଦ୍ୟାଳୟରେ ।

ଡକ୍ଟର ରାଧାକ୍ରିଷ୍ଣନ୍‌ଙ୍କୁ ଅନେକ ବିଶ୍ୱବିଦ୍ୟାଳୟ ନିମନ୍ତ୍ରଣ କଲେ । ସେ ୟେଲ୍, ହାଭାର୍ଡ ଏବଂ କିଙ୍ଗଷ୍ଟନ୍ ଆଦି ପରିଦର୍ଶନ କରି ସେଠାରେ ଭାଷଣ ଦେଇ ସମସ୍ତଙ୍କର ପ୍ରିୟ ହୋଇପାରିଥିଲେ । ୧୯୩୧ ମସିହାରୁ ୧୯୩୭ ମସିହା ପର୍ଯ୍ୟନ୍ତ ରାଧାକ୍ରିଷ୍ଣନ୍ ଆନ୍ଧ୍ର ବିଶ୍ୱବିଦ୍ୟାଳୟର ଉପକୁଳପତି ହୋଇ ତାଙ୍କ ସଂଗଠନ ଏବଂ ପ୍ରଶାସନ ଦକ୍ଷତା ପ୍ରତିପାଦିତ କଲେ । ୧୯୩୮ ମସିହାରୁ ୧୯୪୮ ମସିହା ପର୍ଯ୍ୟନ୍ତ ସେ ବନାରସ ହିନ୍ଦୀ ୟୁନିଭରସିଟିର ଉପକୁଳପତି ହୋଇଥିଲେ । ବନାରସ ହିନ୍ଦୀ ୟୁନିଭରସିଟି ପାଇଁ ୧୯୪୩ ମସିହା ଏକ ସଂକଟମୟ ପରିସ୍ଥିତି ସୃଷ୍ଟି କରିଥିଲା । ଉତ୍ତର ପ୍ରଦେଶର ବ୍ରିଟିଶ ରାଜ୍ୟପାଳ ସାର୍ ମରିସ୍ ହାଲେଟ୍ ସମଗ୍ର ବିଶ୍ୱବିଦ୍ୟାଳୟ ପରିସରକୁ ଏକ



ଯୁଦ୍ଧ କାଳୀନ ହସ୍‌ପିଟାଲରେ ପରିଣତ କରିବା ପାଇଁ ଇଚ୍ଛା କଲେ । ସେହି ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀମାନେ ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦେଇଥିବାରୁ ସେ ଏ ପ୍ରକାର ପ୍ରତିଶୋଧମୂଳକ କାର୍ଯ୍ୟପନ୍ଥା ସ୍ଥିର କରିଥିଲେ । ଏହା ପରେ ଡକ୍ଟର ରାଧାକ୍ରିଷନ୍ ତୁରନ୍ତ ଦିଲ୍ଲୀ ଆସି ଲର୍ଡ ଭାଇସରାୟ ଲିଣ୍ଡିଲିଟ୍‌ଗୋଙ୍କୁ ସାକ୍ଷାତ କଲେ ଏବଂ ରାଜ୍ୟପାଳଙ୍କ ସାଙ୍ଗେ ବାର୍ତ୍ତାଳାପ କରିବା ପାଇଁ ତାଙ୍କୁ ଅନୁରୋଧ ଜଣାଇଲେ । ଏହାର ପ୍ରତିକ୍ରିୟାରେ ରାଜ୍ୟପାଳ ବିଶ୍ୱବିଦ୍ୟାଳୟକୁ ଦେଉଥିବା ସମସ୍ତ ଆର୍ଥିକ ସାହାଯ୍ୟ ବନ୍ଦ କରିଥିଲେ । ଏହା ଫଳରେ ଡକ୍ଟର ରାଧାକ୍ରିଷନ ଏକ ତୀର୍ଥ ଭ୍ରମଣ ପଦଯାତ୍ରା ଆରମ୍ଭ କରି ସହାନୁଭୂତିଶୀଳ ଜନତାଙ୍କ ଠାରୁ ଚାନ୍ଦା ଆଦାୟ କରି ବିଶ୍ୱବିଦ୍ୟାଳୟ ଚଳାଇଥିଲେ । ତାଙ୍କର ଏହି ଉପସ୍ଥିତ ବୁଦ୍ଧି ଏବଂ ମାନସିକ ଦୃଢ଼ତା ଫଳରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ସେହି ସମୟର ଜଟିଳତାକୁ ଦୃଢ଼ତାର ସହିତ ମୁକାବିଲା କରିପାରିଥିଲା ।

ସେ ଭାରତରେ ବ୍ରିଟିଶ୍ ରାଜ୍‌ର ବିଭିନ୍ନ ନୀତି ନିୟମର ଜଣେ ନିର୍ଭିକ ସମାଲୋଚକ ଥିଲେ । ଏହି ସମୟରେ ସେ ଭାରତୀୟ ଜାତୀୟ ଆନ୍ଦୋଳନରେ ଭାଗ ନେଇଥିବା ବିଭିନ୍ନ ପ୍ରମୁଖ ବ୍ୟକ୍ତି ମାନଙ୍କ ସଂସ୍ପର୍ଶରେ ଆସିଥିଲେ । ସେମାନଙ୍କ ମଧ୍ୟରେ ମହାତ୍ମାଗାନ୍ଧୀ ଏବଂ ପଣ୍ଡିତ ଜବାହାରଲାଲ୍ ନେହେରୁ ଅନ୍ୟତମ । ଏହି ନେତୃବୃନ୍ଦ ତାଙ୍କୁ ୧୯୪୪ ମସିହାରେ ସ୍ୱାଧୀନ ଭାରତ ପାଇଁ ଏକ ନିୟମ ବିଧି ପ୍ରସ୍ତୁତ କରିବା ପାଇଁ ନିମନ୍ତ୍ରଣ କରିଥିଲେ । ସେ ୟୁନେସ୍କୋରେ ଭାରତର ପ୍ରତିନିଧିତ୍ୱ କରିବା ପାଇଁ ନିଯୁକ୍ତି ପାଇଲେ ।

୧୯୪୯ ମସିହାରେ ପ୍ରଥମ ସୋଭିଏତ୍ ଗ୍ରସ୍ତରେ ଯାଉଥିବା ଭାରତୀୟ ଦଳଙ୍କ ନେତୃତ୍ୱ ନେବାପାଇଁ ରାଧାକ୍ରିଷନ୍‌ଙ୍କୁ ବଛାଗଲା । ପଣ୍ଡିତ ନେହେରୁଙ୍କର ଏହି ନିଷ୍ପତ୍ତି ବିଷୟରେ ଅନେକ ସନ୍ଦିହାନ ଥିଲେ । ସେମାନଙ୍କର ସଂଶୟ ଥିଲା ଯେ ଡକ୍ଟର ରାଧାକ୍ରିଷନ୍‌ଙ୍କ ପରି ଜଣେ ଦାର୍ଶନିକ ଷ୍ଟାଲିନ୍‌ଙ୍କ ପରି ଜଣେ ଲୌହମାନବଙ୍କୁ ବଶୀଭୂତ କରିବା ସମ୍ଭବ ହେବ କି ? କିନ୍ତୁ ଯେତେବେଳେ ଷ୍ଟାଲିନ୍ ଏହି ଭଦ୍ର, ଆମାୟିକ ଦାର୍ଶନିକଙ୍କ ଦ୍ୱାରା ସଂପୂର୍ଣ୍ଣ ଭାବେ ବଶୀଭୂତ ହେଲେ ତାହା ସମସ୍ତଙ୍କୁ ଚକିତ କରିଥିଲା ।

ସେ ଋଷିଆରୁ ଭାରତ ଫେରିବାର ଅବ୍ୟବହିତ ପୂର୍ବରୁ ଷ୍ଟାଲିନ୍ ତାଙ୍କୁ ଆଉଥରେ ଦେଖିବା ପାଇଁ ଇଚ୍ଛା କଲେ । ଡ଼କ୍ଟର ରାଧାକ୍ରିଷ୍ଣନ୍ ଷ୍ଟାଲିନ୍‌ଙ୍କ ପାଖକୁ ଯାଇ ତାଙ୍କ ଗାଲ ଏବଂ ପିଠି ଥାପୁଡ଼େଇ ତାଙ୍କୁ ବିଦାୟ ମାଗିଲେ । ତହିଁରେ ଷ୍ଟାଲିନ୍ ଭାବାବେଗରେ ଅଭିଭୂତ ହୋଇ କହିଥିଲେ "ଆପଣ ପ୍ରଥମ ବ୍ୟକ୍ତି ଯେ କି ମୋତେ ଅସୁର ନ ଭାବି ମଣିଷ ବୋଲି ଭାବି ବ୍ୟବହାର କଲେ । ଆପଣ ଆଜି ଋଷିଆ ଛାଡ଼ି ଚାଲିଯାଉଛନ୍ତି ମୁଁ ସେଥିପାଇଁ ବହୁତ ଦୁଃଖିତ ।"

ପଣ୍ଡିତ ଜବାହାରଲାଲ୍ ନେହେରୁ ୧୯୫୨ ମସିହାରେ ଡକ୍ଟର ରାଧାକ୍ରିଷ୍ଣନ୍‌ଙ୍କୁ ଭାରତର ପ୍ରଥମ ଉପରାଷ୍ଟ୍ରପତି ଭାବେ ନିଯୁକ୍ତ କଲେ । ଉପରାଷ୍ଟ୍ରପତି ରାଜ୍ୟସଭାରେ ପ୍ରତ୍ୟେକ ଅଧିବେଶନରେ ସଭାପତିତ୍ୱ କରିଥାନ୍ତି । ତାଙ୍କ ସଭାପତିତ୍ୱ କାଳରେ ଅନେକ ସମୟରେ ସେ ରାଜ୍ୟସଭାରେ ଚାଲିଥିବା ପାଟିତୁଣ୍ଡ, ହୋହଲ୍ଲା ଏବଂ କ୍ରୋଧିତ ବାକ୍ ବିନିମୟକୁ ତାଙ୍କର ଶାନ୍ତ ଅଥଚ ଗମ୍ଭୀର ସ୍ୱରରେ ବିଭିନ୍ନ ମଜା କଥା ଏବଂ ବାଇବେଲ ଏବଂ ଅନ୍ୟାନ୍ୟ ଧର୍ମଶାସ୍ତ୍ରର ସଂସ୍କୃତ ଶ୍ଳୋକ ସାହାଯ୍ୟରେ ସମ୍ଭାଳି ନେଉଥିଲେ । ତାଙ୍କର ଧର୍ମପତ୍ନୀ ଶିବକାମୋଆମ୍ମା ୧୯୫୬ ମସିହାରେ ଇହଲୀଳା ତ୍ୟାଗ କଲେ । ତାଙ୍କର ୫ଟି କନ୍ୟା ଏବଂ ଗୋଟିଏ ପୁତ୍ର ଥିଲେ ।

ଦୁଇଥର ଉପରାଷ୍ଟ୍ରପତି ରହିବା ପରେ ଡକ୍ଟର ରାଧାକ୍ରିଷ୍ଣନ ୧୯୬୨ ମସିହାରେ ଭାରତର ରାଷ୍ଟ୍ରପତି ଭାବେ ନିର୍ବାଚିତ ହେଲେ । ୧୯୬୭ ମସିହାରେ ତାଙ୍କର କାର୍ଯ୍ୟକାଳ ପୂରଣ ହେବା ପରେ ସେତେବେଳର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧୀ ଏବଂ ଅନ୍ୟାନ୍ୟ କେତେକ ନେତା ଡକ୍ଟର ରାଧାକ୍ରିଷ୍ଣନ୍‌ଙ୍କୁ ଆଉ ଗୋଟିଏ କାର୍ଯ୍ୟକାଳ ରାଷ୍ଟ୍ରପତି ପଦବୀରେ ରହିବା ପାଇଁ ଅନୁରୋଧ କଲେ । ସେତେବେଳକୁ ରାଧାକ୍ରିଷ୍ଣନ୍‌ଙ୍କୁ ୭୯ ବର୍ଷ ହୋଇଥାଏ ।



ତାଙ୍କର ସ୍ୱାସ୍ଥ୍ୟରେ ଅବନତି କାରଣରୁ ସେ ଆଉ ଏହି କାର୍ଯ୍ୟ ତୁଲାଇ ପାରିବେ ନାହିଁ ବୋଲି ଭଦ୍ରତାର ସହିତ ଏହି ଅନୁରୋଧକୁ ଅସ୍ୱୀକାର କରିଥିଲେ । ସେ ଚାହୁଁଥିଲେ ଯେ କେହି ଜଣେ କମ୍ ବୟସ୍କ ବ୍ୟକ୍ତି ଏହି ଉଚ୍ଚ କାର୍ଯ୍ୟାଳୟରେ ନିଯୁକ୍ତ ହେବା ଉଚିତ ହେବ । ତା ପରେ ଆଉଜଣେ



ମହାନ୍ ଶିକ୍ଷାବିତ୍ ଡକ୍ଟର ଜାକିର୍ ହୁସେନ୍ ତାଙ୍କର ପରବର୍ତ୍ତୀ ରାଷ୍ଟ୍ରପତି ହେବେ ବୋଲି ଶୁଣି ସେ ଆନନ୍ଦିତ ହୋଇଥିଲେ ।

୧୯୬୭ ମସିହାରେ ଡକ୍ଟର ରାଧାକ୍ରିଷ୍ଣନ୍ ବର୍ତ୍ତମାନର ଚେନ୍ନାଇ ନଗରୀରେ ବିରାଟ ସ୍ୱାଗତ ସମ୍ଭାଷଣ ପାଇଥିଲେ । ତାଙ୍କର ଚେନ୍ନାଇସ୍ଥିତ ମିଲାପୁର ବାସଭବନରେ ସେ ବାକି ଜୀବନ ଆନନ୍ଦରେ କଟାଇଥିଲେ । ୧୯୭୫ ମସିହା ଏପ୍ରିଲ୍ ୧୭ ତାରିଖ ଦିନ ସେ ଇହଲୀଳ ସମ୍ବରଣ କଲେ । ଦେଶ ବିଦେଶରୁ ତାଙ୍କ ମୃତ୍ୟୁରେ ଶୋକବାର୍ତ୍ତାମାନ ଆସି ପହଞ୍ଚିଲା । ସମଗ୍ର ବିଶ୍ୱ ଯେପରି ତାଙ୍କ ବିୟୋଗରେ ମର୍ମାହତ ହୋଇ ପଡ଼ିଥିଲା ।

ଡକ୍ଟର ରାଧାକ୍ରିଷ୍ଣନ ୧୯୫୪ ମସିହାରେ ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତ ରତ୍ନରେ ଭୂଷିତ ହେଲେ । ଗୋଟିଏ ଦରିଦ୍ର ପରିବାରର ବାଳକ, ପାଠ ପଢ଼ିବା ପାଇଁ ଆବଶ୍ୟକ ଅର୍ଥ ଯୋଗାଡ଼ କରିବା ପାଇଁ ଯାହାକୁ ଟିଉସନ୍ କରିବାକୁ ପଡୁଥିଲା ସେ ଭାରତର ସର୍ବୋଚ୍ଚ ସମ୍ମାନରେ ଭୂଷିତ ହେବା ଏକ ଅଭୂତପୂର୍ବ ଘଟଣା । ଭାରତର ଶିକ୍ଷା କ୍ଷେତ୍ରରେ ଅନବଦ୍ୟ ଅବଦାନ, ଅସାମାନ୍ୟ ପାଣ୍ଡିତ୍ୟ ଏବଂ ଅନାବିଳ ଛାତ୍ର ବତ୍ସଳତା ଯୋଗୁଁ ତାଙ୍କ ଜନ୍ମଦିନ ସେପ୍ଟେମ୍ବର ୫ ତାରିଖକୁ ଗୁରୁଦିବସ ରୂପେ ପାଳନ କରି ସମଗ୍ର ଦେଶ ତାଙ୍କୁ ସଭକ୍ତି ସ୍ମରଣ କରେ ।

***

# ସି. ରାଜଗୋପାଳାଚାରୀ



୧୮୭୮-୧୯୭୨

ଭାରତରତ୍ନ - ୧୯୫୪

ମହାତ୍ମାଗାନ୍ଧୀଙ୍କୁ ବାପୁଜୀ, ସୁବାଷଚନ୍ଦ୍ର ବୋଷଙ୍କୁ ନେତାଜୀ, ପଣ୍ଡିତ ଜବାହାରଲାଲ୍‌ଙ୍କୁ ଚାଚାଜୀ ନାମରେ ଭାରତବାସୀ ସମ୍ବୋଧନ କରୁଥିଲେ । ସେହିପରି ଆଉ ଜଣେ ବଳିଷ୍ଠ ବ୍ୟକ୍ତିତ୍ୱ ଚକ୍ରବର୍ତ୍ତୀ ରାଜଗୋପାଲାଚାରୀଙ୍କୁ ଶ୍ରଦ୍ଧାରେ ଭାରତବାସୀ ରାଜାଜୀ ନାମରେ ଅଭିହିତ କରିଥିଲେ । ତାଙ୍କର ନାମ ଚକ୍ରବର୍ତ୍ତୀ ରାଜଗୋପାଲାଚାରୀ ହୋଇଥିବା ଯୋଗୁଁ ତାଙ୍କୁ କେତେକ ସଂକ୍ଷିପ୍ତରେ ସି.ଆର୍ ମଧ୍ୟ କହୁଥିଲେ । ରାଜଗୋପାଲାଚାରୀ ଜଣେ ବିଚକ୍ଷଣ ଦୂରଦୃଷ୍ଟି ସଂପନ୍ନ ରାଷ୍ଟ୍ରନୀତିଜ୍ଞ ଥିଲେ । ରାଜନୀତିଜ୍ଞ ମହଲରେ ସେ ସମସ୍ତଙ୍କର ସମ୍ମାନର ପାତ୍ର ହୋଇଥିଲେ । ରାଜଗୋପାଲାଚାରୀ ଏକ ମଧ୍ୟବିତ ବ୍ରାହ୍ମଣ ପରିବାରରେ ତାମିଲ୍‌ନାଡୁର ଓସୁଡ୍‌ଠାରେ ୧୮୭୮ ମସିହା ଡିସେମ୍ବର ୧୦ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ଲଲନ୍ ଚକ୍ରବର୍ତ୍ତୀ ଏବଂ

ମାତାଙ୍କ ନାମ ସିଙ୍ଗାରମଲ୍ ଥିଲା । ତାଙ୍କର ପିତା ଓସୁର୍ ଜିଲ୍ଲାର ଖଡ଼ାପଲ୍ଲୀ ଗ୍ରାମର ମୁନ୍‌ସୀ ଥିଲେ । ସେ ଜଣେ ପୁରାତନ ବୈଷ୍ଣବୀ ବ୍ରାହ୍ମଣ ଏବଂ ସଂସ୍କୃତ ପଣ୍ଡିତ ଥିଲେ । ଓସୁର୍‌ରେ ରାଜାଜୀଙ୍କର ପ୍ରାଥମିକ ଶିକ୍ଷା ଶେଷ ହେଲା । ବାଙ୍ଗାଲୋର ସ୍ଥିତ



ସେଣ୍ଟ୍ରାଲ୍ କଲେଜରେ ସେ ସ୍ନାତକ ଡିଗ୍ରୀ ହାସଲ କଲେ ଏବଂ ଉଚ୍ଚତର ଶିକ୍ଷା ପାଇଁ ସେ ମାଡ୍ରାସ ଗଲେ । ସେଠାରେ ଆଇନଶାସ୍ତ୍ର ପାଠ କରିବା ପରେ ପାଲେମ୍ ଆସି ସେଠାରେ ଆଇନ ବ୍ୟବସାୟ ଆରମ୍ଭ କଲେ । ଆଖପାଖ ଅଞ୍ଚଳରେ ସେ ଜଣେ ବିଜ୍ଞ ଓକିଲ ଭାବେ ପରିଚିତ ହେଲେ । ତା ପରେ ପାଲେମ୍‌ର ମୁନିସିପାଲ୍ କର୍ପୋରେସନ୍‌ରେ ଜଣେ କର୍ପୋରେଟର ଭାବେ ନିର୍ବାଚିତ ହେଲେ । ସେ ସମୟରେ ସେ ଅନେକ ସମାଜସେବା କଲେ । ଆଲ୍ଲାମଲ୍ଲୀ ମଙ୍ଗମେଲ୍‌ଙ୍କ ସହିତ ତାଙ୍କର ବିବାହ ସଂପନ୍ନ ହେଲା । ପାଲେମ୍‌ରେ ସୁନାମ ଅର୍ଜନ କରିବା ପରେ ସେ ମାଡ୍ରାସ ହାଇକୋର୍ଟରେ ଆଇନ୍ ବ୍ୟବସାୟ କଲେ ।

ଦିନ ରାତି ପାଠ ପଢ଼ିବାରେ ତାଙ୍କର ଖୁବ୍ ଆଗ୍ରହ ଥିଲା । ସେକ୍‌ସପିୟର, ୱାଲ୍‌ଟରସ୍କଟ୍, ଥୋରୀ ଏବ୍ ଟଲ୍‌ଷ୍ଟୟଙ୍କର ସମସ୍ତ ରଚନା ସେ ପଢ଼ିଥିଲେ । ତା ଛଡ଼ା ମହାଭାରତ, ବାଇବେଲ୍ ଏବଂ ଭାଗବତ୍ ଗୀତା ମଧ୍ୟ ପାଠ କରିଥିଲେ । ସେତେବେଳର ଜନନାୟକ ଦାଦା ଭାଇ ନାରୋଜୀ, ବିଜୟ ରାଘବାଚାରୀ, ସରୋଜିନୀ ନାଇଡୁ, ଲୋକମାନ୍ୟ ତିଳକ, ଆନିବେଶାନ୍ତ ଆଦିଙ୍କ ବ୍ୟକ୍ତିତ୍ୱରେ ରାଜାଜୀ ବେଶ୍ ପ୍ରଭାବିତ ହୋଇଥିଲେ । ମାଡ୍ରାସଠାରେ ଆନିବେଶାନ୍ତ ଓଁ ଲିଗ୍ ନାମକ ଏକ ସଂଗଠନ ଆରମ୍ଭ କରି ଆନ୍ଦୋଳନ କରୁଥାନ୍ତି । ରାଜାଜୀ ଏହି ଲିଗ୍‌ରେ ଅଂଶ ଗ୍ରହଣ କରି ଆନ୍ଦୋଳନରେ ଯୋଗଦେଲେ ।

ରାଜଗୋପାଳାଚାରୀ ମହାତ୍ମା ଗାନ୍ଧୀଙ୍କୁ ୧୯୧୯ ମସିହାରେ ସାକ୍ଷାତ କଲେ । ଏହି ସାକ୍ଷତକାରରେ ରାଜାଜୀଙ୍କ ଜୀବନର ମୋଡ଼ ବଦଳିଗଲା । ସେ ମହାତ୍ମାଗାନ୍ଧୀଙ୍କ ଦ୍ୱାରା ଏତେ ଦୂର ପ୍ରଭାବିତ ହେଲେ ଯେ ତାଙ୍କର ଆଇନ ବ୍ୟବସାୟ

ପରିତ୍ୟାଗ କରି ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ପୂର୍ଣ୍ଣପ୍ରାଣରେ ଯୋଗଦେଲେ । ତାଙ୍କ ଜୀବନରେ ସେ ବ୍ରିଟିଶ୍ ସରକାରଙ୍କ ଦ୍ୱାରା ୫ ଥର ବନ୍ଦୀ ହୋଇ କାରାବରଣ କରିଥିଲେ । ୧୯୨୩ ମସିହାରେ ସେ ନାଗପୁର ଠାରେ ପତାକା ସତ୍ୟାଗ୍ରହ ସଂଗଠିତ କରିଥିଲେ ଏବଂ ତିରିଶଲେଗଡ଼୍ ଠାରେ ଏକ ଆଶ୍ରମ ପ୍ରତିଷ୍ଠା କରି ୧୯୨୫ ମସିହାରେ ଖଦୀ ଆନ୍ଦୋଳନକୁ ପ୍ରସାରିତ କଲେ । ମାଡ୍ରାସଠାରେ (ବର୍ତ୍ତମାନର ଚେନ୍ନାଇ) ୧୯୩୦ ମସିହାରେ ସେ ଲବଣ ସତ୍ୟାଗ୍ରହର ନେତୃତ୍ୱ ନେଇଥିଲେ । ୧୯୨୦ରେ ପ୍ରଥମ ଭାଗରେ ଗାନ୍ଧିଜୀ ଯେତେବେଳେ ଜେଲ୍‌ରେ ଥିଲେ ସେ ଗାନ୍ଧିଜୀଙ୍କ ସମ୍ବାଦ ପତ୍ର 'ୟଙ୍ଗ ଇଣ୍ଡିଆ'ର ସଂପାଦନା ଦାୟିତ୍ୱରେ ଥିଲେ । ୧୯୨୨ ମସିହାରୁ ୧୯୪୨ ମସିହା ପର୍ଯ୍ୟନ୍ତ ଦୀର୍ଘ ୨୦ ବର୍ଷ କାଳ ସେ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ଥିଲେ । ରାଜାଜୀ ମାଡ୍ରାସର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ୧୯୩୭ ମସିହାରୁ ୧୯୩୯ ମସିହା ପର୍ଯ୍ୟନ୍ତ ନେଇଥିଲେ । ୧୯୩୭ ମସିହାରେ ସେ ମାଡ୍ରାସରେ ଲିଥା ବିରୋଧୀ ଆଇନ୍ ଆରମ୍ଭ କରିଥିଲେ ଏବଂ ଶେଷ ପର୍ଯ୍ୟନ୍ତ ସେ ଏହି ଆଇନ୍‌କୁ ସମର୍ଥନ କରିଥିଲେ ।

୧୯୪୨ ମସିହାରେ ଭାରତକୁ ହିନ୍ଦୁସ୍ଥାନ ଏବଂ ପାକିସ୍ଥାନ ଦୁଇ ଭାଗରେ ବିଭକ୍ତ କରିବା ଉଦ୍ଦେଶ୍ୟରେ କ୍ରିପ୍‌ସ କମିଶନ ଆସିଥିଲା । ଏହି ବିଷୟରେ ଆଲୋଚନା କରିବା ପାଇଁ କଂଗ୍ରେସ ନେତାମାନେ ଆହ୍ଲାବାଦ୍‌ରେ ଏକ ସଭାର ଆୟୋଜନ କରିଥିଲେ । ରାଜାଜୀଙ୍କ ବ୍ୟତୀତ ଅନ୍ୟ କୌଣସି ନେତା ବିଭାଜନର ସପକ୍ଷରେ ନ ଥିଲେ । ରାଜାଜୀ ତାଙ୍କ ଦୂରଦୃଷ୍ଟିରେ ଜାଣିଥିଲେ ଯେ ବିଭାଜନ ଅବଶ୍ୟମ୍ଭାବୀ । ସେ ଅନୁଭବ କରିଥିଲେ ଯେ ଉଭୟପକ୍ଷ ଏଇ ବିଭାଜନକୁ ଖୋଲା ହୃଦୟରେ ଗ୍ରହଣ କରିନେବା ମଙ୍ଗଳମୟ ହେବ । ହିନ୍ଦୁସ୍ଥାନ ଏବଂ ପାକିସ୍ଥାନଙ୍କ ମଧ୍ୟରେ ବନ୍ଧୁତ୍ୱପୂର୍ଣ୍ଣ ସଂପର୍କ ବାନ୍ଧି ରଖିବା ଆବଶ୍ୟକ । ଭାରତ ଯଦି ଏହାକୁ ଭଲରେ ଗ୍ରହଣ ନ କରେ ତେବେ ହିନ୍ଦୁ ଏବଂ ମୁସଲ୍‌ମାନ ସଂପ୍ରଦାୟଙ୍କ ମଧ୍ୟରେ ଅନେକ ତିକ୍ତତା ସୃଷ୍ଟି ହେବ ଏବଂ ଶେଷରେ ତାହାହିଁ ହେଲା । ସେଠାରେ ଉପସ୍ଥିତ କେହି ଜଣେ ସଭ୍ୟ ରାଜାଜୀଙ୍କୁ ସମର୍ଥନ କରିନଥିଲେ । ଏହି ବିଭାଜନକୁ କେହି ଗ୍ରହଣ କରିପାରୁନଥିଲେ । ତେଣୁ ରାଜାଜୀ ସେହି ସଭାରେ ଏକପ୍ରକାର ଏକାକୀ ହୋଇଥିଲେ । ଏପରିକି ତାଙ୍କୁ କେତେକ ପ୍ରବଞ୍ଚକ ବୋଲି ସମ୍ବୋଧନ କରିଥିଲେ ଏବଂ ଅନ୍ୟ କେତେକ ତାଙ୍କ ଉପରକୁ ଟେକା ପଥର ପକେଇଥିଲେ । ଫଳରେ ରାଜାଜୀ କଂଗ୍ରେସ ପାର୍ଟିରୁ ଇସ୍ତଫା ଦେଲେ ଏବଂ ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନରେ ଭାଗ ନେଲେ ନାହିଁ ।

ହିନ୍ଦୁ ମୁସଲମାନ ସମସ୍ୟା ଦୂର କରିବା ପାଇଁ ୧୯୪୪ ମସିହାରେ ରାଜାଜୀ ଏକ ଯୋଜନା ଖସଡ଼ା ପ୍ରସ୍ତୁତ କରିଥିଲେ । ପରେ ତାଙ୍କର ଏହି ଯୋଜନା ଅନୁସାରେ ଗାନ୍ଧୀ–ଜୀନ୍ନା ଆଲୋଚନା ସଂପନ୍ନ ହୋଇଥିଲା ଏବଂ ଶେଷରେ ଭାରତୀୟ ନେତାମାନେ ଏକ ଭଗ୍ନ ହୃଦୟରେ ବିଭାଜନକୁ ସ୍ୱୀକାର କଲେ ।

ରାଜଗୋପାଳାଚାରୀ ୧୯୪୮ ମସିହାରେ ଭାରତର ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ ହେଲାବେଳେ ଗଭର୍ଣ୍ଣର ଜେନେରାଲ୍ ପଦରେ ଅଧିଷ୍ଠିତ ହେଲେ । ଭାରତ ଏକ ସାଧାରଣତନ୍ତ୍ର ବୋଲି ଘୋଷିତ ହେବାପର୍ଯ୍ୟନ୍ତ ୧୯୫୦ ଜାନୁୟାରୀ ଯାଏଁ ସେ ଏହି ପଦବୀରେ ରହିଲେ । ତପ୍ୱରେ ରାଜାଜୀ ମାଡ୍ରାସ ଫେରି ଆସିବା ପାଇଁ ମନସ୍ଥ କରିଥିଲେ । କିନ୍ତୁ ପଣ୍ଡିତ ଜବାହାରଲାଲ୍ ନେହେରୁ ଏଭଳି ଜଣେ ବିଜ୍ଞ, ଦୂରଦୃଷ୍ଟି ସଂପନ୍ନ ରାଷ୍ଟ୍ରନୀତିଜ୍ଞଙ୍କ ପରାମର୍ଶ ତାଙ୍କ ପାଇଁ ଅମୂଲ୍ୟ ବୋଲି ବିବେଚନା କରୁଥିଲେ । ତେଣୁ ତାଙ୍କୁ ମନ୍ତ୍ରିମଣ୍ଡଳରେ ବିଭାଗବିହୀନ ମନ୍ତ୍ରୀ କରି ରଖାଗଲା । ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍ ୧୯୫୦ ମସିହା ଡିସେମ୍ବର ୧୫ ତାରିଖ ଦିନ ମୃତ୍ୟୁବରଣ କଲେ । ତା ପରେ ରାଜଗୋପାଳାଚାରୀଙ୍କୁ ଗୃହମନ୍ତ୍ରୀ ଭାବେ ଦାୟିତ୍ୱ ମିଳିଥିଲା ।

୧୯୫୨ ମସିହାରୁ ୧୯୫୪ ମସିହା ପର୍ଯ୍ୟନ୍ତ ରାଜଗୋପାଳାଚାରୀ ପୁନର୍ବାର ମାଡ୍ରାସର ମୁଖ୍ୟମନ୍ତ୍ରୀ ହୋଇଥିଲେ । ଧୀରେ ଧୀରେ ସେ କଂଗ୍ରେସଠାରୁ ଦୂରେଇ ଗଲେ ଏବଂ ୧୯୫୯ ମସିହାରେ ସେ ସ୍ୱତନ୍ତ୍ର ଦଳ ଗଠନ କଲେ । ମୌଳିକ ଭାବରେ ଏହା ଏକ ରକ୍ଷଣଶୀଳ ଏବଂ କମ୍ୟୁନିଷ୍ଟ ବିରୋଧୀ ଦଳ ଥିଲା ।

ରାଜଗୋପାଳାଚାରୀ ଜଣେ ଦକ୍ଷ ବକ୍ତା ଥିଲେ ଏବଂ ତାମିଲ୍ ଏବଂ ଇଂରାଜୀର ଜଣେ ପ୍ରସିଦ୍ଧ ଲେଖକ ଥିଲେ । ସେ ରାମାୟଣ ଏବଂ ମହାଭାରତର ସଂକ୍ଷିପ୍ତ ସାର ଦୁଇଟି ପୁସ୍ତକ ଆକାରରେ ପ୍ରକାଶ କରିଛନ୍ତି । ଭାରତୀୟ ବିଦ୍ୟାଭବନ ଦ୍ୱାରା ସେଗୁଡ଼ିକ ପ୍ରକାଶିତ ହୋଇଛି । ସେହି ଦୁଇଟି ପୁସ୍ତକ ଭାରତର ବିଭିନ୍ନ ଭାଷାରେ ଅନୁଦିତ ହୋଇଥିଲା । ତାଙ୍କର ମହାଭାରତ ପୁସ୍ତକ ପାଇଁ ସେ ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ । ଚକ୍ରବର୍ତ୍ତୀ ରାଜଗୋପାଳାଚାରୀଙ୍କର ବିଜ୍ଞତା, ରାଷ୍ଟ୍ରନୀତି, ଦୂରଦୃଷ୍ଟି ଏବଂ ନିର୍ଭିକତା ପାଇଁ ତାଙ୍କୁ ଭାରତ ସରକାର ୧୯୫୪ ମସିହାରେ ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନରେ ଭୂଷିତ କଲେ । ଏହି ମହାନ୍ ଚିର ସ୍ମରଣୀୟ ବ୍ୟକ୍ତି ୧୯୭୨ ମସିହା ଡିସେମ୍ବର ୨୫ ତାରିଖ ଦିନ ୯୪ ବର୍ଷ ବୟସରେ ଶେଷ ନିଶ୍ୱାସ ତ୍ୟାଗ କଲେ ।

***

# ସାର୍ ଚନ୍ଦ୍ରଶେଖର ଭେଙ୍କଟ ରମଣ



୧୮୮୮-୧୯୭୦

ଭାରତରତ୍ନ - ୧୯୫୪

**୧**୮୮୮ ମସିହା ନଭେମ୍ବର ୭ ତାରିଖ ଦିନ ଗୋଟିଏ ଶିକ୍ଷକ ପରିବାରରେ ଦକ୍ଷିଣ ଭାରତର ତିରୁଚିରାପଲ୍ଲୀଠାରେ ଜନ୍ମ ନେଇଥିଲେ ସି.ଭି. ରମଣ । ତାଙ୍କର ପୁରାନାମ ଚନ୍ଦ୍ରଶେଖର ଭେଙ୍କଟ ରମଣ ଥିଲା । ପିତା ଚନ୍ଦ୍ରଶେଖର ଆୟାର ଗୋଟିଏ କଲେଜରେ ଶିକ୍ଷକ ଥିଲେ ଏବଂ ଦରମା ବାବଦରେ ଖୁବ୍ କମ୍ ଅର୍ଥ ପାଉଥିଲେ । ଚନ୍ଦ୍ରଶେଖର ଆୟାର ପଢ଼ିବାକୁ ଖୁବ୍ ଭଲ ପାଉଥିଲେ । ତାଙ୍କ ଘରେ ଅନେକ ଗୁଡ଼ିଏ ବହି ସଂଗ୍ରହ କରି ଗୋଟିଏ ଛୋଟିଆ ପାଠାଗାର ଗଠନ କରିଥିଲେ । ବାଲ୍ୟକାଳରୁ ରମଣ ପୁସ୍ତକ ଜଗତ ସହିତ ପରିଚିତ ହୋଇଥିଲେ । ତାଙ୍କର ପିତା ଗଣିତ ଏବଂ ସଂଗୀତ ଉଭୟ ପ୍ରତି ଅନୁରକ୍ତ ଥିଲେ । ବେଳେ ବେଳେ ଘଣ୍ଟା ଘଣ୍ଟା ଧରି ବୀଣା ବାଦନ କରିବାରେ ସେ ଆନନ୍ଦ ଲାଭ କରୁଥିଲେ ।



ଚନ୍ଦ୍ରଶେଖର ଆୟାର ବିଶାଖାପାଟନମ୍ ଚାଲିଆସିଲେ । ସେଠାରେ ତାଙ୍କ ପୁତ୍ର ରମଣ ୧୯୦୩ ମସିହାରେ ମାଟ୍ରିକ୍ୟୁଲେସନ ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇ ମାଡ୍ରାସସ୍ଥିତ ପ୍ରେସିଡ଼େନ୍ସି କଲେଜରେ ଯୋଗ ଦେଲେ । ରମଣଙ୍କର ସ୍ମରଣ ଶକ୍ତି ଏବଂ ବୁଦ୍ଧିମତା ବିଚକ୍ଷଣ ଥିଲା । ତାଙ୍କୁ ପଦାର୍ଥ ବିଜ୍ଞାନ ଖୁବ୍ ଭଲ ଲାଗୁଥିଲା । ସ୍ନାତକରେ ସେ ଡ଼ିଷ୍ଟିଙ୍କସନ୍ ସହ ଉତ୍ତୀର୍ଣ୍ଣ ହୋଇ ସ୍ନାତକୋତ୍ତର ପାଠ୍ୟକ୍ରମ ଅଧ୍ୟୟନ କଲେ ।

ଏହି ସମୟରେ ସେ ଶ୍ରେଣୀ କକ୍ଷରେ ଅଧିକ ସମୟ ନ ବିତାଇ ପରୀକ୍ଷାଗାରରେ ତାଙ୍କର ସମୟ ବିନିଯୋଗ କରି ବିଭିନ୍ନ ପରୀକ୍ଷା ନିରୀକ୍ଷାରେ ମନ ଦେଉଥିଲେ । ତାଙ୍କର ପ୍ରଫେସର ଆର୍.ଏନ୍. ଜୋନ୍ ରମଣଙ୍କ ପ୍ରତିଭାର ସୂଚନା ପାଇଥିଲେ । ତେଣୁ ଏକା ଏକା ପରୀକ୍ଷା ନିରୀକ୍ଷା କରିବା ପାଇଁ ତାଙ୍କୁ ଅନୁମତି ଦେଇଥିଲେ । ବିଭିନ୍ନ ଆଲୋକ ରଶ୍ମିକୁ ମାପିବା ପାଇଁ ବ୍ୟବହୃତ ଯନ୍ତ୍ର ଫାବ୍ରି ପ୍ୟାରୋଟ୍ ଇଣ୍ଟରଫେରୋମିଟର ତାଙ୍କ ପ୍ରଫେସରଙ୍କଠାରୁ ଆଣି ସେ ସ୍ୱୟଂ ବ୍ୟବହାର କରୁଥିଲେ ।

ପ୍ରଫେସର ଜୋନ୍, ରମଣ ତାଙ୍କ ଆବିଷ୍କୃତ ସମସ୍ତ ତଥ୍ୟକୁ ଏକ ଲେଖା ରୂପେ ପ୍ରସ୍ତୁତ କରି ଲଣ୍ଡନରୁ ପ୍ରକାଶିତ 'ଫିଲୋସଫିକାଲ୍' ମାଗାଜିନ୍‌କୁ ପଠାଇବା ପାଇଁ ପରାମର୍ଶ ଦେଲେ । ୧୯୦୬ ମସିହା ନଭେମ୍ବର ମାସରେ ତାଙ୍କର ଲେଖାଟି ପ୍ରକାଶିତ ହେଲା । ସେ ଅନ୍ୟ ଏକ ଗବେଷଣାମୂଳକ ପ୍ରବନ୍ଧ ଲେଖି 'ନେଚର' ନାମକ ପତ୍ରିକାକୁ ପ୍ରକାଶନ ପାଇଁ ଲଣ୍ଡନ ପଠାଇଲେ । ଏହା ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ଏକ ବିଜ୍ଞାନ ପତ୍ରିକା । ସେତେବେଳେ ରମଣଙ୍କୁ ମାତ୍ର ୧୮ ବର୍ଷ ବୟସ । ତତ୍କାଳୀନ ପ୍ରସିଦ୍ଧ ବ୍ରିଟିଶ୍ ବୈଜ୍ଞାନିକ ଲର୍ଡ ରେଲେଙ୍କ ପାଖକୁ ସେ ତାଙ୍କ ପରୀକ୍ଷା ମାନଙ୍କରେ ଥିବା କେତେକ ସନ୍ଦେହ ଦୂର କରିବା ପାଇଁ ଏକ ଅନୁରୋଧ ପତ୍ର ଲେଖିଥିଲେ । ସେତେବେଳେ ଲର୍ଡ ରେଲେ ରମଣଙ୍କୁ ପ୍ରଫେସର ରମଣ ବୋଲି ସମ୍ବୋଧନ କରି ତାର ଉତ୍ତର ଦେଇଥିଲେ । କାରଣ ସେ ଭାବିଥିଲେ ଯେ ଏଭଳି ଉନ୍ନତ ମାନର ଲେଖା କେବଳ କଲେଜର କୌଣସି ଅଧ୍ୟାପକହିଁ ଲେଖିଥିବେ । ଏହା ରମଣଙ୍କର ବିଜ୍ଞାନ ପ୍ରତିଭାର ପରିଚୟ ଦେଇଥାଏ ।

ରମଣ ତାଙ୍କର ଏମ୍.ଏ ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେବାପରେ ଉଚ୍ଚତର ଗବେଷଣା ପାଇଁ ଇଂଲଣ୍ଡ ଯିବା ପାଇଁ ପ୍ରସ୍ତୁତ ହେଲେ । କିନ୍ତୁ ମେଡ଼ିକାଲ ପରୀକ୍ଷାରେ ସେ କୃତକାର୍ଯ୍ୟ ହୋଇପାରିଲେ ନାହିଁ । ଚିକିତ୍ସା ଅଧିକାରୀ ରମଣଙ୍କର ଦୁର୍ବଳ ସ୍ୱାସ୍ଥ୍ୟ ଇଂଲଣ୍ଡର ଜଳବାୟୁକୁ ବରଦାସ୍ତ କରିପାରିବ ନାହିଁ ବୋଲି ବିଚାର କଲେ । ତେଣୁ ରମଣଙ୍କର ଅନ୍ୟ କିଛି ଉପାୟ ନ ଥିଲା । ବାଧହୋଇ ସେ ବ୍ରିଟିଶ ସରକାରଙ୍କ ଦ୍ୱାରା ପ୍ରବର୍ତ୍ତିତ ଏକ କମ୍ପିଟେଟିଭ୍ ପରୀକ୍ଷା ଦେଲେ । ଏହି ପରୀକ୍ଷାରେ ସେ ପ୍ରଥମ ସ୍ଥାନ ଅଧିକାର କଲେ ଏବଂ କଲିକତା ଡ଼ାକ ତାର ବିଭାଗର ସହକାରୀ ଆକାଉଣ୍ଟାଣ୍ଟ ଜେନେରାଲ ଭାବେ ନିଯୁକ୍ତି ପାଇଲେ ।

ସେ ଏହି ଚାକିରୀରେ ୧୯୦୭ ମସିହାରେ ନିଯୁକ୍ତି ହେବା ପରେ ଖୁବ୍ ଭଲ ଦରମା ଏବଂ ବାସଗୃହ ପାଇଥିଲେ । ଏହି ସମୟରେ ଶ୍ରୀକ୍ରିଷ୍ଣ ସ୍ୱାମୀ ଆୟାରଙ୍କ କନ୍ୟା ଲୋକସୁନ୍ଦରୀ ନାମ୍ନୀ ମହିଳାଙ୍କୁ ସେ ବିବାହ କଲେ । ତାଙ୍କ ଧର୍ମପତ୍ନୀଙ୍କର ମନୋବଳ ଦୃଢ଼ ଥିଲା ଏବଂ ସେ ରମଣଙ୍କୁ ତାଙ୍କର ସମସ୍ତ କାର୍ଯ୍ୟରେ ସମ୍ପୂର୍ଣ୍ଣ ସହଯୋଗ କରିଥିଲେ ।

ଥରେ ରମଣ ଟ୍ରାମ ଗାଡ଼ିରେ ଯାତ୍ରା କଲାବେଳେ ଗୋଟିଏ ସାଇନ୍‌ବୋର୍ଡ ତାଙ୍କର ଦୃଷ୍ଟି ଗୋଚର ହେଲା । ତହିଁରେ ଲେଖାଥିଲା ବିଜ୍ଞାନ ଚାଷର ଭାରତୀୟ ସଂଘ । ସେହି ଦିନ ସଂଧ୍ୟାରେ ସେ ଉକ୍ତ କାର୍ଯ୍ୟାଳୟକୁ ଯାଇଥିଲେ । ଏ ଅନୁଷ୍ଠାନ ଡ଼କ୍ଟର ମହେନ୍ଦ୍ରଲାଲ୍ ସରକାର ୧୮୭୬ ମସିହାରୁ ଆରମ୍ଭ କରିଥିଲେ । ଅନୁଷ୍ଠାନଟି ଦେଶରେ ବିଭିନ୍ନ ବୈଜ୍ଞାନିକ ପରୀକ୍ଷା ନିରୀକ୍ଷା ସଂପାଦନ କରୁଥିଲା । ରମଣଙ୍କର ଆଗ୍ରହ ଦେଖିବା ପରେ ଅନୁଷ୍ଠାନର ପରୀକ୍ଷାଗାର ଏବଂ ତହିଁରେ ଥିବା ବିଭିନ୍ନ ଯନ୍ତ୍ରପାତିକୁ ବ୍ୟବହାର କରିବା ପାଇଁ ତାଙ୍କୁ ଅନୁମତି ମିଳିଥିଲା । ଏହି ପରୀକ୍ଷାଗାରରେ ରମଣ ଯେଉଁ ପରୀକ୍ଷା ନିରୀକ୍ଷା କରିଥିଲେ ତାର ଫଳ ସ୍ୱରୂପ ଶେଷରେ ପଦାର୍ଥ ବିଜ୍ଞାନ ପାଇଁ ତାଙ୍କୁ ନୋବେଲ ପୁରସ୍କାର ମିଳିଥିଲା ।

କଲିକତା ବିଶ୍ୱବିଦ୍ୟାଳୟର ଉପକୁଳପତି ସାର ଆଶୁତୋଷ ମୁଖାର୍ଜୀ ସବୁବେଳେ ମେଧା ଅନ୍ୱେଷଣରେ ଥିଲେ । ରମଣଙ୍କ ବିଜ୍ଞାନ ପ୍ରତି ଅନୁରକ୍ତି ତାଙ୍କ ଦୃଷ୍ଟିରେ ପଡ଼ିଲା । ତେଣୁ ସେ ବ୍ରିଟିଶ୍ ସରକାରଙ୍କୁ ଅନୁରୋଧ କରି ରମଣଙ୍କୁ ଦୁଇବର୍ଷ ଚାକିରୀରୁ ଅବ୍ୟାହତି ଦେଇ ବିଜ୍ଞାନ ବୈଷୟିକ ବିଭିନ୍ନ ପରୀକ୍ଷା ନିରୀକ୍ଷା କରିବା ପାଇଁ ଅନୁମତି ଦେବାକୁ ଅନୁରୋଧ କଲେ । କିନ୍ତୁ ବ୍ରିଟିଶ୍ ସରକାର ତାଙ୍କୁ ଏହି ଅନୁମତି ଦେବାପାଇଁ ମନା କରିଦେଲେ । ଏହି ସମୟରେ କଲିକତା ବିଶ୍ୱବିଦ୍ୟାଳରେ ଜାନକୀ ନାଥ ପାଲିତ୍ ଚେୟାର ଗଠିତ ହୋଇଥିଲା । ଏହା ପଦାର୍ଥ ବିଜ୍ଞାନ ପାଇଁ ଉଦ୍ଦିଷ୍ଟ ଥିଲା । ଆଶୁତୋଷ ମୁଖାର୍ଜୀଙ୍କର



ଇଚ୍ଛା ଥିଲା ଯେ ରମଣ ହିଁ ଏହି ଚେୟାର ଅଧିକାର କରନ୍ତୁ । କିନ୍ତୁ ସେଥିପାଇଁ ଆବଶ୍ୟକୀୟ ଯୋଗ୍ୟତା ମଧ୍ୟରୁ ରମଣଙ୍କର ମାତ୍ର ଗୋଟିଏ ଯୋଗ୍ୟତା ନ ଥିଲା । ସେ ବିଦେଶରେ କେବେ କାର୍ଯ୍ୟ କରିନଥିଲେ । ତେଣୁ ସାର୍ ମୁଖାର୍ଜୀ ରମଣଙ୍କୁ ବିଦେଶ ଯିବା ପାଇଁ ଅନୁରୋଧ କଲେ । କିନ୍ତୁ ରମଣ ଏହି ଅନୁରୋଧକୁ ରକ୍ଷା କରିପାରିଲେ ନାହିଁ । କିନ୍ତୁ ସେ ଆଶୁତୋଷ ମୁଖାର୍ଜୀଙ୍କୁ ଏହି ଆବଶ୍ୟକତାକୁ ବାଦ ଦେଇ ରମଣଙ୍କୁ ସେହି ଚେୟାର ପ୍ରଦାନ କରିବା ପାଇଁ ଜଣାଇଲେ । ଶେଷରେ ଆଶୁତୋଷ ମୁଖାର୍ଜୀ ରାଜିହେଲେ । ଯଦିଓ ଏହି ପଦବୀରେ ରମଣଙ୍କୁ ପୂର୍ବ ପଦବୀଠାରୁ କମ୍ ଦରମା ମିଳିଲା ତଥାପି ପୂର୍ବ ଚାକିରିରୁ ଇସ୍ତଫା ଦେଇ ୧୯୧୭ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରେ ପଦାର୍ଥ ବିଜ୍ଞାନର ପ୍ରଫେସର ଭାବେ ଯୋଗ ଦେଲେ ।

୧୯୧୭ ଠାରୁ ୧୯୩୨ ମସିହା ପର୍ଯ୍ୟନ୍ତ ରମଣ ପ୍ରଗାଢ଼ ପରିଶ୍ରମ କରି ଅନେକ ବୈଜ୍ଞାନିକ କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ । ସେ ତାଙ୍କର ପରୀକ୍ଷା ନିରୀକ୍ଷା ଛଡ଼ା ଛାତ୍ରମାନଙ୍କୁ ଶିକ୍ଷା ଦେବା କାର୍ଯ୍ୟ ମଧ୍ୟ କରୁଥିଲେ । ଛାତ୍ର ମାନଙ୍କ ସହିତ ତାଙ୍କର ଖୁବ୍ ଉତ୍ତମ ସଂପର୍କ ଥିଲା ଏବଂ ସେମାନଙ୍କ ସମସ୍ୟା ସମାଧାନ କରିବା ପାଇଁ ସେ ସର୍ବଦା ହାଜର ହେଉଥିଲେ । ୧୯୧୯ ମସିହାରେ ରମଣଙ୍କୁ ବିଜ୍ଞାନ ଚାଷ ପାଇଁ ଭାରତୀୟ ସଂଘର ନିର୍ଦ୍ଦେଶକ ପଦରେ ନିଯୁକ୍ତି ମିଳିଲା ।

୧୯୨୧ ମସିହାରେ ଇଂଲଣ୍ଡସ୍ଥିତ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ବିଶ୍ୱବିଦ୍ୟାଳୟ କଂଗ୍ରେସରେ ଯୋଗଦେବା ପାଇଁ ତାଙ୍କୁ ନିମନ୍ତ୍ରଣ ମିଳିଲା । ସେତେବେଳେ ଇଂଲଣ୍ଡକୁ ଜଳପଥ ଦେଇ ଯିବାକୁ ପଡୁଥିଲା । ଭୂମଧ୍ୟ ସାଗରରେ ଜାହାଜରେ ଗଲାବେଳେ ସମୁଦ୍ରର ଗଭୀର ଜଳରାଶିର ନୀଳରଙ୍ଗ ତାଙ୍କର ଦୃଷ୍ଟି ଆକର୍ଷଣ କଲା । ସେହି ନୀଳରଙ୍ଗରେ ତାଙ୍କର ମନ ଛନ୍ଦି ହୋଇପଡ଼ିଲା । ପ୍ରସିଦ୍ଧ ବ୍ରିଟିଶ୍ ବୈଜ୍ଞାନିକ ଲର୍ଡ ରେଲେ ସମୁଦ୍ରର ନୀଳରଙ୍ଗ ଜଳ ଉପରେ ଆକାଶର ପ୍ରତିଫଳନ ଯୋଗୁଁ ହୋଇଥାଏ ବୋଲି ପ୍ରତିପାଦନ କରିଥିଲେ । ଏହି ସରଳ ବ୍ୟାଖ୍ୟାରେ ରମଣ ସନ୍ତୁଷ୍ଟ ହୋଇନଥିଲେ । ତାଙ୍କ କ୍ୟାବିନ୍‌କୁ

ଯାଇ ଗୋଟିଏ ଯନ୍ତ୍ର ଆଣି ସେ ପରୀକ୍ଷା କଲେ । ଏହି ଘନ ନୀଳ ରଙ୍ଗ ନୀଳ ଆକାଶର ପ୍ରତିଫଳନ ବା ଏହା ସେହି ମହାସମୁଦ୍ର ମଧ୍ୟରୁ ପ୍ରତିଭାତ ହୁଏ ତାହା ଜାଣିବା ପାଇଁ ଚେଷ୍ଟା କଲେ । ଏବଂ ସେ ଜାଣିପାରିଲେ ଯେ ନୀଳରଙ୍ଗ ଆକାଶର ନୁହେଁ ବରଂ ସମୁଦ୍ରଗର୍ଭରୁ ହିଁ ପ୍ରତିଭାତ ହୋଇଥାଏ ।

କଲିକତା ଫେରିବା ପରେ ସେ ସମୁଦ୍ର ଜଳରେ ଆଲୋକ ରେଣୁର ବିଚ୍ଛୁରଣର ଅଧ୍ୟୟନ କଲେ । ତତ୍ପରେ ଏହି ବିଚ୍ଛୁରଣ ବିଭିନ୍ନ ପ୍ରକାରର ତରଳ ପଦାର୍ଥ, କଠିନ ପଦାର୍ଥ ଏବଂ ଗ୍ୟାସ ମାନଙ୍କରେ ବି ପରୀକ୍ଷା କଲେ । ପରେ ସେ ଜାଣିପାରିଲେ ଯେ ସମୁଦ୍ରର ନୀଳରଙ୍ଗ ମୁଖ୍ୟତଃ ସୂର୍ଯ୍ୟାଲୋକ ସମୁଦ୍ର ଜଳରେ ପଡ଼ିବା ପରେ ନୀଳ ଆଲୋକର ବିଚ୍ଛୁରଣ ଓ ପ୍ରତିସରଣ ଯୋଗୁଁ ହେଉଛି । ସୂର୍ଯ୍ୟାଲୋକର ଅନ୍ୟାନ୍ୟ ରଙ୍ଗର ଆଲୋକ ଜଳରାଶିରେ ଅବଶୋଷିତ ହୋଇଯାଉଛି ।

ରମଣ ତାଙ୍କର ଅନ୍ୟ ଏକ ପରୀକ୍ଷଣରେ ପ୍ରତିଷ୍ଠିତ କଲେ ଯେ ଏକ ନିର୍ଦ୍ଦିଷ୍ଟ ଫ୍ରିକ୍ୱେନ୍ସିର ଆଲୋକ ରଶ୍ମୀକୁ ଏକ ସ୍ୱଚ୍ଛ ପଦାର୍ଥ ଦେଇ ଗତି କରାଇଲେ ଯେଉଁ ପ୍ରତିସରିତ ଆଲୋକ ଅରିଜିନାଲ୍ ପ୍ରାଥମିକ ଆଲୋକ ସହିତ ନବେ ଡ଼ିଗ୍ରୀ କୋଣ ଅଙ୍କନ କରିଥାଏ, ତାହା ଅନ୍ୟ ଏକ ଫ୍ରିକ୍ୱେନ୍ସିରେ ଗତି କରେ । ଏହି ଫ୍ରିକ୍ୱେନ୍ସି ବିଭିନ୍ନ ସ୍ୱଚ୍ଛ ପଦାର୍ଥ ଅନୁସାରେ ଭିନ୍ନ ଭିନ୍ନ ହୋଇଥାଏ । ଏହି ଫେନୋମେନନ୍‌କୁ ତାଙ୍କ ନାମ ଅନୁସାରେ ନାମକରଣ କରାଯାଇ ରମଣ ଇଫେକ୍ଟ ବୋଲି କୁହାଗଲା । ତାଙ୍କର ଏହି ଆବିଷ୍କାର ପାଇଁ ୧୯୩୦ ମସିହାରେ ସାର୍ ସି.ଭି. ରମଣଙ୍କୁ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ମିଳିଥିଲା ।

ବିଜ୍ଞାନରେ ଏହା ପୂର୍ବରୁ କୌଣସି ଏସୀୟ ବା ଭାରତୀୟ ନୋବେଲ୍ ପୁରସ୍କାର ପାଇନଥିଲେ । ରମଣ ଏ ଯୁଗରେ ସର୍ବପ୍ରଥମ ବ୍ୟକ୍ତି । ଏହା ଭାରତବର୍ଷ ପାଇଁ ଏକ ଗୌରବପୂର୍ଣ୍ଣ ମୁହୂର୍ତ୍ତ ଥିଲା । ବିଜ୍ଞାନ କ୍ଷେତ୍ରରେ ଭାରତୀୟ ମାନେ ୟୁରୋପୀୟ ସମୁଦାୟ ଠାରୁ କୌଣସି ଗୁଣରେ ପଛୁଆ ନୁହଁନ୍ତି ବୋଲି ଏହା ପ୍ରମାଣିତ କଲା ।

ନୋବେଲ୍ ପୁରସ୍କାର ପରେ ପରେ ଅନ୍ୟ ଅନେକ ପୁରସ୍କାରର ସୁଅ ଛୁଟିଲା । ଭାରତର ଯୁବ ସଂପ୍ରଦାୟଙ୍କ ମଧ୍ୟରେ ଉନ୍ମାଦନା ଖେଳିଗଲା । ସମସ୍ତେ ବିଜ୍ଞାନ ପଢ଼ିବା ପାଇଁ ମନ ବଳାଇଲେ ।

୧୯୨୯ ମସିହାରେ ଇଂଲଣ୍ଡରେ ରମଣଙ୍କୁ ସାର୍ ଉପାଧିରେ ସମ୍ମାନିତ କରାଗଲା ଏବଂ ସେ ବାଙ୍ଗାଲୋର ସ୍ଥିତ ଭାରତୀୟ ବିଜ୍ଞାନ ପ୍ରତିଷ୍ଠାନର ପଦାର୍ଥ ବିଜ୍ଞାନର

ମୁଖ୍ୟ ଭାବେ ଦାୟିତ୍ୱ ଗ୍ରହଣ କଲେ । ବାଙ୍ଗାଲୋରର ରମଣ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍‌ର ଡ଼ାଇରେକ୍ଟର ପଦବୀରେ ସେ ଅଧିଷ୍ଠିତ ହେଲେ । ଭାରତ ସରକାର ୧୯୫୪ ମସିହାରେ ସାର୍ ସି.ଭି ରମଣଙ୍କୁ ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତ ରତ୍ନରେ ଭୂଷିତ କଲେ । ୧୯୫୮ ମସିହାରେ ତାଙ୍କୁ ଲେଲିନ୍ ଶାନ୍ତି ପୁରସ୍କାର ଦିଆଗଲା ।

ସେ ଜଣେ ପୃଥିବୀ ପ୍ରସିଦ୍ଧ ବୈଜ୍ଞାନିକ ହେଲେ ହେଁ ଜଣେ ଅତି ଉଚ୍ଚକୋଟୀର ବକ୍ତା ଥିଲେ । ଅତି ସରଳ ଭାଷାରେ ବିଜ୍ଞାନକୁ ସେ ଲୋକପ୍ରିୟ କରିପାରିଥିଲେ । ବିଭିନ୍ନ ଚିନ୍ତାର ଅନେକ ବ୍ୟକ୍ତିଙ୍କର ସେ ବନ୍ଧୁତା ଲାଭ କରିଥିଲେ ।

ଭାରତ ବର୍ଷରେ ବିଜ୍ଞାନର ଅଭ୍ୟୁଦୟ ପାଇଁ ସାର୍ ସି.ଭି ରମଣ ସଦା ଚେଷ୍ଟିତ ଥିଲେ । ସେ ଇଣ୍ଡିଆନ୍ ଜର୍ଣ୍ଣାଲ୍ ଅଫ୍ ଫିଜିକ୍ସର ପ୍ରାଣ ପ୍ରତିଷ୍ଠାତା । ଇଣ୍ଡିଆନ ଏକାଡ଼େମୀ ଅଫ୍ ସାଇନ୍‌ସେସ୍ ପ୍ରତିଷ୍ଠା କରି ସେ ଶହ ଶହ ଛାତ୍ରଛାତ୍ରୀଙ୍କୁ ତାଲିମ ଦେଇଥିଲେ । ଶେଷରେ ୧୯୭୦ ମସିହା ନଭେମ୍ବର ୨୧ ତାରିଖ ଦିନ ବାଙ୍ଗାଲୋରଠାରେ ୮୨ ବର୍ଷ ବୟସରେ ରମଣ ଶେଷ ନିଶ୍ୱାସ ତ୍ୟାଗ କଲେ ।

* * *

# ଭଗବାନ ଦାସ



୧୮୬୯-୧୯୫୮

ଭାରତରତ୍ନ - ୧୯୫୫

ବନାରସ ସହରର ପ୍ରସିଦ୍ଧ ବିଦ୍ୱାନ ଅଗ୍ରୱାଲ ପରିବାରରେ ୧୮୬୯ ମସିହା ଜାନୁୟାରୀ ୧୨ ତାରିଖ ଦିନ ଡ଼କ୍ଟର ଭଗବାନ ଦାସ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ମାଧବ ଦାସ ଜଣେ ଧନୀ ଜମିଦାର ଥିଲେ । ସେ ଜଣେ ଶିକ୍ଷିତ ମାର୍ଜିତ ତଥା ବନାରସରେ ସମ୍ମାନିତ ବ୍ୟକ୍ତି ଥିଲେ । ଭଗବାନ ଦାସ ତାଙ୍କ ପରିବାରର ସମସ୍ତ ସଦସ୍ୟ ଏବଂ ସହକାରୀମାନଙ୍କ ସହିତ ସମ୍ମାନ ପୂର୍ବକ ବ୍ୟବହାର ଦେଖାଉଥିଲେ । ପରିବାରର ଅନୁକୂଳ ପରିସ୍ଥିତିର ସୁବିନିଯୋଗ କରିବା ଫଳରେ ଜୀବନରେ ଅନେକ ସଫଳତା ହାସଲ କରିପାରିଥିଲେ ।

ବନାରସ ବା କାଶୀଠାରେ ଭଗବାନ ଦାସଙ୍କର ପ୍ରାଥମିକ ଶିକ୍ଷା ଶେଷ ହୋଇଥିଲା । ସେ ଜଣେ ବିଚକ୍ଷଣ ଛାତ୍ର ଥିଲେ । ତାଙ୍କର ତୀକ୍ଷ୍ଣ ସ୍ମୃତିଶକ୍ତି ଥିଲା ।

ତେଣୁ ସେ ଅନ୍ୟ ଛାତ୍ରଛାତ୍ରୀମାନଙ୍କଠାରୁ ବେଶ୍ ଆଗୁଆ ରହୁଥିଲେ । ମାତ୍ର ୧୨ ବର୍ଷ ବୟସରେ ହାଇସ୍କୁଲ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଭାରତୀୟ ଭାଷା ମାନଙ୍କ ବ୍ୟତୀତ ଉର୍ଦ୍ଦୁ ଏବଂ ପାର୍ସୀ ଭାଷାରେ ବି ସେ ପାଣ୍ଡିତ୍ୟ ହାସଲ କରିଥିଲେ । ଗୁଲିଷ୍ଠା ଏବଂ ବୋସ୍ତା ପୁସ୍ତକ ଅଧ୍ୟୟନ କରି ସେ ଅସାଧାରଣ ପ୍ରତିଭା ପ୍ରକାଶ କରିଥିଲେ । ସେ ସଂସ୍କୃତ ଭାଷାକୁ ବି ଆୟତ୍ତ କରିଥିଲେ । ତାଙ୍କର ଅନନ୍ୟ ଧୀଶକ୍ତି ଏବଂ ବୋଧଶକ୍ତି ଦେଖି ତାଙ୍କର ଶିକ୍ଷକମାନେ ବିସ୍ମିତ ହେଉଥିଲେ । ଭଗବାନ ଦାସ ଉଚ୍ଚତର ଶିକ୍ଷାପାଇଁ କଲିକତା ଗଲେ ଏବଂ ୧୮୮୫ ମସିହାରେ ବି.ଏ ଏବଂ ୧୮୮୭ ମସିହାରେ ଏମ୍.ଏ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ଏମ୍.ଏ ପଢୁଥିଲା ବେଳେ ତାଙ୍କର ବିଷୟ ଥିଲା ଧର୍ମ, ନ୍ୟାୟ ଏବଂ ମାନସିକ ବିଜ୍ଞାନ ।

ବ୍ରିଟିଶ୍ ସରକାର ଭଗବାନ ଦାସଙ୍କୁ ତହସିଲ୍‌ଦାର୍ ଚାକିରୀ ଯାଚିଥିଲେ । ପରେ ସେ ଉପଜିଲ୍ଲାପାଳ ଭାବେ ପଦୋନ୍ନୋତି ପାଇଥିଲେ । କିନ୍ତୁ ଏହା ଠାରୁ ଶ୍ରେୟସ୍କର କାର୍ଯ୍ୟ ପାଇଁ ସେ ପ୍ରେରିତ ଥିଲେ । ୧୮୯୯ ମସିହାରେ ତାଙ୍କ ପିତାଙ୍କର ମୃତ୍ୟୁ ପରେ ସେ ଚାକିରୀରୁ ଇସ୍ତଫା ଦେଇଥିଲେ ।

ବନାରସଠାରେ ଡ଼କ୍ଟର ଆନିବେଶାନ୍ତ ଭାରତର ଥିଓସଫିକାଲ ସୋସାଇଟିର ଏକ ଶାଖା ଉନ୍ମୋଚନ କଲେ । ସେହି ସମିତି ବିଭିନ୍ନ ଧର୍ମାବଲମ୍ବୀ ମାନଙ୍କ ମଧ୍ୟରେ ଭାତୃଭାବର ପ୍ରଚାର କରୁଥିଲା । ଭାରତର ଉନ୍ନତ ସାଂସ୍କୃତିକ ପରମ୍ପରା ବିଷୟରେ ଲୋକମାନଙ୍କୁ ସଚେତନ କରିବାରେ ଏହା କାର୍ଯ୍ୟ କରୁଥିଲା । ଆନିବେଶାନ୍ତଙ୍କ ଦ୍ୱାରା ପ୍ରଭାବିତ ହୋଇ ସେ ତାଙ୍କର କାର୍ଯ୍ୟ ପ୍ରତି ଆକର୍ଷିତ ହେଲେ ଏବଂ ବନାରସଠାରେ କେନ୍ଦ୍ରୀୟ ହିନ୍ଦୁ ମହାବିଦ୍ୟାଳୟ ପ୍ରତିଷ୍ଠା କଲେ । ସେହି ଅନୁଷ୍ଠାନରେ ଜଣେ ପ୍ରଫେସର ଏବଂ ପ୍ରକାଶକ ଭାବେ କାର୍ଯ୍ୟ କଲେ । ପରବର୍ତ୍ତୀ ସମୟରେ ସେ ମହାବିଦ୍ୟାଳୟ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ପରିଣତ ହେଲା ।

ଡ଼କ୍ଟର ଭଗବାନ ଦାସ ଥିଓସଫିକାଲ ସୋସାଇଟିର ଅନ୍ୟତମ ନିର୍ଦ୍ଦେଶକ ଥିଲେ । ଏହି ସୋସାଇଟି ତରଫରୁ ଭାରତରେ ବ୍ରହ୍ମପୁତ୍ର ବା ଥିଓସଫି ଇନ୍ ଇଣ୍ଡିଆ ନାମକ ଏକ ପତ୍ରିକା ପ୍ରକାଶ ପାଉଥିଲା । ଏହି ପତ୍ରିକାର ସେ ଅନେକ ବର୍ଷ ଧରି ସଂପାଦକ ଥିଲେ ଏବଂ ଭାରତୀୟ ଦର୍ଶନ ବିଷୟରେ ଅନେକ ପ୍ରବନ୍ଧ ଏଥିରେ ପ୍ରକାଶ କରିଥିଲେ ।

ଡ଼କ୍ଟର ଭଗବାନ ଦାସଙ୍କର ଡ଼କ୍ଟର ଆନିବେଶାନ୍ତଙ୍କ ପ୍ରତି ପ୍ରଗାଢ଼ ଶ୍ରଦ୍ଧା ଓ ସମ୍ମାନ ଭରି ରହିଥିଲା । ୧୯୧୩ ମସିହାରେ ପୁନର୍ଜନ୍ମ ଏବଂ ଅବତାର ଗ୍ରହଣ ବିଷୟରେ ଡ଼କ୍ଟର ଆନିବେଶାନ୍ତଙ୍କ ସହିତ ତାଙ୍କର କେତେକ ମତଭେଦ ହୋଇଥିଲା ।

ତେବେ ତାହା ତାଙ୍କର ଆନିବେଶାନ୍ତଙ୍କ ସହ ସଂପର୍କରେ କୌଣସି ପ୍ରଭାବ ପକାଇ ନ ଥିଲା । ଭାରତୀୟ ଜାତୀୟ କଂଗ୍ରେସରେ ଥିବା ଦୁଇଦଳକୁ ଶ୍ରୀମତୀ ଆନିବେଶାନ୍ତ ଏବଂ ଭଗବାନ ଦାସ ଦୁହେଁ ମିଶି ଏକତ୍ର କରିଥିଲେ ।

କଂଗ୍ରେସର ଦୁଇଦଳ ଲୋକମାନ୍ୟ ବାଲ୍ ଗଙ୍ଗାଧର ତିଳକଙ୍କ ଦ୍ୱାରା ପରିଚାଳିତ ସ୍ୱରାଜ୍ୟ ଦଳ ଏବଂ ଗୋପାଳ କୃଷ୍ଣ ଗୋଖଲେଙ୍କ ନେତୃତ୍ୱରେ ପରିଚାଳିତ ଲିବରାଲ ଦଳ ଥିଲେ । ଲୋକମାନ୍ୟ ତିଳକ ଏକ ଆନ୍ଦୋଳନ ଜରିଆରେ ବ୍ରିଟିଶ୍ ସରକାରଙ୍କୁ ଭାରତରୁ ତଡ଼ି ଭାରତର ସ୍ୱରାଜ୍ୟ ଆଣିବାକୁ ଚେଷ୍ଟା କରୁଥିଲେ । କିନ୍ତୁ ଗୋଖଲେ ବ୍ରିଟିଶ୍ ସରକାର ସହିତ ଆଲୋଚନା କରି ଭାରତକୁ ସ୍ୱାଧୀନତା ଦେବାପାଇଁ ଇଚ୍ଛା କରୁଥିଲେ । ସେହି ସମୟରେ ଶ୍ରୀମତୀ ଆନିବେଶାନ୍ତ ଉଭୟ ଦଳ ସହିତ ଆଲୋଚନା କରି ଉଭୟଙ୍କୁ ସମ୍ମିଳିତ କରିଥିଲେ ଏବଂ ଗୋଟିଏ ସାଧାରଣ ମଣିଷପରି କାର୍ଯ୍ୟରତ ହେବା ପାଇଁ ପ୍ରବର୍ତ୍ତାଇଥିଲେ । ୧୯୧୫ ମସିହାରେ ହୋମ୍ ରୁଲ୍ ଲିଗ୍ ଗଠନ ହେଲା । ସେମାନେ କେତୋଟି ନିର୍ଦ୍ଦିଷ୍ଟ ବିଷୟ ଦାବୀ କଲେ । ପ୍ରଥମତଃ ବ୍ରିଟିଶ୍‌ମାନେ ଇଂଲଣ୍ଡରେ ଯେପରି ସ୍ୱାଧୀନ, ଭାରତୀୟ ମାନେ ଭାରତରେ ସେହିପରି ସ୍ୱାଧୀନ ଭାବେ ଜୀବନଯାପନ କରିବା ଆବଶ୍ୟକ । ଦ୍ୱିତୀୟତଃ ଭାରତୀୟ ମାନେ ନିର୍ବାଚିତ ଭାରତୀୟ ପ୍ରତିନିଧିମାନଙ୍କ ଦ୍ୱାରା ଶାସିତ ହେବା ଆବଶ୍ୟକ ଏବଂ ତୃତୀୟରେ ଭାରତର ନିଜର ସୀମାରେଖା ବଜାୟ ରଖି ଏକ ସାର୍ବଭୌମ ରାଷ୍ଟ୍ରରୂପେ ସ୍ୱୀକୃତି ପାଇବା ଆବଶ୍ୟକ ।

ବ୍ରିଟିଶ ସରକାର ଯୁଦ୍ଧରେ ଜିତିବା ପାଇଁ ଯେତେବେଳେ ତାର ଅଧିକୃତ ବିଭିନ୍ନ ଦେଶକୁ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ନିବେଦନ କଲା ସେହି ସମୟରେ ଭାରତ ତାର ଦାବୀଗୁଡ଼ିକ ବ୍ରିଟିଶ୍ ସରକାରଙ୍କ ପାଖରେ ଉପସ୍ଥାପିତ କରିବା ପାଇଁ ଅଧିକ ସୁଯୋଗ ପାଇଥିଲା । ବ୍ରିଟିଶ୍ ସରକାର ଭାରତୀୟ ମାନଙ୍କୁ ଯୁଦ୍ଧ ପରେ ଦାବୀ କରାଯାଉଥିବା ବିଷୟ ଉପରେ ଆଲୋଚନା ହେବ ବୋଲି ରାଜି ହେଲେ । ଆନିବେଶାନ୍ତ ସ୍ୱରାଜ ସ୍ୱେଚ୍ଛାସେବୀମାନଙ୍କ ସହିତ ମିଶି ଭାରତର ହୋମ୍‌ରୁଲ୍ ଲିଗ୍‌ର କାର୍ଯ୍ୟପ୍ରଣାଳୀରେ କେତେକ ପରିବର୍ତ୍ତନ ଆଣିଥିଲେ । ସେ କହୁଥିଲେ ଯେ, ଲୁହା ଉତ୍ତପ୍ତ ଥିଲାବେଳେ ତାକୁ ଆଘାତ କର ଏବଂ ଲୁହାକୁ ଆଘାତ କରି କରି ଉତପ୍ତ କର । ବମ୍ବେଠାରେ ୧୯୧୫ ମସିହା ଡ଼ିସେମ୍ବର ମାସରେ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନ ହେଲା । ତହିଁରେ ହୋମ୍‌ରୁଲ୍ ଯୋଜନା ଶେଷ କରାଗଲା ଏବଂ ସେ ଦିଗରେ ୧୯୧୬ ମସିହାରେ କାର୍ଯ୍ୟକ୍ରମ ଆରମ୍ଭ କରାଗଲା ।

ଡକ୍ଟର ଭଗବାନ ଦାସ ୧୯୧୭ ମସିହାରେ ରାଜନୀତିରେ ପ୍ରବେଶ କଲେ । ବ୍ରିଟିଶ୍ ରାଜ୍ ବିରୁଦ୍ଧରେ ଲଢ଼ିବା ପାଇଁ ମହାତ୍ମାଗାନ୍ଧୀଙ୍କର ସତ୍ୟାଗ୍ରହ ଏବଂ ଅହିଂସା ମାର୍ଗ ତାଙ୍କ ମନକୁ ଛୁଇଁଥିଲା । ସେ କଂଗ୍ରେସରେ ଥିବା ଶିକ୍ଷିତ ସଭ୍ୟମାନଙ୍କୁ ଜାତୀୟବାଦୀ ବିଦ୍ୟାଳୟମାନ ପ୍ରତିଷ୍ଠା କରିବା ପାଇଁ ପ୍ରବର୍ତ୍ତାଇଲେ ଏବଂ ସେ ଏହି ବିଶ୍ୱବିଦ୍ୟାଳୟର ପ୍ରଥମ ଚାନ୍ସେଲର୍ ହୋଇଥିଲେ ।

୧୯୧୯ ମସିହାରେ ମୁରାଦାବାଦ୍‌ଠାରେ ହୋଇଥିବା କଂଗ୍ରେସ କମିଟିର ବୈଠକରେ ଭଗବାନ ଦାସ ସଭାପତିତ୍ୱ କରିଥିଲେ । ୧୯୨୧ ମସିହାରେ ସେ ଜିଲ୍ଲା କଂଗ୍ରେସ କମିଟିର ସଭାପତି ହେଲେ । ସେହିବର୍ଷ ତାଙ୍କୁ ଅସହଯୋଗ ଆନ୍ଦୋଳନରେ ଭାଗ ନେବା କାରଣରୁ ଦୋଷୀ ସାବ୍ୟସ୍ତ କରାଗଲା । ଫଳରେ ତାଙ୍କୁ ଏକବର୍ଷରୁ ଅଧିକ କାଳ କାରାବରଣ କରିବାକୁ ପଡ଼ିଲା ।

ଭଗବାନ ଦାସ ବନାରସ୍ କଂଗ୍ରେସ୍ କମିଟିର ସଭାପତି ହୋଇଥିଲେ । ସେତେବେଳକୁ ତାଙ୍କର ପୁତ୍ର ଶ୍ରୀପ୍ରତାପ ଏବଂ ଚନ୍ଦ୍ରଭାନୁ ରାଜନୀତିରେ ପ୍ରବେଶ କଲେ । ପରବର୍ତ୍ତୀ ସମୟରେ ତାଙ୍କର ପୁତ୍ର ଶ୍ରୀପ୍ରତାପ ମହାରାଷ୍ଟ୍ରର ରାଜ୍ୟପାଳ ଏବଂ ଉତ୍ତର ପ୍ରଦେଶ ବିଧାନସଭାର ସଭାପତି ହୋଇଥିଲେ । ୧୯୨୩ରୁ ୧୯୨୬ ପର୍ଯ୍ୟନ୍ତ ଭଗବାନ ଦାସ ବନାରସ ମ୍ୟୁନିସିପାଲିଟିର ମେୟର ଭାବେ ନିର୍ବାଚିତ ହୋଇଥିଲେ । ସେ ଦୁର୍ନୀତି ନିବାରଣ ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ ଏବଂ ତାଙ୍କ ସମୟରେ ଅକ୍ଟ୍ରାଇ ଆଦି ବିଭିନ୍ନ ଉତ୍ସରୁ ଅଭିଜ୍ଞ ଟିକସ ବାହାର କରି ମ୍ୟୁନିସପାଲିଟିର ଅନେକ ଉନ୍ନତି ବିଧାନ କରିଥିଲେ । ଥରେ ସେ ବିଶ୍ୱବିଦ୍ୟାଳୟ ଛାତ୍ର ଛାତ୍ରୀମାନଙ୍କ ପାଇଁ ଛାତ୍ରାବାସ ନିର୍ମାଣ କରିବା ଉଦ୍ଦେଶ୍ୟରେ ଖଣ୍ଡିଏ ଜମି ଦାନସୂତ୍ରରେ ପାଇବା ପାଇଁ ନିବେଦନ କଲେ । କେତେକ ଜମିମାଲିକ ଏଥିରେ ରାଜି ହେଲେ ସତ କିନ୍ତୁ ତାଙ୍କୁ ଜଳକରରୁ ରିହାତି ପାଇଁ ପ୍ରସ୍ତାବ ଦେଲେ । ଏଥିରେ ଭଗବାନ ଦାସ ରାଜି ହୋଇନଥିଲେ ଏବଂ ମ୍ୟୁନିସପାଲିଟିର କ୍ଷତି କରିପାରିବେ ନାହିଁ ବୋଲି ସେ ଜମିଦାରମାନଙ୍କୁ ସ୍ପଷ୍ଟ ଭାବେ ତାଙ୍କର ନିସ୍ପତ୍ତି ଶୁଣାଇଥିଲେ । ନିଃସ୍ୱାର୍ଥପର ସେବା, ମାନବିକତା ଏବଂ କାର୍ଯ୍ୟପ୍ରତି ପ୍ରତିବଦ୍ଧତା ପାଇଁ ଭଗବାନ ଦାସ ହେଉଛନ୍ତି ଶ୍ରେଷ୍ଠ ଉଦାହରଣ ।

ମାତ୍ର ୩୦ ବର୍ଷ ବୟସରେ ଡ଼କ୍ଟର ଭଗବାନ ଦାସ 'ମାନସିକ ଆବେଗର ବିଜ୍ଞାନ' ନାମକ ଏକ ପୁସ୍ତକ ରଚନା କରିଥିଲେ । ତାହା ସର୍ବତ୍ର ଆଦୃତ ହୋଇଥିଲା । ତାଙ୍କ ରଚିତ ପ୍ରସିଦ୍ଧ ପୁସ୍ତକମାନଙ୍କ ମଧ୍ୟରେ 'ରସ ମିମାଂସା' ଅନ୍ୟତମ । ସାହିତ୍ୟ କ୍ଷେତ୍ରରେ ତାଙ୍କର ଏହି ଅନବଦ୍ୟ କୃତି ଆଜି ପର୍ଯ୍ୟନ୍ତ ଜନମାନସରେ ଆଲୋଡନ ସୃଷ୍ଟି କରୁଛି ।

୧୯୨୯ ମସିହାରେ ବନାରସ ବିଶ୍ୱବିଦ୍ୟାଳୟ ତାଙ୍କୁ 'ଦି ଲିଟ୍' ଉପାଧୀରେ ଭୂଷିତ କଲା । ୧୯୩୭ ମସିହାରେ ଆହ୍ଲାବାଦ ୟୁନିଭରସିଟି ମଧ୍ୟ ଅନୁରୂପ ଡ଼ିଗ୍ରୀ ପ୍ରଦାନ କଲା । ବନାରସରୁ ପ୍ରକାଶିତ ଦୈନିକ ସମ୍ବାଦପତ୍ର 'ଆଜ୍'ରେ ତାଙ୍କର ପ୍ରବନ୍ଧ ନିୟମିତ ଭାବରେ ପ୍ରକାଶିତ ହେଉଥିଲା । ସେ ଏହି ସମ୍ବାଦ ପତ୍ରର ଅନେକ ଦିନ ଧରି ସଂପାଦକ ବି ରହିଥିଲେ ।

ବନାରସ ବିଶ୍ୱବିଦ୍ୟାଳୟର ପାଠାଗାର ତାଙ୍କ ନାମରେ ନାମିତ ହୋଇଥିଲା । ଏହାର ନାମ ଡ଼କ୍ଟର ଭଗବାନ ଦାସ ସ୍ୱାଧ୍ୟାୟପିଠ ରଖାଯାଇଥିଲା । ଭଗବାନ ଦାସ ନିଜେ ଜଣେ ପୁସ୍ତକ ପ୍ରେମୀ ଥିଲେ ଏବଂ ତାଙ୍କ ସ୍ମୃତିରେ ପୁସ୍ତକାଗାରକୁ ନାମିତ କରାଯାଇ ତାଙ୍କୁ ଯଥୋଚିତ ଭାବେ ସମ୍ମାନିତ କରାଯାଇଛି ।

ଡ଼କ୍ଟର ଭଗବାନ ଦାସ ପୃଥିବୀର ଅଧିକାଂଶ ଧର୍ମ ବିଷୟରେ ଗଭୀର ଅଧ୍ୟୟନ କରିଥିଲେ । ସମସ୍ତ ଧର୍ମର ସମନ୍ୱୟରେ ସେ ଏକ ବିଶ୍ୱସ୍ତରୀୟ ଧର୍ମର ପରିକଳ୍ପନା କରିଥିଲେ । ସେ କହିଥିଲେ ସମସ୍ତ ଧର୍ମ ବସ୍ତୁତଃ ଏକ ଏବଂ ଏକା ନୀତି ପ୍ରଚାର କରନ୍ତି, କିନ୍ତୁ ଦୁଃଖର କଥା ପ୍ରାୟ ପ୍ରତ୍ୟେକ ଦେଶ ଓ ଜାତି ଧର୍ମର ଏହି ନୀତିକୁ ଅବହେଳା କରିଥାନ୍ତି । ଏହାଦ୍ୱାରା ଅନେକ ଅଶାନ୍ତି, ଅସହଯୋଗ ଏବଂ ହିଂସ୍ରତା ବିଶ୍ୱରେ ଦେଖାଯାଇଥାଏ ।'

ଡ଼କ୍ଟର ଭଗବାନ ଦାସ ବିଭିନ୍ନ ସଂପ୍ରଦାୟରେ ଥିବା ଭିନ୍ନ ମତାବଲମ୍ବୀମାନଙ୍କୁ ଏକତ୍ରିତ କରିବା ପ୍ରୟାସରେ ତାଙ୍କ ପୁସ୍ତକରେ କେତେକ ସମାଧାନର ସୂତ୍ର ଉଲ୍ଲେଖ କରିଛନ୍ତି । ବିଶ୍ୱଯୁଦ୍ଧ ଏବଂ ତାର ଏକମାତ୍ର ଦୂରୀକରଣର ଉପାୟ ହେଉଛି ବିଶ୍ୱଧର୍ମ ଏବଂ ବିଶ୍ୱଐକ୍ୟ । ଭାରତବର୍ଷରେ ହିନ୍ଦୁ ମୁସଲମାନ ସଂପ୍ରଦାୟର ଏକତା ପାଇଁ ସେ ସଂକଳ୍ପବଦ୍ଧ ଥିଲେ ଏବଂ ଏହି ଏକତା ପାଇଁ ସେ ଅନେକ ପ୍ରସ୍ତାବ ରଖିଥିଲେ । ୧୯୫୮ ମସିହା ସେପ୍ଟେମ୍ବର ୧୮ ତାରିଖ ଦିନ ବନାରସଠାରେ ୯୦ ବର୍ଷ ବୟସରେ ସେ ଶେଷ ନିଶ୍ୱାସ ତ୍ୟାଗ କଲେ । ଆଧୁନିକ ଯୁଗର ସେ ଜଣେ ମହର୍ଷୀ ଭାବେ ସର୍ବଦା ସ୍ମରଣୀୟ ହୋଇ ରହିବେ ।

ଏହି ମହାନ୍ ଦାର୍ଶନିକଙ୍କୁ ଭାରତ ବର୍ଷର ସର୍ବଶ୍ରେଷ୍ଠ ନାଗରିକ ସମ୍ମାନ ଭାରତ ରତ୍ନ ୧୯୫୫ରେ ପ୍ରଦାନ କରାଯାଇଥିଲା । ଭାରତର ପ୍ରଥମ ରାଷ୍ଟ୍ରପତି ଡ଼କ୍ଟର ରାଜେନ୍ଦ୍ର ପ୍ରସାଦଙ୍କଠାରୁ ସେ ଏହି ନାଗରିକ ସମ୍ମାନ ଗ୍ରହଣ କରିଥିଲେ ।

* * *

# ସାର୍ ମୋକ୍ଷଗୁଣ୍ଡମ୍ ବିଶ୍ୱେସରୟା



୧୮୬୦-୧୯୬୨

ଭାରତରତ୍ନ - ୧୯୫୫

ସାର୍ ମୋକ୍ଷଗୁଣ୍ଡମ୍ ବିଶ୍ୱେସରୟା ବିଜ୍ଞତା ନିଷ୍ଠା, ସାଧୁତା, ସାଧନା, କର୍ମ ତତ୍ପରତା, ପଟୁତା, ଦେଶପ୍ରେମ, ଦୂରଦୃଷ୍ଟି ଆଦି ସଦ୍‌ଗୁଣର ଜଣେ ମୂର୍ତ୍ତିମନ୍ତ ଅବତାର ଥିଲେ । ପେଷାରେ ସେ ଇଞ୍ଜିନିଅର ଥିଲେ ଏବଂ ଆଧୁନିକ ଭାରତ ନିର୍ମାଣର ସେ ଅନ୍ୟତମ ବିନ୍ଧାଣୀ ଭାବେ ସ୍ୱାଧୀନତାର ପୂର୍ବ ଏବଂ ପରବର୍ତ୍ତୀ ସମୟରେ ନିଜର ପରାକାଷ୍ଠା ଦେଖାଇଥିଲେ । ୧୯୬୦ ମସିହା ସେପ୍ଟେମ୍ବର ୧୫ ତାରିଖରେ କର୍ଣ୍ଣାଟକ (ପୂର୍ବତନ ମହିଶୁର) ରାଜ୍ୟର ମଦନହାଲୀଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଜନ୍ମ ଦିନକୁ ଦେଶରେ ଇଞ୍ଜିନିଅର ଦିବସ ଭାବେ ପାଳନ କରାଯାଏ ।

ବିଶ୍ୱେସରୟାଙ୍କ ପିତା ଶ୍ରୀନିବାସ ଶାସ୍ତ୍ରୀ ଓ ମା' ଭେଙ୍କଟମ୍ମା । ପିତା ଥିଲେ ସଂସ୍କୃତ ଶାସ୍ତ୍ରରେ ବିଦ୍ୱାନ । ହିନ୍ଦୁ ଶାସ୍ତ୍ରମାନଙ୍କ ଉପରେ ତାଙ୍କର ଅଗାଧ ପାଣ୍ଡିତ୍ୟ

ଥିଲା । ବାଲ୍ୟକାଳରୁ ବିଶ୍ୱେସରୟା ହିନ୍ଦୁଧର୍ମର ନୀତି ଦ୍ୱାରା ପ୍ରଭାବିତ ହୋଇଥିଲେ । ତାଙ୍କର ପୂର୍ବ ପୁରୁଷ ଆନ୍ଧ୍ରରୁ ଆସି ମହିଶୂରରେ ବାସ କରୁଥିଲେ । ତେଣୁ ପ୍ରଥମରୁ ବିଶ୍ୱେସରୟା ତେଲୁଗୁ ଭାଷା ବ୍ୟବହାରରେ ଅଭ୍ୟସ୍ତ ଥିଲେ । ମାତ୍ର ୧୫ ବର୍ଷ ବୟସବେଳେ ତାଙ୍କର ପିତାଙ୍କର ନିଧନ ହେଲା । ବିଶ୍ୱେସରୟା ପ୍ରାଥମିକ ଶିକ୍ଷା ଚିକବଲ୍ଲପୁରରେ ଏବଂ ହାଇସ୍କୁଲ୍ ବାଙ୍ଗାଲୋରରେ କରିଥିଲେ । ୧୯୮୧ ମସିହାରେ ସ୍ନାତକ ପରୀକ୍ଷା ମାଡ୍ରାସ ବିଶ୍ୱବିଦ୍ୟାଳୟରୁ ଦେଇସାରି ପୁନେସ୍ଥିତ ବିଜ୍ଞାନ ମହାବିଦ୍ୟାଳୟରୁ ତାଙ୍କର ଇଞ୍ଜିନିୟରିଙ୍ଗ୍ ଶିକ୍ଷା ସମାପ୍ତ କରିଥିଲେ ।

ଇଞ୍ଜିନିୟରିଂ ଶିକ୍ଷା ପରେ ସେ ବମ୍ବେରେ ପିଡ଼ବ୍ଲ୍ୟୁଡ଼ି ବିଭାଗରେ ଏବଂ ପରେ ଭାରତୀୟ ଜଳସେଚନ କମିଶନରେ ଯୋଗଦେଲେ । ଦକ୍ଷିଣ ଭାରତର ଏକ ବିସ୍ତୃତ ଅଞ୍ଚଳରେ ସେ ଜଳସେଚନ ଯୋଜନା ଆରମ୍ଭ କରିଥିଲେ । ଜଳଯୋଗାଣ ଓ ଜଳସେଚନରେ ଜଳର ଅପଚୟ ରୋକିବା ପାଇଁ ସେ ସ୍ୱୟଂଚାଳିତ ଦ୍ୱାରର ଉଦ୍‌ଭାବନ ଓ ପ୍ରଚଳନ କଲେ । ଆଦେନ ସହର ପାଇଁ ସେ ଏହା ପ୍ରସ୍ତୁତ କରିଥିଲେ ହେଁ ସାରା ବିଶ୍ୱରେ ତାଙ୍କର ଉଦ୍‌ଭାବନ ଉଚ୍ଚ ପ୍ରସଶିଂତ ଓ ଆଦୃତ ହେଲା । ପରେ ତାଙ୍କ ଉଦ୍‌ଭାବିତ ପ୍ରଣାଳୀ ଗ୍ୱାଲିୟରର୍ ତିଗ୍ରା ବନ୍ଧ ଏବଂ ମାଣ୍ଡ୍ୟାର କ୍ରିଷ୍ଣାରାଜ ସାଗର ବନ୍ଧରେ ବି ବ୍ୟବହୃତ ହେଲା । ଏହା ଫଳରେ ଜଳର ସୁରକ୍ଷା ହେବା ସହିତ ବନ୍ୟା ଦାଉରୁ ଅନେକ ସହର ଓ ମଫସଲ ଅଞ୍ଚଳ ରକ୍ଷା ପାଇପାରିଲା ।

କାବେରୀ ନଦୀରେ କ୍ରିଷ୍ଣରାଜ ସାଗର ବନ୍ଧ (ଡ୍ୟାମ୍)ର ପରିକଳ୍ପନାରୁ ଆରମ୍ଭକରି ପରିସମାପ୍ତି ପର୍ଯ୍ୟନ୍ତ ବିଶ୍ୱେସରୟାଙ୍କ କୃତୀ । କେତେବେଳେ ଏହା ଏସିଆ ମହାଦେଶର ବୃହତମ ବନ୍ଧରୂପେ ଖ୍ୟାତ ହୋଇଥିଲା । ଫଳରେ ମହିଶୁର ଇଷ୍ଟେଟ୍‌ର ବନ୍ୟା ପ୍ରତିରୋଧ ହେବା ସାଙ୍ଗକୁ ଜଳସେଚନ ଦ୍ୱାରା କୃଷି କ୍ଷେତ୍ରରେ ଉନ୍ନତି ଏବଂ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ଦ୍ୱାରା ଜନଜୀବନରେ ଯଥେଷ୍ଟ ବିକାଶ ହେଲା । ଆଧୁନିକ ମହୀପୁରର ନିର୍ମାଣ ରୂପେ ସେ ପ୍ରତିଷ୍ଠିତ ହେଲେ । ଶିଳ୍ପ, ବାଣିଜ୍ୟ, ଉତ୍ପାଦନ ଓ ଅର୍ଥନୀତି କ୍ଷେତ୍ରରେ ବି ତାଙ୍କ ଅବଦାନ ଅବିସ୍ମରଣୀୟ । ମହିଶୁର ଇଷ୍ଟେଟ୍ ସରକାରଙ୍କ ଅଧିନରେ କାର୍ଯ୍ୟରତ ଥିବା ଅବଧିରେ ସେ ମହିଶୁର ସାବୁନ କାରଖାନା, ଶ୍ରୀ ଜୟଚମା ରାଜେନ୍ଦ୍ର ପଲିଟେକ୍‌ନିକ୍ ଇନ୍‌ଷ୍ଟିଚ୍ୟୁଟ୍, ମହିଶୁର ଷ୍ଟିଲ୍ ଏଣ୍ଡ ଆଇରନ୍ ୱାର୍କସ୍, (ବର୍ତ୍ତମାନର ବିଶ୍ୱେସରୟା ଷ୍ଟିଲ୍ ଲିମିଟେଡ୍), ବାଙ୍ଗାଲୋର କୃଷି ବିଶ୍ୱବିଦ୍ୟାଳୟ, ମହିଶୁର ବ୍ୟାଙ୍କ୍ (ବର୍ତ୍ତମାନର ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ମହିଶୁର), ଦ ସେଞ୍ଚୁରୀ କ୍ଲବ୍, ମହିଶୁର ଚାମ୍ବର ଅଫ୍

କମର୍ସ ଆଦି ସ୍ଥାପନ କରିଥିଲେ । ତା'ଛଡ଼ା ତିରୁମଲ୍ଲା ଓ ତିରୁପତି ମଧ୍ୟରେ ସଡ଼କ ନିର୍ମାଣ ପାଇଁ ସେ ଯୋଜନା ପ୍ରସ୍ତୁତ କରିଥିଲେ ।

ମହିଶୁର ସରକାରଙ୍କ ଚାକିରୀରୁ ସେ ସ୍ୱେଚ୍ଛାକୃତ ଭାବେ ଅବସର ଗ୍ରହଣ କଲେ ୧୯୦୮ ମସିହାରେ । ତା'ପରେ ବିଦେଶ ଯାଇ ସେ ବିଭିନ୍ନ ଶିଳ୍ପୋନ୍ନତ ଦେଶ ଭ୍ରମଣକରି ସେମାନଙ୍କ ବିଧି ବ୍ୟବସ୍ଥା ଲକ୍ଷ୍ୟ କରିଥିଲେ । ୧୯୦୯ ମସିହାରେ ଭାରତ ଫେରିଆସି ହାଇଦ୍ରାବାଦ ନିଜାମଙ୍କ ପାଇଁ କାର୍ଯ୍ୟ କଲେ । ହାଇଦ୍ରାବାଦକୁ ବନ୍ୟା ବିପତ୍ତିରୁ ରକ୍ଷା କରିବା ଉଦ୍ଦେଶ୍ୟରେ ଅନେକ କାର୍ଯ୍ୟକ୍ରମ କରିବା ପରେ ସେ ମହିଶୁର ଫେରିଆସି ମହିଶୁର ଇଷ୍ଟେଟ୍‌ର ମୁଖ୍ୟ ଇଞ୍ଜିନିୟର୍ ଏବଂ ୧୯୧୨ ମସିହାରେ ସେହି ରାଜ୍ୟର ଦେୱାନ୍ ବା ପ୍ରଥମ ମନ୍ତ୍ରୀ ଭାବେ ନିଯୁକ୍ତ ହେଲେ । ମହିଶୁରର ରାଜା କ୍ରିଷ୍ଣରାଜ ୪ର୍ଥ ଉଦେୟାର୍‌ଙ୍କ ପୃଷ୍ଠପୋଷକତା ଲାଭକରି ସେହି ରାଜ୍ୟର ସର୍ବାଙ୍ଗୀନ ଉନ୍ନତି କଳ୍ପେ ଅବିରତ ଚେଷ୍ଟା କଲେ ।

ବିଶ୍ୱେସରୟା ଅପରିସିମ ଗୁଣ ଗରିମାର ଅଧିକାରୀ ଥିଲେ । କ୍ଷୁଦ୍ର ପ୍ରବନ୍ଧ ମାଧ୍ୟମରେ ସମସ୍ତ ବିଷୟ ସ୍ଥାନଦେବା ଅସମ୍ଭବ । ତଥାପି ତାଙ୍କ ବ୍ୟକ୍ତିତ୍ୱର ବ୍ୟାପ୍ତ ପରିସୀମା ମଧ୍ୟରୁ କେତେକ ବିନ୍ଦୁମାତ୍ର ଏଠାରେ ଉଲ୍ଲେଖ କରାଯାଇପାରେ ।

ତାଙ୍କ ଅଧ୍ୟକ୍ଷତାରେ ପରିଚାଳିତ ଭଦ୍ରାବତୀ କାରଖାନା କେତେକ କାରଣରୁ କ୍ଷତିରେ ଚାଲିଥାଏ । କିଛି ବର୍ଷ ସେ ଦରମା ପାଇନଥିଲେ । କାରଖାନା ଲାଭ କରିବା ପରେ ତାଙ୍କ ଦରମା ସେତେବେଳେ ଏକ ଲକ୍ଷ ଟଙ୍କାରୁ ଅଧିକ ତାଙ୍କୁ ଦିଆଗଲା । କିନ୍ତୁ ସେ ତହିଁରୁ ଟଙ୍କାଏ ବି ନେଲେ ନାହିଁ । ସେ ସରକାରଙ୍କୁ କହିଲେ 'ସେହି ଅର୍ଥରେ ଏକ ବୃତ୍ତିଭିତ୍ତିକ ଅନୁଷ୍ଠାନ ପ୍ରତିଷ୍ଠା କରାଯାଉ । ଆମର ଯୁବକମାନେ ଶିକ୍ଷାଲାଭ କରି କୌଣସି ବୃତ୍ତିର ଅବଲମ୍ବନ କରନ୍ତୁ ।' ସରକାର ତାଙ୍କର ପରାମର୍ଶ କ୍ରମେ ଅନୁଷ୍ଠାନ ପ୍ରତିଷ୍ଠାକରି ଏହାର ନାମକରଣ 'ବିଶ୍ୱେସରୟା ଅନୁଷ୍ଠାନ' କରିବାକୁ ଇଚ୍ଛାକଲେ । କିନ୍ତୁ ସେ ବିନମ୍ରତା ପୂର୍ବକ ଏହା ପରିବର୍ତ୍ତନକରି ମହିଶୁରର ମହାରାଜାଙ୍କ ନାମରେ ଅନୁଷ୍ଠାନକୁ ନାମିତ କରିବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ ।

ବିଶ୍ୱେସରୟାଙ୍କ ଅଦ୍ଭୁତ ସ୍ମରଣ ଶକ୍ତିଥିଲା । ତାଙ୍କର ସମସ୍ତ ସଫଳତାର ଚାବିକାଠି ଥିଲା ଦୁଇଟି । ଅନୁଶାସନ ଏବଂ କଠିନ ପରିଶ୍ରମ । କୌଣସି ପରିସ୍ଥିତିରେ ସେ ଗୋଟିଏ ମିନିଟ୍ ବି ବିଳମ୍ବ କରୁନଥିଲେ କିମ୍ବା ଜୀବନରେ କେବେବି ଗୋଟିଏ ମିନିଟ୍ ନଷ୍ଟ କରୁନଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ, ଯେକୌଣସି କାର୍ଯ୍ୟ ଉପଯୁକ୍ତ ଶୈଳୀରେ ନିଷ୍ଠାର ସହ କଲେ ସଫଳତା ମିଳିବା ଅନିବାର୍ଯ୍ୟ । ସେ କହୁଥିଲେ, ପ୍ରତ୍ୟେକ ବ୍ୟକ୍ତି ନିଜର ଦାୟିତ୍ୱକୁ ହୃଦୟଙ୍ଗମକରି ସେ ଦିଗରେ ଯଥାସମ୍ଭବ କାର୍ଯ୍ୟ କରିବା ଉଚିତ । ନିଜର ପରିଧାନ

ବିଷୟରେ ସେ ଖୁବ୍ ଧ୍ୟାନ ଦେଉଥିଲେ । ତାଙ୍କୁ ୯୫ ବର୍ଷ ହେବା ପର୍ଯ୍ୟନ୍ତ ଯେଉଁମାନେ ତାଙ୍କୁ ସାକ୍ଷାତ କରିବା ପାଇଁ ଯାଉଥିଲେ, ତାଙ୍କର ସଯତ୍ନ ବେଶଭୂଷା ଦେଖି ଚକିତ ହେଉଥିଲେ ।



କୌଣସି ଅନୁଷ୍ଠାନରେ ଭାଷଣ ଦେବାକୁ ଯିବା ପୂର୍ବରୁ ସେ ପ୍ରଥମେ ତାଙ୍କର ବକ୍ତବ୍ୟ ଚିନ୍ତାକରି, ଲେଖି, ଟାଇପ୍‌କରି ତାହାକୁ ୪-୫ଥର ସଂଶୋଧନ କରି ଭାଷଣ ପାଇଁ ପ୍ରସ୍ତୁତ ହେଉଥିଲେ ।

୧୯୫୨ ମସିହାରେ ବିଶ୍ୱେସରୟାଙ୍କୁ ଯେତେବେଳେ ୯୨ ବର୍ଷ, ଗଙ୍ଗାନଦୀରେ ଏକ ସେତୁ ନିର୍ମାଣ ପାଇଁ ତାଙ୍କୁ ପାଟନା ଯିବାକୁ ପଡ଼ିଲା । ପାଟନାରୁ ଅଧାରାସ୍ତା କାର୍‌ରେ ଗଲେ । ଯେଉଁ ସ୍ଥାନକୁ କାର୍ ଯାଇପାରିବ ନାହିଁ, ଅନ୍ୟମାନେ ଚାଲିଚାଲି ଗଲେ । ବିଶ୍ୱେସରୟାଙ୍କ ପାଇଁ ଚକଲଗା ଚଉକିର ବ୍ୟବସ୍ଥା କରାଯାଇଥିଲା । କିନ୍ତୁ ସେ ତହିଁରେ ନଯାଇ ଚାଲିଚାଲି ଯାଇ ସେ ସ୍ଥାନ ପରିଦର୍ଶନ କଲେ । ତାଙ୍କ ପରାମର୍ଶ କ୍ରମେ ପାଟନାଠାରେ ଏହି ସୁଦୀର୍ଘ ସେତୁ ନିର୍ମିତ ହେଲା ।

ସାଧୁତା, ସଚ୍ଚୋଟପଣିଆ ସହିତ ସେ ସାହସୀ ବି ଥିଲେ । ଇଂରେଜ ସରକାର ଭାରତୀୟମାନଙ୍କ ପ୍ରତି ଅବମାନନା କଲେ ସେ ବରଦାସ୍ତ କରୁନଥିଲେ । ତାଙ୍କର ଯୁକ୍ତିଯୁକ୍ତ ପ୍ରତିବାଦ ଫଳରେ ଭାରତୀୟଙ୍କୁ ଚିଫ୍ ଇଂଜିନିଅର ପଦବୀ ମିଳିବା, ଭାରତୀୟ ଓ ଇଂରେଜ ଅଫିସର ସମାନ ଆସନରେ ବସିବା ଆଦି ଅନେକ ଅସମ୍ଭବ ସମ୍ଭବ ହୋଇପାରିଥିଲା । ସେ ଖୁବ୍ ଦୂରଦୃଷ୍ଟି ସମ୍ପନ୍ନ ହୋଇଥିବାରୁ ତାଙ୍କର ସମସ୍ତ ଯୋଜନା ଆଗାମୀ ୫୦-୧୦୦ ବର୍ଷ ପାଇଁ ଉଦ୍ଦିଷ୍ଟ ଥିଲା । ସମସାମୟିକ ଅନେକ ବ୍ୟକ୍ତି ତାଙ୍କୁ ବୁଝିବାକୁ ଅକ୍ଷମ ହୋଇ ତାଙ୍କୁ ପାଗଳ ବୋଲି ଅଭିହିତ କରୁଥିଲେ । ରାଜ୍ୟ କ୍ଷତିଗ୍ରସ୍ତ ହେବ ବୋଲି ଆଶଙ୍କା ପ୍ରକଟ କରୁଥିଲେ । ଅନେକ ପରିହାସ ବି କରୁଥିଲେ ।

ପ୍ରାକ୍ ସ୍ୱାଧୀନତା କାଳରେ ରାଜ୍ୟପାଳମାନେ ଖୁବ୍ ଶକ୍ତିଶାଳୀ ଥିଲେ । ଥରେ ଏକ ସଭାରେ ରାଜ୍ୟପାଳ ଉଦ୍‌ବୋଧନ କରିବାର ବ୍ୟବସ୍ଥା ହୋଇଥିଲା । ସେହି ସଭାରେ 'ଭାରତରେ ଏକ ଜାତୀୟ ସରକାର ରହିବା ଆବଶ୍ୟକ' ବିଷୟରେ ଆଲୋଚନା ହେବାର କାର୍ଯ୍ୟସୂଚୀରେ ଉଲ୍ଲେଖ ଥିଲା । ରାଜ୍ୟପାଳ ଏହାର ପ୍ରତିବାଦକରି କାର୍ଯ୍ୟସୂଚୀରୁ

ଏହାକୁ ବାଦ୍ ନଦେଲେ ସେ ସଭାକୁ ଆସିବେ ନାହିଁ ବୋଲି ଜଣାଇଲେ । ତତ୍‌କ୍ଷଣାତ୍ ବିଶ୍ୱେସରୟା ତାଙ୍କ ବନ୍ଧୁମାନଙ୍କୁ କହିଲେ, 'ଚିନ୍ତା ନାହିଁ । ସେ ନ ଆସନ୍ତୁ । ସଭା ହେବ । କାର୍ଯ୍ୟସୂଚୀ ଅପରିବର୍ତ୍ତିତ ରହିବ ।'

ତାଙ୍କ ଜୀବଦସା ମଧ୍ୟରେ ବିଶ୍ୱେସରୟା ହଜାର ହଜାର ବ୍ୟକ୍ତିଙ୍କୁ ଖାଦ୍ୟ, ବାସଗୃହ ଏବଂ ନିଯୁକ୍ତି ଯୋଗାଇବାରେ ସକ୍ଷମ ହୋଇଛନ୍ତି ।

ସାର୍ ମୋକ୍ଷଗୁଣ୍ଡମ୍ ବିଶ୍ୱେସରୟା ସଂକ୍ଷିପ୍ତରେ ସାର୍ ଏମ୍‌ଭି ନାମରେ ପରିଚିତ ଶତାୟୁ ପୁରୁଷ ଏହି ମହାନ୍ ବ୍ୟକ୍ତିଙ୍କର ଦେହାବସାନ ୧୯୬୨ ମସିହା ଏପ୍ରିଲ୍ ୧୪ ତାରିଖ ଦିନ ହୋଇଥିଲା । ୧୯୫୫ ମସିହାରେ ତାଙ୍କୁ ଭାରତ ରତ୍ନ ସମ୍ମାନରେ ଭୂଷିତ କରାଯାଇଥିଲା । ତାଙ୍କ ଜୀବନ କାଳ ମଧ୍ୟରେ ସେ ଅଗଣିତ ସମ୍ମାନର ଅଧିକାରୀ ହୋଇଛନ୍ତି । ୧୯୫୯ ମସିହାରେ ବାଙ୍ଗାଲୋରରୁ ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍‌ସ୍‌ର ଫେଲୋସିପ୍, ୧୯୫୮ ରେ ଦୁର୍ଗାପ୍ରସାଦ ଖୈତାନ୍ ସ୍ମାରକୀ ସ୍ୱର୍ଣ୍ଣ ପଦକ । ୧୯୫୩ ରେ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟାଉନ୍ ପ୍ଲାନିଂ, ଇଣ୍ଡିଆର ଫେଲୋସିପ୍ ଏବଂ ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ଡି.ଲିଟ୍ ଉପାଧି, ୧୯୪୮ ମସିହାରେ ମହିଶୂର ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧି, ୧୯୪୪ ମସିହାରେ ଆଲ୍‌ହାବାଦ ବିଶ୍ୱବିଦ୍ୟାଳୟରୁ ସମ୍ମାନଜନକ ଡିଏସ୍‌ସି ଉପାଧି, ୧୯୩୭ ମସିହାରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ଡି.ଲିଟ୍ ଉପାଧି, ୧୯୨୧ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ଡିଏସ୍‌ସି ଉପାଧି ପାଇଥିଲେ । ସର୍ବୋପରି ୧୯୧୫ ମସିହାରେ କେ.ସି.ଆଇ.ଇ (ନାଇଟ୍ କମାଣ୍ଡର୍ ଅଫ୍ ଦି ଇଣ୍ଡିଆନ୍ ଏମ୍ପାୟାର), ୧୯୧୧ ମସିହାରେ ସି.ଆଇ.ଇ (କମ୍ପାନିଅନ୍ ଅଫ୍ ଦି ଇଣ୍ଡିଆନ୍ ଏମ୍ପାୟାର) ଏବଂ ୧୯୦୬ ମସିହାରେ ତାଙ୍କର ଉଚ୍ଚ ପ୍ରସଂଶନୀୟ ଦେଶସେବାର ନିଦର୍ଶନ ସ୍ୱରୂପ କାଇଜର-ଏ-ହିନ୍ଦ୍' ଉପାଧି ମିଳିଥିଲା ।

ଆଧୁନିକ ଭାରତର ନିର୍ମାତାମାନଙ୍କ ମଧ୍ୟରେ ସାର୍ ଏମ୍‌ଭିଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ଚିରକାଳ ରହିବ ।

* * *

# ପଣ୍ଡିତ ଜବାହାର୍‌ଲାଲ୍ ନେହେରୁ



୧୮୮୯-୧୯୬୪

ଭାରତରତ୍ନ - ୧୯୫୫

**ପ**ଣ୍ଡିତ ଜବାହାରଲାଲ୍ ନେହେରୁ ଭାରତର ଘରେ ଘରେ ସୁପରିଚିତ । ଉତ୍ତରପ୍ରଦେଶର ଆହ୍ଲାବାଦ ସ୍ଥିତ ଆନନ୍ଦ ଭବନରେ ପଣ୍ଡିତ ନେହେରୁ ୧୮୮୯ ମସିହା ନଭେମ୍ବର ୧୪ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ପଣ୍ଡିତ ମୋତିଲାଲ୍ ନେହେରୁ ଏବଂ ମାତା ସ୍ୱରୂପ ରାଣୀ । ପିତା ସେ ସମୟର ପ୍ରସିଦ୍ଧ ଓକିଲ ଥିଲେ । ପଣ୍ଡିତ ନେହେରୁଙ୍କର ଦୁଇ ଭଉଣୀ ଥିଲେ । ତାଙ୍କର ନାମ ବିଜୟଲକ୍ଷ୍ମୀ ଏବଂ କ୍ରିଷ୍ଣା । ପରବର୍ତ୍ତୀ ସମୟରେ ବିଜୟଲକ୍ଷ୍ମୀ ୟୁ.ଏନ୍ ଜେନେରାଲ୍ ଆସେମ୍ବ୍ଲିର ପ୍ରଥମ ମହିଳା ସଭାପତି ହୋଇଥିଲେ ।

ପଣ୍ଡିତ ଜବାହାରଲାଲ୍ ନେହେରୁ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଏବଂ ଆଜି ପର୍ଯ୍ୟନ୍ତ ସର୍ବାଧିକ କାଳ ଦେଶର ପ୍ରଧାନମନ୍ତ୍ରୀ ପଦରେ ରହିଛନ୍ତି । ସେ ଦୀର୍ଘ ୧୭ ବର୍ଷ କାଳ ଭାରତର ପ୍ରଧାନମନ୍ତ୍ରୀ ରହିଥିଲେ । ତାଙ୍କର ବିଭିନ୍ନ କୃତୀ ପାଇଁ ସେ ସାରା ବିଶ୍ୱରେ ପ୍ରସିଦ୍ଧି ଲାଭ କରିଥିଲେ । ଶାନ୍ତି ଏବଂ ଧର୍ମ ନିରପେକ୍ଷତା ତାଙ୍କର ନୀତି ଥିଲା । ଜଣେ ପ୍ରବୀଣ ରାଜନୀତିଜ୍ଞ ହେବା ସହିତ ସେ ଜଣେ ଧୂରୀଣ ରାଷ୍ଟ୍ରନୀତିଜ୍ଞ ଏବଂ ଜଣେ ପ୍ରଖ୍ୟାତ ଐତିହାସିକ ଭାବେ ଖ୍ୟାତି ଅର୍ଜନ କରିଥିଲେ ।

ସେ ଘରେ ରହି ଘରୋଇ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ପ୍ରାଥମିକ ଶିକ୍ଷା ଲାଭ କରିଥିଲେ । ହରିନାନ୍‌କିବ୍ରୁକ୍‌ସ୍ ନାମକ ଜଣେ ଗୃହ ଶିକ୍ଷକ ତାଙ୍କର ଅତି ପ୍ରିୟ ଥିଲେ । ଧର୍ମଜ୍ଞାନ ତଥା ଭାରତୀୟ ସଂସ୍କୃତି ଉପରେ ତାଙ୍କର ଗଭୀର ଜ୍ଞାନ ଥିଲା । ସେ ଉପନିଷଦ, ଭାଗବତ ଗୀତା ଆଦି ମଧ ପାଠ କରିଥିଲେ । ଶିଶୁ ଜବାହାରଙ୍କ ପାଇଁ ସେ ଜଣେ ଆଦର୍ଶ ଶିକ୍ଷକ ଭାବେ କାର୍ଯ୍ୟ ତୁଲାଇ ଥିଲେ ।

ଜବାହାରଙ୍କୁ ୧୫ ବର୍ଷ ହୋଇଥିଲା ବେଳେ ଶିକ୍ଷାଲାଭ ପାଇଁ ତାଙ୍କୁ ଇଂଲଣ୍ଡ ପଠାଗଲା । ହାରୋ ସ୍କୁଲ୍‌ରେ ସେ ଅଧ୍ୟୟନ କଲେ । ୧୮ ବର୍ଷ ବୟସରେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଟ୍ରିନିଟି ସ୍କୁଲ୍‌ରେ ନାମ ଲେଖାଇଲେ । କେମ୍ବ୍ରିଜ୍‌ରେ ଅଧ୍ୟୟନ ବେଳେ ସେ ଅନ୍ୟାନ୍ୟ ଭାରତୀୟ ଛାତ୍ରମାନଙ୍କ ଠାରୁ ଲାଲା ଲଜ୍‌ପତ୍ ରାୟ, ଗୋପାଳକୃଷ୍ଣ ଗୋଖଲେ ଏବଂ ସେମାନଙ୍କ ଦ୍ୱାରା ଭାରତ ବର୍ଷରେ ହେଉଥିବା ସାମାଜିକ ସଂସ୍କାର ବିଷୟରେ ଶୁଣିବାକୁ ପାଇଲେ । ୧୯୧୦ ମସିହାରେ ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ଅଧ୍ୟୟନ ଶେଷ କରି ଇଂଲଣ୍ଡରେ ଆଇନ୍ ଶାସ୍ତ୍ର ଅଧ୍ୟୟନ କଲେ ।

ପଣ୍ଡିତ ନେହେରୁ ୧୯୧୨ ମସିହାରେ ଭାରତ ଫେରିଆସି ଆହ୍ଲାବାଦ୍ କୋର୍ଟରେ ଓକିଲାତି ବ୍ୟବସାୟ ଆରମ୍ଭ କଲେ । ତାଙ୍କର ବିବାହ ୧୯୧୬ ମସିହାରେ କମଳା ଦେବୀଙ୍କ ସହିତ ସଂପନ୍ନ ହେଲା । ସେହି ବର୍ଷ ନେହେରୁ ଗାନ୍ଧିଜୀଙ୍କୁ ପ୍ରଥମ ଥର ପାଇଁ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନରେ ସାକ୍ଷାତ କଲେ । ୧୯୧୭ ମସିହା ନଭେମ୍ବର ମାସରେ ତାଙ୍କର ଏକମାତ୍ର କନ୍ୟା ଜାତ ହେଲା । ସେମାନେ ତାଙ୍କର ନାମ ରଖିଥିଲେ ଇନ୍ଦିରା ପ୍ରିୟଦର୍ଶିନୀ ।

ଏହା ପରେ ପରେ ଜବାହାରଲାଲ୍ ଏବଂ ତାଙ୍କର ପିତା ମୋତିଲାଲ୍ ଉଭୟେ ଆଇନ ବ୍ୟବସାୟ ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଲେ । ସେମାନେ ତାଙ୍କର



ନିଜର ବ୍ୟକ୍ତିଗତ ଖର୍ଚ୍ଚ ହ୍ରାସ କଲେ । ଭୃତ୍ୟ ଏବଂ ସହକାରୀ ମାନଙ୍କ ସଂଖ୍ୟା ହ୍ରାସ କଲେ । ବ୍ୟକ୍ତିଗତ ଅଧିକାରରେ ଥିବା କାର୍ ଆଦି ବିକ୍ରୟ କଲେ । ଦାମୀ ପୋଷାକ ଛାଡ଼ି ଖଦୀ ପିନ୍ଧିବା ଆରମ୍ଭ କଲେ ଏବଂ ଏକ ସରଳ ଜୀବନଯାପନ କରିବାରେ ମନୋନିବେଶ କଲେ ।

୧୯୧୯ ମସିହାରେ ନେହେରୁ କଂଗ୍ରେସ ପାର୍ଟିରେ ଯୋଗଦେଲେ ଏବଂ ସେ ୧୯୨୦ ମସିହା ବେଳକୁ କଂଗ୍ରେସ ପାର୍ଟିରେ ଥିବା ଯୁବ ସଂପ୍ରଦାୟରେ ଏକ ବଳିଷ୍ଠ ସଭ୍ୟ ଭାବେ ନିଜକୁ ପ୍ରତିଷ୍ଠିତ କଲେ । ଏହି ଯୁବସଂପ୍ରଦାୟ କେବଳ ଅହିଂସା ମାର୍ଗରେ ଯେ ସ୍ୱାଧୀନତା ମିଳିପାରେ ଏଥିରେ ବିଶ୍ୱାସ କରିପାରୁନଥିଲେ । ସେମାନେ ଭାବୁଥିଲେ ସ୍ୱାଧୀନତା ପାଇଁ ବିପ୍ଳବ ଏବଂ ହିଂସା ମାର୍ଗର ଆବଶ୍ୟକତା ଅଧିକ । ତେଣୁ ସେ ସୁବାଷ ଚନ୍ଦ୍ର ବୋଷଙ୍କ ସହିତ ମିଶି ଭାରତ ମୁକ୍ତି ସଂଘ ଗଠନ କଲେ । ୧୯୨୬ ମସିହାରେ କମଳା ନେହେରୁ ସାଂଘାତିକ ଭାବେ ଅସୁସ୍ଥ ହୋଇ ପଡ଼ିଲେ । ଡ଼ାକ୍ତର ମାନେ କମଳାଙ୍କୁ ସୁଇଜରଲ୍ୟାଣ୍ଡ ନେଇ ଚିକିତ୍ସା କରିବା ପାଇଁ ଉପଦେଶ ଦେଲେ । ସେଠାରେ ତାଙ୍କର ଚିକିତ୍ସା ଏବଂ ବିଶ୍ରାମ ନିତାନ୍ତ ଆବଶ୍ୟକ ବୋଲି ନେହେରୁଙ୍କୁ କହିଲେ । ତଦନୁସାରେ ନେହେରୁ କମଳାଙ୍କୁ ନେଇ ସୁଇଜର୍‌ଲ୍ୟାଣ୍ଡ ଯାଇଥିଲେ ଏବଂ ସେ ଆରୋଗ୍ୟ ହେବା ପରେ ୧୯୨୭ ମସିହାରେ ନେହେରୁ ଭାରତ ଫେରିଆସିଲେ । ସେମାନେ ଭାରତ ଫେରିବା ପରେ ନେହେରୁ ପୁନର୍ବାର ଜାତୀୟ ରାଜନୀତିରେ ଛନ୍ଦି ହୋଇଗଲେ । ୧୯୨୯ ମସିହାରେ ସେ କଂଗ୍ରେସ ଅଧିବେଶନର ସଭାପତି ହେଲେ । ୧୯୩୦ ମସିହାରେ ମହାତ୍ମାଗାନ୍ଧୀ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । ନେହେରୁ ଏହି ଆନ୍ଦୋଳନରେ ଯୋଗ ଦେଇ କାରାବରଣ କଲେ । ୧୯୩୧ ମସିହାରେ ତାଙ୍କର ପିତା ମୋତିଲାଲ୍ ନେହେରୁଙ୍କର ମୃତ୍ୟୁ ହେଲା । ଏହା ଜବାହାରଲାଲ୍‌ଙ୍କୁ ମର୍ମାହତ କରିଥିଲା । କମଳା ନେହେରୁ ମଧ୍ୟ ଗାନ୍ଧିଜୀଙ୍କ ଦ୍ୱାରା ଖୁବ୍ ପ୍ରଭାବିତ ହୋଇଥିଲେ ଏବଂ ତାଙ୍କର ଅସୁସ୍ଥତା ସତ୍ତ୍ୱେ ସେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ଏହି ଦୟନୀୟ ସ୍ୱାସ୍ଥ୍ୟାବସ୍ଥାରେ ମଧ୍ୟ ସେ ଅନେକ

ଅଞ୍ଚଳ ଗସ୍ତ କରୁଥିଲେ ଏବଂ ବାରମ୍ବାର ବନ୍ଦୀ ହେଉଥିଲେ । ଏହା ଫଳରେ ତାଙ୍କର ସ୍ୱାସ୍ଥ୍ୟ ଆହୁରି ଭାଙ୍ଗି ପଡ଼ିଲା ଏବଂ ସଂକଟଜନକ ପରିସ୍ଥିତି ସୃଷ୍ଟି ହେଲା । ୧୯୩୬ ମସିହାରେ ତାଙ୍କର ଅସୁସ୍ଥତା ଚରମ ସୀମାରେ ପହଞ୍ଚିଲା । ତେଣୁ ତାଙ୍କୁ ସୁଇଜରଲ୍ୟାଣ୍ଡରେ ଥିବା ଏକ ସ୍ୱାସ୍ଥ୍ୟନିବାସକୁ ସ୍ଥାନାନ୍ତରିତ କରାଗଲା । ସେତେବେଳେ ନେହେରୁ ଜେଲ୍‌ରେ ଥାଆନ୍ତି । ବ୍ରିଟିଶ୍ ସରକାର ତାଙ୍କୁ ସ୍ତ୍ରୀଙ୍କର ଦେଖାଶୁଣା କରିବା ପାଇଁ ଅସ୍ଥାୟୀ ଭାବେ ଜେଲ୍‌ରୁ ମୁକ୍ତି ଦେଇଥିଲେ । କିନ୍ତୁ ୧୯୩୬ ମସିହା ଫେବୃଆରୀ ୨୮ ତାରିଖ ଦିନ କମଳା ନେହେରୁ ଶେଷ ନିଶ୍ୱାସ ତ୍ୟାଗ କଲେ ।

ଏହାପରେ ନେହେରୁ ପୂର୍ଣ୍ଣପ୍ରାଣରେ ସମସ୍ତ ସମୟ କଂଗ୍ରେସର ବିଭିନ୍ନ କାର୍ଯ୍ୟକ୍ରମରେ ବିନିଯୋଗ କଲେ । ସେ ଭାରତର କୋଣ ଅନୁକୋଣରେ ବୁଲି ସ୍ୱରାଜ୍ୟର ବାର୍ତ୍ତା ପ୍ରଚାର କଲେ । ଲୋକମାନଙ୍କୁ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବାପାଇଁ ପ୍ରବର୍ତ୍ତାଇଲେ । ୧୯୩୭ ମସିହାରେ ନେହେରୁ ସୁବାଷ ବୋଷଙ୍କ ସହ ମିଶି କଂଗ୍ରେସ ପ୍ଲାନିଂ କମିଶନ ଗଠନ କଲେ । ଏହି କମିଟି ସ୍ୱାଧୀନତା ପରେ ଭାରତର ଅର୍ଥନୈତିକ କାର୍ଯ୍ୟକ୍ରମ କଣ କରାଯିବ ତାର ରୂପରେଖ ପ୍ରସ୍ତୁତ କଲା । ସେହି ସମୟରେ ନେହେରୁଙ୍କ ମାତା ସ୍ୱରୂପରାଣୀ ମଧ ଇହଲୀଳା ସମ୍ବରଣ କଲେ । ନେହେରୁ ଗଭୀର ଭାବେ ଅବସାଦ ଗ୍ରସ୍ତ ହୋଇ ୟୁରୋପ ଯିବାପାଇଁ ମନସ୍ଥ କଲେ । ୟୁରୋପରୁ ଫେରିବା ବେଳକୁ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇସାରିଥାଏ । ବ୍ରିଟିଶ୍ ସରକାର ଭାରତ ଯୁଦ୍ଧରେ ଯୋଗ ଦେଉ ବୋଲି ଇଚ୍ଛା କଲେ । କିନ୍ତୁ ଭାରତ ସେଥିପାଇଁ ପ୍ରସ୍ତୁତ ନ ଥିଲା ।

କ୍ରିପ୍‌ସ ମିଶନ ଅନୁସାରେ ବ୍ରିଟିଶ୍ ସରକାର ଯୁଦ୍ଧରେ ଭାରତୀୟମାନଙ୍କର ସହଯୋଗ ପାଇଲେ ପରବର୍ତ୍ତୀ ଅବସ୍ଥାରେ ଭାରତ କଥା ବିଚାର କରିବେ ବୋଲି ପ୍ରସ୍ତାବ ଦେଇଥିଲେ । ଏହାକୁ କଂଗ୍ରେସ ନେତାମାନେ ଗ୍ରହଣ କଲେ ନାହିଁ । ମିଶନ୍ ଅସଫଳ ହେଲା । ତା ପରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ଆରମ୍ଭ କରାଗଲା । ଫଳରେ କଂଗ୍ରେସର ପ୍ରାୟ ସବୁ ନେତାମାନେ ବନ୍ଦୀ ହେଲେ । ୧୯୨୧ରୁ ୧୯୪୫ ମସିହା ମଧରେ ନେହେରୁ ୯ ଥର କାରାବରଣ କରିଥିଲେ । ୧୯୩୬ ମସିହାରେ ବନ୍ଦୀ ଥିଲା ବେଳେ ନେହେରୁ ତାଙ୍କର ଆତ୍ମଜୀବନୀ ଲେଖିଥିଲେ ।

ଶେଷ ଥର ପାଇଁ ନେହେରୁ କାରାମୁକ୍ତ ହେଲେ ୧୯୪୫ ମସିହା ଜୁନ୍ ୧୫ ତାରିଖ ଦିନ । ୧୯୪୬ ମସିହା ସେପ୍ଟେମ୍ବର ୨ ତାରିଖ ଦିନ ଭାରତର ଅସ୍ଥାୟୀ



ସରକାର ଗଠିତ ହେଲା । ଏହା କଂଗ୍ରେସ ଏବଂ ମୁସ୍‌ଲିମ୍ ଲିଗ୍ ନେତୃତ୍ୱରେ ଗଠିତ ହୋଇଥିଲା । ଲର୍ଡ ୱେଭେଲ୍ ଭାଇସ୍‌ରାୟ ଥିଲା ବେଳେ ସେ ଏହି ଦୁଇଦଳଙ୍କୁ ଏକତ୍ରିତ କରିବାର ପ୍ରୟାସ କରିଥିଲେ । କିନ୍ତୁ ଏହା ବିଫଳ ହେଲା । ବିଭିନ୍ନ ସ୍ଥାନରେ ହିନ୍ଦୁ ମୁସ୍‌ଲିମ୍ ସଂଘର୍ଷ ଆରମ୍ଭ ହୋଇଗଲା । ତେଣୁ ବାଧ ହୋଇ ନେହେରୁ ଏବଂ ଅନ୍ୟ ନେତାମାନେ ଭାରତ ଏବଂ ପାକିସ୍ଥାନ ଦୁଇଟି ସ୍ୱତନ୍ତ୍ର ରାଷ୍ଟ୍ର ସୃଷ୍ଟି କରିବା ପାଇଁ ରାଜି ହୋଇଥିଲେ । ୧୯୪୭ ଅଗଷ୍ଟ ୧୫ ତାରିଖ ଦିନ ଭାରତ ସ୍ୱାଧୀନତା ପାଇଲା ଏବଂ ପଣ୍ଡିତ୍ ଜବାହାରଲାଲ ନେହେରୁ ଏହାର ପ୍ରଥମ ପ୍ରଧାନମନ୍ତ୍ରୀ ପଦରେ ଅଧିଷ୍ଠିତ ହେଲେ । ତା ପରେ ସେ ଦେଶକୁ ଏକ ଆଧୁନିକ ରାଷ୍ଟ୍ରରେ ପରିଣତ କରିବା ପାଇଁ ଅକ୍ଳାନ୍ତ ପରିଶ୍ରମ କଲେ । ତାଙ୍କର ଅବିରତ ଚେଷ୍ଟାରେ ଭାରତ ବର୍ଷ ପୃଥିବୀର ଉନ୍ନତ ଦେଶମାନଙ୍କ ମଧ୍ୟରେ ମୁଣ୍ଡଟେକି ଠିଆ ହୋଇଛି । ସେଥିପାଇଁ ତାଙ୍କୁ ଆଧୁନିକ ଭାରତ ଗଠନର ସୁଦକ୍ଷ ବିନ୍ଧାଣୀ ବୋଲି କୁହାଯାଏ । ଭାରତକୁ ଏକ ଗଣତନ୍ତ୍ର ଏବଂ ସମାଜବାଦୀ ରାଷ୍ଟ୍ର ତଥା ଧର୍ମନିରପେକ୍ଷ ରାଷ୍ଟ୍ରରୂପେ ଗଢ଼ି ତୋଳିବା ତାଙ୍କର ଲକ୍ଷ୍ୟ ଥିଲା ।

୧୯୫୨, ୧୯୫୭ ଏବଂ ୧୯୬୦ ନିର୍ବାଚନରେ ବହୁଳ ଭୋଟ୍ ବ୍ୟବଧାନରେ ବିଜୟ ଲାଭ କରି ସେ ୧୯୪୭ ଠାରୁ ୧୯୬୪ ମସିହା ପର୍ଯ୍ୟନ୍ତ ଭାରତବର୍ଷର ପ୍ରଧାନମନ୍ତ୍ରୀ ପଦରେ ରହିଥିଲେ । ତାଙ୍କ ଶାସନକାଳ ମଧ୍ୟରେ ବଡ଼ ବଡ଼ ଶିଳ୍ପ କାରଖାନା ଗଢ଼ି ଏବଂ ବିଭିନ୍ନ ବହୁମୁଖୀ ଯୋଜନା ମାଧ୍ୟମରେ ଭାରତର ଅର୍ଥନୈତିକ ବିକାଶ ସାଧନ କରିବା ନିମନ୍ତେ ତତ୍ପର ଥିଲେ । ତାଙ୍କ ସମୟରେ ଭାରତରେ ଦୁର୍ଗାପୁର, ରାଉରକେଲା, ରାଞ୍ଚି ଆଦି ସହର ମାନଙ୍କରେ ଶିଳ୍ପ କାରଖାନା ଏବଂ ସହର ଗଢ଼ି ଉଠିଥିଲା । ଅନେକ ନଦୀବନ୍ଧ ଯୋଜନା କାର୍ଯ୍ୟକାରୀ ହୋଇଥିଲା । ଆମ ରାଜ୍ୟର ହୀରାକୁଦ ଯୋଜନା ତାଙ୍କରି ଦାନ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଭାରତର ଶିଳ୍ପ ବିକାଶ ପାଇଁ ସେ ପାଶ୍ଚାତ୍ୟ ଜଗତ ଏବଂ ସୋଭିଏତ୍ ରୁଷିଆରୁ ବହୁଳ ପରିମାଣରେ ସାହାଯ୍ୟ ସହଯୋଗ ପାଇଥିଲେ ।

ଶେଷରେ ବ୍ରିଟିଶ୍ ଏବଂ ଫ୍ରାନ୍ସ ସରକାର ଭାରତରୁ ଓହରି ଯାଇଥିଲେ । କିନ୍ତୁ ଶେଷ ପର୍ଯ୍ୟନ୍ତ ଗୋଆରେ ପର୍ତ୍ତୁଗୀଜ୍‌ଙ୍କର ଉପନିବେଶ ରହିଥିଲା । ପର୍ତ୍ତୁଗୀଜ୍ ସରକାରଙ୍କୁ ଗୋଆ ଛାଡ଼ିବା ପାଇଁ ନେହେରୁଙ୍କର ଶତ ଅନୁରୋଧ ବିଫଳ ହେବା ପରେ ୧୯୫୫ ମସିହା ଅଗଷ୍ଟରେ ସେ ପର୍ତ୍ତୁଗୀଜ୍ ଅଞ୍ଚଳରେ ଭାରତୀୟ ସେନାଙ୍କୁ ପ୍ରବେଶ କରିବା ପାଇଁ ଆଦେଶ ଦେଇଥିଲେ । ଏହି ସେନାବାହିନୀଙ୍କୁ କିନ୍ତୁ ଅସ୍ତ୍ରଶସ୍ତ୍ର ଦିଆଯାଇନଥିଲା । ସେମାନେ କେବଳ ତାଙ୍କ ଉପନିବେଶ ମଧ୍ୟରେ ପ୍ରବେଶ କରୁଥିଲେ । ନିରସ୍ତ୍ର ସେନା ବାହିନୀ ଉପରେ ପର୍ତ୍ତୁଗୀଜ ସେନା ଗୁଳିବର୍ଷଣ କଲା । ପଣ୍ଡିତ ନେହେରୁ ତାଙ୍କର କେତେକ ପାଶ୍ଚାତ୍ୟ ଦେଶୀୟ ବନ୍ଧୁଙ୍କ ମାଧ୍ୟମରେ ପର୍ତ୍ତୁଗୀଜ ସରକାରଙ୍କୁ ଗୋଆ ଛାଡ଼ିବା ପାଇଁ ପୁନର୍ବାର ଅନୁରୋଧ କଲେ । ଏହା ବିଫଳ ହେବାରୁ ଶେଷରେ ୧୯୬୧ ମସିହା ଡ଼ିସେମ୍ବର ମାସରେ ଭାରତୀୟ ସୈନ୍ୟ ଗୋଆରେ ପ୍ରବେଶ କରି ତାହାକୁ ପର୍ତ୍ତୁଗୀଜ ଉପନିବେଶଠାରୁ ମୁକ୍ତ କଲେ ।

ପାଶ୍ଚାତ୍ୟ ଉପନିବେଶରୁ ବିଶ୍ୱର ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କୁ ମଧ୍ୟ ମୁକ୍ତି ଦେବାପାଇଁ ପଣ୍ଡିତ ନେହେରୁ ପ୍ରଥମେ ନିରସ୍ତ୍ରୀକରଣ ଏବଂ ଧର୍ମନିରପେକ୍ଷତା ନୀତି ଅବଲମ୍ବନ କଲେ । ସେ ଚୀନ ଦେଶ ପରିଦର୍ଶନରେ ଯାଇ ସେଠାରେ ତାଙ୍କ ସହିତ ଉତ୍ତମ ସଂପର୍କ ସ୍ଥାପନ ଉଦ୍ଦେଶ୍ୟରେ ପଞ୍ଚଶୀଳ ନୀତି ପ୍ରଣୟନ କଲେ । ଏହା ଫଳରେ ସେ ନିରସ୍ତ୍ରୀକରଣ ପାଇଁ ଉତ୍ସର୍ଗୀକୃତ ନେତୃବୃନ୍ଦଙ୍କ ମଧ୍ୟରେ ଅନ୍ୟତମ ହୋଇ ପୃଥିବୀ ପ୍ରସିଦ୍ଧ ହେଲେ । ୧୯୪୮ ମସିହାରେ ପାକିସ୍ଥାନ ତାର ସଶସ୍ତ୍ର ବାହିନୀଙ୍କ ମାଧ୍ୟମରେ କାଶ୍ମୀର ଦଖଲ ପାଇଁ ଅସଫଳ ପ୍ରୟାସ କରିଥିଲା । ତା ପରଠାରୁ ନେହେରୁଙ୍କ କାର୍ଯ୍ୟକାଳର ଅବଧି ମଧ୍ୟରେ କାଶ୍ମୀର ସର୍ବଦା ଏକ ସମସ୍ୟା ହୋଇ ରହିଥିଲା ।

କାଶ୍ମୀର ସମସ୍ୟାକୁ ନେଇ ପାକିସ୍ଥାନ ବାରମ୍ବାର ଭାରତ ସହିତ ଯୁଦ୍ଧ କରିବା ଏବଂ ତହିଁରେ କେତେକ ପାଶ୍ଚାତ୍ୟ ଦେଶ ତାଙ୍କୁ ବେଆଇନ୍ ସାହାଯ୍ୟ ଯୋଗାଇବା ଫଳରେ ପାଶ୍ଚାତ୍ୟ ଦେଶ ଉଦ୍ଦେଶ୍ୟରେ ଭାରତର ନୀତିରେ କେତେକ ପରିବର୍ତ୍ତନ କରିବା ପାଇଁ ଆବଶ୍ୟକତା ଦେଖାଗଲା । ଯେତେବେଳେ ସୀମାବିବାଦ ନେଇ ଚୀନ୍ ୧୯୬୨ ମସିହାରେ ପଞ୍ଚଶୀଳ ନୀତିକୁ ବେଖାତିର କରି ଭାରତ ଆକ୍ରମଣ କଲା ଏବଂ ଭାରତର ସେନାବାହିନୀର ଶୋଚନୀୟ ପରାଜୟ ଘଟିଲା ସେତେବେଳେ ବିଶ୍ୱରେ ନେହେରୁଙ୍କ ସମ୍ମାନ ଏବଂ ସ୍ଥିତିରେ ଯଥେଷ୍ଟ ଅବନତି ଦେଖାଯାଇଥିଲା । ନେହେରୁ ବାଧ୍ୟହୋଇ ଆମେରିକାର ସାହାଯ୍ୟ ଲୋଡ଼ିଲେ । ତେବେ ଭାରତବର୍ଷରେ

ମଧ ତାଙ୍କ ସମ୍ମାନରେ ଆଞ୍ଚ ଆସିଥିଲା । ନେହେରୁଙ୍କ ସ୍ୱାସ୍ଥ୍ୟ ଉପରେ ଏହାର ପ୍ରତିକୂଳ ପ୍ରଭାବ ପଡ଼ିଲା ଏବଂ ୧୯୬୩ ମସିହାରେ ସେ ଏକ ହୃଦ୍‌ଘାତର ସମ୍ମୁଖୀନ ହେଲେ । ୧୯୬୪ ମସିହା ଜାନୁୟାରୀ ମାସରେ ତାଙ୍କର ଦ୍ୱିତୀୟ ହୃଦ୍‌ଘାତ ହେଲା ଏବଂ ନୂଆଦିଲ୍ଲୀଠାରେ ୧୯୬୪ ମେ ୨୭ ତାରିଖ ଦିନ ତାଙ୍କର ପ୍ରାଣହାନୀ ହୋଇଥିଲା । ତାଙ୍କ ମୃତ୍ୟୁରେ ସାରାଦେଶ ଶୋକାକୁଳ ହୋଇଉଠିଲା ।

ପଣ୍ଡିତ ନେହେରୁ ଶିଶୁମାନଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ ଏବଂ ଶିଶୁମାନେ ତାଙ୍କୁ ବାବାଜୀ ନାମରେ ସମ୍ବୋଧନ କରୁଥିଲେ । ସେଥିପାଇଁ ପ୍ରତିବର୍ଷ ନେହେରୁଙ୍କ ଜନ୍ମଦିନ ନଭେମ୍ବର ୧୪ ତାରିଖ ଶିଶୁଦିବସ ରୂପେ ପାଳନ କରାଯାଏ । ପଣ୍ଡିତ ନେହେରୁ ଯଦି ଭାରତବର୍ଷର ପ୍ରଧାନମନ୍ତ୍ରୀ ହୋଇନଥାନ୍ତେ ତଥାପି ସେ ତାଙ୍କର ରଚନାବଳୀ ପାଇଁ ପୃଥିବୀ ପ୍ରସିଦ୍ଧ ହୋଇଥାନ୍ତେ । ପ୍ରକୃତପକ୍ଷେ ରାଜନୀତି କ୍ଷେତ୍ରରେ ସେ ଯେତିକି ସମ୍ମାନର ଅଧିକାରୀ ହୋଇଛନ୍ତି ତା ଠାରୁ ଅଧିକ ସମ୍ମାନ ଓ ପ୍ରସିଦ୍ଧି ତାଙ୍କ ରଚିତ ବିଭିନ୍ନ ଐତିହାସିକ ପୁସ୍ତକ ତାଙ୍କୁ ଆଣିଦେଇଛି । ଗ୍ଲିମ୍‌ପସେସ୍ ଅଫ୍ ୱାର୍ଲଡ ହିଷ୍ଟ୍ରି, ଇଣ୍ଡିଆ ଆଣ୍ଡ ଦ ୱାର୍ଲଡ, ଏଇଟିନ୍ ମନ୍ଥସ୍ ଇନ୍ ଇଣ୍ଡିଆ, ଦ ୟୁନିଟି ଅଫ୍ ଇଣ୍ଡିଆ ଏବଂ ଡିସ୍କଭରୀ ଅଫ୍ ଇଣ୍ଡିଆ ଆଦି ପୁସ୍ତକାବଳୀ ତାଙ୍କ କୃତୀମାନଙ୍କ ମଧ୍ୟରେ ଅନ୍ୟତମ । ପଣ୍ଡିତ ଜବାହାରଲାଲ ନେହେରୁଙ୍କୁ ଭାରତ ବର୍ଷର ସର୍ବଶ୍ରେଷ୍ଠ ନାଗରିକ ସମ୍ମାନ ଭାରତରତ୍ନରେ ୧୯୫୫ ମସିହାରେ ଭୂଷିତ କରାଯାଇଥିଲା ।

* * *

# ଗୋବିନ୍ଦ ବଲ୍ଲଭ ପନ୍ଥ



୧୮୮୭-୧୯୬୧

ଭାରତରତ୍ନ-୧୯୫୭

ସ୍ୱାଧୀନ ଭାରତର ସାଂସଦୀୟ ନେତୃବର୍ଗଙ୍କ ମଧ୍ୟରେ ଯେଉଁ କେତେକ ନାମ ପ୍ରସିଦ୍ଧି ଲାଭ କରିଛି ତହିଁରେ ଗୋବିନ୍ଦ ବଲ୍ଲଭ ପନ୍ଥ ଅନ୍ୟତମ । ଉତ୍ତରପ୍ରଦେଶର ଆଲ୍‌ମୋରା ଜିଲ୍ଲାସ୍ଥିତ ଖୁଣ୍ଟ୍ ନାମକ ଏକ କ୍ଷୁଦ୍ର ପଲ୍ଲୀଗ୍ରାମରେ ୧୮୮୭ ମସିହା ସେପ୍ଟେମ୍ବର ୧୦ ତାରିଖ ଦିନ ଗୋବିନ୍ଦ ବଲ୍ଲଭ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ମନୋରଥ ପନ୍ଥ ଜଣେ ସରକାରୀ କର୍ମଚାରୀ ଥିଲେ ଏବଂ ତାଙ୍କର ଅଜା ବଦ୍ରୀଦତ୍ତ ଯୋଶୀ କୁମାୟୁନ୍‌ର ଜଣେ ବିଚାର ବିଭାଗୀୟ ଅଫିସର୍ ଥିଲେ । ଗୋବିନ୍ଦ ତାଙ୍କର ଅଜାଙ୍କର ଏକ ତିନି ମହଲା ବିଶିଷ୍ଟ ବିରାଟ ବଙ୍ଗଳାରେ ଯୌଥ ପରିବାରରେ ରହୁଥିଲେ । ସେ ଜଣେ ମେଧାବୀ ଛାତ୍ର ଥିଲେ । ତାଙ୍କୁ ଗଣିତଶାସ୍ତ୍ର ଅତ୍ୟଧିକ ଭଲ ଲାଗୁଥିଲା । କୁହାଯାଏ ଯେ, ଥରେ ତାଙ୍କର ଶିକ୍ଷକ ଯେଉଁ ଅଙ୍କଟିକୁ ସମାଧାନ

କରିବାକୁ ଅସମର୍ଥ ହୋଇଥିଲେ ତାକୁ ଗୋବିନ୍ଦ ଖୁବ୍ ସହଜରେ ସମାଧାନ କରିପାରିଥିଲେ । ବକ୍ତୃତା ଏବଂ ତର୍କସଭାରେ ତାଙ୍କର ପାରଦର୍ଶିତା ଥିଲା । ଭାଷଣ ଦେବାରେ ତାଙ୍କର ଏହି ଦକ୍ଷତା ପରବର୍ତ୍ତୀ ଜୀବନରେ ଓକିଲାତି ବେଳେ ତଥା ସାଂସଦ ଥିଲା ବେଳେ ତାଙ୍କୁ ଗଣଙ୍କ ମଧ୍ୟରେ ଜଣେ କରି ପ୍ରସିଦ୍ଧ କରିପାରିଥିଲା । ଏହି ଦକ୍ଷତା ଯୋଗୁଁ ଗଣଙ୍କ ମଧ୍ୟରେ ଜଣେ ହୋଇ ବାରି ହୋଇପଡୁଥିଲେ । ବନ୍ଧୁମାନଙ୍କ ସାଙ୍ଗରେ ଖେଳିଲା ବେଳେ ସେ ରେଫରି ହେବା ପାଇଁ ପସନ୍ଦ କରୁଥିଲେ । ତାଙ୍କର ନିଷ୍ପତ୍ତି ବିନା ଦ୍ୱିଧାରେ ସମସ୍ତେ ଗ୍ରହଣ କରୁଥିଲେ । ତାଙ୍କ ଅଜାଙ୍କର ଚାରୋଟି ଘୋଡ଼ା ଥିଲା ଏବଂ ଗୋବିନ୍ଦ ଘୋଡ଼ା ଚଢ଼ିବାକୁ ଖୁବ୍ ଭଲ ପାଉଥିଲେ ।

ଉତ୍ତର ଭାରତରେ କୁମାୟୁ ଏକ ପାହାଡ଼ିଆ ଅଞ୍ଚଳ ହୋଇଥିଲେ ହେଁ ଏହା ରାଜନୀତିଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ନ ଥିଲା । ୧୮୯୬ ମସିହାରେ ସ୍ୱାମୀ ବିବେକାନନ୍ଦ ଏବଂ ତାଙ୍କର ଅନୁଗାମୀମାନେ ଏହି ଅଞ୍ଚଳ ପରିଦର୍ଶନ କରିଥିଲେ ଏବଂ ସାଧାରଣ ସଭାମାନଙ୍କରେ ଭାଷଣ ଦେଇ ସେ ଅଞ୍ଚଳର ଜନତାଙ୍କ ମଧ୍ୟରେ ତୀବ୍ର ଜାତୀୟତା ଭାବ ଉଦ୍ରେକ କରିଥିଲେ । ସ୍ୱାମୀ ବିବେକାନନ୍ଦଙ୍କର ଆବେଗପୂର୍ଣ୍ଣ ଭାଷଣ ଶୁଣି ଗୋବିନ୍ଦ ବଲ୍ଲଭଙ୍କ ମନ ଆନ୍ଦୋଳିତ ହୋଇଥିଲା । ତାଙ୍କ ଅଜା ମଧ୍ୟ ଘରେ ସମସ୍ତଙ୍କୁ ବସାଇ ଅନେକ ବିଷୟରେ ଆଲୋଚନା କରୁଥିଲେ । ତହିଁରେ ଭାରତୀୟ ଶାସ୍ତ୍ରୀୟ ସଂଗୀତଠୁ ଆରମ୍ଭ କରି ଜାତୀୟତା ପର୍ଯ୍ୟନ୍ତ ଆଲୋଚିତ ହେଉଥିଲା । ଗୋବିନ୍ଦ ବଲ୍ଲଭ ତାଙ୍କ ଅଜାଙ୍କର ବାଣୀ ଖୁବ୍ ଆଗ୍ରହରେ ଶୁଣୁଥିଲେ । ସେ ପ୍ରତିଦିନ ସମ୍ବାଦପତ୍ର ଆଲ୍‌ମୋରା ଆକ୍‌ବର୍ ପାଠ କରୁଥିଲେ ଏବଂ ତା ଛଡ଼ା କେତେକ ଜାତୀୟବାଦୀ ଖବର କାଗଜ ଯଥା ଭାରତମିତ୍ର ଏବଂ ବଙ୍ଗଭାଷୀ ମଧ୍ୟ ନିୟମିତ ପଢୁଥିଲେ । ଏପରିକି ସେ ଗୁପ୍ତରେ ହାପି କ୍ଲବ ନାମରେ ଏକ ସଂଘ ଗଢ଼ି ତହିଁରେ ରାଜନୀତି ଚର୍ଚ୍ଚା କରୁଥିଲେ ।

କୃତିତ୍ୱର ସହିତ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ଗୋବିନ୍ଦ ବଲ୍ଲଭ ଉଚ୍ଚତର ଶିକ୍ଷା ପାଇଁ ଆହ୍ଲାବାଦ ଗଲେ । ତାଙ୍କର ମୁଖ୍ୟ ବିଷୟ ମଧ୍ୟରେ ସେ ଗଣିତ, ରାଜନୀତି ବିଜ୍ଞାନ ଏବଂ ସାହିତ୍ୟ ନେଇଥିଲେ । ମହାବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ସେ ବିଭିନ୍ନ ତର୍କ ପ୍ରତିଯୋଗିତା ଏବଂ ଆଲୋଚନାରେ ଅଂଶ ଗ୍ରହଣ କରୁଥିଲେ । ସେ ଜଣେ ଅତ୍ୟଧିକ ପଠନ ଟିକାସୀ ଥିଲେ । ବଙ୍କିମ୍ ଚନ୍ଦ୍ର ଏବଂ ଜନ୍ ବିଲ୍‌ସଙ୍କର ସମସ୍ତ ରଚନା ସେ ପଢ଼ି ଶେଷ କରିଥିଲେ । ଆହ୍ଲାବାଦ ବିଶ୍ୱ ବିଦ୍ୟାଳୟରୁ ସେ ବି.ଏ. ଏଲ୍.ଏଲ୍.ବି କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେଲେ ଏବଂ ସ୍ୱର୍ଣ୍ଣପଦକ ପ୍ରାପ୍ତ

ହେଲେ । ପଣ୍ଡିତ ମୋତିଲାଲ୍ ନେହେରୁ, ରାଜର୍ଷି ପୁରୁଷୋତ୍ତମ ଦାସ ଟଣ୍ଡନ, ପଣ୍ଡିତ ମଦନ ମୋହନ ମାଲବିଆ, ସାର୍ ତେଜ୍‌ବାହାଦୂର ସାପ୍ରୁ ଏବଂ ଗୋପାଲ୍ କ୍ରିଷ୍ଣ ଗୋଖଲେଙ୍କ ପରି ମହାମାନବମାନଙ୍କ ଦ୍ୱାରା ସେ ପ୍ରଭୂତ ପ୍ରଭାବିତ ହୋଇଥିଲେ ।



ଗୋବିନ୍ଦ ବଲ୍ଲଭ ପନ୍ଥ ପ୍ରଥମେ କାଶିପୁରା ଏବଂ ପରେ ଆଲ୍‌ମୋରା ଏବଂ ନୈନିତାଲ୍‌ଠାରେ ତାଙ୍କର ଆଇନ୍ ବ୍ୟବସାୟ ଆରମ୍ଭ କଲେ । ଅତି ଅଳ୍ପ ସମୟ ମଧ୍ୟରେ ଏହି ବ୍ୟବସାୟରେ ସେ ପ୍ରସିଦ୍ଧି ଲାଭ କଲେ । କିନ୍ତୁ ଅର୍ଥ ରୋଜଗାର କରି ପ୍ରଚୁର ଅର୍ଥ ଠୁଳ କରିବା ତାଙ୍କ ଜୀବନର ଲକ୍ଷ୍ୟ ନ ଥିଲା । ଦେଶବାସୀଙ୍କ ପାଇଁ କିଛି ଅର୍ଥପୂର୍ଣ୍ଣ କାର୍ଯ୍ୟ କରିବା ତାଙ୍କର ମହତ୍ ଉଦ୍ଦେଶ୍ୟ ରହିଥିଲା । ୧୯୧୬ ମସିହାରେ ଲକ୍ଷ୍ନୌଠାରେ ହୋଇଥିବା କଂଗ୍ରେସ ଅଧିବେଶନରେ ସେ ମହାତ୍ମାଗାନ୍ଧିଙ୍କର ଭାଷଣ ପ୍ରଥମ ଥର ପାଇଁ ଶୁଣିଥିଲେ । ଏହାପରେ ସେ ତାଙ୍କର ଲୋଭନୀୟ ଓକିଲାତି ବ୍ୟବସାୟ ଛାଡ଼ି ରାଜନୀତିରେ ଭାଗ ନେଲେ ଏବଂ ମହାତ୍ମାଗାନ୍ଧି ୧୯୨୦ ମସିହାରେ ଯେତେବେଳେ ଅସହଯୋଗ ଆନ୍ଦୋଳନର ଆହ୍ୱାନ ଦେଲେ ଗୋବିନ୍ଦ ବଲ୍ଲଭ ପନ୍ଥ ତହିଁରେ ଉଦ୍‌ବୁଦ୍ଧ ହୋଇ ତାଙ୍କର ଲୋଭନୀୟ ଓକିଲାତି ବ୍ୟବସାୟ ଛାଡ଼ି ରାଜନୀତିରେ ଝାସ ଦେଲେ । ସେ ମୋତିଲାଲ ନେହେରୁ ଏବଂ ଚିତ୍ତରଞ୍ଜନ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ସ୍ୱରାଜ ପାର୍ଟିରେ ଯୋଗଦେଲେ ।

ଗୋବିନ୍ଦ ବଲ୍ଲଭ ପନ୍ଥ ୧୯୨୩ ମସିହାରେ ଉତ୍ତର ପ୍ରଦେଶର ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ଏକ ସଭ୍ୟ ଭାବେ ଯୋଗ ଦେଲେ । ଉତ୍ତରପ୍ରଦେଶର କଂଗ୍ରେସ କମିଟିର ସଭାପତି ଭାବେ ୧୯୨୭ ମସିହାରେ ସେ ନିର୍ବାଚିତ ହେଲେ । ସାଇମଣ୍ଡ କମିଶନ ବିରୁଦ୍ଧରେ ବିଭିନ୍ନ ସ୍ଥାନରେ ଶୋଭାଯାତ୍ରା ପରିଚାଳନା କଲେ । ସେହି ଶୋଭାଯାତ୍ରାରେ ପୋଲିସ ଲାଠିମାଡ଼ ଖାଇ ଗୁରୁତର ଭାବେ ଆହତ ହୋଇଥିଲେ । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ଉତ୍ତର ପ୍ରଦେଶରେ ସେ ଏହି ସତ୍ୟାଗ୍ରହର ନେତୃତ୍ୱ ନେଇଥିଲେ ।

ଗୋବିନ୍ଦ ବଲ୍ଲଭ ୧୯୩୧ ମସିହାରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ହେଲେ ଏବଂ ଶେଷ ପର୍ଯ୍ୟନ୍ତ ସେ ଏହି କମିଟିରେ ରହିଥିଲେ । କେନ୍ଦ୍ରୀୟ ବିଧାନସଭାକୁ ସେ ସଭ୍ୟଭାବେ ନିର୍ବାଚିତ ହୋଇ ୧୯୩୪ ମସିହାରେ ଆସିଲେ । ସେ କଂଗ୍ରେସ ପାର୍ଟିର ଉପଦଳପତି ହୋଇଥିଲେ । ଯେତେବେଳେ କଂଗ୍ରେସ ଦଳ ବିଭିନ୍ନ ପ୍ରଦେଶର ଶାସନ ପାଇଁ ସରକାର ଗଢ଼ିଲେ, ୧୯୩୭ ମସିହାରେ ସେ ଉତ୍ତରପ୍ରଦେଶରେ କଂଗ୍ରେସର ନେତା ଭାବେ ନିର୍ବାଚିତ ହେଲେ ଏବଂ ତାଙ୍କ ନେତୃତ୍ୱରେ ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଏହି ପଦବୀରେ ସେ ଅତି ଅଳ୍ପ ଦିନ ପାଇଁ ରହିଥିଲେ ହେଁ ସେହି ସମୟ ମଧ୍ୟରେ ସାଧାରଣ ଲୋକଙ୍କର ଉନ୍ନତି ପାଇଁ ଚେଷ୍ଟାରତ ଥିଲେ । ସେ ସାମାଜିକ ଏବଂ ଶିକ୍ଷା କ୍ଷେତ୍ରରେ ଅନେକ ସଂସ୍କାର ଆଣିବାର ପ୍ରୟାସ କରୁଥିଲେ । ସେ ରାଜ୍ୟରେ ସାଂପ୍ରଦାୟିକ ସଦ୍‌ଭାବ ପ୍ରତିଷ୍ଠା କରିବା ଏବଂ ଅସ୍ପୃଶ୍ୟତା ଦୂର କରିବାରେ ନେତୃତ୍ୱ ନେଇଥିଲେ । ସେତେବେଳେ କୃଷକ ଏବଂ ଶ୍ରମିକ ମାନଙ୍କ ଅବସ୍ଥା ଖୁବ୍ ଦୟନୀୟ ଥିଲା । ଏକ ପକ୍ଷରେ ସେମାନଙ୍କୁ ବନ୍ୟା ଏବଂ ମରୁଡ଼ି ଅସ୍ତବ୍ୟସ୍ତ କରୁଥିବା ବେଳେ ଅନ୍ୟ ପକ୍ଷରେ ସରକାର ଏବଂ ଜମିଦାରମାନଙ୍କର ବେତ୍ରାଘାତ ସହିବାକୁ ପଡୁଥିଲା । ତେଣୁ ଗୋବିନ୍ଦ ବଲ୍ଲଭ ଜମିଦାରୀ ପ୍ରଥାର ବିଲୋପ ସାଧନ ପାଇଁ ସଂଗ୍ରାମ କରିଥିଲେ ।

ବ୍ୟକ୍ତିଗତ ସତ୍ୟାଗ୍ରହ କରିବା ସମୟରେ ୧୯୪୦ ମସିହାରେ ଗୋବିନ୍ଦ ବଲ୍ଲଭଙ୍କ ବନ୍ଦୀ କରାଗଲା ଏବଂ ଆଲ୍‌ମୋରା ଜେଲ୍‌ରେ ରଖାଗଲା । ଜେଲ୍‌ରୁ ମୁକ୍ତି ପାଇବା ମାତ୍ରେ ହିଁ ସେ ଭାରତ ଛାଡ଼ ଆନ୍ଦୋଳନରେ ଭାଗ ନେଲେ ଏବଂ ପୁନର୍ବାର ୧୯୪୨ ମସିହାରେ କାରାବରଣ କଲେ । ପଣ୍ଡିତ ଜବାହାରଲାଲ୍ ନେହେରୁ, ମୌଲାନା ଆବୁଲ୍ କଲମ ଆଜାଦ୍, ଅରୁଣା ଆସଫ ଅଲ୍ଲୀ ଏବଂ ଆଚାର୍ଯ୍ୟ କୃପାଳିନୀ ଆଦି ପ୍ରମୁଖ ନେତାଙ୍କ ସହିତ ଗୋବିନ୍ଦ ବଲ୍ଲଭ ଅହମଦାବାଦ୍ ନଗର ଦୁର୍ଗରେ ବନ୍ଦୀ ହେଲେ । ଏ ସମସ୍ତ ନେତା ପଢ଼ାପଢ଼ି, ଲେଖାଲେଖି ଏବଂ ବଗିଚା କାମରେ ନିଜର ସମୟ କାଟୁଥିଲେ । ଗୋବିନ୍ଦ



ବଲ୍ଲଭ ତାଙ୍କର ପିଲାମାନଙ୍କ ସହିତ ନିୟମିତ ଚିଠିପତ୍ର ଆଦାନ ପ୍ରଦାନ କରୁଥିଲେ । ତାଙ୍କ ଚିଠିପତ୍ରରେ ପିଲାମାନଙ୍କ ପ୍ରତି ଥିବା ତାଙ୍କର ସ୍ନେହ ଏବଂ ପିତୃପ୍ରାଣର ଉଷ୍ଣତା ଅନୁଭୂତ ହୋଇଥାଏ । ଗୋବିନ୍ଦ ବଲ୍ଲଭଙ୍କର ସ୍ୱାସ୍ଥ୍ୟରେ ଅବନତି ଦେଖାଦେବା ଯୋଗୁଁ ତାଙ୍କୁ ବନ୍ଦୀଶାଳାରୁ ୧୯୪୫ ମସିହାରେ ମୁକ୍ତି ମିଳିଥିଲା । ୧୯୪୬ ମସିହାରେ ଗୋବିନ୍ଦ ବଲ୍ଲଭ ଉତ୍ତର ପ୍ରଦେଶ ବିଧାନସଭାକୁ ପୁନର୍ବାର ନିର୍ବାଚିତ ହେଲେ । ସେ ଲଗାତାର ଆଠ ବର୍ଷ ପାଇଁ ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀଭାବେ କାର୍ଯ୍ୟ କରିଥିଲେ ।

୧୯୫୪ ମସିହାରେ ଗୋବିନ୍ଦ ବଲ୍ଲଭଙ୍କୁ ପଣ୍ଡିତ ନେହେରୁଙ୍କ ଆମନ୍ତ୍ରଣ କ୍ରମେ ଦିଲ୍ଲୀ ଆସି କେନ୍ଦ୍ରର ଗୃହମନ୍ତ୍ରୀ ପଦ ସମ୍ଭାଳିବାକୁ ପଡ଼ିଥିଲା । ଏହି ପଦବୀରେ ଥିଲାବେଳେ ସେ ଦେଶରେ ଶାନ୍ତି ଶୃଙ୍ଖଳା, ଆଇନ କାନୁନ ଆଦି ରକ୍ଷା କରିବା ପାଇଁ ପ୍ରଶଂସନୀୟ ଉଦ୍ୟମ କରିଥିଲେ । ଭାଷା ଭିତ୍ତିକ ରାଜ୍ୟ ଗଠନ ୧୯୫୬ ମସିହାରେ କରାଗଲା । ଗୋବିନ୍ଦ ବଲ୍ଲଭ ଜଣେ ଦକ୍ଷ ପ୍ରଶାସକ ଥିଲେ । ତା ଛଡ଼ା ଜଣେ ପ୍ରବୀଣ ବକ୍ତା ଏବଂ ବିଜ୍ଞ ବ୍ୟକ୍ତି ଥିଲେ । ତାଙ୍କର ବ୍ୟସ୍ତ ବହୁଳ ରାଜନୈତିକ ଜୀବନ ସତ୍ତ୍ୱେ ସେ କ୍ଷୁଦ୍ରଗଳ୍ପ, କବିତା ଏବଂ ନାଟକ ଲେଖି ପାରୁଥିଲେ । ମହାତ୍ମାଗାନ୍ଧିଙ୍କର ସେ ଜଣେ ଅନୁଗାମୀ ଥିଲେ । ସ୍ୱାଧୀନ ଭାରତ ଗଠନରେ ତାଙ୍କର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ଦେଶ ଏବଂ ଜାତିର ସେବାପାଇଁ ତାଙ୍କୁ ୧୯୫୭ ମସିହାରେ ଦେଶର ସର୍ବୋଚ୍ଚ ସମ୍ମାନ ଭାରତରତ୍ନରେ ଭୂଷିତ କରାଯାଇଥିଲା ।

୧୯୬୦ ମସିହାରେ ଗୋବିନ୍ଦ ବଲ୍ଲଭଙ୍କର ହୃଦ୍‌ଘାତ ହୋଇଥିଲା । ଦୈନନ୍ଦିନ କାର୍ଯ୍ୟରେ ବ୍ୟସ୍ତ ଥିଲାବେଳେ ୧୯୬୧ ମସିହା ଫେବୃଆରୀ ୨୦ ତାରିଖ ଦିନ ସେ ହଠାତ୍ ଅସୁସ୍ଥ ହୋଇପଡ଼ିଲେ ଏବଂ ଅନେକ ଦିନ ଯାଏଁ ଅଚେତ ଅବସ୍ଥାରେ ରହିଥିଲେ । ଏହି ଦୃଢ଼ମନା ହିମାଳୟ ଅଞ୍ଚଳର ବରପୁତ୍ର ଗୋବିନ୍ଦ ବଲ୍ଲଭ ପନ୍ଥ ଶେଷରେ ୧୯୬୧ ମସିହା ମାର୍ଚ୍ଚ ୭ ତାରିଖ ଦିନ ଇହଲୀଳା ତ୍ୟାଗ କଲେ ।

***

# ମହର୍ଷି ଦଣ୍ଡକେଶବ କାର୍ବେ



୧୮୫୮-୧୯୬୨

ଭାରତରତ୍ନ - ୧୯୫୮

**ମ**ହର୍ଷି ଦଣ୍ଡକେଶବ କାର୍ବେ, ଆନ୍ନାକାର ନାମରେ ଜନମାନସରେ ପରିଚିତ ଥିଲେ । ମହାରାଷ୍ଟ୍ରର କୋଙ୍କଣ ଅଞ୍ଚଳରେ ଏକ ଉପକୂଳବର୍ତ୍ତୀ ଗ୍ରାମ ମୁରୁଦଠାରେ ୧୮୫୮ ମସିହା ଏପ୍ରିଲ୍ ୧୮ ତାରିଖ ଦିନ ସେ ଜନ୍ମ ନେଇଥିଲେ । ପୂର୍ବରୁ କାର୍ବେ ସଂପ୍ରଦାୟ ଖୁବ୍ ଧନୀ ଥିଲେ ଏବଂ ବିଭିନ୍ନ ଦେଶୀୟ ରାଜ୍ୟର ରଜାମାନଙ୍କୁ ଧନ ଋଣ ଦେଉଥିଲେ । କିନ୍ତୁ କାର୍ବେ ଜନ୍ମ ଲାଭ କରିବା ସମୟକୁ ତାଙ୍କ ପରିବାର ସମସ୍ତ ପୈତୃକ ସଂପତ୍ତି ହରାଇ ଥିଲା । ସେମାନେ ଅନାଟନ ଭିତରେ କାଳାତିପାତ କରୁଥିଲେ । ଦଣ୍ଡଙ୍କର ପିତା କେବଶ କନ୍ କୋରିଗାଓଁରେ ଏକ କିରାଣୀ ଚାକିରୀରେ ନିଯୁକ୍ତ ଥାନ୍ତି । ତାଙ୍କୁ ବାର୍ଷିକ ମାତ୍ର ୨୫ ଟଙ୍କା ଦରମା ମିଳୁଥିଲା ।

ମୁରୁଦରେ ଦଣ୍ଡଙ୍କର ପ୍ରାଥମିକ ଶିକ୍ଷା ଏକ ସରକାରୀ ବିଦ୍ୟାଳୟରେ ହୋଇଥିଲା । ପରେ ଜଣେ ବ୍ୟକ୍ତି ଦଣ୍ଡଙ୍କୁ ଜଣାଇଲା ଯେ ବରୋଦାର ମହାରାଜା ଛାତ୍ରମାନଙ୍କୁ ୧୦ ଟଙ୍କା ଦକ୍ଷିଣା ପ୍ରଦାନ କରୁଛନ୍ତି । ଦଣ୍ଡ ଏବଂ ଭାଇ ଭିକୁ ତାଙ୍କ ମାଙ୍କ ପାଖକୁ ଯାଇ ଦକ୍ଷିଣା ଗ୍ରହଣ କରିବା ପାଇଁ ବରୋଦା ଯିବାକୁ ଅନୁମତି ଚାହିଁଲେ । କିନ୍ତୁ ତାଙ୍କର ମା ଦକ୍ଷିଣା ଉପରେ ନିର୍ଭର ନ କରି କଠିନ ଶ୍ରମ କରି ନିଜର ଜୀବିକା ନିର୍ବାହ କରିବା ପାଇଁ ଉପଦେଶ ଦେଇଥିଲେ । ସେ ପିଲାମାନଙ୍କୁ ସ୍ମରଣ କରାଇଦେଲେ ଯେ ଭଗବାନ ତାଙ୍କୁ  ଦୁଇଟି ହାତ ଦୁଇଟି ଗୋଡ଼ ଏବଂ ଯଥେଷ୍ଟ ବୁଦ୍ଧି ଦେଇଛନ୍ତି । ଏହାର ସଦ୍‌ବ୍ୟବହାର କରି ସତ୍ ଉପାୟରେ ଧନ ଅର୍ଜନ କରିବା ସେମାନଙ୍କର କର୍ତ୍ତବ୍ୟ । ଜୀବନରେ ଦଣ୍ଡ ଏହି ଆଦେଶାବଳୀକୁ କେବେବି ଭୁଲି ନ ଥିଲେ । ସେତେବେଳର ପ୍ରଥା ଅନୁସାରେ ଦଣ୍ଡ ମାତ୍ର ୧୨ ବର୍ଷ ବୟସରେ ରାଧାବାଈ ନାମ୍ନୀ କନ୍ୟାଙ୍କୁ ବିବାହ କରିଥିଲେ । ତେବେ ବିବାହ ଫଳରେ ତାଙ୍କର ପାଠପଢ଼ା ବ୍ୟାହତ ହୋଇନଥିଲା । ବରଂ ସେ ରାଧାବାଈଙ୍କୁ ମଧ ପଢ଼ିବା ଲେଖିବା ଶିକ୍ଷା ଦେଇଥିଲେ ।

୧୮୭୦ ମସିହାରେ ଦଣ୍ଡ ଚତୁର୍ଥ ଶ୍ରେଣୀ ପରୀକ୍ଷାରେ ପାସ୍ ହେଲେ । ସେତେବେଳକୁ ତାଙ୍କୁ ମାତ୍ର ୧୨ ବର୍ଷ ବୟସ । ୧୬, ୧୭ ବର୍ଷ ନ ହେବା ଯାଏଁ ସେ ଷଷ୍ଠ ଶ୍ରେଣୀ ପରୀକ୍ଷା ଦେଇପାରିନଥିଲେ । ତେଣୁ ଇତି ମଧ୍ୟରେ ସେ ଖଳିପତ୍ର ତିଆରି କରି କିଛି ଅର୍ଥ ଉପାର୍ଜନ କରିଥିଲେ । ତା ଛଡ଼ା ଜଣେ ଘରୋଇ ଶିକ୍ଷକ ଭାବେ ମଧ ସେ କାର୍ଯ୍ୟ କଲେ । ମିଷ୍ଟର ସୋମନ୍‌ଙ୍କ ଦ୍ୱାରା ଗ୍ରାମରେ ଥିବା ସମବାୟ ଭଣ୍ଡାରରେ କାର୍ଯ୍ୟକରି ପ୍ରତି ମାସ ସେ ୩ଟଙ୍କା ରୋଜଗାର କରୁଥିଲେ । ତେବେ ଦୁଃଖର କଥା ଅଧିକାଂଶ ଗରାଖ ବାକିରେ ଜିନିଷ କିଣୁଥିବାରୁ ଏହି ଭଣ୍ଡାରକୁ ପ୍ରଭୂତ କ୍ଷତି ସହିବାକୁ ପଡ଼ିଲା । ଏବଂ ବର୍ଷ ଶେଷ ବେଳକୁ ଭଣ୍ଡାର ବନ୍ଦ ହୋଇଗଲା । ଏଥିପାଇଁ ଦଣ୍ଡଙ୍କୁ ତାଙ୍କ ଅର୍ଜିତ ଅର୍ଥରୁ ୬ ଟଙ୍କା ଚାରି ଅଣା ପରିଶୋଧ କରିବାକୁ ପଡ଼ିଥିଲା । କିନ୍ତୁ ଏହି ଅଭିଜ୍ଞତାରୁ ସେ ଜନସାଧାରଣଙ୍କ ଅର୍ଥର ହିସାବ ରଖିବା ଶିକ୍ଷା କଲେ । ତାଙ୍କ ଶିକ୍ଷକ ଶ୍ରୀଯୁକ୍ତ ସୋମନ୍ ତାଙ୍କୁ ସଂସ୍କୃତ ଶିକ୍ଷା ଦେଲେ ତଥା ରାମାୟଣ, ମହାଭାରତ, ନାରୀବିଜୟ ଏବଂ ଗୁରୁଚରିତ୍ର ଆଦି ପୁସ୍ତକ ଅଧ୍ୟୟନ କରାଇଥିଲେ । ସେତେବେଳକୁ ସେ ସଂସ୍କୃତରେ ଅନେକ ଶ୍ଳୋକ ଏବଂ ଭଜନ ମୁଖସ୍ଥ କରିସାରିଥିଲେ ।

ଦଣ୍ଡ ଏବଂ ତାଙ୍କର ପାଞ୍ଚ ଜଣ ବନ୍ଧୁ ମୁରୁଦରୁ ସାତାରା ପର୍ଯ୍ୟନ୍ତ ପଦଯାତ୍ରା କରି ଷଷ୍ଠ ଶ୍ରେଣୀ ପରୀକ୍ଷା ଦେଇଥିଲେ । ଦଣ୍ଡ ଦେଖିବାକୁ ଖୁବ୍ କ୍ଷୀଣକାୟ ଏବଂ କମ୍

ଉଚ୍ଚତା ବିଶିଷ୍ଟ ଥିଲେ । ସେଠି ଥିବା ପରୀକ୍ଷା ପରିଚାଳକ ଦଣ୍ଡଙ୍କୁ ଅନ୍ୟୁନ ୧୫ ବର୍ଷ ହୋଇନଥାଇ ପାରେ ସନ୍ଦେହ କରି ତାଙ୍କୁ ପରୀକ୍ଷା ଦେବାକୁ ଅନୁମତି ଦେଲେ ନାହିଁ । ଏହି ଘଟଣାରେ ଦଣ୍ଡ ବିଚଳିତ ନ ହୋଇ ଆହୁରି କଠିନ ପରିଶ୍ରମ କଲେ ଏବଂ ୧୮୭୮ ମସିହାରେ କୋହ୍ଲାପୁରରେ ପରୀକ୍ଷା ଦେଇ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲେ ।

ଅଧିକ ପାଠପଢ଼ିବା ପାଇଁ ସେ ରତ୍ନଗିରି ଗଲେ । ଗଣିତ ତାଙ୍କର ପ୍ରିୟ ବିଷୟ ଥିଲା । ଦୁଃଖର କଥା ସେ ଅସୁସ୍ଥ ହୋଇପଡ଼ିବାରୁ ପାଠପଢ଼ା ବନ୍ଦ କରି ମୁରୁଦ ଫେରି ଆସିଲେ । ବମ୍ବେରେ ପାଠ ପଢ଼ିବା ପାଇଁ ତାଙ୍କୁ ଗୋଟେ ବୃତ୍ତିର ଆବଶ୍ୟକତା ଥିଲା । ସେ ଯେଉଁ ପ୍ରବନ୍ଧ ଲେଖିଥିଲେ ପ୍ରଫେସର ହ୍ୱାଟସନ ତାହା ଦଣ୍ଡ ପ୍ରକୃତରେ ଲେଖିଛନ୍ତି କି ନାହିଁ ସେଥିପାଇଁ ସନ୍ଦିହାନ ଥିଲେ । କାରଣ ଦଣ୍ଡଙ୍କ ପ୍ରତି ଈର୍ଷାନ୍ୱିତ କେତେକ ଛାତ୍ର ଦାମ୍‌ଲେ ନାମକ ଜଣେ ବନ୍ଧୁ ଲେଖିଛନ୍ତି ବୋଲି ଅଭିଯୋଗ କରିଥିଲେ । ଦଣ୍ଡ ପ୍ରକୃତରେ ସ୍ୱଭାବରେ ଖୁବ୍ ଲାଜକୁଳା ଥିଲେ । ତେଣୁ ଏ ଅଭିଯୋଗର ସେ ପ୍ରତିବାଦ କରିନଥିଲେ । ଶେଷରେ ପ୍ରଫେସର ହ୍ୱାଟସନ ଏହି ପ୍ରବନ୍ଧର କିଛି ବାକ୍ୟ ପୁନର୍ବାର ଲେଖିବା ପାଇଁ ଦଣ୍ଡଙ୍କୁ ନିର୍ଦ୍ଦେଶ ଦେଲେ । ତତ୍‌କ୍ଷଣାତ୍ ଦଣ୍ଡ ଏକ ଫର୍ଦ୍ଦ ପ୍ରବନ୍ଧ ଲେଖି ହ୍ୱାଟସନ୍‌ଙ୍କ ହାତକୁ ବଢ଼ାଇ ଦେଲେ । ତାଙ୍କ ହସ୍ତାକ୍ଷର, ଭାଷା ଏବଂ ଭାବ ଏତେ ସୁନ୍ଦର ଥିଲା ଯେ ପ୍ରଫେସର ହ୍ୱାଟସନ ସେଥିରେ ପ୍ରୀତ ହୋଇ ତାଙ୍କର ଆବଶ୍ୟକ ହେଉଥିବା ବୃତ୍ତି ତାଙ୍କୁ ତତ୍‌କ୍ଷଣାତ୍ ପ୍ରଦାନ କରିଥିଲେ ।

ଦଣ୍ଡ ତାଙ୍କର ମାଟ୍ରିକୁଲେସନ ପାଠ ପଢ଼ିଲା ବେଳେ ତାଙ୍କର ଖର୍ଚ୍ଚ ତୁଲାଇବା ପାଇଁ ଟ୍ୟୁସନ କରୁଥିଲେ ତା ସାଙ୍ଗକୁ ନିଜ ପାଠପାଇଁ କଠିନ ପରିଶ୍ରମ କରୁଥିଲେ । ୧୮୮୧ ମସିହାରେ ସେ ମାଟ୍ରିକ୍ ପାଶ୍ କରି ଉଇଲସନ୍ କଲେଜରେ ନାମ ଲେଖାଇଲେ । ପରେ ସେ ବମ୍ବେସ୍ଥିତ ଏଲ୍‌ଫିନ୍‌ଷ୍ଟନ କଲେଜରେ ନାମ ଲେଖାଇଲେ ଏବଂ ପାଠ ପଢ଼ିଲା ବେଳେ ଅନେକ ପୁରସ୍କାର ଜିତି ଥିଲେ । ଶେଷରେ ୧୮୮୪ ମସିହାରେ ସେ ସ୍ନାତକ ଡ଼ିଗ୍ରୀ ହାସଲ କଲେ । ଗଣିତ ତାଙ୍କର ମୁଖ୍ୟ ବିଷୟ ଥିଲା । ତପ୍ତରେ ସେ ତାଙ୍କର ଅନୁଷ୍ଠାନ ଏଲ୍‌ଫିନ୍‌ଷ୍ଟନ କଲେଜରେ ପାଠ ପଢ଼ାଇଲେ ଏବଂ ତାଙ୍କ ପରିବାରକୁ ବମ୍ବେ ସ୍ଥାନାନ୍ତରିତ କଲେ । ତାଙ୍କର ଅନ୍ୟାନ୍ୟ ସଂପର୍କୀୟ ଏବଂ ଯେଉଁ ଗରିବ ଛାତ୍ରମାନେ ଅଧ୍ୟୟନ କରିବା ପାଇଁ ବମ୍ବେରେ ଥିଲେ ସମସ୍ତେ ତାଙ୍କ ଘରେ ଅବସ୍ଥାନ କଲେ । ତେବେ ଏତେ ସବୁ ଲୋକଙ୍କର ଦାୟିତ୍ୱ ସମ୍ଭାଳି ସେମାନଙ୍କ ପାଇଁ ଘର କାମ ସଂପାଦନ କରିବା ରାଧାବାଈଙ୍କ ପକ୍ଷରେ କଷ୍ଟକର ହୋଇପଡ଼ିଲା ।

ଶେଷରେ ସେ ସାଂଘାତିକ ରୋଗରେ ପୀଡ଼ିତ ହେଲେ । ବିଶ୍ରାମ ନେବା ପାଇଁ ରାଧାବାଈଙ୍କୁ ଦଣ୍ଡ ମୁରୁଦ ପଠେଇ ଦେଲେ । କିନ୍ତୁ ସେ ଆରୋଗ୍ୟ ହୋଇପାରିଲେ ନାହିଁ । ୧୮୯୧ ମସିହାରେ ମୃତ୍ୟୁବରଣ କଲେ ।

ବିଦ୍ୟାଳୟରେ ଶିକ୍ଷାଦାନ କରିବା ସମୟରେ ସେ ପ୍ରତିମାସରେ ସେ ୫ ଟଙ୍କା କରି ସଞ୍ଚୟ କରୁଥିଲେ । ଏହି ସଂଚିତ ଅର୍ଥକୁ ସେ ଏକ ପାଣ୍ଠି କରି ଜମା ରଖୁଥିଲେ । ସେହି ପାଣ୍ଠିର ନାମ ଥିଲା ମରାଠା ୫% । ଏହି ପାଣ୍ଠିକୁ ଗରିବ ଛାତ୍ରମାନଙ୍କଗ ଉଚ୍ଚତର ଶିକ୍ଷା ପାଇଁ ସେ ବ୍ୟୟ କରୁଥିଲେ ।

ଆନ୍ନା ତାଙ୍କର ନିଜ ଗ୍ରାମ ମୁରୁଦର ଅଧିବାସୀମାନଙ୍କ ପାଇଁ ଏକ ପାଣ୍ଠିର ଆୟୋଜନ କଲେ । ଏହାର ନାମ ମୁରୁଦ ପାଣ୍ଠି ରଖାଗଲା । ଅନେକ ବ୍ୟକ୍ତି ତାଙ୍କ ଉପାର୍ଜନର ପ୍ରତି ଟଙ୍କାର ଏକ ପାହୁଲା (ଏକ ଟଙ୍କାର ୧/୧୯୨ ଅଂଶ) ଦାନ କରୁଥିଲେ । ଶେଷରେ ଏକ ବିରାଟ ପାଣ୍ଠି ସଂଗୃହୀତ ହେଲା । ଏହି ପାଣ୍ଠି ବିଭିନ୍ନ ଜଳସେଚନ ଯୋଜନା, ରାସ୍ତା ନିର୍ମାଣ ଏବଂ ମୁରୁଦରେ ଏକ ସ୍କୁଲ୍ ପ୍ରତିଷ୍ଠା ପାଇଁ ବ୍ୟୟ କରାଗଲା । ସେ ଅନ୍ୟ ଏକ ସଂଗଠନ ସ୍ନେହ ବର୍ଦ୍ଧକ ମଣ୍ଡଳ ପ୍ରତିଷ୍ଠା କଲେ । ଏବଂ ମୁରୁଦରେ ସାମାଜିକ ସେବାର ଭିତ୍ତି ପ୍ରସ୍ତର ସ୍ଥାପନ କଲେ । ୧୮୯୧ ମସିହାରେ କାର୍ବେଙ୍କୁ ପୁନେ ସ୍ଥିତ ଫେରଗୁସନ୍ କଲେଜର ଗଣିତ ପ୍ରଫେସର ଭାବେ ନିଯୁକ୍ତି ମିଳିଲା ।

ସେ ସମୟରେ ବିଧବା ମାନଙ୍କ ଅବସ୍ଥା ଅତି ଦୟନୀୟ ଥିଲା । ସେମାନଙ୍କୁ ସମାଜରେ ଏକ ରକମ ବାସନ୍ଦ କରି ରଖାଯାଉଥିଲା । ଉତ୍ତମ ଖାଦ୍ୟ ଏବଂ ଉତ୍ତମ ବସ୍ତ୍ର ସେମାନଙ୍କୁ ବାରଣ ହେଉଥିଲା । ସେମାନେ ଚଟାଣ ଉପରେ ଶୋଉଥିଲେ ଏବଂ ପରିବାରର ଅନ୍ୟମାନେ ଛାଡ଼ି ଯାଇଥିବା ଖାଦ୍ୟ ସେମାନଙ୍କୁ ଦିଆଯାଉଥିଲା । ସେମାନଙ୍କୁ ଲଣ୍ଡା କରି ଦିଆଯାଉଥିଲା । ତେଣୁ ବିଧବା ହେବାକୁ ଏକ ଅଭିଶାପ ବୋଲି ମନେ କରାଯାଉଥିଲା । ଦିନେ ତାଙ୍କର ବନ୍ଧୁଙ୍କର ଭଉଣୀଙ୍କୁ ଲଣ୍ଡା କରାଯାଉଥିବା ସେ ଦେଖିବାକୁ ପାଇଲେ । ଏହି ଦୃଶ୍ୟ ତାଙ୍କର ହୃଦୟକୁ ମର୍ଛିତ କଲା । ସେ ବିଧବା ମାନଙ୍କ ଅବସ୍ଥାରେ ଉନ୍ନତି ଆଣିବା ପାଇଁ ମନସ୍ଥ କଲେ । ରାଧାବାଈଙ୍କର ମୃତ୍ୟୁ ପରେ ପୁର୍ନବିବାହ କରିବା ପାଇଁ ତାଙ୍କର ବନ୍ଧୁ ପରିଜନ ଆନ୍ନାଙ୍କୁ ପ୍ରବର୍ତ୍ତାଇଲେ । ୧୮୯୩ ମସିହାରେ ଯେତେବେଳେ ସେ ତାଙ୍କ ବନ୍ଧୁଙ୍କର ବିଧବା ଭଉଣୀକୁ ବିବାହ କରିବା ପାଇଁ ମନସ୍ଥ କଲେ ଏହା ସମସ୍ତଙ୍କୁ ଚକିତ କରିଦେଇଥିଲା । ସେ ପୁର୍ନବିବାହ କରିଥିବା ମହିଳାଙ୍କ ନାମ ଗୋଦାବରୀ ଥିଲା । ତାଙ୍କ ନାମ ପରିବର୍ତ୍ତନ କରି ଆନ୍ନା ଆନନ୍ଦି ରଖିଲେ । ଏହି ଘଟଣା ସମାଜରେ

ଏକ ଝଡ଼ ସୃଷ୍ଟି କଲା ଏବଂ ଆନ୍ନାଙ୍କୁ ସମାଜରେ ବାସନ୍ଦ କରାଗଲା । କାର୍ବେଙ୍କର ଏହି କାର୍ଯ୍ୟକୁ ସମାଜର ଚତୁର୍ଦ୍ଦିଗରେ କଟୁ ସମାଲୋଚନା କରାଗଲା । ସାମାଜିକ ଚାପ ଏତେ ପ୍ରବଳ ଥିଲା ଯେ ମୁରୁଡ ଆସି



ତାଙ୍କର ମା ଏବଂ ଭାଇଙ୍କୁ ସାକ୍ଷାତ କରିବା ପାଇଁ ତାଙ୍କୁ ଅନୁମତି ଦିଆଗଲା ନାହିଁ ।

ଆନ୍ନା ମହିଳା ମାନଙ୍କୁ ଶିକ୍ଷିତା କରାଇବା ଏବଂ ତାଙ୍କର ଅବସ୍ଥାରେ ଉନ୍ନତି ଆଣିବା ପାଇଁ ମନସ୍ଥ କଲେ । ସେ 'ବିଧବା ବିବାହ ସମିତି' ନାମକ ଏକ ସଂସ୍ଥା ଗଠନ କଲେ । ମହାରାଷ୍ଟ୍ରର ସବୁ ଅଞ୍ଚଳ ଗସ୍ତକରି ବିଧବା ପୁର୍ନବିବାହ ବାର୍ତ୍ତାର ପ୍ରଚାର କଲେ । 'ଅନନ୍ତ ବାଳିକାଶ୍ରମ' ନାମକ ଏକ ଆଶ୍ରମ ଗଠନ କରି ତହିଁରେ ନିରାଶ୍ରୟା ବାଳିକା ଏବଂ ମହିଳାମାନଙ୍କୁ ଆଶ୍ରୟ ଦେଲେ । ସାରା ରାଜ୍ୟ ଭ୍ରମଣ କରି ଏହି ଆଶ୍ରମ ପାଇଁ ପାଣ୍ଠି ସଂଗ୍ରହ କଲେ । ୧୮୯୬ରେ ଡ଼କ୍ଟର ରାମକୃଷ୍ଣ ଭଣ୍ଡାରକର ନାମକ ପ୍ରସିଦ୍ଧ ଭାରତୀୟ ତତ୍ତ୍ୱବିଦ୍ ଏହି ଆଶ୍ରମର ସଭାପତି ହେଲେ । ପୁନେ ସ୍ଥିତ ଗୋରୋଓ୍ୱାଡା ଠାରେ ସେ ଅନ୍ୟ ଏକ ବାଳିକାଶ୍ରମ ପ୍ରତିଷ୍ଠା କଲେ । ପ୍ରଥମେ ମାତ୍ର ଜଣେ ବିଧବା ଏହାର ସଭ୍ୟା ଥିଲେ । ପରବର୍ତ୍ତୀ ସମୟରେ ଏହି ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଲା । ତେଣୁ ପରେ ହିଙ୍ଗନେ ବା କାର୍ଭେନଗରକୁ ଏହା ସ୍ଥାନାନ୍ତରିତ କରାଯାଇଥିଲା । ଏହି ସ୍ଥାନ ପୁନେ ସହରଠାରୁ ମାତ୍ର ୧୦ କିଲୋମିଟର ଦୂରରେ ଅବସ୍ଥିତ । ସେତେବେଳେ ଉପଯୁକ୍ତ ରାସ୍ତା ନ ଥିଲା । ପ୍ରତିଦିନ ସକାଳେ ସେ ହିଙ୍ଗନେ ଠାରୁ ଫେରଗୁସନ୍ କଲେଜକୁ ପାଦରେ ଚାଲି ଚାଲି ଯାଆନ୍ତି ଏବଂ ଅପରାହ୍ନରେ ସେ ପାଣ୍ଠି ସଂଗ୍ରହ ପାଇଁ ବାହାରି ପଡ଼ନ୍ତି । ପାଣ୍ଠି ସଂଗ୍ରହ କରି ପୁନର୍ବାର ହିଙ୍ଗନେକୁ ସନ୍ଧ୍ୟା ବେଳେ ବାହୁଡ଼ି ଆସୁଥିଲେ ।

ସମୟ କ୍ରମେ ଲୋକମାନେ କାର୍ଭେଙ୍କ କାର୍ଯ୍ୟର ପ୍ରଶଂସା କଲେ ଏବଂ ମହିଳାମାନଙ୍କୁ ଶିକ୍ଷିତା କରାଇବାର ଆବଶ୍ୟକତା ହୃଦୟଙ୍ଗମ କଲେ । ପ୍ରଭାବତୀ ଆଠବେଲେ, କାଶୀବାଈ ଦିଓଧର ଏବଂ ଭେନୁତାଇ ନାମଯୋଶୀଙ୍କ ପରି ମହିଳାମାନେ ଏହି ଆଶ୍ରମ ପରିଚାଳନାରେ ସହଯୋଗୀ ହେଲେ । ମହାତ୍ମାଗାନ୍ଧି,

ମହର୍ଷି ଅରବିନ୍ଦ, ଶ୍ରୀନିବାସ ଶାସ୍ତ୍ରୀ, ବରୋଦାର ମହାରାଜା ସୟାଜୀ ରାଓ ଆଶ୍ରମ ପରିଦର୍ଶନରେ ଆସି ଖୁବ୍ ପ୍ରଭାବିତ ହୋଇଥିଲେ ।

୧୯୦୭ ମସିହାରେ କାର୍ବେ ପୁନେ ସହରର ନାରାୟଣ ପେଠ ଠାରେ ଏକ ଆବାସିକ ବିଦ୍ୟାଳୟ ଆରମ୍ଭ କଲେ । ପରେ ସେ ଆଶ୍ରମ ନିକଟରେ ଜମି କିଣି ସେଠାରେ ଏହି ବିଦ୍ୟାଳୟ ପ୍ରତିଷ୍ଠା କଲେ । ଶିକ୍ଷିତା ମହିଳାମାନଙ୍କ ମଧ୍ୟରୁ କେତେକଙ୍କୁ ଶିକ୍ଷକତାର ତାଲିମ ଦିଆଗଲା । ଏହିମାନଙ୍କ ହାତରେ ବିଦ୍ୟାଳୟ ଏବଂ ଆଶ୍ରମର ପରିଚାଳନା ଦାୟିତ୍ୱ ନ୍ୟସ୍ତ କରାଗଲା । ୧୯୧୪ ମସିହାରେ କାର୍ବେ ପେରଗୁସନ୍ କଲେଜରୁ ଅବ୍ୟାହତି ନେଲେ ଏବଂ ଆଶ୍ରମ ପରିଚାଳନାରେ ତାଙ୍କର ସମସ୍ତ ସମୟ ନିୟୋଜିତ କଲେ । ୧୯୧୦ ମସିହାରେ ସେ ନିଷ୍କାମ କର୍ମ ମଠ ନାମକ ମଠ ପ୍ରତିଷ୍ଠା କଲେ । ଭାଗବତ ଗୀତାରେ ଦିଆଯାଇଥିବା ନିଷ୍କାମ ସେବା ଅନୁସାରେ ସେଠାରେ ଥିବା ସ୍ୱେଚ୍ଛାସେବୀମାନେ ବିନା ଦରମାରେ ସେଠାରେ କାର୍ଯ୍ୟରତ ହେଲେ ।

ଦିନେ ଆନ୍ନା କାର୍ବେ ଜାପାନରେ ଥିବା ଏକ ମହିଳା ବିଶ୍ୱବିଦ୍ୟାଳୟ ବିଷୟରେ ଗୋଟିଏ ଚିଠା ପାଇଥିଲେ । ସେ ତାଙ୍କର ସହକର୍ମୀମାନଙ୍କ ସହିତ ଏକ ମହିଳା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ବିଷୟରେ ଆଲୋଚନା କଲେ । ୧୯୧୫ ମସିହାରେ ବମ୍ବେଠାରେ ରାଷ୍ଟ୍ରୀୟ ସାମାଜିକ ପରିଷଦରେ ସଭାପତିତ୍ୱ କରିବା ପାଇଁ ସେ ନିମନ୍ତ୍ରିତ ହେଲେ । ତାଙ୍କ ଭାଷଣରେ ସେ ଏକ ମହିଳା ବିଶ୍ୱବିଦ୍ୟାଳୟ କଥା ଉଲ୍ଲେଖ କରିଥିଲେ । ଏବଂ ଫଳସ୍ୱରୂପ ଭାରତର ପ୍ରଥମ ମହିଳା ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲା । ଡ଼କ୍ଟର ଭଣ୍ଡାରକର ତାର ପ୍ରଥମ ଉପକୁଳପତି ଏବଂ ଆନ୍ନା ତାର ପ୍ରଥମ ଅଧ୍ୟକ୍ଷ ହୋଇଥିଲେ । ସାର୍ ଥାକର୍ସି ଆନ୍ନାଙ୍କର ଏହି ବିରାଟ ନିସ୍ୱାର୍ଥପର ଉଦ୍ୟମର ଭୂୟସୀ ପ୍ରଶଂସା କରି ମହାବିଦ୍ୟାଳୟର ଗୃହ ନିର୍ମାଣ ପାଇଁ ବିପୁଳ ଅର୍ଥ ଦାନ କରିଥିଲେ । ତା ପରଠାରୁ ଏହି ବିଶ୍ୱବିଦ୍ୟାଳୟ ଶ୍ରୀମତୀ ନାଥୀବାଈ ଦାମୋଦର ଥାକର୍ସି ବିଶ୍ୱବିଦ୍ୟାଳୟ ନାମରେ ନାମିତ ହୋଇଥିଲା । ଏହାର ଶାଖା ଗୁଡ଼ିକ ବମ୍ବେ, ସତାରା, ସାଙ୍ଗଲୀ, ଦେଓଗାଓଁ, ବରୋଦା ଏବଂ ସୁରତଠାରେ ସ୍ଥାପିତ ହୋଇଛି । ୧୯୪୯ ମସିହାରେ ସରକାର ଏହି ବିଶ୍ୱବିଦ୍ୟାଳୟକୁ ସ୍ୱୀକୃତି ଦେଲେ ।

୧୯୨୯ ମସିହାରେ ଆନ୍ନା ଜେନେଭା ଠାରେ ବିଶ୍ୱଶିକ୍ଷକ ସଂଗଠନରେ ଯୋଗ ଦେଇଥିଲେ । ତା ପରେ ସେ ଇଂଲଣ୍ଡ, ଜର୍ମାନୀ, ହଲାଣ୍ଡ, ସୁଇଜରଲ୍ୟାଣ୍ଡ,

ନରୱେ ଏବଂ ଡ଼େନମାର୍କ ଆଦି ଦେଶ ପରିଦର୍ଶନ କରିଥିଲେ । ତାଙ୍କୁ ବିଦେଶରେ ଅନେକ ସ୍ଥାନରେ ଭାଷଣ ଦେବାପାଇଁ ଅନୁରୋଧ କରାଯାଇଥିଲା । ସେ ଆମେରିକା ଏବଂ ଜାପାନ କମଳା ବାଈ ଦେଶପାଣ୍ଡେଙ୍କ ସହିତ ଭ୍ରମଣ କରିଥିଲେ । ସେ କୌଣସି ପାର୍ଟି ଏବଂ ମହୋତ୍ସବକୁ ନ ଯାଇ ବିଭିନ୍ନ ମହିଳା ମହାବିଦ୍ୟାଳୟ ଏବଂ ମହିଳା ହଷ୍ଟେଲ ପରିଦର୍ଶନ କରିଥିଲେ । ତାର ପରବର୍ଷ ସେ ସସ୍ତ୍ରୀକ ଆଫ୍ରିକା ଭ୍ରମଣ କରିଥିଲେ । ୧୯୪୨ ମସିହାରେ ବନାରସ ହିନ୍ଦୁ ୟୁନିଭରସିଟି ତାଙ୍କୁ ଡ଼କ୍ଟରେଟ ଅଫ ଲିଟିରେଚରର ସର୍ବୋଚ୍ଚ ଡ଼ିଗ୍ରୀ ପ୍ରଦାନ କରିଥିଲେ । ୧୯୫୫ ମସିହାରେ ତାଙ୍କୁ ପଦ୍ମ ବିଭୂଷଣ ସମ୍ମାନରେ ଭାରତ ସରକାର ଭୂଷିତ କରିଥିଲେ । ବମ୍ବେ ଏବଂ ପୁନେ ବିଶ୍ୱବିଦ୍ୟାଳୟ ତାଙ୍କର ସାମାଜିକ କାର୍ଯ୍ୟର ଭୂୟସୀ ପ୍ରଶଂସା କରିଛନ୍ତି । ତାଙ୍କର ଶତତମ ଜନ୍ମ ବାର୍ଷିକୀ ଦିନ ୧୯୫୮ ମସିହାରେ ତାଙ୍କୁ ଭାରତ ରତ୍ନ ସମ୍ମାନରେ ଭୂଷିତ କରାଗଲା । ମହାରାଷ୍ଟ୍ର ରାଜ୍ୟର ଅଧିବାସୀ ଭାବେ ସେ ପ୍ରଥମ ଥର ପାଇଁ ଭାରତରତ୍ନ ପୁରସ୍କାର ପାଇଲେ । ୧୯୬୨ ମସିହା ନଭେମ୍ବର ୧୪ ତାରିଖ ଦିନ ୧୦୪ ବର୍ଷର ଜୀବନ ଅତିବାହିତ କରିବା ପରେ ତାଙ୍କର ମହାପ୍ରୟାଣ ହେଲା । ମହିଳାମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର, ଅବହେଳିତ ଏବଂ ଦଳିତ ନିରାଶ୍ରୟା ତଥା ବିଧବା ମାନଙ୍କର ସାମାଜିକ ସ୍ଥିତିରେ ଉନ୍ନତି ଆଣିବା ଏବଂ ସେମାନଙ୍କୁ ସମାଜରେ ପ୍ରତିଷ୍ଠିତ କରାଇବାରେ ତାଙ୍କର ଭୂମିକା ପାଇଁ ସେ ଚିର ସ୍ମରଣୀୟ ହୋଇ ରହିଛନ୍ତି ।

***

# ଡକ୍ଟର ବିଧାନ ଚନ୍ଦ୍ର ରାୟ



୧୮୮୨-୧୯୬୨

ଭାରତରତ୍ନ - ୧୯୬୧

**ଡ**କ୍ଟର ବିଧାନ ଚନ୍ଦ୍ର ରାୟଙ୍କୁ ଆଧୁନିକ ପଶ୍ଚିମବଙ୍ଗର ନିର୍ମାତା ଓ କର୍ଣ୍ଣଧାର ବୋଲି କୁହାଯାଏ । ଡକ୍ଟର ରାୟ ପେଶାରେ ଜଣେ ଡାକ୍ତର ଥିଲେ କିନ୍ତୁ ରାଜନୀତି ଓ ସମାଜସେବା ପାଇଁ ସେ ସୁପରିଚିତ ଥିଲେ । ଡାକ୍ତରୀ ବିଦ୍ୟାରେ ମଧ୍ୟ ତାଙ୍କର ବିଚକ୍ଷଣତା ଅଭୂତପୂର୍ବ ଥିଲା । ଅନେକ ସମୟରେ କୁହାଯାଏ ଯେ, ସେ ଏଭଳି ଡାକ୍ତର ଥିଲେ ଯେ ଯମ ହାତରୁ ବି ରୋଗୀକୁ ଛଡ଼ାଇ ଆଣନ୍ତି ।

ଡକ୍ଟର ରାୟ ୧୮୮୨ ମସିହା ଜୁଲାଇ ୧ ତାରିଖ ଦିନ ବିହାରର ପାଟନାଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ପ୍ରକାଶ ଚନ୍ଦ୍ର ରାୟ ସରକାରଙ୍କ ଅଧୀନରେ ଜଣେ ଅବକାରୀ ଇନ୍ସପେକ୍ଟର ଭାବେ କାର୍ଯ୍ୟରତ ଥିଲେ । ଡ଼କ୍ଟର ରାୟ

ତାଙ୍କର ପାଞ୍ଚ ଭାଇଙ୍କ ମଧ୍ୟରେ କନିଷ୍ଠତମ ଥିଲେ । ଅତି ଅଳ୍ପ ବୟସ ମଧ୍ୟରେ ତାଙ୍କ ମାତାଙ୍କର ମୃତ୍ୟୁ ହୋଇଥିଲା । ଫଳରେ ତାଙ୍କର ପିତା ସମସ୍ତ ପୁତ୍ରଙ୍କୁ ଏକାକୀ ଲାଳନ ପାଳନ କରିଥିଲେ । ବିଧାନ ଚନ୍ଦ୍ର ପାଟନାରେ ସ୍କୁଲ ଏବଂ ବି.ଏ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ଗଣିତ ଶାସ୍ତ୍ରରେ ସମ୍ମାନ ସହ ସେ ବି.ଏ ଉତ୍ତୀର୍ଣ୍ଣ ହେଲେ । କିନ୍ତୁ ଜଣେ ଡ଼ାକ୍ତର ହେବା ପାଇଁ ତାଙ୍କର ପ୍ରବଳ ଇଚ୍ଛା ଥିଲା । କଲିକତା ମେଡ଼ିକାଲ କଲେଜର ପ୍ରିନ୍ସପାଲ୍ କର୍ଣ୍ଣେଲ ଲ୍ୟୁପସ୍‌ଙ୍କୁ ସାକ୍ଷାତ କରି ସେ ତାଙ୍କର ଇଚ୍ଛା ପ୍ରକାଶ କଲେ । କର୍ଣ୍ଣେଲ ଲ୍ୟୁପସ୍ ତାଙ୍କୁ ସାହାଯ୍ୟ କଲେ ଏବଂ ସେ କଲିକତା ମେଡ଼ିକାଲ କଲେଜରେ ନାମ ଲେଖାଇବାକୁ ସକ୍ଷମ ହେଲେ । ବିଧାନ ଚନ୍ଦ୍ର ସ୍କୁଲରେ ପଢ଼ିଲା ବେଳେ ଜଣେ ସାଧାରଣ ଛାତ୍ର ଥିଲେ । କିନ୍ତୁ ମେଡ଼ିକାଲ କଲେଜରେ କଠିନ ପରିଶ୍ରମ କରିବା ଫଳରେ ତାଙ୍କ ପ୍ରତିଭାର ଉନ୍ମେଷ ହେବାରେ ଲାଗିଲା ।

ତାଙ୍କର କଠିନ ପରିଶ୍ରମର ଫଳ ପ୍ରାପ୍ତି ହେଲା । ପ୍ରଥମେ ସେ ଏମ୍.ଏ ଏବଂ ପରେ ସେ ଏମ୍.ଡ଼ି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ୧୯୦୯ ମସିହାରେ ସେ ଲଣ୍ଡନସ୍ଥିତ ବାର୍ଥୋଲମେଣ୍ଟ ନ୍ୟୁ ଅନୁଷ୍ଠାନରୁ ଦୁଇ ବର୍ଷ ମଧ୍ୟରେ ଏମ୍.ଆର୍.ସି.ପି ଏବଂ ଏଫ୍.ଆର୍.ସି.ଏସ୍ ଉଭୟ ଡ଼ିଗ୍ରୀ ହାସଲ କରିଥିଲେ । ପାଠ ପଢ଼ିବା ପାଇଁ ଆବଶ୍ୟକ ଅର୍ଥ ଯୋଗାଡ଼ ପାଇଁ ସେ ଅନେକ ସ୍ଥାନରେ ଚାକିରୀ କରି ଅର୍ଥ ଯୋଗାଡ଼ କରିଥିଲେ ଏବଂ କଠିନ ଶ୍ରମ ଏବଂ ଅଧ୍ୟବସାୟ ଫଳରେ ତାଙ୍କର ଜୀବନର ଲକ୍ଷ୍ୟ ପୂରଣ ସମ୍ଭବପର ହୋଇଥିଲା ।

୧୯୧୧ ମସିହାରେ ବିଧାନ ଚନ୍ଦ୍ର ରାୟ ଭାରତ ଫେରି ଆସିଲେ ଏବଂ କଲିକତା ମେଡ଼ିକାଲ କଲେଜରେ ଅଧ୍ୟାପକ ଭାବରେ ଯୋଗଦେଲେ । ପରେ ସେ ସ୍ୱାଧୀନ ଭାବେ ଡାକ୍ତରୀ ବ୍ୟବସାୟ ଆରମ୍ଭ କଲେ । ଆମ ଦେଶରେ ମେଡ଼ିକାଲ ପାଠ୍ୟକ୍ରମକୁ ସୁସଂଯୋଜିତ କରିବାରେ ତାଙ୍କର ଉଦ୍ୟମ ପ୍ରଶଂସନୀୟ । ସାଧାରଣ ଜନତାର ସ୍ୱାସ୍ଥ୍ୟ ସେବା ପାଇଁ ସେ ଯାଦବପୁର ସିଟି ହସ୍‌ପିଟାଲ, ଚିତ୍ତରଞ୍ଜନ ସେବାସଦନ, କମଳା ନେହେରୁ କଲେଜ, ଭିକ୍ଟୋରିଆ ଇନ୍‌ଷ୍ଟିଚ୍ୟୁସନ୍ ଏବଂ ଚିତ୍ତରଞ୍ଜନ କ୍ୟାନସର ହସ୍‌ପିଟାଲ ଭଳି ଅନେକ ଅନୁଷ୍ଠାନ ପ୍ରତିଷ୍ଠା କରାଇଛନ୍ତି । ଶିଶୁ ଏବଂ ମହିଳାମାନଙ୍କ ପାଇଁ ଚିତ୍ତରଞ୍ଜନ ସେବାସଦନ ୧୯୨୬ ମସିହାରେ ପ୍ରତିଷ୍ଠିତ ହେଲା । ଏହା ସବୁ ଶ୍ରେଣୀ ଏବଂ ବର୍ଗଙ୍କ ପାଇଁ ଏକ ଚିକିତ୍ସାଳୟ ରୂପେ ଅନୁମୋଦିତ ହେଲା । ତା ପରେ ମହିଳାମାନେ କିପରି ନର୍ସିଂ ସେବା ଏବଂ ସାମାଜିକ କାର୍ଯ୍ୟରେ ତାଲିମ

ପାଇପାରିବେ ସେଥିପାଇଁ ସେ ଏକ କେନ୍ଦ୍ର ପ୍ରତିଷ୍ଠା କଲେ । ୧୯୨୨ ମସିହାରୁ ୧୯୨୯ ମସିହା ପର୍ଯ୍ୟନ୍ତ ଡ଼କ୍ଟର ବିଧାନ ଚନ୍ଦ୍ର ରାୟ କଲିକତା ମେଡ଼ିକାଲ ଜର୍ଣ୍ଣାଲର ସଂପାଦକ ଥିଲେ । ସର୍ବଭାରତୀୟ ମେଡ଼ିକାଲ ଅଧିବେଶନରେ ୧୯୨୯ ମସିହାରେ ସେ ସଭାପତି ହୋଇଥିଲେ । କଲିକତା ବିଶ୍ୱବିଦ୍ୟାଳୟର ଜଣେ ଫେଲୋ ଭାବେ ତାଙ୍କୁ ୧୯୧୬ ମସିହାରେ ନିର୍ବାଚିତ କରାଯାଇଥିଲା ଏବଂ ଶେଷ ପର୍ଯ୍ୟନ୍ତ କଲିକତା ବିଶ୍ୱବିଦ୍ୟାଳୟରେ ଫେଲୋ ହୋଇ ରହିଥିଲେ । ୧୯୪୨ ମସିହାରେ ସେ ଶିକ୍ଷାର ଜାତୀୟ କାଉନ୍‌ସିଲ୍‌ର ସଭାପତି ପଦରେ ଅଧିଷ୍ଠିତ ହେଲେ । ତାଙ୍କରି ପ୍ରଚେଷ୍ଟାରେ ଖଡ଼ଗପୁରରେ ଆଇ.ଆଇ.ଟି ଅନୁଷ୍ଠାନ ପ୍ରତିଷ୍ଠା ହୋଇଥିଲା । ସେ ରବୀନ୍ଦ୍ର ନାଥ ଠାକୁରଙ୍କର ଜନ୍ମ ଶତବାର୍ଷିକୀ ବର୍ଷରେ ରବୀନ୍ଦ୍ର ଭାରତୀ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଇ ଥିଲେ ।

ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟରେ ସମାବର୍ତ୍ତନ ଉତ୍ସବରେ ଅଭିଭାଷଣ ଦେଇ ୧୯୧୬ ମସିହାରେ ଡ଼କ୍ଟର ରାୟ ଛାତ୍ରମାନଙ୍କୁ ସମ୍ବୋଧନ କରି କହିଲେ 'ମୋର ଯୁବ ବନ୍ଧୁଗଣ, ସ୍ୱାଧୀନତା ସଂଗ୍ରାମରେ ଆପଣମାନେ ସୈନିକ । ଏହି ସ୍ୱାଧୀନତା ସଂଗ୍ରାମ ଅଭାବ, ଭୟ, ମୂର୍ଖତା, ଶିକ୍ଷାହୀନତା, ବିଫଳତା, ଅସହାୟତା ବିରୁଦ୍ଧରେ କଠିନ ଶ୍ରମ ଦ୍ୱାରା ହିଁ ସମ୍ଭବପର ହୋଇପାରିବ । ଏହା ଆପଣଙ୍କୁ ଆଶା ଏବଂ ସାହାସର ସହିତ କରିବାକୁ ହେବ । ମନେ ରଖନ୍ତୁ, ଏଇ ଚଳଚଞ୍ଚଳ ପୃଥିବୀରେ ଆପଣଙ୍କୁ ଆଗକୁ ଯିବାକୁ ପଡ଼ିବ । ନଚେତ୍ ଆପଣ ଅନ୍ୟମାନଙ୍କ ଠାରୁ ପଛରେ ରହିଯିବେ ।' ୧୯୧୩ ମସିହା ଡ଼ିସେମ୍ବର ୨୮ ତାରିଖ ଦିନ ସେ ଛାତ୍ରଛାତ୍ରୀମାନଙ୍କୁ କହିଥିଲେ ଯେ, ସେମାନେ ନିଜ ପାଇଁ ଚିନ୍ତା କରିବା ଦରକାର । ସେମାନଙ୍କ ସମସ୍ୟାର ସମାଧାନ ପାଇଁ ସେମାନେ ନିଜେ ସମାଧାନର ବାଟ ଖୋଜି ବାହାର କରିବା ଆବଶ୍ୟକ । 'ସମସ୍ୟା ଅଛି, ସମସ୍ୟା ସବୁବେଳେ ରହିଥିବ । ବରଂ ମୁଁ ଖୁସି ଯେ ସମସ୍ୟା ରହିଛି ଏବଂ ସମସ୍ୟା ଥିବା ଯୋଗୁଁ ହିଁ ଆମର ବିକାଶ ହୋଇଛି । ଆମର ବୁଦ୍ଧି କାର୍ଯ୍ୟକାରୀ ହୋଇଛି । ନିଜର ବୁଦ୍ଧି ଏବଂ ଜ୍ଞାନକୁ ଠିକ୍ ମାର୍ଗରେ ପରିଚାଳନା କଲେ ସମସ୍ୟାର ସମାଧାନ ହୋଇପାରେ ।'

ଡ଼କ୍ଟର ବିଧାନ ଚନ୍ଦ୍ର ରାୟ ରାଜନୀତିକୁ ଖୁବ୍ କମ୍ ବୟସରେ ଆକର୍ଷିତ ହୋଇଥିଲେ । ସେ ୧୯୨୩ ମସିହାରେ ଜଣେ ଯୁବ ଡ଼ାକ୍ତର ଭାବେ ସାର୍ ସୁରେନ୍ଦ୍ର ନାଥ ବାନାର୍ଜୀଙ୍କ ବିରୁଦ୍ଧରେ ଜଣେ ସ୍ୱାଧୀନ ପ୍ରାର୍ଥୀ ଭାବେ ନିର୍ବାଚନ ଲଢ଼ିଥିଲେ । ସେତେବେଳେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ସ୍ୱରାଜ ପାର୍ଟି ସମର୍ଥନ ଜଣାଇଥିଲା । ଆଶ୍ଚର୍ଯ୍ୟର କଥା ସେ ବାନାର୍ଜୀଙ୍କ ପରି ଜଣେ ପ୍ରବୀଣ ରାଜନୀତିଜ୍ଞଙ୍କୁ ନିର୍ବାଚନରେ

ହରାଇ ପାରିଲେ । ତତ୍ପରେ ସେ ସ୍ୱରାଜ ପାର୍ଟିରେ ଯୋଗଦେଲେ ଏବଂ ଦେଶବନ୍ଧୁଙ୍କର ଦକ୍ଷିଣ ହସ୍ତଭାବେ କାର୍ଯ୍ୟ କଲେ ।



୧୯୨୮ ମସିହାରେ ଡ଼କ୍ଟର ରାୟ ସର୍ବଭାରତୀୟ କଂଗ୍ରେସ କମିଟିର ଏକ ସଭ୍ୟ ଭାବେ ନିର୍ବାଚିତ ହେଲେ । ମହାତ୍ମା ଗାନ୍ଧୀ, ମୋତିଲାଲ ନେହେରୁ, ପଣ୍ଡିତ ଜବାହାରଲାଲ ନେହେରୁ ଏବଂ ଅନ୍ୟ ଅନେକ ରାଜନୈତିକ ନେତୃବର୍ଗଙ୍କ ଘନିଷ୍ଠ ସଂସ୍ପର୍ଶରେ ଆସିଲେ । ୧୯୩୦ ମସିହାରେ ସେ କଲିକତା କର୍ପୋରେସନରେ ଜଣେ ଆଲ୍‌ଡ଼ରମ୍ୟାନ୍ ଭାବେ ପ୍ରବେଶ କଲେ । ତେବେ ସେ ୧୯୩୦ ମସିହାରେ ହୋଇଥିବା ଆନ୍ଦୋଳନରେ ଭାଗ ନେଇ ସେ ତାଙ୍କ ପଦବୀରୁ ଇସ୍ତଫା ଦେଇଥିଲେ ।

ଡ଼କ୍ଟର ବିଧାନ ଚନ୍ଦ୍ର ରାୟ କେବଳ ଯେ ଜଣେ ବିଚକ୍ଷଣ ରାଜନୀତିଜ୍ଞ ଥିଲେ ତାହା ନୁହେଁ ସେ ଜଣେ କୃତବିଦ୍ୟ ଡ଼ାକ୍ତର ଭାବେ ପ୍ରସିଦ୍ଧି ଅର୍ଜନ କରିଥିଲେ । ଯେପରି ସେ ଜାତିର ନାଡ଼ି ପରୀକ୍ଷାରେ ସଫଳ ହୋଇଥିଲେ ସେହିପରି ରୋଗୀର ନାଡ଼ି ପରୀକ୍ଷା ମଧ୍ୟ ତାଙ୍କ ପାଇଁ ପ୍ରସିଦ୍ଧି ଆଣିଥିଲା । ତାଙ୍କର ରୋଗ ନିରୂପଣ ସର୍ବଦା ସଠିକ୍ ଥିଲା । ସେତେବେଳର ସମସ୍ତ ତୁଙ୍ଗନେତାମାନେ ଡ଼କ୍ଟର ରାୟଙ୍କ ସହିତ ତାଙ୍କର ସ୍ୱାସ୍ଥ୍ୟ ବିଷୟରେ ପରାମର୍ଶ କରୁଥିଲେ । ମହାତ୍ମାଗାନ୍ଧୀ, ଜବାହାରଲାଲ୍ ନେହେରୁ, ସର୍ଦ୍ଦାର ପଟେଲ୍ ଆଦି ନେତା ସ୍ୱାସ୍ଥ୍ୟଗତ ସମସ୍ୟା ଉପୁଜିଲେ ଡ଼କ୍ଟର ରାୟଙ୍କ ସାହାଯ୍ୟ ନେଉଥିଲେ । ମହାତ୍ମାଗାନ୍ଧୀ ଯେତେବେଳେ ଦୀର୍ଘ ସମୟପାଇଁ ଅନଶନ କରୁଥିଲେ ଡ଼କ୍ଟର ରାୟ ତାଙ୍କର ସ୍ୱାସ୍ଥ୍ୟ ପରୀକ୍ଷା କରି ଜନସମୁଦାୟଙ୍କ ଅବଗତି ନିମନ୍ତେ ଗାନ୍ଧିଜୀଙ୍କର ଦୈନନ୍ଦିନ ସ୍ୱାସ୍ଥ୍ୟର ଅବସ୍ଥା ଏକ ପାମ୍ଫଲେଟ୍ ମାଧ୍ୟମରେ ପ୍ରକାଶ କରୁଥିଲେ । ସେ ଅଧିକାଂଶ ତୁଙ୍ଗ ନେତାଙ୍କର ବ୍ୟକ୍ତିଗତ ଚିକିତ୍ସକ ଥିଲେ । ତେଣୁ ମହାତ୍ମାଗାନ୍ଧୀ ଏବଂ ସୁବାଷଚନ୍ଦ୍ର ବୋଷ ଉଭୟଙ୍କ ସହିତ ତାଙ୍କର ଘନିଷ୍ଠ ବନ୍ଧୁତା ହୋଇପାରିଥିଲା ।

କଲିକତା ବିଶ୍ୱବିଦ୍ୟାଳୟର ଉପକୁଳପତି ଭାବେ ୧୯୪୨ ମସିହାରେ ଡ଼କ୍ଟର ରାୟ ନିଯୁକ୍ତ ହୋଇଥିଲେ । ସେତେବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥିଲା । ଜାପାନୀ ବାୟୁସେନା ଦ୍ୱାରା ଭାରତୀୟ ସୀମା ଅଞ୍ଚଳରେ ବୋମା ପଡ଼ିବାର ଭୟ ଥିଲା ।

ସେ ଦିନରାତି ପରିଶ୍ରମ କରି ସ୍କୁଲ୍ ଏବଂ କଲେଜ ମାନଙ୍କରେ ବାୟୁସେନା ଆକ୍ରମଣରୁ ବଞ୍ଚିବା ପାଇଁ ଆଶ୍ରୟସ୍ଥଳ ନିର୍ମାଣ କରିଥିଲେ । ୧୯୪୨ ରୁ ୧୯୪୪ ମସିହା ପର୍ଯ୍ୟନ୍ତ ସେ ଉପକୂଳପତି ପଦବୀରେ ରହିଥିଲେ ଏବଂ ଏହି ସମୟରେ ତାଙ୍କୁ ସମ୍ମାନଜନକ ବି.ଏଫ୍.ସି ଉପାଧି ମିଳିଥିଲା ।

୧୯୪୭ ମସିହାରେ କଲିକତା ବିଶ୍ୱବିଦ୍ୟାଳୟ ଡ଼କ୍ଟର ରାୟଙ୍କୁ ବେଙ୍ଗଲ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌କୁ ପଠାଇଲା ଏବଂ ୧୯୪୮ ମସିହାରେ ପଶ୍ଚିମ ବଙ୍ଗର କଂଗ୍ରେସ ପାର୍ଟିର ବିଧାୟକ ମାନେ ତାଙ୍କୁ ନେତା ଭାବେ ବାଛିଥିଲେ । ୧୯୫୨ ମସିହାରେ ସେ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଭାବେ ନିର୍ବାଚିତ ହେଲେ । ସେତେବେଳେ ରାଜ୍ୟ ଏକ ସଂକଟମୟ ପରିସ୍ଥିତି ଦେଇ ଗତି କରୁଥାଏ । ସାଧାରଣ ଜନତାଙ୍କ ମଧ୍ୟରେ ଅଶାନ୍ତି, ଅର୍ଥନୈତିକ ଅବସ୍ଥାରେ ଅବନତି, ଖାଦ୍ୟାଭାବ, ଚାକିରୀର ଅଭାବ ସାଙ୍ଗକୁ ପୂର୍ବ ପାକିସ୍ଥାନରୁ ଶରଣାର୍ଥୀମାନଙ୍କର ରାଜ୍ୟରେ ବହୁଳ ଭାବରେ ପ୍ରବେଶ ବୋଝ ଉପରେ ନଳିତା ବିଡ଼ା ପରି ହୋଇଥିଲା । ଏହିଭଳି ପରିସ୍ଥିତିରେ ଡ଼କ୍ଟର ରାୟ ଅବସ୍ଥା ସମ୍ଭାଳିବାରେ ତାଙ୍କର ଦକ୍ଷତା ପ୍ରଦର୍ଶନ କରିଥିଲେ । ତାଙ୍କର ଗଭୀର ଜ୍ଞାନ, ବୋଧଶକ୍ତି ଏବଂ ଇଚ୍ଛାଶକ୍ତି ତଥା କାର୍ଯ୍ୟ ପରିଚାଳନା କ୍ଷମତା ଏହିସବୁ ସମସ୍ୟାର ସମାଧାନ ପାଇଁ ତାଙ୍କୁ ସହାୟକ ହୋଇଥିଲା ।

ବିଭିନ୍ନ ଗଠନମୂଳକ କାର୍ଯ୍ୟ ପାଇଁ ଭାରତ ସରକାର ଡକ୍ଟର ରାୟଙ୍କୁ ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନରେ ୧୯୬୧ ମସିହା ଫେବୃୟାରୀ ୪ ତାରିଖ ଦିନ ସମ୍ମାନିତ କଲେ ।

ଡ଼କ୍ଟର ବିଧାନ ଚନ୍ଦ୍ର ରାୟ ଅବିବାହିତ ଥିଲେ । ଜନତାଙ୍କ ମତରେ ସେ ସମାଜ ସେବାକୁ ହିଁ ବିବାହ କରିଥିଲେ । ଜୀବନରେ ସେ କେବେ ହାର ମାନି ନ ଥିଲେ । ହାର ମାନିବା ତାଙ୍କ ଜାତକରେ ନ ଥିଲା । ସେ ଦୟା, କ୍ଷମା, ଅନୁକମ୍ପାର ଅବତାର ଥିଲେ । ବାଲ୍ୟକାଳରେ ତାଙ୍କ ଘର କାନ୍ଥରେ ଗୋଟିଏ ବାକ୍ୟ ଲେଖାଯାଇଥିଲା । 'କୌଣସି କାର୍ଯ୍ୟ କରିପାରିବ ନାହିଁ ବୋଲି ଭାବ ନାହିଁ ।' ସେହି ବାକ୍ୟକୁ ସେ ଜୀବନ ସାରା ସ୍ମରଣ ରଖିଥିଲେ । ସେଥିପାଇଁ ଯେ କୌଣସି ସମସ୍ୟା ଦେଖିଲେ ତାହା ସମାଧାନ କେମିତି ହେବ ବାଟ ଖୋଜୁଥିଲେ । ଦେଶ ସ୍ୱାଧୀନ ହେବା ପରେ ଡ଼କ୍ଟର ବିଧାନ ଚନ୍ଦ୍ର ରାୟଙ୍କୁ ଉତ୍ତର ପ୍ରଦେଶର ରାଜ୍ୟପାଳ ପଦବୀ ଯଚା ଗଲା । କିନ୍ତୁ ଡ଼କ୍ଟର ରାୟ ଏହି ପଦବୀକୁ ଗ୍ରହଣ ନ କରି ସାରା ଜୀବନ ପଶ୍ଚିମ ବଙ୍ଗର ଲୋକଙ୍କ ପାଇଁ ସମର୍ପଣ

କରିବାକୁ ଇଚ୍ଛା ପ୍ରକାଶ କଲେ । ୧୯୪୮ ମସିହାରୁ ୧୯୬୨ ମସିହା ପର୍ଯ୍ୟନ୍ତ ଦୀର୍ଘ ୧୪ ବର୍ଷ ପାଇଁ ସେ ପଶ୍ଚିମ ବଙ୍ଗର ମୁଖ୍ୟମନ୍ତ୍ରୀ ଭାବେ କାର୍ଯ୍ୟ କରିଥିଲେ । ତେଣୁ ବାସ୍ତବରେ ତାଙ୍କୁ ଆଧୁନିକ ପଶ୍ଚିମ ବଙ୍ଗର ନିର୍ମାତା ବୋଲି କୁହାଯାଇ ଥାଏ ।

ଡ଼କ୍ଟର ବିଧାନ ଚନ୍ଦ୍ର ରାୟ କେବଳ ଭାରତ ବର୍ଷରେ ନୁହନ୍ତି ବିଦେଶରେ ମଧ୍ୟ ଜଣେ ବିଚକ୍ଷଣ ଡ଼ାକ୍ତର ଭାବେ ପ୍ରସିଦ୍ଧି ହାସଲ କରିଥିଲେ । ଯେତେବେଳେ ଆମେରିକାର ରାଷ୍ଟ୍ରପତି ଜନ୍ କେନେଡ଼ୀ ଅସ୍ଥି ଜନିତ ବ୍ୟଥା ଅନୁଭବ କରୁଥିଲେ ସେ ଡ଼କ୍ଟର ରାୟଙ୍କ ପରାମର୍ଶ ନେଲେ । ଡ଼କ୍ଟର ରାୟଙ୍କ ଚିକିତ୍ସା ପରେ କେନେଡ଼ୀ ରୋଗମୁକ୍ତ ହୋଇଥିଲେ । ପରେ ସେ ଡ଼କ୍ଟର ରାୟଙ୍କର ଭୂୟସୀ ପ୍ରଶଂସା କରି ଏକ ପତ୍ରରେ ତାଙ୍କୁ ଅନେକ ଧନ୍ୟବାଦ ଜଣାଇଥିଲେ ।

୧୯୬୨ ମସିହା ଜୁଲାଇ ୧ ତାରିଖ ଦିନ ଡ଼କ୍ଟର ବିଧାନ ଚନ୍ଦ୍ର ରାୟଙ୍କର ହୃଦ୍‌ଘାତ ଜନିତ ମୃତ୍ୟୁ ହେଲା । ସଂଯୋଗ କ୍ରମେ ସେଦିନ ତାଙ୍କର ଜନ୍ମଦିନ । ଅନେକ ଶୁଭେଚ୍ଛୁ ତାଙ୍କୁ ଜନ୍ମ ଦିନ ବାର୍ତ୍ତା ଦେବାପାଇଁ ଆସିଥିଲେ । କିନ୍ତୁ ଅପରାହ୍ନରେ ତାଙ୍କର ମୃତ୍ୟୁ ସମ୍ବାଦ ପ୍ରଚାରିତ ହେଲା । ତାଙ୍କୁ ସ୍ମରଣ କରିବା ଉଦ୍ଦେଶ୍ୟରେ ତାଙ୍କ ନାମରେ ଅନେକ ପୁରସ୍କାରର ଆୟୋଜନ କରାଯାଇଛି । ଚିକିତ୍ସା ଶାସ୍ତ୍ର, ରାଜନୀତି, ବିଜ୍ଞାନ, ଦର୍ଶନ, ସାହିତ୍ୟ ଏବଂ କଳା ଆଦି ବିଷୟରେ ୧୯୭୬ ମସିହା ଠାରୁ ବି.ସି. ରାୟ ଜାତୀୟ ପୁରସ୍କାର ଦିଆଯାଏ । ପଶ୍ଚିମ ବଙ୍ଗର ପ୍ରଗତି ପାଇଁ ତାଙ୍କ ଜୀବନ ଉତ୍ସର୍ଗୀକୃତ ଥିଲା । ଜୀବନର ଶେଷ ଦିନ ଯାଏଁ ତାଙ୍କ ସ୍ୱପ୍ନର ପଶ୍ଚିମ ବଙ୍ଗକୁ ବିକଶିତ କରିବା ଦିଗରେ ପ୍ରଚେଷ୍ଟାରତ ଥିଲେ । ସଲ୍ଟ ଲେକ୍ ଅଞ୍ଚଳରେ କଲିକତା ନଗରୀ ସଂପ୍ରସାରିତ ହେଲାବେଳେ ଯଥାର୍ଥରେ ତାଙ୍କ ନାମାନୁସାରେ ଏହାର ନାମକରଣ ବିଧାନ ନଗର କରାଯାଇଛି । ୧୯୬୧ ମସିହାରେ ପଶ୍ଚିମ ବଙ୍ଗର ଏହି ଯଶସ୍ୱୀ ବରପୁତ୍ରଙ୍କୁ ଭାରତରତ୍ନ ଉପାଧିରେ ଭୂଷିତ କରାଯାଇଥିଲା । ଭାରତର ଏହି ବରପୁତ୍ର ତଥା ଅସାଧାରଣ ପ୍ରତିଭା ସମ୍ପନ୍ନ ଚିକିତ୍ସକଙ୍କ ପ୍ରତି ଥିବା ଶ୍ରଦ୍ଧା ଓ ସମ୍ମାନର ନିଦର୍ଶନ ସ୍ୱରୂପ ତାଙ୍କ ଜନ୍ମଦିନ (ଜୁଲାଇ ୧ ତାରିଖ)କୁ ସମଗ୍ର ଦେଶରେ 'ଡକ୍ଟର୍‌ସ ଡ଼େ' (ଚିକିତ୍ସକ ଦିବସ) ରୂପେ ପାଳନ କରାଯାଏ ।

* * *

# ପୁରୁଷୋତ୍ତମ ଦାସ ଟଣ୍ଡନ



୧୮୮୨-୧୯୬୨

ଭାରତରତ୍ନ - ୧୯୬୧

ରାଜର୍ଷି ପୁରୁଷୋତ୍ତମ ଦାସ ଟଣ୍ଡନ ୧୮୮୨ ମସିହା ଅଗଷ୍ଟ ୧ ତାରିଖ ଦିନ ଆହ୍ଲାବାଦଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାମାତାଙ୍କ ନାମ ଥିଲା ଫାଲିଗ୍ରାମ ଏବଂ ଫାରନ୍‌ସିଆରି । ହିନ୍ଦୁ ପଞ୍ଜିକା ଅନୁସାରେ ଅଗଷ୍ଟ ମାସକୁ ପୁରୁଷୋତ୍ତମ ଦାସ କୁହାଯାଏ । ସେଥିପାଇଁ ଫାଲିଗ୍ରାମ ଏବଂ ଫାନ୍‌ସିଆରି ତାଙ୍କ ପୁତ୍ରର ନାମ ପୁରୁଷୋତ୍ତମ ଦାସ ରଖିଥିଲେ । ପୁରୁଷୋତ୍ତମଙ୍କ ପିତା ଫାଲିଗ୍ରାମ ଆକାଉଣ୍ଟାଟ୍ ଜେନେରାଲ୍‌ଙ୍କ କାର୍ଯ୍ୟାଳୟରେ କିରାଣୀ ଚାକିରି କରୁଥିଲେ । ସେ ରାଧାସ୍ୱାମୀ ସତ୍‌ସଙ୍ଗ ଭକ୍ତି ସଙ୍ଘର ଅନୁଗାମୀ ଥିଲେ ।

ଜଣେ ମୌଲବୀଙ୍କଠାରୁ ପୁରୁଷୋତ୍ତମ ପ୍ରାଥମିକ ଶିକ୍ଷା ଗ୍ରହଣ କରିଥିଲେ ଏବଂ ପରେ ସେ ଆହ୍ଲାବାଦ ସିଏବି ସ୍କୁଲ୍‌ରେ ଅଧ୍ୟୟନ କଲେ । ସେ ଜଣେ ପ୍ରତିଭାବାନ୍ ଛାତ୍ର

ଥିଲେ ଏବଂ ବିଭିନ୍ନ ଖେଳରେ ପାରଦର୍ଶିତା ହାସଲ କରି ବିଦ୍ୟାଳୟର କ୍ରିକେଟ୍ ଦଳର ଦଳପତି ହୋଇଥିଲେ । ମାତ୍ର ୧୫ ବର୍ଷ ବୟସରେ ଚନ୍ଦ୍ରମୁଖୀ ନାମ୍ନୀ ବାଳିକାଙ୍କୁ ବିବାହ କରିଥିଲେ । ସ୍କୁଲ୍‌ରେ ପାଠ ପଢ଼ିଲା ବେଳେ ଭାରତୀୟ ସ୍ୱାଧୀନତା ସଂଗ୍ରାମ ପ୍ରତି ଆକର୍ଷିତ ହୋଇଥିଲେ ଏବଂ କଂଗ୍ରେସ୍ ପାର୍ଟିରେ ଛାତ୍ର ଅବସ୍ଥାରୁ ଯୋଗଦାନ କରିଥିଲେ । ୧୮୯୯ ମସିହାରେ ସେ ଲକ୍ଷ୍ନୌରେ କଂଗ୍ରେସ ଅଧୀବେଶନରେ ଭାଗ ନେଇଥିଲେ । କଂଗ୍ରେସ ଦଳରେ ଥିବା ସମୟରେ ସେ ଲାଲା ଲାଜ୍‌ପତ ରାୟ, ବିପିନ ବିହାରୀ ପାଲ, ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ, ପଣ୍ଡିତ ଜବାହାରଲାଲ୍ ନେହେରୁ ଏବଂ ମହାତ୍ମାଗାନ୍ଧୀଙ୍କ ପରି ଦେଶପ୍ରେମୀ ନେତାମାନଙ୍କର ଘନିଷ୍ଠ ସଂସ୍ପର୍ଶରେ ଆସିଥିଲେ ।

୧୯୦୪ ମସିହାରେ ସେ ସ୍ନାତକ ଡ଼ିଗ୍ରୀ ହାସଲ କଲେ ଏବଂ ୧୯୦୬ରେ ଏଲ୍ଏଲ୍ବି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ୧୯୦୭ ମସିହାରେ ଇତିହାସରେ ସେ ଏମ୍.ଏ ପାଶ୍ କଲେ । ଅଧ୍ୟୟନରେ ତାଙ୍କର ଖୁବ୍ ରୁଚି ଥିଲା । ପାଠ ପଢ଼ା ସାଙ୍ଗକୁ ଇଂରାଜୀ, ଆରବିକ୍, ହିନ୍ଦୀ ଏବଂ ସଂସ୍କୃତ ସାହିତ୍ୟରେ ତାଙ୍କର ପ୍ରଗାଢ଼ ପାଣ୍ଡିତ୍ୟ ଥିଲା । ୧୯୦୪ ମସିହାରେ ବିଏ ପାଶ୍ କରିବା ପରେ ସେ ଗୌରୀ ପାଠଶାଳା ଆରମ୍ଭ କରିଥିଲେ ଏବଂ କଂଗ୍ରେସ ପାର୍ଟିର ୧୯୦୬ ମସିହାରେ କଲିକତାଠାରେ ହୋଇଥିବା ଅଧିବେଶନରେ ସେ ଭାଗ ନେଇଥିଲେ । କିଛି ଦିନ ପାଇଁ ସେ ହିନ୍ଦୀରେ ପ୍ରକାଶିତ ସମ୍ବାଦପତ୍ର ଅଭ୍ୟୁଦୟର ସଂପାଦନା ଦାୟିତ୍ୱ ତୁଲାଇ ଥିଲେ ।

୧୯୦୮ ମସିହାରେ ଟଣ୍ଡନ ଆହ୍ଲାବାଦ ହାଇକୋର୍ଟରେ ଓକିଲାତି ବ୍ୟବସାୟ ଆରମ୍ଭ କଲେ ଏବଂ ଖୁବ୍ ଅଳ୍ପ ସମୟ ମଧ୍ୟରେ ସେ ଜଣେ ପ୍ରତିଷ୍ଠିତ ଓକିଲ ହୋଇପାରିଲେ । ସେ ତେଜ୍‌ବାହାଦୂର ସପ୍ରୁ ନାମକ ବିଖ୍ୟାତ ଓକିଲଙ୍କର ସହକାରୀ ଭାବେ ଆହ୍ଲାବାଦରେ କାର୍ଯ୍ୟ କରୁଥିଲେ ଏବଂ ପରବର୍ତ୍ତୀ ସମୟରେ ନିଜେ ଜଣେ ପ୍ରତିଷ୍ଠିତ ଓକିଲ ହୋଇପାରିଥିଲେ । ତେବେ ଓକିଲାତି ଅପେକ୍ଷା ସ୍ୱାଧୀନତା ସଂଗ୍ରାମ ପ୍ରତି ତାଙ୍କର ଆକର୍ଷଣ ଥିଲା ଅଧିକ । ପଣ୍ଡିତ ମଦନମୋହନ ମାଳବ୍ୟାଙ୍କ ଦ୍ୱାରା ସେ ବହୁଳ ଭାବେ ପ୍ରଭାବିତ ହୋଇଥିଲେ । ନାଭା ରାଜ୍ୟର ସେ ଆଇନ ସେକ୍ରେଟେରୀ ଏବଂ ବିଦେଶ ବିଭାଗୀୟ ମନ୍ତ୍ରୀ ଭାବେ ୧୯୧୪ରୁ ୧୯୧୬ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ୧୯୧୭ ମସିହାରେ ପ୍ରୟାଗଠାରେ ହୋଇଥିବା ହିନ୍ଦୀ ସାହିତ୍ୟ ସମ୍ମିଳନୀରେ ସେ ସଭାପତି ହୋଇଥିଲେ । ହିନ୍ଦୀ ସାହିତ୍ୟପ୍ରତି ତାଙ୍କର ଅଧିକ ଅନୁରକ୍ତି ଥିଲା । ସେଥିପାଇଁ ଏହି ସାହିତ୍ୟ ସମ୍ମିଳନୀରେ ଯୋଗଦେବା ପାଇଁ ଗୋଟିଏ ଦିନ ଛୁଟି ମାଗିଥିଲେ । ତାଙ୍କର ଏହି ଛୁଟି ମଞ୍ଜୁର

କରାଯାଇନଥିଲା । ସେଥିପାଇଁ ସେ ନାଭାରୁ ୧୯୧୭ ମସିହାରେ ଇସ୍ତଫା ଦେଇ ପୁନର୍ବାର ଓକିଲାତି ବ୍ୟବସାୟରେ ମନୋନିବେଶ କଲେ ।



୧୯୧୮ ମସିହାରେ ଆହ୍ଲାବାଦ୍‌ରେ ସେ ଏକ ହିନ୍ଦୀ ବିଦ୍ୟାପୀଠ ପ୍ରତିଷ୍ଠା କଲେ । ସେହିବର୍ଷ ଆହ୍ଲାବାଦ ଜିଲ୍ଲାର କୃଷକମାନଙ୍କର ଏକ ସଭା ଗଠନ କରି ସେମାନଙ୍କର ଅବସ୍ଥାରେ ଉନ୍ନତି ପାଇଁ ସେ ପ୍ରଚେଷ୍ଟା କଲେ । ଧୀରେ ଧୀରେ ସେ ଓକିଲାତି ବ୍ୟବସାୟ ଛାଡ଼ି ସଂପୂର୍ଣ୍ଣ ଭାବେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । ତାଙ୍କର ଏହି ସିଦ୍ଧାନ୍ତ ଯୋଗୁଁ ପରିବାର ଆର୍ଥିକ ଅନଟନ ଭିତରେ ରହିଗଲା । ସେହି ସମୟରେ ଶିଳ୍ପପତି ଯମୁନା ଲାଲ୍ ବଜାଜ୍ ତାଙ୍କ ପରିବାରକୁ ଆର୍ଥିକ ସାହାଯ୍ୟ ଦେବାପାଇଁ ପ୍ରସ୍ତୁତ ହେଲେ କିନ୍ତୁ ସେ ଦାନ ନେବାପାଇଁ ମନା କରିଦେଲେ । ୧୯୨୦ ମସିହାରେ ପୁରୁଷୋତ୍ତମ ଦାସ ପ୍ରୟାଗ ମ୍ୟୁନିସପାଲିଟିର ସଭାପତି ପଦରେ ନିର୍ବାଚିତ ହେଲେ । ତାଙ୍କ ସମୟରେ ଆହ୍ଲାବାଦ ମ୍ୟୁନିସପାଲିଟିର ଆୟ ବହୁଗୁଣରେ ବୃଦ୍ଧି ପାଇଲା । ସେ ସମୟରେ ବ୍ରିଟିଶ୍ ସରକାରଙ୍କ ସୈନ୍ୟବାହିନୀପାଇଁ ଏକ ବିରାଟ ଅଞ୍ଚଳ ଉଦ୍ଦିଷ୍ଟ ଥାଏ । ସେ ସ୍ଥାନର ଜଳ ଜମି ଏବଂ ଘର ପାଇଁ ସେମାନେ ଖଜଣା ଦେଉନଥାନ୍ତି । ପୁରୁଷୋତ୍ତମ ଦାସ ଏହା ନିୟମିତ ବ୍ରିଟିଶ୍ ସରକାରଠାରୁ ଆଦାୟ କରିବାରେ ସକ୍ଷମ ହେଲେ । ତା ଛଡ଼ା ପୂର୍ବର ବାକିଥିବା ଟିକସ ମଧ୍ୟ ବ୍ରିଟିଶ୍ ସରକାର ଯେପରି ଦେବେ ତାହା ସେ ନିଶ୍ଚିତ କରିଥିଲେ ।

ତାଙ୍କର ଏହି କାର୍ଯ୍ୟ ବ୍ରିଟିଶ୍ ସରକାରଙ୍କୁ ବିଚଳିତ ତଥା ବିରକ୍ତ କଲା । ଫଳରେ ସେ କଂଗ୍ରେସ ସ୍ୱେଚ୍ଛାସେବୀମାନଙ୍କର ଏକ ସଭାରେ ସଭାପତିତ୍ୱ କରିବା ସମୟରେ ସରକାର ତାଙ୍କୁ ବନ୍ଦୀକରି ଜେଲ୍‌କୁ ପଠାଇଦେଲା ।

ପୁରୁଷୋତ୍ତମ ଦାସ ଟଣ୍ଡନ ସମସ୍ତ ଜାତୀୟ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ଅସହଯୋଗ ଆନ୍ଦୋଳନ, ଭାରତଛାଡ଼ ଆନ୍ଦୋଳନ ଇତ୍ୟାଦିରେ ତାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା ଏବଂ ସେଥିପାଇଁ ସେ ବାରମ୍ବାର କାରାବରଣ କରିଥିଲେ । କଂଗ୍ରେସରେ ସଂପୂର୍ଣ୍ଣ ଯୋଗଦେବା ପରେ ୧୯୨୩ ମସିହାରେ ଗୋରଖପୁର ଅଧୀବେଶନରେ ସେ ରାଜ୍ୟ କଂଗ୍ରେସର ସଭାପତି ପଦରେ ଅଭିଷିକ୍ତ ହେଲେ । ସେ

୧୯୨୫ ମସିହାରେ ପଞ୍ଜାବ ନ୍ୟାସନାଲ୍ ବ୍ୟାଙ୍କ ଲାହୋରରର ଯୁଗ୍ମ ସଂପାଦକ ଭାବେ କାର୍ଯ୍ୟ କଲେ । ପରେ ସେ ସଂପାଦକ ଏବଂ ଜେନେରାଲ୍ ମ୍ୟାନେଜର ପଦବୀରେ ଅଧିଷ୍ଠିତ ହେଲେ । ୧୯୨୮ ମସିହାରେ ଲୋକସଭା ମଣ୍ଡଳର ସଭାପତି ପଦପାଇଁ ମନୋନୀତ ହେଲେ । ସେ ଜଣେ ଉତ୍ସର୍ଗୀକୃତ ସମାଜସେବୀ ଥିଲେ । ୧୯୩୦ ମସିହାରେ ସେ ଟିକସ ନାହିଁ ଅଭିଯାନ ଆରମ୍ଭ କରିଥିଲେ । ଏହି ଆନ୍ଦୋଳନ ପଣ୍ଡିତ ଜବାହାରଲାଲ୍ ନେହେରୁଙ୍କ ଦ୍ୱାରା ଖୁବ୍ ପ୍ରଶଂସିତ ହୋଇଥିଲା । ୧୯୩୦ ମସିହାରେ ସେ କେନ୍ଦ୍ରୀୟ କିଷାନ୍ ସଂଘ ଗଠନ କଲେ । ପରେ ଉତ୍ତରପ୍ରଦେଶର ବିଧାନ ସଭାର ସଭାପତି ଭାବେ ମନୋନିତ ହେଲେ । ୧୯୪୬ ମସିହାରେ ସେ କନ୍‌ଷ୍ଟିଚ୍ୟୁଏଣ୍ଟ ଆସେମ୍ଳିକୁ ନିର୍ବାଚିତ ହୋଇଥିଲେ । ୧୯୪୭ ମସିହାରେ ସେ ହିନ୍ଦୁ ରକ୍ଷକ ଦଳ ଗଠନ କଲେ ଏବଂ ୧୯୪୮ ମସିହାରେ ସେ ଉତ୍ତର ପ୍ରଦେଶ କଂଗ୍ରେସ କମିଟିର ସଭାପତି ରୂପେ ପଦଭାର ସମ୍ଭାଳି ଥିଲେ । ୧୯୫୦ ମସିହାରେ ସର୍ବଭାରତୀୟ କଂଗ୍ରେସ କମିଟିର ସେ ସଭାପତି ହେଲେ । ୧୯୫୨ ମସିହାରେ ସେ ଲୋକସଭାକୁ ନିର୍ବାଚିତ ହୋଇ ଆସିଥିଲେ । ୧୯୫୬ରେ ସେ ରାଜ୍ୟସଭାର ସଭ୍ୟ ହେଲେ । ସେତେବେଳକୁ ତାଙ୍କ ସ୍ୱାସ୍ଥ୍ୟରେ ଅବନତି ଘଟିଥାଏ । ଫଳରେ ସକ୍ରିୟ ସମାଜ ସେବାରୁ ସେ ବାଧହୋଇ ଅବ୍ୟାହତି ନେଲେ । ତଥାପି ଅନେକ ବର୍ଷକାଳ ସେ ଗଠନ ମୂଳକ କାର୍ଯ୍ୟରେ ମନୋନିବେଶ କରିଥିଲେ । ହିନ୍ଦୀ ସାହିତ୍ୟ ସମ୍ମେଳନ ଏବଂ ରାଷ୍ଟ୍ରଭାଷା ପ୍ରଚାର ସମିତି ସହିତ ତାଙ୍କର ସଂପର୍କ ନିବିଡ଼ ଥିଲା । ତାଙ୍କ ଜୀବନର ମୁଖ୍ୟ ଅଂଶ ସେ ହିନ୍ଦୀ ଭାଷା ପ୍ରଚାର, ପ୍ରସାର ତଥା ହିନ୍ଦୀ ସାହିତ୍ୟର ବିକାଶ ପାଇଁ ନିୟୋଜିତ କରିଥିଲେ । ହିନ୍ଦୀ କିପରି ରାଷ୍ଟ୍ରଭାଷା ହୋଇପାରିବ ସେଥିପାଇଁ ସେ ଅନେକ ଚେଷ୍ଟା କରିଛନ୍ତି । ୧୯୪୭ ମସିହାରେ ଭାରତ ସ୍ୱାଧୀନତା ପାଇଲା କିନ୍ତୁ ଏଥିପାଇଁ ଦେଶକୁ ଖୁବ୍ ଦାମ୍ ଦେବାକୁ ପଡ଼ିଥିଲା । ଭାରତ ଦୁଇ ଭାଗ ହେଲା । ହିନ୍ଦୁସ୍ଥାନ ଏବଂ ପାକିସ୍ଥାନ । ଏହାଦ୍ୱାରା ପୁରୁଷୋତ୍ତମ ଦାସଙ୍କ ହୃଦୟ ବ୍ୟଥାରେ ଭରିଯାଇଥିଲା ।

୧୯୪୮ ମସିହା ଏପ୍ରିଲ୍ ୧୫ ତାରିଖ ଦିନ ପୁରୁଷୋତ୍ତମ ଦାସ ଟଣ୍ଡନଙ୍କୁ ରାଜର୍ଷି ଉପାଧିରେ ଭୂଷିତ କରାଗଲା । ୧୯୬୧ ମସିହାରେ ତାଙ୍କୁ ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତ ରତ୍ନରେ ସମ୍ମାନିତ କରାଗଲା । ୧୯୬୨ ମସିହା ଜୁଲାଇ ୧ ତାରିଖ ଦିନ ପୁରୁଷୋତ୍ତମ ଦାସ ଟଣ୍ଡନ ଆହ୍ଲାବାଦଠାରେ ଇହଲୀଳା ସମ୍ବରଣ କଲେ । ରାଜର୍ଷି ପୁରୁଷୋତ୍ତମ ଦାସ ଟଣ୍ଡନ ତାଙ୍କର ଜାତିପ୍ରେମ, ଦେଶପ୍ରେମ ତଥା ହିନ୍ଦୀଭାଷାର ପ୍ରଚାର, ପ୍ରସାର ଆଦି ନିସ୍ୱାର୍ଥପର କର୍ମ ପାଇଁ ଚିର ସ୍ମରଣୀୟ ହୋଇ ରହିଛନ୍ତି ।

***

# ଡକ୍ଟର ରାଜେନ୍ଦ୍ର ପ୍ରସାଦ



୧୮୮୪-୧୯୬୩

ଭାରତ ରତ୍ନ-୧୯୬୨

**ସ**ରୋଜିନୀ ନାଇଡୁ ଥରେ ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ବିଷୟରେ କହିଥିଲେ, 'ମୋର ସମସ୍ତ ଶବ୍ଦଜ୍ଞାନ ତାଙ୍କର ଗୁଣାବଳୀକୁ ବର୍ଣ୍ଣନା କରିବା ପାଇଁ ଯଥେଷ୍ଟ ନୁହେଁ । ତାଙ୍କର ଅନ୍ତର୍ନିହିତ ପ୍ରତିଭାକୁ ବର୍ଣ୍ଣନା କରିବା ପାଇଁ ମୋର ଭାଷାଜ୍ଞାନ ଅତି ସୀମିତ ବୋଲି ମନେ ହୁଏ ।' ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ ଏକାଧାରାରେ ଜଣେ ବିଚକ୍ଷଣ ଗବେଷକ, ଜଣେ ପ୍ରସିଦ୍ଧ ଆଇନ ବ୍ୟବସାୟୀ, ଜଣେ ସ୍ୱନାମ ଧନ୍ୟ ସ୍ୱାଧୀନତା ସଂଗ୍ରାମୀ ଏବଂ ଜଣେ ସକ୍ରିୟ ସାମ୍ବାଦିକ ଥିଲେ । ଏହାଛଡ଼ା ତାଙ୍କର ଆହୁରି ଅନେକ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ଥିଲା ।

ସେ ୧୮୮୪ ମସିହା ଡ଼ିସେମ୍ବର ୩ ତାରିଖରେ ବିହାର ରାଜ୍ୟସ୍ଥିତ ଜର୍ଦେଇ ନାମକ କ୍ଷୁଦ୍ର ପଲ୍ଲୀରେ ଏକ ଯୁଗ୍ମ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ଜଣେ ମୌଲବୀଙ୍କ

ଅଧୀନରେ ସେ ତାଙ୍କର ପ୍ରାଥମିକ ଶିକ୍ଷା ଆରମ୍ଭ କରିଥିଲେ । ତାଙ୍କ ଘରକୁ ଆସି ମୌଲବୀ ରାଜେନ୍ଦ୍ର ପ୍ରସାଦ ଏବଂ ତାଙ୍କର ଦୁଇଜଣ ସଂପର୍କୀୟ ଭାଇଙ୍କୁ ପାଠ ପଢ଼ାଉଥିଲେ । ତୁଳସୀ ଦୁଇ ପତ୍ରରୁ ବାସିଲା ପରି ପ୍ରାଥମିକ ଶିକ୍ଷାଠାରୁ ସ୍କୁଲ ଏବଂ କଲେଜ ପର୍ଯ୍ୟନ୍ତ ତାଙ୍କର ବୁଦ୍ଧିମତା, ବିଜ୍ଞତାର ପରିଚୟ ମିଳିଥିଲା । ମାଟ୍ରିକ୍ୟୁଲେସନ ପରୀକ୍ଷାରେ କଲିକତା ବିଶ୍ୱବିଦ୍ୟାଳୟରେ ସେ ପ୍ରଥମ ସ୍ଥାନ ଅଧିକାର କରିଥିଲେ ଏବଂ ସେଥିପାଇଁ ସେ ମାସିକ ୩୦ ଟଙ୍କାର ବୃତ୍ତି ପାଇଥିଲେ । ତାଙ୍କ ବାଲ୍ୟକାଳରେ ସ୍ନେହରେ ତାଙ୍କୁ ସମସ୍ତେ ରାଜନ୍ ବାବୁ ବୋଲି ଡ଼ାକୁଥିଲେ । ପିଲାଦିନେ ସେ କବାଡ଼ି ଖେଳିବାକୁ ଭଲ ପାଉଥିଲେ । ସେତେବେଳେ ହିନ୍ଦୁ ଓ ମୁସଲମାନମାନେ ପରସ୍ପର ପ୍ରତି ସ୍ନେହ ଏବଂ ଆଦରର ଜୀବନ ବିତାଉଥିଲେ । ଯେ କୌଣସି ହିନ୍ଦୁ ବା ମୁସଲମାନ ପର୍ବକୁ ଉଭୟ ସଂପ୍ରଦାୟ ଅତି ଜାକଜମକରେ ପାଳନ କରୁଥିଲେ । ରାଜନ୍‌ବାବୁଙ୍କ ମାତା ତାଙ୍କୁ ରାମାୟଣର ଗଳ୍ପ ଶୁଣାଉଥିଲେ । ସେ ଅନେକ ଭଜନ ମଧ ଗାନ କରୁଥିଲେ । ସେତେବେଳର ବିବାହ ପ୍ରଥା ଅନୁସାରେ ରାଜନ୍ ବାବୁ ମାତ୍ର ୧୨ ବର୍ଷ ବୟସରେ ରାଜବଂଶୀ ଦେବୀଙ୍କୁ ବିବାହ କରିଥିଲେ । ସେତେବେଳେ ରାଜବଂଶୀ ଦେବୀ ଓଢ଼ଣା ପ୍ରଥାର ଆଢୁଆଳରେ ରହି ରାଜନ୍ ବାବୁଙ୍କ ସହିତ କଥାବାର୍ତ୍ତା ହେଉଥିଲେ । ତେଣୁ ଅନେକ କାଳ ଯାଏଁ ସେ ତାଙ୍କ ସ୍ତ୍ରୀ ଙ୍କର ମୁହଁ ଦେଖିବାକୁ ପାଉନଥିଲେ ।

୧୯୦୨ ମସିହାରେ ରାଜନ୍ ବାବୁ କଲିକତାର ପ୍ରେସିଡେନ୍ସି ମହାବିଦ୍ୟାଳୟରେ ନାମ ଲେଖାଇଲେ । ସେହି ସମୟରେ ହିଁ ସେ ବିହାରର ପାରମ୍ପାରିକ ଜୀବନରୁ ବାହାରି କଲିକତା ପରି ଏକ ସାର୍ବଜନୀନ ନଗରୀରେ ପଦାର୍ପଣ କଲେ । ତାଙ୍କର ମହାବିଦ୍ୟାଳୟରେ ବିଭିନ୍ନ ଛାତ୍ରମାନେ ପାଶ୍ଚାତ୍ୟ ଢ଼ଙ୍ଗରେ ପୋଷାକ ପିନ୍ଧି ଥିବାର ଦେଖି ସେ ଚକିତ ହେଲେ । ରାଜେନ୍ଦ୍ର ପ୍ରସାଦ ବିହାରର ପାରମ୍ପରିକ କୁର୍ତ୍ତା ଏବଂ ପାଇଜାମା ପିନ୍ଧିଥିବାରୁ ତାଙ୍କୁ ସେଠାରେ ଜଣେ ମ୍ୟାଟ୍ରିକ୍ ପଢୁଥିବା ଛାତ୍ର ବୋଲି ଅନେକଙ୍କର ଭ୍ରମ ହେଉଥିଲା । ଯେତେବେଳେ ସେ କ୍ଲାସ୍‌ରେ ଠିଆ ହୋଇ ତାଙ୍କର ନାମ ରାଜେନ୍ଦ୍ର ପ୍ରସାଦ ଏବଂ ସେ ସ୍କୁଲ୍ ଛାତ୍ର ନୁହଁନ୍ତି ସେ କଲେଜର ଛାତ୍ର ବୋଲି ଜଣାଇଲେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ତାଙ୍କ ଆଡ଼କୁ ବାହିଁ ରହିଲେ । କାରଣ ସେମାନେ ଜାଣିଥିଲେ ଯେ ରାଜେନ୍ଦ୍ର ପ୍ରସାଦ ନାମକ ଜଣେ ଛାତ୍ର ସେହି ବର୍ଷ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରିଥିଲା ।

ଅଧ୍ୟୟନ କାଳ ମଧ୍ୟରେ ରାଜେନ୍ଦ୍ର ପ୍ରସାଦ ସବୁବେଳେ ଅନ୍ୟ ଛାତ୍ରମାନଙ୍କଠାରୁ ଅଗ୍ରଣୀ ଥିଲେ । ସେ ବିଭିନ୍ନ ବକ୍ତୃତା ଏବଂ ପ୍ରବନ୍ଧ ପ୍ରତିଯୋଗିତା ମାନଙ୍କରେ ଭାଗ ନେଇ ପୁରସ୍କୃତ ହେଉଥିଲେ । ଆଇନ ଶାସ୍ତ୍ରରେ ସେ ସ୍ନାତକୋତ୍ତର ଡ଼ିଗ୍ରୀରେ ପ୍ରଥମ



ହୋଇ ଉତ୍ତୀର୍ଣ୍ଣ ହେବା ପରେ ପୁନର୍ବାର ଆଇନ ଶାସ୍ତ୍ରରେ ଡ଼କ୍ଟରେଟ୍ କଲେ ଏବଂ ତ ପରେ ସେ ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ ନାମରେ ପରିଚିତ ହେଲେ । କଲିକତା ହାଇକୋର୍ଟରେ ସେ ଆଇନ ବ୍ୟବସାୟ ଆରମ୍ଭ କଲେ । ତା ପରେ ସେ ପାଟନା ହାଇକୋର୍ଟକୁ ତାଙ୍କର ବ୍ୟବସାୟକୁ ସ୍ଥାନାନ୍ତର କଲେ । ତାଙ୍କର ମକଦ୍ଦମା ଗୁଡ଼ିକ ଲଢ଼ିଲା ବେଳେ ସେ ଏଭଳି ଯୁକ୍ତି କରୁଥିଲେ ଯେ ଅନ୍ୟ ଓକିଲ ମାନେ କେବଳ ତାଙ୍କର ଯୁକ୍ତି ଶୁଣିବା ପାଇଁ କୋର୍ଟରେ ସମବେତ ହେଉଥିଲେ ।

ପ୍ରାୟ ସେହି ସମୟ ବେଳକୁ ତାଙ୍କ ମନ ଭିତରେ ଜାତୀୟତା ଭାବ ବସା ବାନ୍ଧୁଥାଏ । ତେଣୁ ସେ ସର୍ବଭାରତୀୟ କଂଗ୍ରେସ କମିଟିର ସଭ୍ୟ ହେଲେ । ୧୯୧୬ ମସିହାରେ କଲିକତାରେ ସର୍ବଭାରତୀୟ କଂଗ୍ରେସ କମିଟିର ଅଧିବେଶନ ଚାଲିଥିଲା ବେଳେ ଜୀବନରେ ପ୍ରଥମ ଥର ପାଇଁ ତାଙ୍କର ମହାତ୍ମାଗାନ୍ଧୀଙ୍କ ସହିତ ସାକ୍ଷାତ ହେଲା ।

ବିହାରର ଚମ୍ପାରଣ ଜିଲ୍ଲାରେ ହଜାର ହଜାର ଏକର ପରିମିତ ଏକ ବିରାଟ ଭୂଖଣ୍ଡରେ କେତେକ ବ୍ରିଟିଶ୍‌ଚାଷୀ ନୀଳ ଚାଷ କରୁଥିଲେ । ଏଥିରୁ ସେମାନେ ଖୁବ୍ ଲାଭ ପାଉଥିଲେ । ସେଠାରେ ଥିବା ଦେଶୀୟ କୃଷକମାନଙ୍କୁ ଏହି ନୀଳଚାଷ ହେଉଥିବା ଜମିରେ ଖଟିବା ପାଇଁ ବାଧ କରାଯାଉଥିଲା । ବ୍ରିଟିଶ୍ ଲୋକଙ୍କ କଥା ଅମାନ୍ୟ କଲେ ସେମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରାଯାଉଥିଲା । ସ୍ଥାନୀୟ କୃଷକମାନଙ୍କର କୌଣସି ସମସ୍ୟା ଦେଖାଦେଲେ ରାଜେନ୍ଦ୍ର ପ୍ରସାଦ ବିନା ଖର୍ଚ୍ଚରେ ସେମାନଙ୍କ ମକଦ୍ଦମା ହାଇକୋର୍ଟରେ ଲଢୁଥିଲେ । ତଥାପି ବ୍ରିଟିଶ୍ ମାନେ ଏହି କୃଷକ ମାନଙ୍କୁ ଉତ୍ପୀଡ଼ନ କରିବା ବନ୍ଦ କରି ନ ଥିଲେ । ସ୍ଥାନୀୟ କୃଷକ ମାନଙ୍କର ଅବସ୍ଥା କଥା ଗାନ୍ଧିଜୀଙ୍କ କାନକୁ ଅଣାଗଲା । ଫଳରେ ସେ ସ୍ୱୟଂ ଚମ୍ପାରଣ ଆସି ଚାଷୀମାନଙ୍କ ଦୁର୍ଦ୍ଦଶା ଅନୁଧ୍ୟାନ କଲେ । ବ୍ରିଟିଶ୍ ଲୋକ ଏବଂ ସରକାରୀ କର୍ମଚାରୀମାନେ ସେଠାରେ ଆନ୍ଦୋଳନାତ୍ମକ କାର୍ଯ୍ୟ ହୋଇପାରେ ସନ୍ଦେହ କରି ଗାନ୍ଧିଜୀଙ୍କୁ ଚମ୍ପାରଣ ଛାଡ଼ି ଚାଲିଯିବା ପାଇଁ ଆଦେଶ ଦେଲେ । ଗାନ୍ଧିଜୀ ଏହି ଆଦେଶକୁ ଅମାନ୍ୟ କରି କହିଥିଲେ ଯେ ସେ କେବଳ ଅବସ୍ଥାର ଅନୁଧ୍ୟାନ କରିବା ପାଇଁ ଆସିଛନ୍ତି କୌଣସି ଆନ୍ଦୋଳନ କରିବା ଉଦ୍ଦେଶ୍ୟରେ ସେ ଚମ୍ପାରଣ ଆସି ନାହାନ୍ତି

ଗାନ୍ଧିଜୀ ଚାଷୀମାନଙ୍କର ଦୁଃଖ ଶୁଣିବା ପରେ ପାଟନାରେ ଥିବା ରାଜେନ୍ଦ୍ର ପ୍ରସାଦଙ୍କ ପାଖକୁ ଏକ ତାର ବାର୍ତ୍ତା ପଠାଇ ତାଙ୍କୁ କିଛି ସ୍ୱେଚ୍ଛାସେବୀଙ୍କ ସହିତ ଚମ୍ପାରଣ ଆସିବାକୁ ଅନୁରୋଧ କଲେ । ଏହା ମଧ୍ୟରେ ଗାନ୍ଧିଜୀଙ୍କୁ କୋର୍ଟରେ ହାଜର ହେବାପାଇଁ ଆଦେଶ ମିଳିଥିଲା । ସେଦିନ ଗାନ୍ଧିଜୀ ଆସିବାର ଖବର ଶୁଣି ବିଚାରାଳୟ ଲୋକାରଣ୍ୟ ହୋଇ ଯାଇଥିଲା । ଦୂର ଦୂରାନ୍ତ ଗ୍ରାମରୁ କୋର୍ଟରେ ଏହି ବିଚାର ଶୁଣିବା ପାଇଁ ଲୋକେ ରୁଣ୍ଡ ହେଲେ । ବିଚାରକ ଗାନ୍ଧିଜୀଙ୍କର ନିର୍ଭୟ ରୂପ ତଥା ସତ୍ୟ ଏବଂ ଧର୍ମ ପ୍ରତି ଅନୁରକ୍ତି ଦେଖି ଖୁବ୍ ପ୍ରଭାବିତ ହୋଇଥିଲେ ଏବଂ ଗାନ୍ଧିଜୀ ପୁନର୍ବାର ଯାଇ ଚମ୍ପାରଣରେ ଅବସ୍ଥାନ କରିବା ପାଇଁ ଅନୁମତି ଦେଇଥିଲେ ।

ଗାନ୍ଧିଜୀ ଚମ୍ପାରଣରେ ଥିଲାବେଳେ ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ ତାଙ୍କ ସହିତ ଛାଇ ପରି ଲାଗି ରହିଥିଲେ । ବିହାର ଏବଂ ଓଡ଼ିଶାର ସରକାର ଶେଷରେ ଏକ ଅଧିନିୟମ ପାରିତ କଲେ । ତା ଫଳରେ ଚମ୍ପାରଣର ଚାଷୀ ଓ ମଜଦୁର ମାନେ ଅନେକ ବର୍ଷର ଅବିଚାର ସହ୍ୟ କରିବା ପରେ ଶେଷରେ କେତେକ ସୁବିଧା ପାଇଥିଲେ ।

ଏହି ସବୁ ଘଟଣା ରାଜେନ୍ଦ୍ର ପ୍ରସାଦଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା । ଫଳରେ ସେ ଗାନ୍ଧିଜୀଙ୍କର ଜଣେ ଆଗଧାଡ଼ିର ଅନୁଗାମୀ ହେଲେ । ଗାନ୍ଧିଜୀଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସିବା ପରଠାରୁ ରାଜେନ୍ଦ୍ର ପ୍ରସାଦଙ୍କ ଜୀବନ ଧାରାରେ ବହୁତ ପରିବର୍ତ୍ତନ ଆସିଲା । ସେ ସରଳ ଜୀବନଯାପନ କଲେ ଏବଂ ତାଙ୍କର ଯେତେ ସବୁ ଭୃତ୍ୟ ଥିଲେ ସେମାନଙ୍କ ସାହାଯ୍ୟ ନ ନେଇ ସେ ନିଜେ ନିଜର ସମସ୍ତ କାମ କରିବାକୁ ଆରମ୍ଭ କଲେ । ଘର ଝାଡୁ ମାରିବା, ନିଜର ଲୁଗାପଟା ସଫା କରିବା, ନିଜର ବ୍ୟାଗ ଆଦି ବୋଝ ନିଜେ ଉଠାଇବା ଇତ୍ୟାଦି ତହିଁରେ ଅର୍ନ୍ତଭୁକ୍ତ । ଅସ୍ପୃଶ୍ୟତା ବିଷୟରେ ତାଙ୍କର ଥିବା ପୂର୍ବ ଧାରଣା ପରିବର୍ତ୍ତିତ ହେଲା । ଗାନ୍ଧିଜୀ କହୁଥିଲେ ଯେତେବେଳେ ଅନେକ ଲୋକ ଗୋଟିଏ ସାଧାରଣ ଉଦ୍ଦେଶ୍ୟ ରଖି କାମ କରନ୍ତି ସେମାନେ ଗୋଟିଏ ଜାତିର ବା ଗୋଟିଏ ଗୋଷ୍ଠୀର ହୋଇଯାଆନ୍ତି । ସେ ଗୋଷ୍ଠୀର ନାମ ହେଉଛି 'ସହକର୍ମୀ' । ଗାନ୍ଧିଜୀଙ୍କର ହରିଜନ ଆନ୍ଦୋଳନ ସାରାଦେଶ ଗ୍ରହଣ କଲା । ବିହାର ରାଜ୍ୟର ଲୋକମାନେ ମଧ୍ୟ ଅସ୍ପୃଶ୍ୟତା ନିବାରଣ ପାଇଁ ଶପଥ କଲେ ଏବଂ ହରିଜନ ମାନଙ୍କ ସହିତ ଉତ୍ତମ ସମ୍ପର୍କ ସ୍ଥାପନ କଲେ ।

ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନର ଡ଼ାକରା ପାଇ ରାଜେନ୍ଦ୍ର ପ୍ରସାଦ ତାଙ୍କର ଅତି ଲୋଭନୀୟ ଆଇନ ବ୍ୟବସାୟକୁ ପରିତ୍ୟାଗ କରି ପାଟନା ନିକଟରେ ୧୯୨୧ ମସିହାରେ ଏକ ଜାତୀୟ ମହାବିଦ୍ୟାଳୟ ସ୍ଥାପନ କଲେ । ପରବର୍ତ୍ତୀ ସମୟରେ ଏହି କଲେଜକୁ ଗଙ୍ଗାନଦୀ କୂଳବର୍ତ୍ତୀ ସଦାକତ୍ ଆଶ୍ରମକୁ ସ୍ଥାନାନ୍ତରିତ

କରି ନିଆଗଲା । ତାଙ୍କ ନେତୃତ୍ୱରେ ଗ୍ରାମ ମାନଙ୍କରେ ପଞ୍ଚାୟତ ଏବଂ ସେବାସମିତିମାନ ଗଠିତ ହେଲା । ସାଧାରଣ ଲୋକଙ୍କୁ ବିଦେଶୀ କପଡ଼ାକୁ ପରିତ୍ୟାଗ କରି ଚରଖାରେ ସୂତା କାଟି ଖଦୀ ପିନ୍ଧିବା ପାଇଁ ପରାମର୍ଶ ଦିଆଗଲା ।

ଲବଣ ସତ୍ୟାଗ୍ରହରେ ଯୋଗଦେବା ଫଳରେ ରାଜେନ୍ଦ୍ର ପ୍ରସାଦଙ୍କୁ ପ୍ରଥମ ଥର ପାଇଁ ୬ ମାସ କାଳ ଜେଲ୍ ଖାନାରେ କଟାଇବାକୁ ପଡ଼ିଥିଲା । ତା ପରେ ସେ ଅନେକ ଥର କାରାବରଣ କରିଥିଲେ । ୧୯୩୨ ମସିହାରେ ସେ ସିଭିଲ୍ ଡ଼ିସ୍‌ଓବିଡ଼ିଏଣ୍ଟ ଆନ୍ଦୋଳନରେ ଭାଗ ନେଇଥିଲେ । ୧୯୩୪ ମସିହାରେ ବିହାରରେ ହୋଇଥିବା ଭୂମିକମ୍ପ ପ୍ରଭାବିତ ଅଞ୍ଚଳରେ ଖାଦ୍ୟ, ବସ୍ତ୍ର ଏବଂ ଔଷଧ ଯୋଗାଇ ରିଲିଫ୍ କାର୍ଯ୍ୟ କରିବାରେ ସେ କଠିନ ଶ୍ରମ କରିଥିଲେ ।

ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ ଏକାଧିକ ବାର ଭାରତୀୟ ଜାତୀୟ କଂଗ୍ରେସର ସଭାପତି ଭାବେ ନିର୍ବାଚିତ ହୋଇଥିଲେ । ୧୯୩୪ ମସିହା ଅକ୍ଟୋବର ମାସରେ ବମ୍ବେଠାରେ ହୋଇଥିବା ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନରେ ସଭାପତିତ୍ୱ କରିଥିଲେ ।  ୧୯୩୯ରୁ ୧୯୪୭ ଭିତରେ ଭାରତ ଧୀର ଏବଂ ଦୃଢ଼ ଗତିରେ ସଂପୂର୍ଣ୍ଣ ସ୍ୱାଧୀନତା ଆଡ଼କୁ ଅଗ୍ରସର ହେଉଥିଲା । ପରିତାପର ବିଷୟ ଯେ ମହମ୍ମଦ ଅଲ୍ଲୀ ଜୀନାଙ୍କ ନେତୃତ୍ୱରେ ପରିଚାଳିତ ମୁସ୍‌ଲିମ୍ ଲିଗ୍ ଏକ ସ୍ୱତନ୍ତ୍ର ପାକିସ୍ଥାନ ରାଷ୍ଟ୍ର ନିର୍ମାଣ ପାଇଁ ଦାବି ଜଣାଉଥିଲା । ସେହି ସମୟରେ ସାଂପ୍ରଦାୟିକ ଦଙ୍ଗା ଦେଶର ବିଭିନ୍ନ ସ୍ଥାନରେ ମୁଣ୍ଡ ଟେକିଲା । ଏହା ଦେଖି ରାଜେନ୍ଦ୍ର ପ୍ରସାଦଙ୍କ ହୃଦୟ ବିଚଳିତ ହେଲା । ହିନ୍ଦୁ ଏବଂ ମୁସଲମାନ ସଂପ୍ରଦାୟ ଏକାଠି ହୋଇ ବିଭିନ୍ନ ପର୍ବପର୍ବାଣୀ ଆନନ୍ଦରେ ପାଳନ କରୁଥିଲେ । ସେ ସବୁ ସୁଖଦ ମୁହୂର୍ତ୍ତର ଦୃଶ୍ୟ ତାଙ୍କ ମାନସପଟରେ ଉଦ୍ଭାସିତ ହେଲା । ଦୁଃଖରେ ସେ ମର୍ମାହତ ହୋଇପଡ଼ିଲେ ।

ଦ୍ୱିତୀୟ ମହାଯୁଦ୍ଧ ଶେଷ ହେବା ପରେ ପରେ ବ୍ରିଟିଶ୍ ସରକାର ଅଧିକ ସମୟ ଭାରତକୁ ନିଜ ଅକ୍ତିଆରରେ ରଖିବା ସମ୍ଭବପର ହେବନାହିଁ ବୋଲି ଜାଣି ପାରିଲେ । ଶେଷରେ ବହୁ ପ୍ରତୀକ୍ଷିତ ସ୍ୱାଧୀନତା ନିକଟତର ହୋଇ ଆସିଲା । କିନ୍ତୁ ସାଂପ୍ରଦାୟିକ ହିଂସା ସାରା ବିହାର ଏବଂ ବେଙ୍ଗଲରେ ବ୍ୟାପକ ଅବସ୍ଥାରେ ରହିଥିଲା ।

୧୯୪୬ ମସିହାରେ ପଣ୍ଡିତ ଜବାହାରଲାଲ୍ ନେହେରୁଙ୍କ ନେତୃତ୍ୱରେ ଏକ ମଧ୍ୟବର୍ତ୍ତୀ କାଳୀନ ସରକାର ଗଠିତ ହେଲା । ତହିଁରେ ୧୨ ଜଣ ମନ୍ତ୍ରୀ ରହିଥିଲେ । ତନ୍ମଧ୍ୟରେ ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ ଖାଦ୍ୟ ଏବଂ କୃଷି ମନ୍ତ୍ରୀ ଭାବେ ଯୋଗ ଦେଇଥିଲେ । ୧୯୪୬ରୁ ୧୯୪୯ ମସିହା ପର୍ଯ୍ୟନ୍ତ ସେ ଭାରତୀୟ କନ୍‌ଷ୍ଟିଚ୍ୟୁଏଣ୍ଟ୍ ଆସେମ୍ବ୍ଲିର ସଭାପତିତ୍ୱ କରିଥିଲେ ଏବଂ ଭାରତର ସମ୍ବିଧାନ ପ୍ରଣୟନରେ ସାହାଯ୍ୟ କରିଥିଲେ ।



୧୯୫୦ ମସିହା ଜାନୁୟାରୀ ୨୬ ତାରିଖ ଦିନ ଭାରତ ଏକ ସାଧାରଣ ତନ୍ତ୍ର ରାଷ୍ଟ୍ର ଭାବେ ଘୋଷିତ ହେଲା । ସ୍ୱାଧୀନ ଭାରତର ପ୍ରଥମ ରାଷ୍ଟ୍ରପତି ଭାବେ ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ ଶପଥ ଗ୍ରହଣ କଲେ ।

ରାଷ୍ଟ୍ରପତି ଭାବେ ସେ ଦେଶମାତୃକାର ସେବା କରିବାରେ ପୂର୍ବପରି ମନୋନିବେଶ କରିଥିଲେ । ତାଙ୍କର ବାର୍ଦ୍ଧକ୍ୟ ଏବଂ ଭଗ୍ନ ସ୍ୱାସ୍ଥ୍ୟ ସତ୍ତ୍ୱେ ଅନେକ ଦେଶ ପରିଦର୍ଶନ କରିଥିଲେ ଏବଂ ଶୁଭେଚ୍ଛା ଗ୍ରସ୍ତରେ ଯାଇଥିଲେ । ଆଣବିକ ଯୁଗରେ ଶାନ୍ତି ପ୍ରତିଷ୍ଠା ତାଙ୍କର ପ୍ରଧାନ କାମ୍ୟ ଥିଲା ।

ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ ଅନେକ ସାରଗର୍ଭକ ପୁସ୍ତକ ରଚନା କରିଛନ୍ତି । ଚମ୍ପାରଣରେ ସତ୍ୟାଗ୍ରହ, ଦ୍ୱିଖଣ୍ଡିତ ଭାରତ, ମହାତ୍ମା ଗାନ୍ଧୀ ଏବଂ ବିହାର, କେତେକ ସ୍ମୃତି, ବାପୁଙ୍କ ଚରଣରେ ଇତ୍ୟାଦି ସେଥିରୁ ଅନ୍ୟତମ । ସେ ନିଜର ଆତ୍ମଜୀବନୀ ମଧ ଲେଖିଛନ୍ତି । ତାହା ୧୯୪୬ ମସିହାରେ ଆତ୍ମକଥା ନାମରେ ପ୍ରକାଶିତ ହୋଇଛି । ରାଷ୍ଟ୍ରପତି ଭବନରେ ସେ ଦୀର୍ଘ ୧୨ ବର୍ଷ କାଳ ଅବସ୍ଥାନ କରିଥିଲେ ।

ରାଷ୍ଟ୍ରପତି ପଦରୁ ଅବ୍ୟାହତି ନେବାପରେ ୧୯୬୨ ମସିହାରେ ଭାରତ ସରକାର ତାଙ୍କୁ ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ 'ଭାରତରତ୍ନ'ରେ ସମ୍ମାନିତ କରିଥିଲେ । ଜୀବନର ଶେଷ କିଛି ବର୍ଷ ସେ ଅତିପ୍ରିୟ ସଦାକତ୍ ଆଶ୍ରମରେ ବିତାଇବା ପାଇଁ ଇଚ୍ଛା କରିଥିଲେ । ସେହି ଆଶ୍ରମରେ ହିଁ ୧୯୬୩ ମସିହା ଫେବ୍ରୁୟାରୀ ୨୮ ତାରିଖ ଦିନ ସେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ।

ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କର ପାଣ୍ଡିତ୍ୟ ଓ ସମାଜସେବା ଭାରତୀୟ ଜନମାନସରେ ଚିରସ୍ମରଣୀୟ ହୋଇ ରହିବ । ବିହାରର ଏହି ବରପୁତ୍ର ସ୍ୱାଧୀନ ଭାରତର ପ୍ରଥମ ରାଷ୍ଟ୍ରପତି ହେବାର ଗୌରବ ଅର୍ଜନ କରିଥିଲେ ।

***

# ଡକ୍ଟର ଜାକିର ହୁସେନ୍



୧୮୯୭-୧୯୬୯

ଭାରତରତ୍ନ- ୧୯୬୩

**୧**୮୯୭ ମସିହା ଫେବୃୟାରୀ ୮ ତାରିଖ ଦିନ ହାଇଦ୍ରାବାଦ୍‌ଠାରେ ଏକ ପଠାନ୍ ପରିବାରରେ ଡ଼କ୍ଟର ଜାକିର ହୁସେନ୍ ଜନ୍ମ ଗ୍ରହଣ କରିଥିଲେ । ଉତ୍ତରପ୍ରଦେଶସ୍ଥିତ ଫରିଦାବାଦ ତାଙ୍କର ପୈତୃକ ସ୍ଥାନ ହେଲେ ହେଁ ପରବର୍ତ୍ତୀ ସମୟରେ ତାଙ୍କ ପରିବାର ହାଇଦ୍ରାବାଦରେ ଆସି ବସବାସ କରିବାକୁ ଲାଗିଲେ । ତାଙ୍କର ପିତା ସିଜା ହୁସେନ୍ ଖାଁ ଜଣେ ଓକିଲ ଥିଲେ ଏବଂ ତାଙ୍କର ସାତ ପୁଅ ଥିଲେ । ଜାକିର୍ ହୁସେନ୍ ସେମାନଙ୍କ ମଧ୍ୟରେ ତୃତୀୟ । ଜାକିର୍ ହୁସେନ୍‌ଙ୍କୁ ମାତ୍ର ୯ ବର୍ଷ ବୟସରେ ତାଙ୍କର ପିତାଙ୍କର ମୃତ୍ୟୁ ହେଲା । ଜଣେ ସଂପର୍କୀୟଙ୍କ ଘରେ ରହି ଜାକିର୍ ହୁସେନ୍ ତାଙ୍କର ପ୍ରାଥମିକ ଶିକ୍ଷା ହାଇଦ୍ରାବାଦର ମୁଲତାନ ବଜାରରେ

ଥିବା ଏକ ସରକାରୀ ସ୍କୁଲ୍‌ରେ ଶେଷ କଲେ । ୧୯୧୧ ମସିହାରେ ପ୍ଲେଗ୍‌ରୋଗରେ ତାଙ୍କର ମାତା ମୃତ୍ୟୁବରଣ କଲେ ।

ଜାକିର୍ ହୁସେନ୍ ଜଣେ ଖୁବ୍ ବୁଦ୍ଧିମାନ ଏବଂ ବିଚକ୍ଷଣ ଛାତ୍ର ଥିଲେ । ୧୯୧୩ ମସିହାରେ ସେ ମାଟ୍ରିକ୍ୟୁଲେସନ୍ ପାଶ୍ କରି ଆଲିଗଡ ମୁସ୍‌ଲିମ୍ ବିଶ୍ୱବିଦ୍ୟାଳୟରେ ଯୋଗଦେଲେ । ସେଠାରେ ପଢ଼ିଲା ବେଳେ ସେ ବକ୍ତୃତା ଏବଂ ସାହିତ୍ୟ ରଚନା କ୍ଷେତ୍ରରେ ପାରଦର୍ଶିତା ଲାଭ କରିଥିଲେ । ମହାବିଦ୍ୟାଳୟରେ ସେ ସମସ୍ତଙ୍କର ପ୍ରିୟ ଥିଲେ । ଏମ୍.ଏ ପଢୁଥିବା ସମୟରେ ତାଙ୍କର ଗାନ୍ଧିଜୀଙ୍କ ସହିତ ସାକ୍ଷାତ ହେଲା । ଅସହଯୋଗ ଆନ୍ଦୋଳନର ଅଭିଯାନରେ ବାହାରିଥିବା ବେଳେ ତାଙ୍କ ବିଶ୍ୱବିଦ୍ୟାଳୟକୁ ଗାନ୍ଧିଜୀ ପଦାର୍ପଣ କରିଥିଲେ । ଗାନ୍ଧିଜୀଙ୍କ ଆହ୍ୱାନ କ୍ରମେ ୨୩ ବର୍ଷ ବୟସ୍କ ଜାକିର ହୁସେନ୍ ତାଙ୍କ ସହିତ ହଜାର ହଜାର ଛାତ୍ରଙ୍କୁ ନେଇ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ଫଳରେ ମହାତ୍ମାଗାନ୍ଧି ତାଙ୍କର ମାର୍ଗଦର୍ଶକ ଏବଂ ପ୍ରେରଣାର ଉତ୍ସ ପାଲଟିଗଲେ ।

ପରବର୍ତ୍ତୀ ସମୟରେ ଜାକିର ହୁସେନ୍ ବର୍ଲିନ୍ ଯାଇ ସେଠାରେ ଅର୍ଥଶାସ୍ତ୍ରରେ ପିଏଚ୍‌ଡ଼ି କରି ଭାରତକୁ ଫେରି ଆସିଥିଲେ । ଭାରତ ପ୍ରତ୍ୟାବର୍ତ୍ତନ ପରେ କେତେଜଣ ଉତ୍ସାହୀ ବ୍ୟକ୍ତି ଯଥା ହାକିମ୍ ଅଜ୍‌ମଲ୍ ଖାଁ, ଡ଼କ୍ଟର ରାମପ୍ୟାରୀ ଏବଂ ଅଲ୍ଲୀ ଭ୍ରାତା ମାନଙ୍କୁ ନେଇ ଜାମିଆ ମିଲିଆ ଇସ୍‌ଲାମିଆ ନାମକ ଅନୁଷ୍ଠାନ ଗଠନ କରିଥିଲେ ।

୧୯୨୬ ମସିହାରେ ଡ଼କ୍ଟର ଜାକିର୍ ହୁସେନ ଜାମିଆ ମିଲିଅ ଇସ୍‌ଲାମିଆର ଉପକୁଳପତି ପଦରେ ଅଧିଷ୍ଠିତ ହେଲେ ଏବଂ ସେହି ପଦରେ ସେ ପରବର୍ତ୍ତୀ ୨୨ ବର୍ଷ କାଳ ରହିଲେ । ଏହି ସମୟ ମଧ୍ୟରେ ସେ ଅନୁଷ୍ଠାନରେ କେବଳ ପାଠ୍ୟକ୍ରମ କୈନ୍ଦ୍ରିକ ଶିକ୍ଷା ଦିଆ ନ ଯାଇ ବୈଷୟିକ କର୍ମକୈନ୍ଦ୍ରିକ ଶିକ୍ଷା ଦିଆଯାଉଥିଲା । ତାଙ୍କର ପରାମର୍ଶ ଥିଲା ଯେ ପଢ଼ିବା ସମୟରେ ବି ଉପାର୍ଜ୍ଜନ କରୁଥାଅ ।



ଜାମିଆ ମିଲିଆରେ ମିଳୁଥିବା ତାଙ୍କ ଅଭିଜ୍ଞତା ତଥା ଶିକ୍ଷା ସମ୍ବନ୍ଧୀୟ ଦର୍ଶନଶାସ୍ତ୍ରରେ ତାଙ୍କର ପଟୁତାକୁ ପାଥେୟ କରି ଜାତୀୟ ମୌଳିକ



ଶିକ୍ଷାର ପ୍ରବର୍ତ୍ତନ କରାଗଲା । ୧୯୩୮ ମସିହାରେ ଏହି ମୌଳିକ ଶିକ୍ଷା ପ୍ରଣାଳୀ ପ୍ରବର୍ତ୍ତନ ସମୟରେ ଜାକିର ହୁସେନଙ୍କୁ ସେବାଗ୍ରାମସ୍ଥିତ ହିନ୍ଦୁସ୍ଥାନୀ ତାଲିମ ସଂଘର ସଭାପତି ରୂପେ ଅଧିଷ୍ଠିତ କରାଗଲା । ଏହି ପଦରେ ସେ ୧୯୩୮ରୁ ୧୯୪୮ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ ।

ଭାରତର ସ୍ୱାଧୀନତା ଏବଂ ଭାରତର ବିଭାଜନ ପରେ ୧୯୪୭ ମସିହାରେ ମୌଲାନା ଆବୁଲକାଲାମ୍ ଆଜାଦ୍ ଆଲିଗଡ଼ ମୁସ୍‌ଲିମ୍ ବିଶ୍ୱବିଦ୍ୟାଳୟର ଉପକୁଳପତି ହେବାପାଇଁ ଜାକିର୍ ହୁସେନ୍‌ଙ୍କୁ ଅନୁରୋଧ କଲେ । ସେଠାରେ ସେ ୧୯୫୬ ମସିହା ପର୍ଯ୍ୟନ୍ତ ରହିଥିଲେ । ସେହି ସମୟରେ ବିଶ୍ୱବିଦ୍ୟାଳୟ ଶିକ୍ଷା କମିଶନ୍ ଏବଂ ପରେ ପ୍ରେସ୍ କମିଶନ୍‌ର ମଧ୍ୟ ସଭାପତି ହୋଇଥିଲେ । ୧୯୫୪ ମସିହାରେ ଭାରତ ସରକାର ଶିକ୍ଷା କ୍ଷେତ୍ରରେ ଅତୁଳନୀୟ ଅବଦାନ ପାଇଁ ତାଙ୍କୁ 'ପଦ୍ମ ବିଭୂଷଣ' ଉପାଧିରେ ଭୂଷିତ କରିଥିଲେ । ୧୯୫୬ ମସିହାରେ ଡ଼କ୍ଟର ଜାକିର୍ ହୁସେନ୍ ରାଜ୍ୟସଭାକୁ ନିର୍ବାଚିତ ହୋଇ ଆସିଲେ । ପରେ ସେ ବିହାର ରାଜ୍ୟର ରାଜ୍ୟପାଳ ହୋଇଥିଲେ । ୧୯୬୨ ମସିହାରେ ସେ ଭାରତର ଉପରାଷ୍ଟ୍ରପତି ଭାବେ ନିର୍ବାଚିତ ହେଲେ ।

ଉପରାଷ୍ଟ୍ରପତି ଥିଲାବେଳେ ସେ ଇଥିଓପିଆ, ସୁଦାନ, ୟୁନାଇଟେଡ୍ ଆରବ ରିପବ୍ଲିକ୍, ଟ୍ୟୁନିସିଆ, ଏବଂ ମରୋକ୍କୋ ଆଦି ଦେଶ ଗସ୍ତ କରିଥିଲେ । ଏବଂ ୧୯୬୫ ମସିହାରେ କ୍ରେଟ୍, ଜୋଡ଼ାନ, ଗ୍ରୀସ୍ ଏବଂ ତୁର୍କୀ ଆଦିକୁ ଏକ ସଦିଚ୍ଛା ଗସ୍ତରେ ଯାଇଥିଲେ । ୧୯୬୬ ମସିହାରେ ସେ ଆଫଗାନିସ୍ଥାନ ଗ୍ରସ୍ତ କଲାବେଳେ ସୀମାନ୍ତ ଗାନ୍ଧୀ ଖାଁ ଅବ୍‌ଦୁଲ୍ ଗଫର ଖାଁଙ୍କୁ ସାକ୍ଷାତ କରିଥିଲେ ।

୧୯୬୩ ମସିହାରେ ଡକ୍ଟର ଜାକିର୍ ହୁସେନ୍‌ଙ୍କୁ ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତ ରତ୍ନରେ ଭୂଷିତ କରାଗଲା । ଦେଶର ଉନ୍ନତି ପାଇଁ ବିଶେଷ କରି ଶିକ୍ଷାକ୍ଷେତ୍ରରେ ଅତୁଳନୀୟ ଅବଦାନ ପାଇଁ ତାଙ୍କୁ ଏହି ସମ୍ମାନ ପ୍ରାପ୍ତ ହୋଇଥିଲା । ଦିଲ୍ଲୀ, କଲିକତା, ଆଲିଗଡ, ଅଲ୍ଲାହାବାଦ୍ ଏବଂ କାଇରୋ ବିଶ୍ୱବିଦ୍ୟାଳୟରୁ ତାଙ୍କୁ ଡ଼ିଲିଟ୍ ଉପାଧିଗତ ସମ୍ମାନିତ କରାଯାଇଥିଲା ।

ଅଧ୍ୟୟନ ଏବଂ ଅଧ୍ୟାପନାରେ ଡ଼କ୍ଟର ଜାକିର ହୁସେନ୍‌ଙ୍କର ପ୍ରଗାଢ଼ ଦକ୍ଷତା ଥିଲା । ସେ ପ୍ଲାଟୋଙ୍କ ଲିଖିତ ରିପବ୍ଲିକ୍ ଏବଂ କ୍ୟାନନ୍‌ଙ୍କ ଲିଖିତ ଏଲିମେଣ୍ଟାରୀ ପଲିଟିକାଲ ଇକୋନୋମିକ୍‌ସକୁ ଉର୍ଦ୍ଦୁରେ ଅନୁବାଦ କରିଥିଲେ । ସେ ସମାବର୍ତ୍ତନ ଉତ୍ସବମାନଙ୍କରେ ଦେଇଥିବା ଅଭିଭାଷଣକୁ ଏକତ୍ରିତ କରି ଡ଼ାଇନାଇମିକ୍ ୟୁନିଭରସିଟି ନାମକ ପୁସ୍ତକରେ ସ୍ଥାନିତ କରାଯାଇଥିଲା । ଜର୍ମାନୀ ଭାଷାରେ ସେ ମହାତ୍ମାଗାନ୍ଧୀଙ୍କ ଉପରେ ଏକ ପୁସ୍ତକ ରଚନା କରିଥିଲେ । ଶିଶୁସାହିତ୍ୟ କ୍ଷେତ୍ରରେ ମଧ୍ୟ ତାଙ୍କର ଅବଦାନ ବହୁଳ ।

ଡକ୍ଟର ଜାକିର ହୁସେନ ସର୍ବଦା ଏକ କଳା ରଙ୍ଗର ସେରଓ୍ୱାନୀ ଏବଂ ଧଳା ଚୁଡ଼ିଦାର ପାଇଜାମା ପରିଧାନ କରୁଥିଲେ । ସେ ଏକ ଅତ୍ୟାଧୁନିକ ଏବଂ ଶିକ୍ଷିତ ବ୍ୟକ୍ତି ଥିଲେ । ତାଙ୍କର ଅନ୍ୟାନ୍ୟ ଅନେକ ଆମୋଦକାରୀ ରୁଚି ଥିଲା- ତହିଁରେ ବିଭିନ୍ନ କ୍ୟାକ୍‌ଟସ୍ ଓ ଫସିଲ୍ ସଂଗ୍ରହ ଏବଂ ପେଣ୍ଟିଂ ତଥା ବିଭିନ୍ନ ଲିପି ସଂଗ୍ରହ କରିବା ଆଦି ଅନ୍ତର୍ଭୁକ୍ତ । ପଣ୍ଡିତ ଜବାହାରଲାଲ୍ ନେହେରୁଙ୍କ ପରି ସେ ମଧ୍ୟ ଗୋଲାପ ଫୁଲକୁ ଖୁବ୍ ଭଲ ପାଉଥିଲେ ।

୧୯୬୭ ମସିହା ମେ ୧୩ ତାରିଖ ଦିନ ଡ଼କ୍ଟର ଜାକିର୍ ହୁସେନ୍ ଭାରତର ତୃତୀୟ ରାଷ୍ଟ୍ରପତି ଭାବେ ଅଧିଷ୍ଠିତ ହେଲେ । ମାତ୍ର ଏହି ପଦବୀରେ ସେ ଅଧିକ କାଳ କାର୍ଯ୍ୟ କରି ପାରିନଥିଲେ । ରାଷ୍ଟ୍ରପତି ଥିବା ସମୟରେ ୧୯୬୯ ମେ ୩ ତାରିଖ ଦିନ ତାଙ୍କର ଦେହାନ୍ତ ହେଲା । ଜାମିଆ ମିଲିଆ ବିଶ୍ୱବିଦ୍ୟାଳୟର ପରିସର ମଧ୍ୟରେ ତାଙ୍କୁ କବର ଦିଆଗଲା । ସେହି ବିଶ୍ୱବିଦ୍ୟାଳୟରେ ତାଙ୍କର ଜୀବନ କାଳର ଅନେକ ବର୍ଷ ସେ ବିତାଇ ଥିଲେ । ଜୀବନର ଅନ୍ତିମ କ୍ଷଣରେ ସେହିଠାରେ ହିଁ ଚିରବିଶ୍ରାମ କଲେ ।

* * *

# ଡକ୍ଟର ପାଣ୍ଡୁରାମ ବମନ କାନେ



୧୮୮୦-୧୯୭୨

ଭାରତରତ୍ନ-୧୯୬୩

**ଡ**କ୍ଟର ପାଣ୍ଡୁରାମ କାନେଙ୍କର ସୁଦୀର୍ଘ ଏବଂ ସମୁଜ୍ଜ୍ୱଳ କାର୍ଯ୍ୟଧାରା ଭାରତୀୟ ସଂସ୍କୃତି ଏବଂ ଭାରତୀୟ ଭାବଧାରା ପ୍ରତି ଉତ୍ସର୍ଗୀକୃତ ଥିଲା । ତାଙ୍କର ବିଭିନ୍ନ ସାଫଲ୍ୟକୁ ସଂକ୍ଷିପ୍ତରେ କୁହାଗଲେ ସେ ଜଣେ ଶିକ୍ଷା ଓ ଗବେଷଣାରେ ନିମଜ୍ଜିତ ଜୀବନଧାରାର ମୂର୍ତ୍ତିମନ୍ତ ଅବତାର ବୋଲି କୁହାଯାଇପାରେ । ମଣ୍ଡଳିକ୍ ମେଡ଼ାଲ ପ୍ରାପ୍ତ, ସଂସ୍କୃତ ତଥା ଆଇନ ଶାସ୍ତ୍ରର ସେ ଜଣେ ଜନପ୍ରିୟ ଶିକ୍ଷାଦାତା । ବାର୍‌ର ଜଣେ ପ୍ରଖ୍ୟାତ ଏବଂ ସମ୍ମାନନୀୟ ସଭ୍ୟ । ଭାରତୀୟ ତତ୍ତ୍ୱ ଏବଂ ଭାରତୀୟ ସଂସ୍କୃତି ବିଷୟରେ ଗବେଷଣାରତ ମହାମହୋପାଧ୍ୟାୟ ଏ.ଆଇ.ଓ.ସିର ସଭାପତି ଏବଂ ରାଜ୍ୟସଭାର ଜଣେ ସୁବିଖ୍ୟାତ ସଭ୍ୟ ଭାବେ ଡକ୍ଟର କାନେ ପ୍ରତିଷ୍ଠିତ ଥିଲେ । ତାଙ୍କ ଜୀବଦଶା ମଧ୍ୟରେ ସେ ଭାରତୀୟ

ଇତିହାସ କଂଗ୍ରେସର ସଭାପତି ଏବଂ ଭାରତୀୟ ଜାତୀୟ ତତ୍ତ୍ୱ ଗବେଷଣା ପରିଷଦର ପ୍ରଫେସର ପଦ ଅଳଙ୍କୃତ କରିଥିଲେ । ଅନେକ ସାଂସ୍କୃତିକ, ସାମାଜିକ ଏବଂ ଶିକ୍ଷା ସମ୍ବନ୍ଧୀୟ ଅନୁଷ୍ଠାନର ସେ ସକ୍ରିୟ ସଭ୍ୟ ଥିଲେ । ସାମାଜିକ ଏବଂ ଅର୍ଥନୈତିକ କ୍ଷେତ୍ରରେ ତାଙ୍କର ବିଶ୍ଳେଷଣାତ୍ମକ ଜ୍ଞାନ ଥିଲା ଅତୁଳନୀୟ । ବମ୍ବେ ବିଶ୍ୱବିଦ୍ୟାଳୟ, ରୟାଲ ଏସିଆଟିକ୍ ସୋସାଇଟି, ବ୍ରାହ୍ମସଭା, ଧର୍ମ ନିର୍ଣ୍ଣୟ ମଣ୍ଡଳ ଆଦି ସହ ସାରା ଜୀବନ ଜଡ଼ିତ ଥିଲେ । ସେ ଧର୍ମଶାସ୍ତ୍ର ଏବଂ ଆଇନ୍ ଶାସ୍ତ୍ରରେ ଜଣେ ପ୍ରଖ୍ୟାତ ଗବେଷକ ଥିଲେ । ଏହି ପ୍ରଖ୍ୟାତ ବ୍ୟକ୍ତିଙ୍କୁ ୧୯୬୩ ମସିହାରେ ଭାରତର ରାଷ୍ଟ୍ରପତି ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନରେ ଭୂଷିତ କରିଥିଲେ । ଡକ୍ଟର ପାଣ୍ଡୁରାମ ବମନ କାନେ ୧୮୮୦ ମସିହା ମେ ୭ ତାରିଖ ଦିନ ରତ୍ନଗିରି ଜିଲ୍ଲାର ବିଡୋର ନିକଟବର୍ତ୍ତୀ ପର୍ଶୁରାମ ଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଏବଂ ପିତାମହ ଉଭୟେ ସଂସ୍କୃତ ପଣ୍ଡିତ ଏବଂ ବୈଦିକ ବ୍ରାହ୍ମଣ ଥିଲେ । ଏକ ଧାର୍ମିକ ଏବଂ ପରମ୍ପରା ସଂପନ୍ନ ପରିବାରରେ ତାଙ୍କର ବାଲ୍ୟକାଳ ବିତିଥିଲା । ୧୮୯୭ ମସିହାରେ ଦାପୋଲିର ଏଚ୍.ପି.ଜି ମିଶନ୍ ହାଇସ୍କୁଲ୍‌ରୁ ସେ ମାଟ୍ରିକ୍ୟୁଲେଶନ ପରୀକ୍ଷା ପାଶ୍ କରିଥିଲେ । ସେ ଜଣେ କୃତୀଛାତ୍ର ଥିଲେ । ଉଚ୍ଚତର ଶିକ୍ଷାଲାଭ ପାଇଁ ସେ ବମ୍ବେ ଯାଇ ଉଇଲସନ୍ କଲେଜରେ ନାମ ଲେଖାଇଲେ । ୧୯୦୧ ମସିହାରେ ସେ ସ୍ନାତକ ଡ଼ିଗ୍ରୀ ହାସଲ କରି ସଂସ୍କୃତରେ ସର୍ବଶ୍ରେଷ୍ଠ ପ୍ରଦର୍ଶନ ପାଇଁ ଧାନୁରାଜି ପୁରସ୍କାର ପାଇଥିଲେ । ସ୍ନାତକ ଡ଼ିଗ୍ରୀ ପାଇବା ପୂର୍ବରୁ ତାଙ୍କୁ ଅନେକ ବୃତ୍ତି ମିଳିଥିଲା । ଉଇଲସନ୍ କଲେଜରେ ସ୍ନାତକୋତ୍ତର ଶିକ୍ଷା ଦୁଇ ବର୍ଷ ପାଠକଲେ । ୧୯୦୨ ମସିହାରେ ସେ ଏଲ୍.ଏଲ୍.ବି ପରୀକ୍ଷାର ପ୍ରଥମ ଭାଗ ଉତ୍ତୀର୍ଣ୍ଣ ହେଲେ । ସେ ଇଂଲିଶ୍ ଏବଂ ସଂସ୍କୃତରେ ଏମ୍.ଏ ପାଶ୍ କରି ଜଲ ବେଦାନ୍ତ ପୁରସ୍କାର ଲାଭ କରିଥିଲେ । ଡ଼କ୍ଟର କାନେ ରତ୍ନଗିରିର ସରକାରୀ ହାଇସ୍କୁଲ୍‌ରେ ୧୯୦୪ ମସିହାରେ ଶିକ୍ଷକତା ଆରମ୍ଭ କଲେ । ୧୯୦୫ ମସିହାରେ ସେ ସେକେଣ୍ଡାରୀ ଟିଚର୍ସ ସାର୍ଟିଫିକେଟ୍ ପରୀକ୍ଷା ଦେଇ ତହିଁରେ ରାଜ୍ୟରେ ପ୍ରଥମସ୍ଥାନ ଅଧିକାର କଲେ । ତତ୍ପରେ ତାଙ୍କୁ ଏଲ୍.ପି. ଷ୍ଟୋନ୍ ହାଇସ୍କୁଲ୍‌କୁ ବଦଳି କରାଗଲା । ସେ ଶିକ୍ଷକତା କରୁଥିବା ସମୟରେ ଏଲ୍.ଏଲ୍.ବି ଡ଼ିଗ୍ରୀ ହାସଲ କଲେ ।

୧୯୦୬ ମସିହାରେ ଡ଼କ୍ଟର କାନେଙ୍କୁ ତାଙ୍କର ପ୍ରବନ୍ଧ 'ସାହିତ୍ୟରେ ଅଳଙ୍କାରର ଇତିହାସ' ପାଇଁ ଭି.ଏନ୍ ମଣ୍ଡଲିକ୍ ସ୍ୱର୍ଣ୍ଣ ପଦକ ମିଳିଥିଲା । ଏହି ପ୍ରବନ୍ଧଟି ପରେ ଇଂରାଜୀରେ ଏକ ପୁସ୍ତକ ହୋଇ ପ୍ରକାଶ ପାଇଲା ଏବଂ ତାହା ସ୍ନାତକୋତ୍ତର ଶ୍ରେଣୀରେ

ପାଠ୍ୟପୁସ୍ତକ ଭାବେ ଅନୁମୋଦିତ ହେଲା । ୧୯୦୭ ମସିହାରେ ତାଙ୍କୁ ପୁନର୍ବାର 'ଆର୍ଯ୍ୟ ପ୍ରକୃତି ଏବଂ ନୀତିଶିକ୍ଷା' ନାମକ ପ୍ରବନ୍ଧ ପାଇଁ ଭି.ଏନ୍ ମଣ୍ଡଲିକ୍ ପୁରସ୍କାର ବାବଦରେ ସେତେବେଳେ ୧୫୦ ଟଙ୍କାର ରାଶି ମିଳିଥିଲା ।

ଡ଼କ୍ଟର ମାଣ୍ଡେଲିକ୍ ୧୯୦୯ ମସିହାରେ ଏଲ୍.ପି ଷ୍ଟୋନ୍ କଲେଜରେ ସଂସ୍କୃତ ଅଧ୍ୟାପକ ଭାବେ କିଛିଦିନ କାର୍ଯ୍ୟରତ ଥିଲେ । ପରେ ସେ ଚାକିରୀରୁ ଇସ୍ତଫା ଦେଇ ଆଇନ୍ ବ୍ୟବସାୟରେ ମନୋନିବେଶ କରିଥିଲେ । ତା ପରେ ସେ ଏଲ୍.ଏମ୍.ଏନ୍ ପରୀକ୍ଷା ଦେଲେ ଏବଂ ସରକାରୀ ଆଇନ୍ ମହାବିଦ୍ୟାଳୟରେ ଦୀର୍ଘ ୬ ବର୍ଷ କାଳ ପ୍ରଫେସର ଭାବେ ନିଯୁକ୍ତ ହେଲେ । ବମ୍ବେ ବିଶ୍ୱବିଦ୍ୟାଳୟ ତାଙ୍କୁ ଏକ ସ୍ୱତନ୍ତ୍ର ତାଲିମ ଦେଇ ସଂସ୍କୃତରେ ଗବେଷଣା କରିବା ପାଇଁ ନିଯୁକ୍ତ କଲା । ୧୯୧୧ ମସିହାରେ ସେ ସରକାରୀ ଚାକିରିରୁ ଇସ୍ତଫା ଦେଲେ । ତାଙ୍କଠାରୁ କମ୍ ଶିକ୍ଷା ପ୍ରାପ୍ତ ବ୍ୟକ୍ତିଙ୍କୁ ପଦୋନ୍ନତି ଦିଆଯାଇଥିବାରୁ ତାର ପ୍ରତିବାଦ କରି ସେ ଇସ୍ତଫା ଦେଇଥିଲେ । ତା ପରେ ସେ ବମ୍ବେ ହାଇକୋର୍ଟରେ ଓକିଲାତି ବ୍ୟବସାୟ ଆରମ୍ଭ କଲେ ।

୧୯୪୧ ମସିହା ବେଳକୁ ତାଙ୍କୁ ୬୦ ବର୍ଷ ବୟସ ହୋଇଥାଏ । ତା ପରଠାରୁ ସେ ଭାରତୀୟ ତତ୍ତ୍ୱ ଉପରେ ଗବେଷଣାତ୍ମକ ଅନେକ ପୁସ୍ତକ ରଚନା କରି ବହୁ ପ୍ରଶଂସା ଏବଂ ପୁରସ୍କାର ପାଇଛନ୍ତି । ବ୍ରିଟିଶ୍ ସରକାର ତାଙ୍କୁ ମହାମହୋପାଧ୍ୟାୟ ଉପାଧି ୧୯୪୧ ମସିହାରେ ପ୍ରଦାନ କଲେ । ୧୯୪୬ ମସିହାରେ ଆହ୍ଲାବାଦ ବିଶ୍ୱବିଦ୍ୟାଳୟ ତାଙ୍କୁ ଡିଲିଟ୍ ଉପାଧିରେ ଭୂଷିତ କଲେ । ଡ଼କ୍ଟର କାନେ ବମ୍ବେ ବିଶ୍ୱବିଦ୍ୟାଳୟର ୯ ବର୍ଷ ଫେଲୋ ହୋଇଥିଲେ ଏବଂ ୧୯୪୭ ମସିହାରେ ସେ ବିଶ୍ୱବିଦ୍ୟାଳୟର ଉପକୁଳପତି ଭାବେ କାର୍ଯ୍ୟଭାର ଗ୍ରହଣ କଲେ । ତାଙ୍କ କାର୍ଯ୍ୟକାଳ ମଧ୍ୟରେ ସେ ଅନେକ ସାମାଜିକ ସଂସ୍କାର ଆଣିଥିଲେ । ପରବର୍ତ୍ତୀ ସମୟରେ ସେ ବମ୍ବେ ବିଶ୍ୱବିଦ୍ୟାଳୟର ୩ ବର୍ଷ ପାଇଁ କୁଳପତି ପଦ ଅଭିଷିକ୍ତ କରିଥିଲେ । ୧୯୫୩ ମସିହାରୁ ୧୯୫୯ ମସିହା ପର୍ଯ୍ୟନ୍ତ ଡ଼କ୍ଟର କାନେ ରାଜ୍ୟସଭାର ସଦସ୍ୟ ହୋଇଥିଲେ । ୧୯୫୬ ମସିହାରେ ସେ ସାହିତ୍ୟ ଏକାଡ଼େମୀ ପୁରସ୍କାର ଏବଂ ୧୯୫୯ ମସିହାରେ ଭାରତୀୟ ତତ୍ତ୍ୱ ଉପରେ ଜାତୀୟ ପ୍ରଫେସର ଆଖ୍ୟା ପାଇଥିଲେ । ୧୯୬୦ ମସିହାରେ ତାଙ୍କୁ ପୁନା ବିଶ୍ୱବିଦ୍ୟାଳୟ ଡି.ଲିଟ୍ ଉପାଧି ପ୍ରଦାନ କରିଥିଲେ । ସଂସ୍କୃତ, ଇଂରାଜୀ ସାଙ୍ଗକୁ ସେ ଫ୍ରେଞ୍ଚ ଏବଂ ଜର୍ମାନୀ ଭାଷାରେ ବି ଜଣେ ପଣ୍ଡିତ ଥିଲେ ।

ଡକ୍ଟର କାନେଙ୍କର ଅନେକ ଅନୁଷ୍ଠାନ ସହିତ ସଂପର୍କ ଥିଲା । ରୟାଲ ଏସିଆଟିକ୍ ସୋସାଇଟିରେ ଅନେକ ବର୍ଷ ଧରି ସେ ଫେଲୋ ଏବଂ ଉପସଭାପତି ଭାବେ କାର୍ଯ୍ୟ

କରିଛନ୍ତି । ଡ଼କ୍ଟର କାନେ ୨୫ ବର୍ଷ କାଳ ବମ୍ବେସ୍ଥିତ ଦକ୍ଷିଣି ବ୍ରାହ୍ମଣସଭାର ପରିଚାଳନା କମିଟିର ସଭ୍ୟ ଥିଲେ ଏବଂ ୧୦ ବର୍ଷ ତାର ସଭାପତି ରୂପେ କାର୍ଯ୍ୟ କରିଥିଲେ । ବାପୋଲୀ



ଶିକ୍ଷା ସମିତିର ସେ ସଭାପତି ଥିଲେ । ମରାଠୀ ମଣ୍ଡଳ ଏବଂ ବମ୍ବେସ୍ଥିତ ଗ୍ରନ୍ଥ ସଂଗ୍ରହାଳୟ ସହିତ ସେ ଘନିଷ୍ଠ ସଂପର୍କରେ ଥିଲେ । ନିୟାମକ ମଣ୍ଡଳର ଉପସଭାପତି ଭାବେ ଅନେକ ବର୍ଷ ସେ କାର୍ଯ୍ୟ କରିଥିଲେ । ତା ଛଡ଼ା ଡ଼କ୍ଟର ଭଣ୍ଡାରେକର ଓରିଏଣ୍ଟାଲ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍‌ର ସେ ସଭ୍ୟ ହୋଇଥିଲେ ।

ଡ଼କ୍ଟର କାନେଙ୍କର ବିଖ୍ୟାତ ଗ୍ରନ୍ଥାବଳୀମାନଙ୍କ ମଧ୍ୟରେ ସଂସ୍କୃତ ସାହିତ୍ୟର ଇତିହାସ, ଧର୍ମଶାସ୍ତ୍ରର ଇତିହାସ ଆଦି ପ୍ରଧାନ । ଦୀର୍ଘ ୨୫ ବର୍ଷ କାଳ ସେ ଧର୍ମଶାସ୍ତ୍ରର ଇତିହାସ ପୁସ୍ତକ ପାଇଁ ଦିବାରାତ୍ର କଠିନ ପରିଶ୍ରମ କରିଥିଲେ । ଏହି ପୁସ୍ତକ ୫ ଖଣ୍ଡ ହୋଇ ପ୍ରକାଶିତ ହୋଇଥିଲା । ଏହା ଧର୍ମଶାସ୍ତ୍ର ବିଷୟରେ ଏକ ଏନ୍‌ସାଇକ୍ଲୋପେଡ଼ିଆ ପରି । ଏହାର ପ୍ରଥମ ଖଣ୍ଡ ୧୯୩୦ ମସିହାରେ ପ୍ରକାଶିତ ହୋଇଥିଲା ଏବଂ ଶେଷ ଖଣ୍ଡ ୧୯୬୨ ମସିହାରେ ପ୍ରକାଶିତ ହେଲା । ଏହି ପୁସ୍ତକ ଗୁଡ଼ିକ ଜୀବନର ଭୌତିକ ତଥା ଆଧ୍ୟାତ୍ମିକ ଦିଗ ଉପରେ ଆଲୋକପାତ କରିଛି । ଏଥିରେ ଥିବା ବିଭିନ୍ନ ବିଷୟ ମଧ୍ୟରେ ପୁର୍ନଜନ୍ମ, ଯଜ୍ଞ, ପୁରାଣ, ତୀର୍ଥସ୍ଥାନ, ବିବାହ, ପୋଷ୍ୟପୁତ୍ର ଗ୍ରହଣ, ଉତ୍ତରାଧିକାର, ପରମ୍ପରା, ହିନ୍ଦୁ ରୀତିନୀତି ଆଦି ପ୍ରଧାନ । ବସ୍ତୁତଃ ପୁସ୍ତକ ଗୁଡ଼ିକରେ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଜୀବନର ପ୍ରତ୍ୟେକଟି ଦିଗ ଆଲୋଚିତ ହୋଇଛି । ବାଣଭଟ୍ଟ ଏବଂ ଭଗବତୀଙ୍କ ଦ୍ୱାରା ଲିଖିତ ଯଥାକ୍ରମେ କାଦମ୍ବରୀ ଏବଂ ଉତ୍ତର ରାମଚରିତ ବିଷୟରେ ଡ଼କ୍ଟର କାନେ ଅନେକ ଆଲୋଚନା ତାଙ୍କର ଲେଖା ମାଧ୍ୟମରେ ବିସ୍ତାରିତ ଭାବେ କରିଛନ୍ତି ।

ହାଇକୋର୍ଟରେ ତାଙ୍କର ବିଚକ୍ଷଣତା ପରିସ୍ଫୁଟ ହୋଇଥିଲା । ତାଙ୍କର ଆଇନ ବ୍ୟବସାୟ ଖୁବ୍ ସଫଳତା ହାସଲ କରିଥିଲା । ସେ ହିନ୍ଦୁ ଆଇନ୍‌ର ଜଣେ ବିଚକ୍ଷଣ ବିଶେଷଜ୍ଞ ବୋଲି ବିବେଚିତ ହେଉଥିଲେ । କେବଳ ଓକିଲ ନୁହେଁ ସମସ୍ତ ବିଚାରକ



ମଣ୍ଡଳୀ ମଧ୍ୟ ସେହିମତ ପ୍ରଚାର କରୁଥିଲେ । ଓକିଲ ଭାବରେ ସେ ସବୁବେଳେ ତାଙ୍କ ମକଦ୍ଦମା ଲଢ଼ିବା ପାଇଁ ପ୍ରସ୍ତୁତ ରହୁଥିଲେ । ଥରେ କୌଣସି ଗୋଟିଏ କେସ୍‌ର ବିଚାର ଚାଲିଥିଲା ବେଳେ ବିଚାରକ ଡ଼କ୍ଟର କାନେଙ୍କ ଯୁକ୍ତିକୁ ଅଯୌକ୍ତିକ ବୋଲି ମନ୍ତବ୍ୟ ଦେଲେ । ତତ୍‌କ୍ଷଣାତ୍ କାନେ ଜବାବ୍ ଦେଲେ ଯେ, ତାଙ୍କ ଯୁକ୍ତି ଖୁବ୍ ନିକଟରେ ପ୍ରାଇଭି କାଉନ୍‌ସିଲ୍‌ର ଜୁଡ଼ିସିଆଲ୍ କମିଟି ଦେଇଥିବା ଜଜ୍‌ମେଣ୍ଟ ଉପରେ ଆଧାରିତ ଏବଂ ସାଙ୍ଗେ ସାଙ୍ଗେ ସେ ଜଜ୍‌ମେଣ୍ଟକୁ ମୁଖସ୍ଥ କଲାପରି ପ୍ରାଞ୍ଜଳ ଭାବେ ବିଚାରକଙ୍କ ସାମ୍ନାରେ ଉଚ୍ଚାରଣ କଲେ । ଗୋଟିଏ ସାଧାରଣ କେସ୍ ପାଇଁ ତାଙ୍କର ପ୍ରାକ୍ ପ୍ରସ୍ତୁତି ଉପସ୍ଥିତ ସମସ୍ତ ଜନତା, ଓକିଲ ଏବଂ ବିଚାରକମଣ୍ଡଳୀଙ୍କୁ ସବୁବେଳେ ସ୍ତବ୍ଧକରି ଦେଉଥିଲା ।

ଡ଼କ୍ଟର କାନେ ଜାତିପ୍ରଥାରେ ବିଶ୍ୱାସ କରୁନଥିଲେ । ସେ ବିଭିନ୍ନ ଜାତିର ବିବାହ ତଥା ବିଧବା ମାନଙ୍କର ପୁନର୍ବିବାହକୁ ପ୍ରୋତ୍ସାହିତ କରୁଥିଲେ । ବିଧବା ମାନଙ୍କୁ ଦିଆଯାଉଥିବା ବ୍ୟବହାରର ସେ ବିରୋଧୀ ଥିଲେ ଏବଂ ତାର ସମାଲୋଚନା କରୁଥିଲେ । ଥରେ ଗଣେଶପୂଜା ସମୟରେ ନିମ୍ନ ମାହାର ଜାତିର କିଛି ବ୍ୟକ୍ତି ଗଣେଶଜୀଙ୍କୁ ନିକଟରୁ ଦର୍ଶନ କରିବା ପାଇଁ ବ୍ରାହ୍ମଣ ସଭାକୁ ଅନୁରୋଧ କଲେ । ବ୍ରାହ୍ମଣ ସଭାର କେତେକ ବ୍ୟକ୍ତି ଏହି ସାଧାରଣ ଅନୁରୋଧକୁ ରକ୍ଷା କରିବା ପାଇଁ ରାଜି ହେଲେ । କିନ୍ତୁ ଅନ୍ୟ କେତେକ ମୌଳବାଦୀ ପାରମ୍ପରିକ ବ୍ରାହ୍ମଣ ଏହି ଅନୁରୋଧକୁ ସ୍ୱୀକାର କରିନଥିଲେ । ସେତେବେଳେ ଡ଼କ୍ଟର କାନେ ଏହାର ପରିଚାଳନା କମିଟିର ସଭାପତି ଥାଆନ୍ତି । କାନେଙ୍କ ଦୃଷ୍ଟିକୁ ଏହା ଆସିବା ମାତ୍ରେ ସେ ତୁରନ୍ତ ମାହାର ମାନଙ୍କୁ ଡ଼ାକି ଦର୍ଶନ ପାଇଁ ଅନୁମତି ଦେଲେ । ସେ କହିଥିଲେ ଯେ ମାହାର ମାନଙ୍କର ଅନୁରୋଧ ଅତି ସରଳ ଏବଂ ସହଜ ଥିଲା । ପରିବର୍ତ୍ତିତ ସମୟରେ ଏହି ଅନୁରୋଧ ରକ୍ଷା କରିବା ନିତାନ୍ତ ଆବଶ୍ୟକ । ତତ୍ପରେ କେତେଜଣ ବ୍ରାହ୍ମଣ ଡ଼କ୍ଟର କାଣେ ଏବଂ ବ୍ରାହ୍ମଣ ସଭା ବିରୁଦ୍ଧରେ ବମ୍ବେ ହାଇକୋର୍ଟରେ ଏକ ମକଦ୍ଦମା ଦାଖଲ କଲେ । ସେମାନଙ୍କ ଯୁକ୍ତି ଥିଲା ଯେ କାର୍ଯ୍ୟକାରୀ କମିଟିର ଅଧିକାରୀ ହୋଇ ଏଭଳି ଅନୁମତି ଦେବାର ତାଙ୍କର କୌଣସି ଅଧିକାର ନାହିଁ । ଅବସ୍ଥା ସେତେବେଳେ ଖୁବ୍ ଉତ୍ତେଜନା ପୂର୍ଣ୍ଣ ଥିଲା । ଅନେକ ଆଶା କରୁଥିଲେ ଯେ

ହୁଏତ ହିଂସାତ୍ମକ ବିଭେଦ ସୃଷ୍ଟି ହୋଇପାରେ । ତେବେ ହାଇକୋର୍ଟର ହସ୍ତକ୍ଷେପ ଉଚିତ୍ କାର୍ଯ୍ୟ ବିଧାନ ପରେ ସେ କେଶ୍ ଅପସାରିତ ହୋଇଥିଲା ।

ଡ଼କ୍ଟର କାଣେ କେବଳ ପାଠ୍ୟକ୍ରମ ଉପରେ ବିଶ୍ୱାସ କରୁନଥିଲେ । ସେ ବସ୍ତୁତଃ ଖୁବ୍ ପ୍ରାକ୍ଟିକାଲ୍ ଥିଲେ । କଠିନ ଶ୍ରମ ତାଙ୍କ ଜୀବନର ପ୍ରାଣକେନ୍ଦ୍ର ଥିଲା । ବମ୍ବେ ହାଇକୋର୍ଟରେ ସପ୍ତାହରେ ସେ ପାଞ୍ଚ ଦିନ ମକଦ୍ଦମା ଲଢ଼ୁଥିଲେ ଏବଂ ପ୍ରତି ସପ୍ତାହରେ ଦୁଇ ଦିନ ତାଙ୍କର ସାହିତ୍ୟ ଅଧ୍ୟୟନ, ଗବେଷଣା ଆଦିରେ ନିୟୋଜିତ କରୁଥିଲେ । ସେହି ଦୁଇ ଦିନ ମଧ୍ୟରେ ସେ ନିଶ୍ଚିତ ଭାବେ କିଛି ସମୟ ସଂସ୍କୃତ ଅଧ୍ୟୟନରେ ବ୍ୟୟ କରୁଥିଲେ । ୧୯୦୪ ମସିହାଠାରୁ ୧୯୫୮ ମସିହା ପର୍ଯ୍ୟନ୍ତ ସେ ଅବିଶ୍ରାନ୍ତ ଭାବରେ କାର୍ଯ୍ୟ କରି ଚାଲିଥିଲେ ।

ଡ଼କ୍ଟର କାଣେଙ୍କୁ ୧୯୫୬ ମସିହାରେ ପଦ୍ମଶ୍ରୀ ଉପାଧି ମିଳିଥିଲା ଏବଂ ୧୯୬୩ ମସିହାରେ ତାଙ୍କୁ ଭାରତର ରାଷ୍ଟ୍ରପତି ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନରେ ଭୂଷିତ କଲେ । ଭାରତରତ୍ନ ଡ଼କ୍ଟର ପାଣ୍ଡୁରାମ ବମନ କାଣେ ୧୯୭୨ ମସିହା ଏପ୍ରିଲ୍ ୧୮ ତାରିଖ ଦିନ ଇହଲୀଳା ସମ୍ବରଣ କଲେ । ଡକ୍ଟର କାନେଙ୍କ ଉଦାରବାଦୀ ହିନ୍ଦୁତ୍ୱ, ଅଧ୍ୟବସାୟ, ସମାଜ ସଂସ୍କାର ଏବଂ ପାଣ୍ଡିତ୍ୟ ତାଙ୍କୁ ଚିରସ୍ମରଣୀୟ ଏବଂ ନମସ୍ୟ କରି ରଖିଛି ।

***

# ଲାଲ୍ ବାହାଦୂର ଶାସ୍ତ୍ରୀ



୧୯୦୬-୧୯୬୬

ଭାରତରତ୍ନ-୧୯୬୬

**ଜ**ୟ ଜବାନ୍ ଜୟ କିଶାନର ବାର୍ତ୍ତା ଆଜିବି ଗୁଞ୍ଜରିତ ହେଉଛି ଅଗଣିତ ଦେଶବାସୀଙ୍କ କର୍ଣ୍ଣରେ । ଏହି ବାର୍ତ୍ତାର ପ୍ରଚାରକ ଦେଶର ପ୍ରତିରକ୍ଷା ଏବଂ କୃଷି ବିଭାଗକୁ ବଳିଷ୍ଠ ନେତୃତ୍ୱ ପ୍ରଦାୟକ ଭାରତର ଦ୍ୱିତୀୟ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଲାଲ୍ ବାହାଦୂର ଶାସ୍ତ୍ରୀ । ଉଚ୍ଚତାରେ କମ୍ ଥିଲେହେଁ ବଳିଷ୍ଠ ନେତୃତ୍ୱ ଦେବାରେ ସେ ଜଣେ ଅଗ୍ରଗଣ୍ୟ ବ୍ୟକ୍ତି ଭାବେ ଭାରତବାସୀଙ୍କର ପ୍ରିୟ ହୋଇପାରିଥିଲେ । ଲାଲ୍ ବାହାଦୂର ଶାସ୍ତ୍ରୀ ୧୯୦୪ ମସିହା ଅକ୍ଟୋବର ୨ ତାରିଖ ଦିନ ଉତ୍ତରପ୍ରଦେଶର ମୋଗଲସରାଇ ଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଶାରଦା ପ୍ରସାଦ ଶ୍ରୀବାସ୍ତବ ଜଣେ ଗରିବ ସ୍କୁଲ୍ ଶିକ୍ଷକ ଥିଲେ ଏବଂ ପରବର୍ତ୍ତୀ କାଳରେ ସେ ଆହ୍ଲାବାଦସ୍ଥିତ ରେଭିନ୍ୟୁ କାର୍ଯ୍ୟାଳୟରେ

ଯୋଗଦାନ କରିଥିଲେ । ଶାସ୍ତ୍ରୀଙ୍କୁ ମାତ୍ର ଦେଢ଼ ବର୍ଷ ହୋଇଥିଲା ବେଳେ ତାଙ୍କର ପିତୃବିୟୋଗ ହୋଇଥିଲା । ତା ପରେ ତାଙ୍କ ମାତା ରାମ ଦୁଲାରୀଙ୍କ ଉପରେ ତାଙ୍କର ତିନୋଟି ସନ୍ତାନଙ୍କର ଭରଣ ପୋଷଣ ଦାୟିତ୍ୱ ପଡ଼ିଥିଲା । ତାଙ୍କ ମାତା ଜଣେ ସଚ୍ଚୋଟ ଏବଂ ଧର୍ମ ପରାୟଣା ମହିଳା ଥିଲେ । ଶାସ୍ତ୍ରୀଙ୍କୁ ବାଲ୍ୟ କାଳରୁ ସେ ସତ୍‌, ଧର୍ମ ଏବଂ ନ୍ୟାୟ ପଥରେ ପରିଚାଳିତ କରିଥିଲେ । ସ୍ୱାମୀଙ୍କର ମୃତ୍ୟୁ ପରେ ରାମଦୁଲାରୀ ପିଲାମାନଙ୍କୁ ନେଇ ମିର୍ଜାପୁରରେ ଥିବା ତାଙ୍କ ପିତାଙ୍କ ଘରକୁ ଚାଲିଯାଇଥିଲେ । ତେଣୁ ମିର୍ଜାପୁରରେ ଅଜାଙ୍କ ଘରେ ରହି ଶାସ୍ତ୍ରୀଙ୍କର ବାଲ୍ୟଜୀବନ ବିତିଥିଲା ।

ତାଙ୍କର ମାମୁଁ ରଘୁନାଥ ପ୍ରତାପଙ୍କ ଘରେ ସେ ତାଙ୍କର ବାଲ୍ୟ ଜୀବନ ବିତାଇଲେ । ମିର୍ଜାପୁରରେ ପ୍ରାଇମେରୀ ଶିକ୍ଷା ପାଇବା ପରେ ସେ ଅଧ୍ୟୟନ ପାଇଁ ବନାରସ ଆସିଲେ । ବନାରସର ହରିଶ୍ଚନ୍ଦ୍ର ବିଦ୍ୟାଳୟରେ ନାମ ଲେଖାଇଲେ । ସେଠାରେ ଗଣିତ ଶିକ୍ଷକ ସମେଶ୍ୱର ପ୍ରତାପ ମିଶ୍ରଙ୍କ ଦ୍ୱାରା ସେ ପ୍ରଭାବିତ ହେଲେ । ଗଣିତ ବ୍ୟତୀତ ତାଙ୍କୁ ଅନୁଶାସନ, ଚରିତ୍ର ଗଠନ ଏବଂ ମୂଲ୍ୟବୋଧ ବିଷୟରେ ସେ ଶିକ୍ଷା ଦେଉଥିଲେ । ଜନ୍ମଭୂମି ପ୍ରତି ମମତା ଓ ସେବା ବିଷୟରେ ସେ ଛାତ୍ରମାନଙ୍କୁ ପ୍ରେରଣା ଦେଉଥିଲେ । ଗୁରୁଗୋବିନ୍ଦ ସିଂ, ମହାରାଣା ପ୍ରତାପ, ଛତ୍ରପତି ଶିବାଜୀ ଏବଂ ଲୋକମାନ୍ୟ ତିଳକ ଆଦି ମହାମନୀଷୀମାନଙ୍କ ଜୀବନୀ ଶୁଣାଇବା ଫଳରେ ଛାତ୍ରଛାତ୍ରୀମାନଙ୍କ ମନରେ ଗଭୀର ଜାତିପ୍ରେମ ଜାଗ୍ରତ ହେଉଥିଲା । ଲାଲ୍‌ ବାହାଦୂର ଶାସ୍ତ୍ରୀଙ୍କ ପାଇଁ ତାଙ୍କର ଶିକ୍ଷକ ଶ୍ରୀଯୁକ୍ତ ମିଶ୍ର ଜଣେ ବନ୍ଧୁ, ଦାର୍ଶନିକ ଏବଂ ମାର୍ଗଦର୍ଶକ ଭାବେ କାର୍ଯ୍ୟ କରୁଥିଲେ ।

ଲାଲ୍‌ ବାହାଦୂର ମହାତ୍ମାଗାନ୍ଧୀଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା ଅସହଯୋଗ ଆନ୍ଦୋଳନରେ ଭାଗ ନେଇ କାରାବରଣ କଲେ । ଫଳରେ ପାଠପଢ଼ାରେ ଡ଼ୋରୀ ବନ୍ଧା ହେଲା । ତେବେ ଜେଲ୍‌ରୁ ମୁକ୍ତି ପାଇବା ପରେ ସେ ପୁନର୍ବାର କାଶୀ ବିଦ୍ୟାପୀଠରେ ନାମ ଲେଖାଇ ୧୯୨୫ ମସିହାରେ ସେଠାରୁ ସ୍ନାତକ ଡ଼ିଗ୍ରୀ ହାସଲ କଲେ ଏବଂ ସେହିଠାରେ ତାଙ୍କୁ ଶାସ୍ତ୍ରୀ ଉପାଧି ମଧ ମିଳିଥିଲା । ଏହି ଅନୁଷ୍ଠାନ ଏକ ଜାତୀୟବାଦୀ ବିଶ୍ୱବିଦ୍ୟାଳୟ ଥିଲା । ତେବେ ସ୍ନାତକ ଡିଗ୍ରୀ ହାସଲ ପରେ ସେ ଅଳ୍ପଦିନ ପାଇଁ ଶିକ୍ଷକତା କରିଥିଲେ । ଚାକିରୀ ଖଣ୍ଡିଏ କରି ତାଙ୍କର ବୃଦ୍ଧା ମା' ଙ୍କୁ ସାହାଯ୍ୟ କରିବା ପାଇଁ ଇଚ୍ଛା ଥିଲା କିନ୍ତୁ ଅନ୍ୟ ପକ୍ଷରେ ମହାତ୍ମାଗାନ୍ଧୀଙ୍କର ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ଦେଶମାତୃକାର ସେବାର ଆହ୍ୱାନ ତାଙ୍କୁ ବିବ୍ରତ କଲା । ୧୯୨୬ ମସିହାରେ ସେ ଜାତୀୟ ସଂଗ୍ରାମରେ ଯୋଗ ଦେବାପାଇଁ ନିଷ୍ପତ୍ତି କଲେ । ଲାଲା ଲଜ୍‌ପତ୍‌ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ ସର୍ଭାଣ୍ଟ ଅଫ୍‌ ଦ ପିପୁଲ୍‌ ସୋସାଇଟିରେ ଯୋଗ

ଦେଇ ଜଣେ ସ୍ୱାଧୀନତା ସଂଗ୍ରାମୀ ଭାବେ ନିଜକୁ ନିୟୋଜିତ କଲେ ।



୧୯୨୮ ମସିହାରେ ଲାଲ୍ ବାହାଦୂର ଶାସ୍ତ୍ରୀ ଲଳିତା ଦେବୀଙ୍କୁ ବିବାହ କଲେ । ସେ ଯୌତୁକର ଘୋର ବିରୋଧୀ ଥିଲେ । ତେଣୁ ବିବାହରେ କୌଣସି ଯୌତୁକ ନେବାପାଇଁ ମନା କରିଥିଲେ । ତେବେ ତାଙ୍କ ଶ୍ୱଶୁର ବାଧକରିବା ଯୋଗୁଁ ସେ ପାଞ୍ଚହାତର ଖଣ୍ଡିଏ ଖଦୀ ବସ୍ତ୍ର ଯୌତୁକ ଭାବେ ଗ୍ରହଣ କରିଥିଲେ । ତାଙ୍କର ଜନ୍ମଦିନ ମହାତ୍ମାଗାନ୍ଧୀଙ୍କ ଜନ୍ମ ଦିନ ସହିତ ସମାନ । ମହାତ୍ମାଗାନ୍ଧୀଙ୍କ ନୀତି ପ୍ରତି ସେ କିପରି ପ୍ରଗାଢ଼ ଅନୁରକ୍ତି ପ୍ରକାଶ କରନ୍ତି ତାହା ତାଙ୍କର କାର୍ଯ୍ୟକଳାପରୁ ସ୍ପଷ୍ଟ ହୋଇଥାଏ । ଗାନ୍ଧିଜୀଙ୍କ ଦ୍ୱାରା ପ୍ରବର୍ତ୍ତିତ ସତ୍ୟ ଏବଂ ଅହିଂସାର ପଥ ସେ ବାଛି ନେଇଥିଲେ । ଲଳିତା ଦେବୀ ମଧ୍ୟ ଜଣେ ସତ୍ୟ ଏବଂ ନ୍ୟାୟବନ୍ତ ମହିଳା ଥିଲେ । ସେ ବିଭିନ୍ନ ପୂଜା ପାର୍ବଣ, ଧ୍ୟାନ ତଥା ପରିବାରର ଦେଖାଶୁଣା କରିବାରେ ସମୟ ଅତିବାହିତ କରୁଥିଲେ ।

ସର୍ଭେଣ୍ଟ ଅଫ୍ ଦ ପିପୁଲ୍ ସୋସାଇଟିର ସେ ତୃତୀୟ ସଭାପତି ହୋଇଥିଲେ । ବିଶିଷ୍ଟ ରାଜନୀତିଜ୍ଞ ପୁରୁଷୋତ୍ତମ ଟଣ୍ଡନଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ସେ କଂଗ୍ରେସ ପାର୍ଟିରେ ଯୋଗଦାନ କଲେ । ୧୯୩୦ ମସିହାରେ ସେ ଆହ୍ଲାବାଦ କଂଗ୍ରେସ କମିଟିର ସଭାପତି ଭାବେ ନିର୍ବାଚିତ ହେଲେ । ୧୯୩୭ ମସିହାରେ ଉତ୍ତର ପ୍ରଦେଶର ବିଧାନସଭାକୁ ନିର୍ବାଚିତ ହୋଇ ଆସିଲେ । ୧୯୨୧ ମସିହାରୁ ୧୯୪୨ ମସିହା ପର୍ଯ୍ୟନ୍ତ ହୋଇଥିବା ସମସ୍ତ ଜାତୀୟ ଆନ୍ଦୋଳନମାନଙ୍କରେ ସେ ଭାଗ ନେଇଥିଲେ ଏବଂ ସାତ ଥର କାରାବରଣ କରିଥିଲେ । ସର୍ବମୋଟ୍ ୯ ବର୍ଷ କାଳ ତାଙ୍କୁ ଜେଲ୍‌ରେ ରହିବାକୁ ପଡ଼ିଥିଲା । ସେ ଜଣେ ନୀତିନିଷ୍ଠ ଏବଂ ନିୟମ ଅନୁଶାସନ ଭିତରେ ରହିବା ବ୍ୟକ୍ତି । ଥରେ ସେ ଜେଲ୍‌ରେ ଥିବା ବେଳେ ତାଙ୍କର କନ୍ୟା ସାଂଘାତିକ ଭାବେ ରୋଗଗ୍ରସ୍ତ ବୋଲି ଖବର ପାଇଲେ । ଏହା ଶୁଣିବା ପରେ ତାଙ୍କୁ ପାରଲ୍‌ରେ ଛାଡ଼ିବା ପାଇଁ ଜେଲର୍‌ଙ୍କୁ ଅନୁରୋଧ କଲେ । ଜେଲର୍ ତାଙ୍କୁ ଛାଡ଼ିବା ପାଇଁ ଗୋଟିଏ ସର୍ତ୍ତ ରଖିଥିଲେ । ସର୍ତ୍ତ ଥିଲା ଯେ, ପାରଲ୍‌ରେ ଥିଲା ବେଳେ ସେ କୌଣସି ରାଜନୈତିକ ଆନ୍ଦୋଳନରେ ଭାଗ ନେବେ ନାହିଁ । ଶାସ୍ତ୍ରୀଜୀ କହିଲେ, ମୁଁ ନିୟମଟି ଭଲ ଭାବେ ଜାଣେ କିନ୍ତୁ ଆପଣ ଯାହା ଇଚ୍ଛା କରୁଛନ୍ତି ତାହା ମୁଁ ନିଶ୍ଚିତ ଭାବେ ଦେଇପାରିବି ନାହିଁ । ଜେଲ୍ ଅଧିକାରୀଙ୍କର ଶାସ୍ତ୍ରୀଙ୍କ ସତ୍ୟବାଦୀତା ଉପରେ

ଗଭୀର ବିଶ୍ୱାସ ଥିଲା । ସେଥିପାଇଁ ସେ ୧୫ ଦିନ ପାଇଁ ଶାସ୍ତ୍ରୀଙ୍କୁ ପାରୋଲ୍‌ରେ ଛାଡ଼ିଥିଲେ । ଘରେ ପହଞ୍ଚିବା ପରେ ଶାସ୍ତ୍ରୀଜୀ ଜାଣିବାକୁ ପାଇଲେ ଯେ ତାଙ୍କର କନ୍ୟାର ମୃତ୍ୟୁ ହୋଇସାରିଛି । ତା ପରେ ଶାସ୍ତ୍ରୀଜୀ କନ୍ୟାର ଯଥାବିଧି କାର୍ଯ୍ୟ ସମ୍ପନ୍ନ କଲେ ଏବଂ ପରିବାରକୁ ଜଣାଇଲେ ଯେ ସେ ଜେଲ୍‌କୁ ଫେରିଯିବେ । ପରିବାରବର୍ଗ ଯେତେବେଳେ ଜାଣିଲେ ଯେ ତାଙ୍କ ପାଖରେ ୧୫ ଦିନ ପାରୋଲ୍ ପାଇଁ ଅନୁମତି ରହିଛି ସେମାନେ ତାଙ୍କୁ ସେ ୧୫ ଦିନ ଘରେ କଟାଇବା ପାଇଁ ଚାହିଁଲେ । କିନ୍ତୁ ଶାସ୍ତ୍ରୀଜୀ କହିଥିଲେ ମୋ ୧୫ ଦିନର ପାରୋଲ୍ କେବଳ ଝିଅର ଚିକିତ୍ସା କରିବା ପାଇଁ ଦିଆଯାଇଥିଲା । ଯେହେତୁ ତାର ମୃତ୍ୟୁ ହୋଇସାରିଛି ମୋର ଆଉ ଛୁଟିର ଆବଶ୍ୟକତା ନାହିଁ । ଏତିକି କହି ଶାସ୍ତ୍ରୀଜୀ ନିରବରେ ଜେଲ୍‌କୁ ପୁନର୍ବାର ଫେରି ଆସିଥିଲେ ।

୧୯୪୬ ମସିହାରେ ଲାଲ୍ ବାହାଦୂର ଶାସ୍ତ୍ରୀ ଉତ୍ତର ପ୍ରଦେଶର ବିଧାନ ସଭାକୁ ନିର୍ବାଚିତ ହେଲେ । ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ ଶାସ୍ତ୍ରୀଜୀଙ୍କ ବ୍ୟକ୍ତିତ୍ୱ, ସତ୍ୟବାଦୀତା ଏବଂ ବଳିଷ୍ଠ ନେତୃତ୍ୱରେ ପ୍ରଭାବିତ ହୋଇ ତାଙ୍କୁ ସଂସଦୀୟ ସମ୍ପାଦକ ଭାବେ ନିଯୁକ୍ତି ଦେଲେ । ତତ୍ପରେ ଲାଲ୍ ବାହାଦୂର ଲକ୍ଷ୍ନୌକୁ ଚାଲିଆସିଲେ ।

୧୯୪୭ ମସିହାରେ ଭାରତ ସ୍ୱାଧୀନତା ପାଇଲା । ଉତ୍ତର ପ୍ରଦେଶ ପୋଲିସ ଏବଂ ପରିବହନ ମନ୍ତ୍ରୀଭାବେ କାର୍ଯ୍ୟଭାର ସମ୍ଭାଳିଲେ । ୧୯୫୧ ମସିହାରେ ସେ କଂଗ୍ରେସ ପାର୍ଟିର ସାଧାରଣ ସଂପାଦକ ହେଲେ । ୧୯୫୨ ମସିହାରେ ସେ କେନ୍ଦ୍ରରେ ରେଳବାଇ ମନ୍ତ୍ରୀଭାବେ ଶପଥ ନେଲେ । ତାଙ୍କ ମନ୍ତ୍ରୀତ୍ୱ ସମୟରେ ଭାରତୀୟ ରେଳରେ ଅନେକ ସଂସ୍କାର କରାଗଲା । ସେ ପ୍ରଥମ ଶ୍ରେଣୀକୁ ଉଠାଇ ଦେଇ ଦ୍ୱିତୀୟ ଶ୍ରେଣୀକୁ ପ୍ରଥମ ଶ୍ରେଣୀ ପାହ୍ୟା ଦେଲେ । ସାଧାରଣ ଜନତାଙ୍କୁ ଗୁରୁତ୍ୱ ଦେବା ପାଇଁ ସେ ଏହି ପଦକ୍ଷେପ ନେଇଥିଲେ । ୧୯୫୬ ମସିହାରେ ସେ କେନ୍ଦ୍ର ମନ୍ତ୍ରୀ ମଣ୍ଡଳରୁ ଇସ୍ତଫା ଦେଲେ । କାରଣ ଦକ୍ଷିଣ ଭାରତର ହରିଆଲୋଠାରେ ଗୋଟିଏ ରେଳ ଦୁର୍ଘଟଣା ତାଙ୍କ ମନ୍ତ୍ରୀତ୍ୱ ସମୟରେ ହୋଇଥିଲା । ସେଥିପାଇଁ ସେ ନିଜକୁ ଦୋଷୀ ମନେକରି ଏହି ଇସ୍ତଫାପତ୍ର ଦେଇଥିଲେ । ତାଙ୍କର ଏହି ଇସ୍ତଫା ଦେବା ଘଟଣା ଆଜିଯାଏଁ ରାଜନୈତିକ ନେତା ମାନଙ୍କ ପାଇଁ ଏକ ବିରଳ ଦୃଷ୍ଟାନ୍ତ ହୋଇ ରହିଛି । ୧୯୫୭ ମସିହାରେ ଶାସ୍ତ୍ରୀଜୀ ଆହ୍ଲାବାଦରୁ ନିର୍ବାଚନ ଲଢ଼ିଥିଲେ ଏବଂ ୧୯୫୮ ମସିହାରେ ସେ ପରିବହନ ଏବଂ ଶିଳ୍ପ ମନ୍ତ୍ରୀଭାବେ କାର୍ଯ୍ୟଭାର ତୁଲାଇଲେ ।

୧୯୬୧ ମସିହାରେ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କର ମୃତ୍ୟୁ ହେଲା । ତା ପରେ ଶାସ୍ତ୍ରୀଜୀ ଭାରତର ଗୃହମନ୍ତ୍ରୀ ଭାବରେ ଅଧିଷ୍ଠିତ ହେଲେ । ଏହି ସମୟକାଳ ମଧ୍ୟରେ ପଣ୍ଡିତ ଜବାହାରଲାଲ୍ ନେହେରୁଙ୍କ ସହିତ ତାଙ୍କର ଘନିଷ୍ଠତା ପରିପକ୍ୱ ହେଲା ଏବଂ ସେ

ଜଣେ ଅତି ବିଚକ୍ଷଣ ରାଜନୀତିଜ୍ଞ ଭାବେ ପରିଚିତ ହେଲେ । ୧୯୬୩ ମସିହାରେ କାମ୍‌ରାଜ୍ ଯୋଜନା ଅନୁସାରେ ବରିଷ୍ଠ କଂଗ୍ରେସ ନେତାମାନଙ୍କୁ ତାଙ୍କ ପଦବୀରୁ ଇସ୍ତଫା ଦେବାପାଇଁ କୁହାଗଲା । ସେତେବେଳେ ଶାସ୍ତ୍ରୀଜୀ ସର୍ବପ୍ରଥମେ



ତାଙ୍କ ପଦରୁ ଇସ୍ତଫା ଦେଲେ । ତେବେ ପଣ୍ଡିତ ନେହେରୁଙ୍କର ସେତେବେଳକୁ ଗୋଟିଏ ଥର ହୃଦ୍‌ଘାତ ଜନିତ ଅସୁସ୍ଥତା ହୋଇସାରିଥିଲା । ଶାସ୍ତ୍ରୀଜୀଙ୍କ ପରି ଜଣେ ପ୍ରବୀଣ ନେତାଙ୍କର ସହାୟତା ତାଙ୍କର ଆବଶ୍ୟକତା ଥିଲା । ତେଣୁ ଶାସ୍ତ୍ରୀଙ୍କୁ ପୁନର୍ବାର ତାଙ୍କ ପଦବୀରେ ଯୋଗଦେବା ପାଇଁ ସେ ଅନୁରୋଧ କଲେ । ଏଥର କିନ୍ତୁ ଶାସ୍ତ୍ରୀଜୀ ବିଭାଗ ବିହୀନ ମନ୍ତ୍ରୀଭାବେ ଯୋଗଦେଲେ । କାଶ୍ମିରରେ ସେତେବେଳେ ଅବସ୍ଥା ଅତୀବ ସଙ୍କଟାପନ୍ନ ଥିଲା । ହଜରତ୍‌ବାଲ୍ ମସ୍‌ଜିଦ୍‌ରେ ହୋଇଥିବା ଚୋରି ସାରା ରାଜ୍ୟରେ ପ୍ରଚଣ୍ଡ ଉତ୍ତେଜନା ସୃଷ୍ଟି କରିଥାଏ । ଶାସ୍ତ୍ରୀଜୀ ଏହି ଘଟଣାକୁ ଖୁବ୍ ଦକ୍ଷତାର ସହିତ ପରିଚାଳନା କରି କାଶ୍ମିରରେ ଶାନ୍ତି ଫେରାଇ ଆଣିବାରେ ସଫଳ ହୋଇଥିଲା ।

୧୯୬୪ ମେ ୨୭ ତାରିଖ ଦିନ ପଣ୍ଡିତ୍ ଜବାହାରଲାଲ୍‌ଙ୍କର ପରକାଳ ହେଲା । ସାରାଦେଶରେ ଶୋକର ଛାୟା ଖେଳିଗଲା । ଦେଶର ଜନତା କିଂକର୍ତ୍ତବ୍ୟ ବିମୂଢ଼ ହୋଇଗଲେ । ପରବର୍ତ୍ତୀ ନେତା କିଏ ହେବ ଭାଳେଣି ପଡ଼ିଗଲା । ତେବେ ତା ପୂର୍ବରୁ ପଣ୍ଡିତ ନେହେରୁ ଶାସ୍ତ୍ରୀଜୀଙ୍କୁ ଜୁନ୍ ମାସରେ ହେବାକୁ ଥିବା କମନ୍ ୱେଲ୍‌ଥ ଆଲିଭେସନ୍‌ରେ ଯୋଗଦେବା ପାଇଁ କହି କେତେକ ପୂର୍ବ ସୂଚନା ଛାଡ଼ି ଯାଇଥିଲେ । ତା ଛଡ଼ା ତାଙ୍କୁ ବିଭାଗ ବିହୀନ ମନ୍ତ୍ରୀପଦ ମିଳିବା ପରଠାରୁ ସମସ୍ତେ ଭାବି ଥିଲେ ଯେ ନେହେରୁଙ୍କ ପରେ ଶାସ୍ତ୍ରୀଜୀ ଆମର ପରବର୍ତ୍ତୀ ନେତା ହୋଇପାରନ୍ତି । ଫଳରେ ନେହେରୁଙ୍କ ବିୟୋଗ ପରେ ଶାସ୍ତ୍ରୀଜୀ ଦେଶର ପ୍ରଧାନମନ୍ତ୍ରୀ ପଦରେ ଅଧିଷ୍ଠିତ ହେଲେ ।

ଶାସ୍ତ୍ରୀଜୀଙ୍କ ପ୍ରଧାନମନ୍ତ୍ରୀତ୍ୱ ସମୟରେ ସେ ଅନେକ ସଂକଟମୟ ପରିସ୍ଥିତିରୁ ଦେଶକୁ ଉଦ୍ଧାର କରିଥିଲେ । ବନ୍ୟା, ଖାଦ୍ୟାଭାବ, ବେକାରୀ ଏବଂ ଦାରିଦ୍ର୍ୟ ତାଙ୍କ ସାମ୍ନାରେ ସବୁଠାରୁ ବଡ଼ ସମସ୍ୟା ହୋଇ ଦେଖାଦେଇଥିଲା । ଖାଦ୍ୟ ସମସ୍ୟାକୁ ଦୂର କରିବା ପାଇଁ ସେ ପ୍ରଥମେ ଖାଦ୍ୟଶସ୍ୟ ବିଦେଶରୁ ଆମଦାନୀ କଲେ ଏବଂ ତାକୁ ସାରା ଦେଶରେ ବଣ୍ଟନ ବ୍ୟବସ୍ଥା ଦ୍ୱାରା ସର୍ବସାଧାରଣଙ୍କ ପାଖରେ ପହଞ୍ଚାଇଥିଲେ । ପରେ ସେ ଦୀର୍ଘକାଳୀନ ଯୋଜନା ମାଧ୍ୟମରେ ଦେଶକୁ ଖାଦ୍ୟ ଉତ୍ପାଦନରେ ଆତ୍ମନିର୍ଭରଶୀଳ କରିବା ପାଇଁ ଯୋଜନା ପ୍ରଣୟନ କଲେ । କୃଷକମାନଙ୍କୁ ଉନ୍ନତ

ମାନର ବିହନ ଯୋଗାଇବା, ଜଳସେଚନ ବ୍ୟବସ୍ଥାର ସଫଳ ରୂପାୟନ ଦେବା ଏବଂ କୃଷକଙ୍କୁ ତାର ଉତ୍ପାଦିତ ଖାଦ୍ୟର ଉଚିତ୍ ମୂଲ୍ୟ ଦେବା ଶାସ୍ତ୍ରୀଜୀଙ୍କର ଲକ୍ଷ୍ୟ ରହିଲା ।

ଭାରତ ପାକିସ୍ଥାନ ଯୁଦ୍ଧ ସମୟରେ ଶାସ୍ତ୍ରୀଜୀ ତାଙ୍କର କାର୍ଯ୍ୟଦକ୍ଷତା ତଥା କୂଟନୀତିର ସଫଳ ପ୍ରୟୋଗ କରିଥିଲେ । ୧୯୬୫ ମସିହାରେ ଯେତେବେଳେ ପାକିସ୍ଥାନ ତାର କାଶ୍ମୀର କାର୍ଯ୍ୟକ୍ରମ ଜାରି ରଖି ଭାରତ ପାକିସ୍ଥାନ ସୀମା ଅତିକ୍ରମ କଲା ଶାସ୍ତ୍ରୀଜୀ ତାର କଡ଼ା ମୁକାବିଲା କରିବା ପାଇଁ ପଛାଇଲେ ନାହିଁ । ପାକିସ୍ଥାନର ସାମରିକ ଛାଉଣୀ ଗୁଡ଼ିକ ଉପରେ ଆକ୍ରମଣ କରାଗଲା ଏବଂ ୨୨ ଦିନର ଯୁଦ୍ଧ ପରେ ଭାରତୀୟ ସେନା ପାକିସ୍ଥାନସ୍ଥିତ ଲାହୋର ଏବଂ ସିଅଲକୋଟ୍ ପର୍ଯ୍ୟନ୍ତ ଅଗ୍ରସର ହୋଇଗଲେ । ଶାସ୍ତ୍ରୀଜୀ ଏହି ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ ନେବାରେ ଅପରିସୀମ ବୀରତ୍ୱ ପ୍ରଦର୍ଶନ କରିଥିଲେ । ସେତେବେଳେ ପାକିସ୍ଥାନର ରାଷ୍ଟ୍ରପତି ଜେନେରାଲ୍ ଆୟୁବ୍ ଖାଁ ଯୁଦ୍ଧ ବିରତି କରାଇବା ପାଇଁ ବାଧ ହେଲେ । ଜାତି ଉଦ୍ଦେଶ୍ୟରେ ତାଙ୍କ ବାର୍ତ୍ତାରେ ଶାସ୍ତ୍ରୀ କହିଥିଲେ, 'ପାକିସ୍ଥାନ ଆମ ଦେଶକୁ ଆକ୍ରମଣ କରିଥିଲା । ଆମେ ବାଧ ହୋଇ ନିଜ ଦେଶର ଅଖଣ୍ଡତା ଏବଂ ସାର୍ବଭୌମତ୍ୱ ରକ୍ଷା କରିବା ପାଇଁ ତାର ଜବାବ୍ ଦେଇଛୁ । ଆମେ ପାକିସ୍ଥାନର ଶତ୍ରୁ ନୁହଁ । ପାକିସ୍ଥାନ ଦେଶବାସୀ ଆମ ପଡ଼ୋଶୀ । ଆମେ ପାକିସ୍ଥାନ ଦେଶବାସୀଙ୍କର ଉନ୍ନତି ଚାହୁଁ । ତାଙ୍କର ବିକାଶ ଚାହୁଁ । ସେମାନେ ଶାନ୍ତିପୂର୍ଣ୍ଣ ଜୀବନଯାପନ କରନ୍ତୁ ତାହା ଆମର କାମ୍ୟ ।' ଜାତିସଂଘ ଇଚ୍ଛାନୁସାରେ ଋଷିଆର ପ୍ରଧାନମନ୍ତ୍ରୀ କୋସିଜିନ୍ ମଧ୍ୟସ୍ଥି ରୂପେ କାମ କଲେ । ଲାଲ୍‌ବାହାଦୂର ଏବଂ ଜେନେରାଲ୍ ଆୟୁବ ଖାନ୍ ତାସ୍‌କେଣ୍ଟଠାରେ ଏକ ଚୁକ୍ତିପତ୍ର ୧୯୬୬ ମସିହା ଜାନୁଆରୀ ୧୦ ତାରିଖ ଦିନ ସ୍ୱାକ୍ଷର କଲେ । ଏହି ଚୁକ୍ତିପତ୍ର ଯୋଗୁଁ ପୁନର୍ବାର ଉଭୟ ରାଷ୍ଟ୍ରରେ ଶାନ୍ତି ଫେରି ଆସିଲା । ଚୁକ୍ତିପତ୍ର ପ୍ରସ୍ତୁତ କରିବା ପରେ ସେଇ ରାତିରେ ଶାସ୍ତ୍ରୀଙ୍କର ଏକ ବିରାଟ ହୃଦ୍‌ଘାତ ହେଲା । ୧୯୬୬ ମସିହା ଚୁକ୍ତିପତ୍ର ପ୍ରସ୍ତୁତ କରିବା ପରେ ତାସ୍‌କେଣ୍ଟଠାରେ ଜାନୁଆରୀ ୧୧ ତାରିଖ (୧୦ ତାରିଖ ରାତି)ରେ ଲାଲ୍‌ବାହାଦୂର ଶାସ୍ତ୍ରୀଙ୍କର ପରଲୋକ ହେଲା । ସାରା ଦେଶରେ ଶୋକର କରାଳ ଛାୟା ଖେଳିଗଲା । ସେ ଖୁବ୍ ଗେଡ଼ା ଥିବାରୁ ଆମେରିକାରେ ତାଙ୍କୁ ମହାନ୍ ଛୋଟ ମଣିଷ ଉପାଧି ଦିଆଯାଇଥିଲା । ସେହି ମହାନ୍ ଛୋଟ ମଣିଷ ଇହଲୀଳା ସାଙ୍ଗ କଲେ ।

ଶେଷ ପର୍ଯ୍ୟନ୍ତ ଲାଲ୍ ବାହାଦୂର ଶାସ୍ତ୍ରୀ ଜଣେ ସରଳ ମଣିଷ ଥିଲେ । ଦିଲ୍ଲୀର ବିଜୟଘାଟ ଠାରେ ତାଙ୍କ ସ୍ମାରକୀ ନିର୍ମିତ ହେଲା । ତାଙ୍କର ଜୀବନ ବ୍ୟାପୀ ଦେଶସେବା ପାଇଁ ଶାସ୍ତ୍ରୀଜୀଙ୍କୁ ମରଣୋତ୍ତର ଭାରତରତ୍ନ ସମ୍ମାନରେ ୧୯୬୬ ମସିହାରେ ସମ୍ମାନିତ କରାଗଲା ।

***

# ଶ୍ରୀମତୀ ଇନ୍ଦିରା ଗାନ୍ଧୀ



୧୯୧୭-୧୯୮୪

ଭାରତରତ୍ନ-୧୯୭୧

**ପ**ଣ୍ଡିତ ଜବାହାର୍‌ଲାଲ୍ ନେହେରୁ ଏବଂ କମଳା ନେହେରୁଙ୍କର ଅଲିଅଳ କନ୍ୟା ଶ୍ରୀମତୀ ଇନ୍ଦିରା ଗାନ୍ଧୀ । ୧୯୧୭ ମସିହାରେ ଆହ୍ଲାବାଦସ୍ଥିତ ଆନନ୍ଦ ଭବନରେ ତାଙ୍କର ଜନ୍ମ ହୋଇଥିଲା । ଅତି ବାଲ୍ୟକାଳରୁ ସେ ମାତୃହରା ହୋଇଥିଲେ । ସେ ଭାରତ ଏବଂ ସୁଇଜର୍‌ଲ୍ୟାଣ୍ଡରେ ଅଳ୍ପକାଳ ପାଇଁ ଆନୁଷ୍ଠାନିକ ଶିକ୍ଷା ଗ୍ରହଣ କରିଥିଲେ ହେଁ ମୁଖ୍ୟତଃ ଘରେ ରହି ପାଠପଢ଼ା କରୁଥିଲେ । ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ପ୍ରତିଷ୍ଠିତ ବିଶ୍ୱଭାରତୀ ବିଦ୍ୟାଳୟରେ ସେ ତାଙ୍କର ସ୍ନାତକ ଡ଼ିଗ୍ରୀ ହାସଲ କରିବା ପରେ ଇଂଲଣ୍ଡର ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ କିଛିଦିନ ପାଇଁ ପାଠ ପଢ଼ିଥିଲେ । ୧୯୩୮ ମସିହାରେ ସେ କଂଗ୍ରେସରେ ଯୋଗ ଦେଇଥିଲେ ସତ ମାତ୍ର ସକ୍ରିୟ ରାଜନୀତିରେ ୧୯୪୧

ମସିହାରେ ଯୋଗ ଦେଲେ । ତାଙ୍କର ବିବାହ ୧୯୪୨ ମସିହାରେ ଫିରୋଜ ଗାନ୍ଧିଙ୍କ ସହିତ ହୋଇଥିଲା । ସେ ଜଣେ ପାର୍ଶୀ ଓକିଲ ଥିଲେ ଏବଂ କଂଗ୍ରେସ ପାର୍ଟିର ସକ୍ରିୟ ସଭ୍ୟ ଥିଲେ । ବିବାହର ଅଳ୍ପ କେତେଦିନ ପରେ ଉଭୟଙ୍କୁ ବ୍ରିଟିଶ୍ ସରକାର ବନ୍ଦୀକରି ଜେଲ୍‌ରେ ୧୩ ମାସ ପାଇଁ ରଖିଥିଲେ । କଂଗ୍ରେସ ପାର୍ଟି ଜରିଆରେ ବିଭିନ୍ନ ପ୍ରକାରର ବିରୋଧାତ୍ମକ କାର୍ଯ୍ୟ କରୁଥିବା ଅଭିଯୋଗରେ ସେମାନଙ୍କୁ ବନ୍ଦୀ କରାଯାଇଥିଲା । ପରବର୍ତ୍ତୀ ସମୟରେ ସେମାନଙ୍କର ଦୁଇଟି ପୁତ୍ର ଜାତ ହୋଇଥିଲେ– ରାଜୀବ ଏବଂ ସଂଜୟ । ତାଙ୍କର ବିବାହ ଏକ ପ୍ରେମ ବିବାହ ଥିଲା ଏବଂ ନେହେରୁ ପରିବାରରେ ପ୍ରଥମେ ଏହାକୁ ସ୍ୱୀକୃତି ନ ମିଳିବା ଯୋଗୁଁ ମହାତ୍ମାଗାନ୍ଧି ନିଜେ କନ୍ୟାଦାନ କରିଥିଲେ । ବିବାହ ପରଠାରୁ ଇନ୍ଦିରା ନେହେରୁ ଇନ୍ଦିରା ଗାନ୍ଧି ନାମରେ ପରିଚିତ ହେଲେ । ନେହେରୁ ଜେଲ୍‌ରେ ଥିଲାବେଳେ ତାଙ୍କର ପତ୍ନୀ ବିୟୋଗ ହୋଇଥିଲା । ତେଣୁ ଇନ୍ଦିରା ଗାନ୍ଧି ପରିବାରର ଦାୟିତ୍ୱ ନେଇଥିଲେ । ୧୯୪୭ ମସିହାରେ ଭାରତ ସ୍ୱାଧୀନ ହେବା ପରେ ପଣ୍ଡିତ ନେହେରୁ ଦେଶର ପ୍ରଧାନମନ୍ତ୍ରୀ ହେଲେ ଏବଂ ତାଙ୍କର ପରିବାରରେ ରହି ଅତିଥି ଅଭ୍ୟାଗତ ମାନଙ୍କର ପରିଚାଳନା ଦାୟିତ୍ୱ ଇନ୍ଦିରାଗାନ୍ଧୀଙ୍କ ଉପରେ ନ୍ୟସ୍ତ ଥିଲା । ପ୍ରକାଶ ଥାଉ କି, ତାଙ୍କର ମାତା କମଳା ନେହେରୁ ୧୯୩୬ ମସିହାରୁ ଇହଲୀଳା ସମ୍ବରଣ କରିଥିଲେ । ପଣ୍ଡିତ ନେହେରୁ ଏକମାତ୍ର କନ୍ୟା ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ପ୍ରାଣଠାରୁ ଅଧିକ ସ୍ନେହ କରୁଥିଲେ । ତେଣୁ ସରକାରୀ ଏବଂ ବେସରକାରୀ ସମସ୍ତ କାର୍ଯ୍ୟକଳାପରେ ଇନ୍ଦିରାଗାନ୍ଧୀ ତାଙ୍କର ସହକର୍ମୀ ହୋଇଥିଲେ । ପ୍ରତ୍ୟେକଟି ବିଦେଶ ଗ୍ରସ୍ତରେ ମଧ୍ୟ ଇନ୍ଦିରା ଗାନ୍ଧୀ ନେହେରୁଙ୍କ ସହିତ ଗ୍ରସ୍ତ କରୁଥିଲେ । ୧୯୫୫ ମସିହାରେ ସେ କଂଗ୍ରେସର କାର୍ଯ୍ୟକାରୀ କମିଟିକୁ ନିର୍ବାଚିତ ହେଲେ । ନିଜସ୍ୱ ଚେଷ୍ଟାରେ ସେ ୧୯୫୯ ମସିହାରେ ଏକବର୍ଷ ପାଇଁ କଂଗ୍ରେସ ପାର୍ଟିର ସଭାପତି ରୂପେ ନିର୍ବାଚିତ ହେଲେ । ତାର ପରବର୍ଷ ତାଙ୍କ ସ୍ୱାମୀ ଫିରୋଜ ଗାନ୍ଧିଙ୍କର ମୃତ୍ୟୁ ହେଲା । ୧୯୬୨ ମସିହାରେ ଯେତେବେଳେ ଚୀନ୍ ଭାରତ ଆକ୍ରମଣ କଲା ସେତେବେଳେ ସେ ଭାରତର ଘରୋଇ ପ୍ରତିରକ୍ଷା କାର୍ଯ୍ୟରେ ସହଯୋଗ କରିଥିଲେ ।

୧୯୬୪ ମସିହାରେ ତାଙ୍କର ପିତା ପଣ୍ଡିତ ଜବାହାର୍‌ଲାଲ୍ ନେହେରୁଙ୍କର ମୃତ୍ୟୁ ହେଲା । ସେତେବେଳେ ଇନ୍ଦିରାଗାନ୍ଧୀ ଲାଲ୍ ବାହାଦୂର ଶାସ୍ତ୍ରୀଙ୍କ ମନ୍ତ୍ରୀମଣ୍ଡଳରେ ସୂଚନା ଓ ପ୍ରସାରଣ ମନ୍ତ୍ରୀ ଭାବେ ଯୋଗ ଦେଲେ । ସେହି ସମୟରେ ସେ ବେତାର କାର୍ଯ୍ୟକ୍ରମର ସମୟସୀମା ବୃଦ୍ଧି କରିଥିଲେ ଏବଂ ସେନ୍‌ସର୍ ନିୟମକୁ କୋହଳ କରି

କରିଥିଲେ । ପରିବାର ନିୟନ୍ତ୍ରଣ ଉପରେ ଏକ ଦୂରଦର୍ଶନ କାର୍ଯ୍ୟକ୍ରମର ଅୟମାରମ୍ଭ ତାଙ୍କରି ସମୟରେ ହୋଇଥିଲା ।



୧୯୬୬ ମସିହାରେ ଲାଲ୍‌ବାହାଦୁର ଶାସ୍ତ୍ରୀଙ୍କର ମୃତ୍ୟୁଘଟିବାରୁ କଂଗ୍ରେସ ପାର୍ଟି ଇନ୍ଦିରାଗାନ୍ଧୀଙ୍କୁ ପ୍ରଧାନମନ୍ତ୍ରୀ ରୂପେ ଅଧିଷ୍ଠିତ କଲା । ପରବର୍ତ୍ତୀ ଦୁଇଟି ସାଧାରଣ ନିର୍ବାଚନ ୧୯୬୭ ଏବଂ ୧୯୭୧ରେ ହୋଇଥିଲା । ଉଭୟରେ ଇନ୍ଦିରାଗାନ୍ଧୀ ବିପୁଳ ଭୋଟ୍‌ରେ ଜୟଲାଭ କରି ପ୍ରଧାନମନ୍ତ୍ରୀ ପଦରେ ଦୀର୍ଘକାଳ ରହିଥିଲେ । ତାଙ୍କ ପ୍ରଧାନମନ୍ତ୍ରୀତ୍ୱ କାଳରେ ସରକାର ଅନେକ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲେ ହେଁ ଶ୍ରୀମତୀ ଗାନ୍ଧୀ ଦୃଢ଼ତାର ସହିତ ଏହାର ମୁକାବିଲା କରିଥିଲେ । ଏହି ସମୟରେ ମରୁଡ଼ି, ବନ୍ୟା, ପ୍ରାକୃତିକ ବିପର୍ଯ୍ୟୟ, ଦାରିଦ୍ର୍ୟ, ଛାତ୍ର ଅଶାନ୍ତି ତଥା ହିନ୍ଦୀକୁ ସରକାରୀ ଭାଷା ରୂପେ ଗ୍ରହଣ କରିବା ଯୋଗୁଁ କେତେକ ଭାଷାଭାଷୀ ଅଞ୍ଚଳରୁ ହୋଇଥିବା ବିଦ୍ରୋହ ଆଦି ଅନ୍ୟତମ ।

୧୯୭୧ ମସିହାରେ ତାଙ୍କ ନେତୃତ୍ୱରେ ପାକିସ୍ଥାନ ବିରୁଦ୍ଧରେ ଯୁଦ୍ଧ ହୋଇଥିଲା । ପାକିସ୍ଥାନ ପ୍ରଥମେ ଭାରତ ଆକ୍ରମଣ କରିବାରୁ ତାର ଦୃଢ଼ ଜବାବ୍ ଭାରତ ଶ୍ରୀମତୀ ଗାନ୍ଧିଙ୍କ ନେତୃତ୍ୱରେ ଦେଇଥିଲା ଏବଂ ଫଳସ୍ୱରୂପ ପାକିସ୍ଥାନ ଦୁଇଖଣ୍ଡିତ ହେଲା ଏବଂ ଅତୀତର ପୂର୍ବ ପାକିସ୍ଥାନ ପଶ୍ଚିମ ପାକିସ୍ଥାନ କବଳରୁ ମୁକ୍ତ ହୋଇ ବାଂଲାଦେଶ ହୋଇ ଜନ୍ମଲାଭ କଲା ।

୧୯୭୫ ମସିହାରେ ଦୁଇଟି ବିଚାରାଳୟ ଇନ୍ଦିରାଗାନ୍ଧୀଙ୍କୁ ୧୯୭୧ରେ ହୋଇଥିବା ସାଧାରଣ ନିର୍ବାଚନରେ ଦୁର୍ନୀତି ଗ୍ରସ୍ତ ହୋଇଥିବାର ଦୋଷ ଦେଇଥିଲେ । କିନ୍ତୁ ଏହି ବିଚାରକୁ ଅସ୍ୱୀକାର କରି ଇନ୍ଦିରାଗାନ୍ଧୀ ସ୍ୱୟଂ ନିରପରାଧ ଘୋଷଣା କଲେ ଏବଂ ବିରୋଧୀଦଳ ତାଙ୍କୁ ପ୍ରଧାନମନ୍ତ୍ରୀ ପଦରୁ ହଟାଇବା ପାଇଁ ଚକ୍ରାନ୍ତ କରିଛନ୍ତି ବୋଲି କହିଲେ । ତପ୍ତରେ ସେ ଏହି ସଂକଟମୟ ପରିସ୍ଥିତିର ସମାଧାନ ପାଇଁ ଦେଶରେ ଜରୁରୀକାଳୀନ ଅବସ୍ଥା ଜାରି କଲେ । ଜରୁରୀକାଳୀନ ଅବସ୍ଥାରେ ସାରା ଦେଶରେ

ପ୍ରତିବାଦ ହେବାଯୋଗୁଁ ତାଙ୍କର ରାଜନୈତିକ ପ୍ରତିଦ୍ୱନ୍ଦୀମାନଙ୍କୁ ବନ୍ଦୀ କରି ସେ ଜେଲ୍ ଦଣ୍ଡ ଦେଲେ । ଜୁନ୍ ୨୬, ୧୯୭୫ ମସିହାରେ ସେ ଜରୁରୀକାଳୀନ ଅବସ୍ଥା ଘୋଷଣା କରିଥିଲେ । ପରବର୍ତ୍ତୀ ସମୟରେ ଭାରତର ସୁପ୍ରିମ୍ କୋର୍ଟ ତାଙ୍କୁ ଦୋଷମୁକ୍ତ କରିଥିଲେ ହେଁ ଜରୁରୀକାଳୀନ ପରିସ୍ଥିତି ଚାଲୁ ରହିଲା । ଏହା ଫଳରେ ସେ ଜନପ୍ରିୟତା ହରାଇଲେ । ୧୯୭୫ ମସିହାରେ ଜରୁରୀକାଳୀନ ପରିସ୍ଥିତି ଉଠାଇ ସାଧାରଣ ନିର୍ବାଚନ କରାଗଲା । ସେହି ନିର୍ବାଚନରେ ସେ ଶୋଚନୀୟ ଭାବରେ ପରାଜିତ ହେଲେ । ଜନତା ପାର୍ଟି ସରକାର ଶାସନକୁ ଆସିଲା । ମୋର୍‌ରାଜୀ ଦେଶାଇ ପ୍ରଧାନମନ୍ତ୍ରୀ ହେଲେ । ଏବଂ ନୀଲମ୍ ସଂଜୀବ ରେଡ୍ଡୀ ରାଷ୍ଟ୍ରପତି ହେଲେ ।

୧୯୭୮ ମସିହାରେ ଶ୍ରୀମତୀ ଇନ୍ଦିରାଗାନ୍ଧୀ ପୁନର୍ବାର ସାଂସଦ ଭାବେ ନିର୍ବାଚିତ ହେଲେ କିନ୍ତୁ ତାଙ୍କୁ ଏଥିରୁ ବହିଷ୍କାର କରାଗଲା ଏବଂ କିଛିଦିନ ପାଇଁ ଜେଲ୍‌ଦଣ୍ଡ ଦିଆଗଲା । ତେବେ ଜନତା ସରକାରଙ୍କର ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ଦଣ୍ଡିତ କରିବାର ଉଦ୍ୟମ ବିଫଳ ହେଲା । ଅପରପକ୍ଷରେ ତାଙ୍କର ଜନପ୍ରିୟତା ପୁନଃପ୍ରତିଷ୍ଠିତ ହେଲା । ଏହି ସମୟ ମଧ୍ୟରେ କଂଗ୍ରେସ ପାର୍ଟି ମଧ୍ୟ ବିଭାଜିତ ହେଲା । ଇନ୍ଦିରାଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ଦଳକୁ କଂଗ୍ରେସ ସ୍ୱାଧୀନ ବା କଂଗ୍ରେସ (ଆଇ) କୁହାଗଲା । ତେବେ ପରବର୍ତ୍ତୀ ସମୟରେ ଏହା ଇନ୍ଦିରା କଂଗ୍ରେସ ବୋଲି ପ୍ରଚାରିତ ହେଲା । ତା ପରେ ବିଭିନ୍ନ ରାଜ୍ୟ ମାନଙ୍କରେ ନିର୍ବାଚନ ହେଲା ବେଳେ ଇନ୍ଦିରା କଂଗ୍ରେସ ଅଧିକାଂଶ ସ୍ଥାନରେ ବିଜୟୀ ହେଲା । ଜନତା ପାର୍ଟି ମଧ୍ୟରେ ବି ଅନେକ ଉତ୍ତେଜନା ଦେଖାଦେଲା ଏବଂ ମୋର୍‌ରାଜୀ ଦେଶାଇ ଇସ୍ତଫା ଦେଲେ । ଚୌଧୁରୀ ଚରଣ ସିଂ ପ୍ରଧାନମନ୍ତ୍ରୀ ହେଲେ । କିନ୍ତୁ ୧୯୮୦ ମସିହାରେ ହୋଇଥିବା ସାଧାରଣ ନିର୍ବାଚନରେ ବିପୁଳ ବିଜୟ ହାସଲ କରି ଇନ୍ଦିରାଗାନ୍ଧୀ ପୁନର୍ବାର ଶାସନକୁ ଫେରିଲେ । ତାଙ୍କ ବିରୁଦ୍ଧରେ ଥିବା ସମସ୍ତ ମକଦ୍ଦମାକୁ ପ୍ରତ୍ୟାହାର କରି ନିଆଗଲା ।

ଏହି ସମୟରେ ପଞ୍ଜାବରେ ଶିଖ୍ ଉଗ୍ରପନ୍ଥୀମାନେ ହିଂସାତ୍ମକ ବିପ୍ଳବ ଆରମ୍ଭ କରିଥାନ୍ତି । ପଞ୍ଜାବକୁ ଏକ ସ୍ୱୟଂଶାସିତ ରାଜ୍ୟ କରିବା ତାଙ୍କର ଦାବି ଥାଏ । ଅମୃତସରସ୍ଥିତ ସ୍ୱର୍ଣ୍ଣ ମନ୍ଦିରକୁ ସେମାନେ ତାଙ୍କର ଅସ୍ତ୍ରାଗାରରୂପେ ବ୍ୟବହାର କରୁଥାନ୍ତି । ଏହି ମନ୍ଦିର ପ୍ରାଙ୍ଗଣ ମୁଖ୍ୟତଃ ତିନିଭାଗରେ ବିଭକ୍ତ । ପ୍ରଥମ ଭାଗରେ ଏକ ବିରାଟ ପୁଷ୍କରିଣୀ ରହିଛି । ଏହା ସର୍ବଦା ଜଳପୂର୍ଣ୍ଣ ଥାଏ । ଦ୍ୱିତୀୟ ଭାଗରେ ପବିତ୍ର ହରମନ୍‌ଜୀ ସାହେବ୍ ରହିଛି ଯେଉଁଥିରେ ଏହି ସ୍ୱର୍ଣ୍ଣମନ୍ଦିର ଦଣ୍ଡାୟମାନ ।



ଏବଂ ତୃତୀୟ ଭାଗକୁ ଅକାଲତକ୍ କୁହାଯାଏ । ସେଠାରେ ଶିଖ୍ ସଂପ୍ରଦାୟର ସବୁଠାରୁ ପ୍ରଭୁତ୍ୱ ସଂପନ୍ନ କର୍ତ୍ତୃପକ୍ଷ ସଭା ତଥା ଆଲୋଚନା ଆଦି କରିଥାନ୍ତି । ଏହାର ପଶ୍ଚାଦ୍‌ଭାଗରେ ଥିବା ଘର ଗୁଡ଼ିକ ଶିଖ୍ ସଂପ୍ରଦାୟର ନେତୃବର୍ଗଙ୍କ ବାସସ୍ଥାନଭାବେ ବ୍ୟବହୃତ ହୁଏ । ତେବେ ଶିଖ୍ ଉଗ୍ରପନ୍ଥୀମାନଙ୍କ ଦ୍ୱାରା ଏହି ବାସସ୍ଥାନ ପାଇଁ ବ୍ୟବହୃତ କୋଠରୀ ଏବଂ ଅକାଲ୍‌ତକ୍ ଉଭୟ ଏକ ଅସ୍ତ୍ରାଗାର ରୂପେ କାର୍ଯ୍ୟ କରୁଥିଲା ।

ଶ୍ରୀମତୀ ଇନ୍ଦିରାଗାନ୍ଧୀ ଏହା ଜାଣିବା ପରେ ଶିଖ୍ ସଂପ୍ରଦାୟର ନେତାମାନଙ୍କୁ ହିଂସାତ୍ମକ କାର୍ଯ୍ୟ ପନ୍ଥା ପରିତ୍ୟାଗ କରିବା ପାଇଁ ଅନୁରୋଧ କଲେ । କିନ୍ତୁ ଏହି ଉଗ୍ରପନ୍ଥୀମାନେ ତାଙ୍କ ଜିଦ୍‌ରେ ଅଟଳ ରହିଲେ ।

୧୯୮୪ ମସିହା ମେ ୩୦ ତାରିଖ ରାତ୍ରିରେ ଭାରତୀୟ ସେନାବାହିନୀ ସ୍ୱର୍ଣ୍ଣମନ୍ଦିରକୁ ଘେରାଉ କଲେ । ଦୀର୍ଘ ତିନିଦିନ ପର୍ଯ୍ୟନ୍ତ ସେ ଏହା ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଲେ । ଓ୍ୱେଷ୍ଟର୍ଣ୍ଣ କମାଣ୍ଡ୍ ର କମାଣ୍ଡିଂ ଅଫିସର ଜେନେରାଲ୍ ଦୟାଲ୍‌ଙ୍କୁ ପଞ୍ଜାବର ରାଜ୍ୟପାଳଙ୍କର ଉପଦେଷ୍ଟାଭାବରେ ନିଯୁକ୍ତି ଦିଆଗଲା । ଜେନେରାଲ୍ ଦୟାଲ୍ ନିଜେ ଜଣେ ଶିଖ୍ ଅଫିସର୍ ଥିଲେ । ଜୁନ୍ ୩ ତାରିଖ ଦିନ ସ୍ୱର୍ଣ୍ଣ ମନ୍ଦିର ଉପରେ ନଜର ରଖିଥିବା ସେନାବାହିନୀ କେତେକ ଶିଖ୍ ଗରିଲାଙ୍କୁ ଦେଖିବାକୁ ପାଇଲା । ଶେଷରେ ଜୁନ୍ ୫ ତାରିଖ ଦିନ ମେସିନ୍ ଗନ୍‌ରୁ ସେମାନଙ୍କ ଉପରେ ଗୁଳିବର୍ଷଣ ଆରମ୍ଭ କରାଗଲା । ସେହିଦିନ ରାତିରେ ଲେଫ୍‌ଟନାଣ୍ଟ କର୍ଣ୍ଣେଲ ଇସାରଙ୍କ ତତ୍ତ୍ୱାବଧାନରେ ଦଶ ଜଣ କମାଣ୍ଡୋ ସୈନିକଙ୍କୁ ସ୍ୱର୍ଣ୍ଣମନ୍ଦିରରେ ଯେଉଁମାନେ ଆତ୍ମଗୋପନ କରିଥିଲେ ସେମାନଙ୍କୁ ଖୋଜି ବାହାର କରିବା ପାଇଁ ପଠାଗଲା । ଯେଉଁ ଜବାନ୍‌ମାନଙ୍କୁ ପ୍ରଥମେ ପଠାଯାଇଥିଲା ସେମାନଙ୍କୁ ରକ୍ଷା କରିବା ପାଇଁ ଆଉ ଶହେ ଜଣ କମାଣ୍ଡୋଙ୍କୁ ପରବର୍ତ୍ତୀ ସମୟରେ ମନ୍ଦିର ପରିସରରେ ପ୍ରବେଶ କରାଗଲା । ଜୁନ୍ ୬ ତାରିଖ ଦିନ ଇନ୍ଦିରାଗାନ୍ଧୀଙ୍କ

ଆଦେଶରେ ସୈନ୍ୟବାହିନୀ ସଂପୂର୍ଣ୍ଣ ଭାବେ ସ୍ୱର୍ଣ୍ଣ ମନ୍ଦିରକୁ ଆକ୍ରମଣ କରିବା ପାଇଁ ଅଗ୍ରସର ହେଲେ । ସୈନ୍ୟବାହିନୀ ମନ୍ଦିରକୁ କୌଣସି ପ୍ରକାରର କ୍ଷୟକ୍ଷତି ଯେପରି ହେବନାହିଁ ସେ ଦିଗରେ ଧ୍ୟାନ ଦେଇଥିଲା । ଫଳରେ ଶହ ଶହ ଶ୍ରମିକ ଶିଖ୍ ଗରିଲାଙ୍କ ଗୁଳିରେ ପ୍ରାଣ ହରାଇଲେ । ସେହିଦିନ ସଂଧ୍ୟାବେଳେ ଟ୍ୟାଙ୍କ୍ ଏବଂ ଆର୍ମିଗାଡ଼ି ଯୁଦ୍ଧପରିଚାଳନା ପାଇଁ ବ୍ୟବହୃତ ହେଲା । ଏହି ଯୁଦ୍ଧରେ ଓ୍ୱାଲେ ଅମ୍ରିତ୍‌ସିଂ, ସବାବ୍ ସିଂ ଆଦି ଶିଖ୍ ନେତାମାନେ ପ୍ରାଣ ହରାଇଲେ । ଏବଂ ଅନେକ ଆତ୍ମ ସମର୍ପଣ କଲେ । ଏହି କାର୍ଯ୍ୟକଳାପକୁ, ଏହି ଆକ୍ରମଣ ପ୍ରତିଆକ୍ରମଣକୁ ଅପରେସନ୍ ବ୍ଲୁଷ୍ଟାର ନାମରେ ନାମିତ କରାଯାଇଥିଲା । ଅପରେସନ୍ ବ୍ଲୁ ଷ୍ଟାର ପରେ ହିନ୍ଦୁ ଏବଂ ଶିଖ୍ ମଧ୍ୟରେ ଅନେକ ସ୍ଥାନରେ ଲଢ଼େଇ ଆରମ୍ଭ ହୋଇଗଲା । ପଞ୍ଜାବ ରାଜ୍ୟରେ ଆଇନ୍ ଏବଂ ଶୃଙ୍ଖଳା ବଜାୟ ରଖିବା ପାଇଁ ଶ୍ରୀମତୀ ଗାନ୍ଧୀ ଆପ୍ରାଣ ଉଦ୍ୟମ ଚଳାଇଥିଲେ । ଏହି ପଞ୍ଜାବ ପ୍ରଶ୍ନ ପ୍ରଧାନମନ୍ତ୍ରୀଙ୍କ ମୁଣ୍ଡ ଉପରେ ସବୁବେଳେ ଏକ ଖଡ୍‌ଗ ସ୍ୱରୂପ ଝୁଲି ରହିଲା । ଏବଂ ଶେଷରେ ତାହା ଇନ୍ଦିରା ଗାନ୍ଧୀଙ୍କ ପ୍ରାଣହାନୀ ଘଟାଇଲା ।

୧୯୮୪ ମସିହା ଅକ୍ଟୋବର ୩୧ ତାରିଖ ଦିନ ପ୍ରସିଦ୍ଧ ଲେଖକ ଏବଂ ଅଭିନେତା ମିଷ୍ଟର କୁସିନୋ ଇନ୍ଦିରା ଗାନ୍ଧୀଙ୍କର ଏକ ସାକ୍ଷାତକାରର ଭିଡ଼ିଓ ସୁଟିଂ କରିବା ପାଇଁ ନୂଆଦିଲ୍ଲୀସ୍ଥିତ ୧-ସବ୍‌ଦରଜଙ୍ଗ ରୋଡ୍ ବାସଭବନରେ ଉପସ୍ଥିତ ଥାଆନ୍ତି । ତାଙ୍କ ସହିତ ତାଙ୍କର ଫଟୋଗ୍ରାଫର ଏବଂ ସାଉଣ୍ଡରେକର୍ଡିଂ ଆଦି ତାଙ୍କ ଦଳର ଅନ୍ୟାନ୍ୟ ବ୍ୟକ୍ତିମାନେ ଇନ୍ଦିରାଗାନ୍ଧୀଙ୍କ ବାସଭବନର ଦର୍ଶନ ଲେନ୍‌ରେ ଅପେକ୍ଷାରତ ଥାଆନ୍ତି ।

ସକାଳ ୯ଟା ସମୟ । ଇନ୍ଦିରାଗାନ୍ଧୀ ତାଙ୍କର ବାସଗୃହ ମଧ୍ୟରେ ଥିବା ଅଫିସ୍ ଆଡ଼କୁ ଅଗ୍ରସର ହେଉଥାଆନ୍ତି । ହଠାତ୍  ଗୁଳି ଚାଲିବା ଶବ୍ଦ ଶୁଭିଲା । ସେତେବେଳେ ଦୀପାବଳୀ ପାଖେଇ ଆସୁଥିବାରୁ ଉପସ୍ଥିତ ବ୍ୟକ୍ତିମାନେ ବାଣ ଫୁଟିବା ଶବ୍ଦ ବୋଲି ଭାବିଲେ । କିନ୍ତୁ ଇନ୍ଦିରାଗାନ୍ଧୀଙ୍କ ପାଖରେ ଥିବା ପୋଲିସ୍ ଦେଖିଲା ଯେ ପରମୁହୂର୍ତ୍ତରେ ଇନ୍ଦିରାଗାନ୍ଧୀ ରକ୍ତରେ ଜୁବୁବୁରୁ ହୋଇ ଭୂଇଁରେ ଲୋଟି ପଡ଼ିଥିଲେ ଏବଂ ଆର୍ତ୍ତଚିତ୍କାର କରୁଥିଲେ । ସେତେବେଳେ ଘଟଣାର ଗୁରୁତ୍ୱ ସମସ୍ତେ ବୁଝିପାରିଲେ । ମିଷ୍ଟର ପିଟର କୁସିନୋ ଲନ୍‌ରେ କିଛି ଦୂରରେ ଠିଆ ହୋଇଥାନ୍ତି । କିଛିକ୍ଷଣ ମଧ୍ୟରେ ସେ ଯାହା ଘଟିଯାଇଛି ତାହା ହୃଦୟଙ୍ଗମ କଲେ । ଲୋକମାନେ ଭୀତତ୍ରସ୍ତ ହୋଇ ଏଣେତେଣେ ଧାଉଁଥାଆନ୍ତି । ଜଣାପଡ଼ିଲା ଯେ ତାଙ୍କ ନିଜର ଶିଖ୍ ଜାତିର ଦୁଇଟି ବଡ଼ିଗାର୍ଡ ତାଙ୍କ ଉପରେ ଗୁଳିବର୍ଷଣ କରିଥିଲେ ।

ତତ୍‌କ୍ଷଣାତ୍ ଇନ୍ଦିରାଗାନ୍ଧୀଙ୍କୁ ଦିଲ୍ଲୀ ଏମ୍‌ସ୍ ହସ୍‌ପିଟାଲ୍‌କୁ ସ୍ଥାନାନ୍ତରିତ କରାଗଲା । କିନ୍ତୁ ସେଠାରେ ପହଞ୍ଚିବା ପୂର୍ବରୁ ଇନ୍ଦିରାଗାନ୍ଧୀଙ୍କର ପ୍ରାଣବାୟୁ ଉଡ଼ିଯାଇଥିଲା ।

ଶ୍ରୀମତୀ ଇନ୍ଦିରାଗାନ୍ଧୀ ଭାରତୀୟ ଜନତାର ଅତିପ୍ରିୟ ପ୍ରଧାନମନ୍ତ୍ରୀ ଥିଲେ । ତାଙ୍କ ଲୋକପ୍ରିୟତା କେବଳ ଭାରତବର୍ଷରେ ନୁହେଁ ସାରା ବିଶ୍ୱରେ ବ୍ୟାପ୍ତ ହୋଇଥିଲା ଏବଂ ସେ ଗତ ଶତାବ୍ଦୀର ମହୀୟସୀ ଏବଂ କ୍ଷମତାସଂପନ୍ନ ମହିଳା ମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ବୋଲି ବିଶ୍ୱର ସମସ୍ତ ରାଷ୍ଟ୍ର ମତ ଦେଇଥିଲେ । ତାଙ୍କ ଶାସନକାଳ ମଧ୍ୟରେ ସେ କଳା, ହସ୍ତଶିଳ୍ପ, ଥିଏଟର, ନୃତ୍ୟ ଏବଂ ସଂଗୀତର ପୃଷ୍ଠପୋଷକତା କରୁଥିଲେ । ଦେଶ ଏବଂ ବିଦେଶରୁ ତାଙ୍କୁ ଅନେକ ସମ୍ମାନ, ପ୍ରଶସ୍ତି ଏବଂ ପୁରସ୍କାରରେ ସମ୍ମାନିତ କରାଯାଇଥିଲା । ଶେଷରେ ୧୯୭୨ ମସିହାରେ ତାଙ୍କୁ ଭାରତ ବର୍ଷର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନରେ ଭୂଷିତ କରାଯାଇଥିଲା । ସେ ଖେଳକସରତକୁ ପ୍ରୋତ୍ସାହନ ଦେଉଥିଲେ ଏବଂ ନୂଆଦିଲ୍ଲୀରେ ଏସିଆଡ୍ ଗେମ୍ ଅନୁଷ୍ଠିତ ହେବାରେ ଯଥେଷ୍ଟ ଆଗ୍ରହ ଦେଖାଇଥିଲେ । ୧୯୮୩ ମସିହାରେ ତାଙ୍କୁ ଅନ୍ତଃରାଷ୍ଟ୍ରୀୟ ଅଲମ୍ପିକ୍ସ ସ୍ୱର୍ଣ୍ଣ ସମ୍ମାନରେ ଭୂଷିତ କରାଯାଇଥିଲା । ଏବଂ ସେହିବର୍ଷ ପରିବାର ନିୟନ୍ତ୍ରଣରେ ତାଙ୍କର ଉଦ୍ୟମ ଏବଂ ପ୍ରୋତ୍ସାହନ ପାଇଁ ୟୁଏନ୍‌ଓ ତାଙ୍କୁ ସମ୍ମାନିତ କରିଥିଲେ । ଇନ୍ଦିରାଗାନ୍ଧୀ ତାଙ୍କ ମୃତ୍ୟୁର ପୂର୍ବଦିନ କହିଥିଲେ 'ଜାତିର ସେବା କରି ମୁଁ ଯଦି ମରିଯାଏ ତହିଁରେ ମୁଁ ଗର୍ବିତ ହେବି । ଆମ ଦେଶକୁ ଶକ୍ତିଶାଳୀ ଏବଂ ଚଳବଞ୍ଚଳ କରିବା ପାଇଁ ମୋ ଦେହର ପ୍ରତିବିନ୍ଦୁ ରକ୍ତ ମୁଁ ଉତ୍ସର୍ଗ କରିବା ପାଇଁ ସଦା ପ୍ରସ୍ତୁତ ।' ଏକଥା ନିଶ୍ଚିତ ଯେ ଇନ୍ଦିରାଗାନ୍ଧୀଙ୍କ ପରି ଦୂରଦୃଷ୍ଟି ସଂପନ୍ନ ରାଜନୀତି ପ୍ରବୀଣ, ଦୃଢ଼ମନା ମହିଳା ଭାରତ ବର୍ଷରେ ଜନ୍ମ ନେବା ଦେଶପାଇଁ, ଜାତିପାଇଁ ଏକ ଗୌରବ । ପ୍ରକୃତରେ ସେ ତାଙ୍କର ପ୍ରତିଟି ବିନ୍ଦୁ ରକ୍ତରେ ଜାତିର ପ୍ରଗତିଶୀଳ ଇତିହାସ ଲେଖିବାର ଚେଷ୍ଟା କରୁଥିଲେ ।

* * *

# ଭି.ଭି. ଗିରି



୧୮୯୪-୧୯୮୦

ଭାରତରତ୍ନ - ୧୯୭୫

**ଆ**ମ ରାଜ୍ୟ ଓଡ଼ିଶାର ଗର୍ବ ଓ ଗୌରବ ବରାହଗିରି ଭେଙ୍କଟଗିରି ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁରଠାରେ ୧୮୯୪ ମସିହା ଅଗଷ୍ଟ ୧୦ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଜୁଜୁଭି ଯୋଗିହା ସାନ୍ତଜୁ ବ୍ରହ୍ମପୁରର ଜଣେ ପ୍ରସିଦ୍ଧ ଓକିଲ ଥିଲେ । ସେ ମଧ୍ୟ ଜାତୀୟ ସ୍ୱାଧୀନତା ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଭିଭି ଗିରି ଭାରତର ଚତୁର୍ଥ ରାଷ୍ଟ୍ରପତି ଭାବେ ଅଧିଷ୍ଠିତ ହୋଇଥିଲେ । ତାଙ୍କର ଶିକ୍ଷାଗ୍ରହଣ ବ୍ରହ୍ମପୁରର ଖଲିକୋଟ କଲେଜରେ ହୋଇଥିଲା । ୧୯୧୩ ମସିହାରେ ଡବ୍ଲିନ୍ ଯାଇ ଓକିଲାତି ଶିକ୍ଷା କରିଥିଲେ । ଡବ୍ଲିନ୍‌ରେ ଥିବା ସମୟରେ ଆୟାରଲ୍ୟାଣ୍ଡରେ ହୋଇଥିବା ସ୍ୱାଧୀନତା ଆନ୍ଦୋଳନ ତାଙ୍କ ମନରେ ଗଭୀର ରେଖାପାତ କରିଥିଲା । ସେଠାରେ

ଅବସ୍ଥାନ କରୁଥିବା ସମୟରେ ସେ ଆୟାରଲ୍ୟାଣ୍ଡର ପ୍ରସିଦ୍ଧ ନେତା ପି. ଭାଲେରାଙ୍କ ଦ୍ୱାରା ପ୍ରଭାବିତ ହୋଇ ତାଙ୍କ ଦଳ ସିଂ ଫେନ୍‌ରେ ଯୋଗଦାନ କରିଥିଲେ । ଆୟାରଲ୍ୟାଣର ସ୍ୱାଧୀନତା ଆନ୍ଦୋଳନରେ ଅଂଶ ଗ୍ରହଣ କରୁଥିବା ସମୟରେ ସେ ଦକ୍ଷିଣ ଆଫ୍ରିକାରେ ଥିବା ଭାରତୀୟମାନଙ୍କ ପ୍ରତି ହେଉଥିବା ଅକଥନୀୟ ଅତ୍ୟାଚାରର ସମ୍ବାଦ ଶୁଣିଥିଲେ । ଦକ୍ଷିଣ ଆଫ୍ରିକୀୟ ଭୟ ନାମକ ଏକ କ୍ଷୁଦ୍ର ପୁସ୍ତିକା ରଚନା କରି ତାକୁ ଭାରତ ପଠାଇଥିଲେ । ଏହି ପୁସ୍ତିକାର ଗୋଟିଏ ପ୍ୟାକେଟ୍ କଷ୍ଟମ୍‌ସ ଅଧିକାରୀ ମାନଙ୍କ ହାତରେ ପଡ଼ିଥିଲା ।

ଆୟାରଲ୍ୟାଣରେ ଥିବା ସିଂ କ୍ଲିଂଙ୍ଗ୍ ଦଳଙ୍କ ସହିତ ତାଙ୍କର ସଂପୃକ୍ତି ଜଣାପଡ଼ିବା ପରେ ତାଙ୍କୁ ୧୯୧୬ ମସିହାରେ ସେ ରାଷ୍ଟ୍ରରୁ ବହିଷ୍କାର କରାଗଲା ।

ଭି ଭି ଗିରି ସ୍ୱାଧୀନତା ଆନ୍ଦୋଳନ ପ୍ରତି ଆକର୍ଷିତ ହୋଇଥିଲେ ହେଁ ତାଙ୍କର ପ୍ରଧାନ କାର୍ଯ୍ୟ ଶ୍ରମିକ ଆନ୍ଦୋଳନ ଥିଲା । ଭାରତକୁ ଫେରିବା ପରେ ସେ କଂଗ୍ରେସ ଦଳରେ ଯୋଗ ଦେଇଥିଲେ ଏବଂ ଭାରତରେ ଗଢ଼ି ଉଠୁଥିବା ଶ୍ରମିକ ଆନ୍ଦୋଳନରେ ଯୋଗ ଦେଲେ । ୧୯୧୭ରୁ ୧୯୨୨ ମସିହା ପର୍ଯ୍ୟନ୍ତ ସେ କଂଗ୍ରେସର ଜଣେ ସକ୍ରିୟ ସଭ୍ୟ ଥିଲେ । ମହାତ୍ମାଗାନ୍ଧୀଙ୍କ ଦ୍ୱାରା ଆହୂତ ଅସହଯୋଗ ଆନ୍ଦୋଳନରେ ଭାଗ ନେବାପାଇଁ ସେ ତାଙ୍କର ଓକିଲାତି ବ୍ୟବସାୟ ତ୍ୟାଗ କଲେ । ୧୯୨୧ ମସିହାରେ ତାଙ୍କୁ ବନ୍ଦୀ କରାଗଲା ଏବଂ କିଛିଦିନ ପାଇଁ ଜେଲ୍‌କୁ ପଠାଗଲା । ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିବା ଯୋଗୁଁ ତାଙ୍କୁ ଏହି ଦଣ୍ଡ ଦିଆଯାଇଥିଲା ।

୧୯୨୨ ମସିହା ପରଠାରୁ ସେ ଶ୍ରମିକ ସଂଗଠନମାନଙ୍କରେ ସଂପୂର୍ଣ୍ଣ ଭାବେ ସଂପୃକ୍ତ ହୋଇ ପଡ଼ିଲେ । ଶ୍ରୀ ଏନ୍‌ଏମ୍ ଯୋଶୀଙ୍କ ତତ୍ତ୍ୱାବଧାନରେ ସେହି ଆନ୍ଦୋଳନ ଚାଲିଥାଏ । ୧୯୨୬-୨୭ ମସିହାରେ ସଫଳତାର ସହିତ ସେ ରେଳବାଇ କର୍ମୀମାନଙ୍କର ଆନ୍ଦୋଳନ ପରିଚାଳନା କରିଥିଲେ ।

ଭାରତୀୟ ରେଳବାଇ କର୍ମୀଙ୍କ ଫେଡ଼େରେସନ୍‌ର ସାଧାରଣ ସଂପାଦକ ଏବଂ ପରେ ସଭାପତି ପଦରେ ସେ ନିର୍ବାଚିତ ହୋଇଥିଲେ । କଂଗ୍ରେସ ଦଳ ସହିତ ସଂପୃକ୍ତ ସର୍ବଭାରତୀୟ ଟ୍ରେଡ୍ ୟୁନିୟନ କଂଗ୍ରେସର ସେ ଦୁଇ ଥର ସଭାପତି ପଦ ଅଳଙ୍କୃତ କରିଥିଲେ । ଜେନେଭା ଠାରେ ଅନ୍ତଃରାଷ୍ଟ୍ରୀୟ ଶ୍ରମିକ ଅଧିବେଶନରେ ସେ ୧୯୨୭ ମସିହାରେ ଯୋଗ ଦେଲେ । ଶ୍ରମିକ ମାନଙ୍କର ପ୍ରତିନିଧି ଭାବେ ସେ ୧୯୩୧-୩୨

ମସିହାରେ ଦ୍ୱିତୀୟ ରାଉଣ୍ଡ ଟେବୁଲ କନ୍‌ଫରେନ୍‌ସରେ ଲଣ୍ଡନରେ ଯୋଗ ଦେଇଥିଲେ । ଭିଭି ଗିରି ୧୯୩୪ ମସିହାରୁ ୧୯୩୭ ମସିହା ପର୍ଯ୍ୟନ୍ତ ଭାରତୀୟ ବିଧାନ ସଭାର ସଭ୍ୟ ଥିଲେ । ଯେତେବେଳେ



କଂଗ୍ରେସ ଦଳ ମାଡ୍ରାସରେ ସରକାର ଗଠନ କଲେ ତହିଁରେ ସେ ଶ୍ରମ ଏବଂ ଶିଳ୍ପ ବିଭାଗର ମନ୍ତ୍ରୀଭାବେ ଯୋଗ ଦେଇଥିଲେ । ୧୯୪୨ ମସିହାରେ ଭି ଭି ଗିରି ଭାରତ ଛାଡ଼ ଆନ୍ଦୋଳନରେ ଯୋଗ ଦେଇ ଅନ୍ୟମାନଙ୍କ ସହିତ କାରାବରଣ କରିଥିଲେ ।

ଭାରତର ସ୍ୱାଧୀନତା ପରେ ଭି ଭି ଗିରି ଶ୍ରୀଲଙ୍କାର ହାଇକମିଶନର ଭାବେ ଅବସ୍ଥାପିତ ହେଲେ ଏବଂ ୧୯୫୨ ମସିହାର ପ୍ରଥମ ସାଧାରଣ ନିର୍ବାଚନରେ ସେ ଲୋକସଭାକୁ ନିର୍ବାଚିତ ହୋଇ ଆସିଲେ । ତା ପରେ ୧୯୫୪ ମସିହାରେ ତାଙ୍କୁ କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ଶ୍ରମ ମନ୍ତ୍ରୀ ଭାବେ ନିଯୁକ୍ତି ମିଳିଲା । ସେ ଜଣେ ନୀତିନିଷ୍ଠ ବ୍ୟକ୍ତି ଥିଲେ । ଶ୍ରମିକ ମାନଙ୍କ ସଂପର୍କୀୟ କେତେକ ସମସ୍ୟା ନେଇ ତାଙ୍କର ଅନ୍ୟ ମନ୍ତ୍ରୀମାନଙ୍କ ସହିତ ମତଭେଦ ହେବାରୁ ସେ ଇସ୍ତଫା ଦେଇଥିଲେ । ଶେଷରେ ସରକାର ତାଙ୍କ ପରାମର୍ଶକୁ ଗ୍ରହଣ କରିଥିଲେ । ଭି ଭି ଗିରି କେବେ ବି ଉଚ୍ଚ ପଦବୀର ମୋହରେ ପଡ଼ି ନ ଥିଲେ । ଜୀବନରେ ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଶ୍ରମିକ ଶ୍ରେଣୀର କଲ୍ୟାଣ ଏବଂ ଉନ୍ନତି । ୧୯୫୭ ମସିହା ପରଠାରୁ ଭିଭି ଗିରି ଅନେକ ଉଚ୍ଚ ପଦବୀରେ ରହିଥିଲେ । ସେ ଉତ୍ତରପ୍ରଦେଶ, କେରଳ ଏବଂ ମହୀଶୂରର ରାଜ୍ୟପାଳ ଭାବେ ଅବସ୍ଥାପିତ ହୋଇଥିଲେ । ତାଙ୍କର ସାମାଜିକ କାର୍ଯ୍ୟକଳାପକୁ ସେ ସବୁବେଳେ ଚାଲୁ ରଖୁଥିଲେ । ତାଙ୍କ କାର୍ଯ୍ୟକାଳ ଭିତରେ ସେ ଅନେକ ବନ୍ଧୁ ଅର୍ଜନ କରିଛନ୍ତି ଏବଂ ଅନେକ ନୂତନ ଯୋଜନା ଏବଂ ବିଶେଷକରି ଯୁବ ସଂପ୍ରଦାୟର ଉନ୍ନତିରେ ଅନେକ କାର୍ଯ୍ୟ କରିଛନ୍ତି ।

୧୯୬୭ ମସିହାରେ ସେ ଭାରତର ଉପରାଷ୍ଟ୍ରପତି ଭାବେ ନିର୍ବାଚିତ ହେଲେ । ୧୯୬୯ ମସିହାରେ ରାଷ୍ଟ୍ରପତି ଜାକିର ହୁସେନ୍‌ଙ୍କର ମୃତ୍ୟୁ ପରେ ଭିଭି ଗିରିଙ୍କୁ କାର୍ଯ୍ୟକାରୀ ରାଷ୍ଟ୍ରପତି ଭାବେ ଅବସ୍ଥାପିତ କରାଗଲା । କିନ୍ତୁ ସେ ତହିଁରୁ ଇସ୍ତଫା ଦେଇ ରାଷ୍ଟ୍ରପତି ପଦ ପାଇଁ ପ୍ରାର୍ଥୀ ହେବା ପାଇଁ ଇଚ୍ଛା ପ୍ରକାଶ କଲେ । ସେ ବର୍ଷ

ରାଷ୍ଟ୍ରପତି ନିର୍ବାଚନ ଖୁବ୍ କୌତୁକ ପ୍ରଦ ହୋଇଥିଲା । ଡ଼କ୍ଟର ନୀଲମ ସଂଜୀବ ରେଡ୍ଡୀ ଏହି ପଦ ପାଇଁ ପ୍ରାର୍ଥୀ ଥିଲେ ଏବଂ ମୋର୍ରାଜୀ ଦେଶାଇ, କେ କାମରାଜ ଏବଂ ଏସ୍.କେ ପଟେଲ ତାଙ୍କୁ ସମର୍ଥନ କରୁଥିଲେ । କିନ୍ତୁ ସେତେବେଳର



ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଭିଭି ଗିରିଙ୍କୁ ସମର୍ଥନ ଦେବା ଫଳରେ ସେ ନିର୍ବାଚନ ଜିତି ପାରିଥିଲେ । ୧୯୬୯ ମସିହାରୁ ୧୯୭୪ ମସିହା ଯାଏଁ ସେ ଭାରତର ରାଷ୍ଟ୍ରପତି ପଦ ଅଳଙ୍କୃତ କରିଥିଲେ । ଭି ଭି ଗିରି ଦୁଇଟି ଅମୂଲ୍ୟ ପୁସ୍ତକ ରଚନା କରିଛନ୍ତି । ଇଣ୍ଡଷ୍ଟ୍ରିଆଲ୍ ରିଲେସନ୍ ଏବଂ ଭାରତୀୟ ଶିଳ୍ପ ଜଗତରେ ଶ୍ରମିକ ସମସ୍ୟା ନାମକ ପୁସ୍ତକ ଦୁଇଟି ସମଗ୍ର ବିଶ୍ୱରେ ଆଦୃତ ହୋଇଥିଲା ।

ଭି ଭି ଗିରି ଜଣେ ଦକ୍ଷ ରାଜନୀତିଜ୍ଞ ଏବଂ ଦୂରଦର୍ଶୀ ରାଷ୍ଟ୍ରବାଦୀ ନେତା ଥିଲେ । ଅନେକ ବିଶ୍ୱବିଦ୍ୟାଳୟରୁ ତାଙ୍କୁ ବିଭିନ୍ନ ଡ଼ିଗ୍ରୀ ପ୍ରଦାନ କରାଯାଇଥିଲା । ଆନ୍ଧ୍ରା ଏବଂ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟ ତାଙ୍କୁ ଡ଼ିଲିଟ୍ ଡ଼ିଗ୍ରୀ ପ୍ରଦାନ କରିଥିଲା ଏବଂ ଆଗ୍ରା, ମସ୍କୋ ଏବଂ ବୁଲ୍‌ଗେରିଆ ତାଙ୍କୁ ଏଲ୍‌ଏଲ୍‌ବି ଡ଼ିଗ୍ରୀରେ ସମ୍ମାନିତ କରିଥିଲା । ଏହି ପ୍ରବୀଣ ନେତାଙ୍କୁ ଭାରତବର୍ଷର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନ ପୁରସ୍କାର ୧୯୭୪ ମସିହାରେ ପ୍ରଦାନ କରାଯାଇଥିଲା । ବର୍ତ୍ତମାନର ଚେନ୍ନାଇ ସହରରେ ସେ ୧୯୮୦ ମସିହା ଜୁନ୍ ୨୪ ତାରିଖ ଦିନ ଦେହତ୍ୟାଗ କଲେ ।

ଆମ ରାଜ୍ୟର ସେ ଗର୍ବ ଓ ଗୌରବ । ଭାରତ ବର୍ଷର ଏହି ସର୍ବୋଚ୍ଚ ନାଗରିକ ସମ୍ମାନ ପାଇବାରେ ସେ ଏ ପର୍ଯ୍ୟନ୍ତ ଏକମାତ୍ର ଓଡ଼ିଆ ଭାବେ ସକ୍ଷମ ହୋଇଛନ୍ତି ।

***

# କୁମାର ସ୍ୱାମୀ କାମ୍‌ରାଜ୍



୧୯୦୩–୧୯୭୫

ଭାରତରତ୍ନ – ୧୯୭୬

ଏକଦା ଭାରତର ରାଜନୀତିରେ କାମ୍‌ରାଜ୍, ପୂରାନାମ କୁମାର ସ୍ୱାମୀ କାମ୍‌ରାଜ୍‌ଙ୍କର ପ୍ରସିଦ୍ଧି ଖୁବ୍ ବ୍ୟାପକ ହୋଇଥିଲା । ଏକ ଅତି ଗରିବ ପରିବାରରେ ଜନ୍ମ ଗ୍ରହଣ କରି ବ୍ୟକ୍ତି ଖ୍ୟାତି ଏବଂ ଯଶର ଶୀର୍ଷ ବିନ୍ଦୁରେ ପହଞ୍ଚିବା ସମ୍ଭବ – କାମ୍‌ରାଜ୍ ତାହାର ଏକ ଜୀବନ୍ତ ଉଦାହରଣ । କଠିନ ଶ୍ରମ ଏବଂ ନିଷ୍ଠା ଯେ କୌଣସି ବ୍ୟକ୍ତିକୁ ସଫଳତାର ଶୀର୍ଷସ୍ଥାନରେ ପହଞ୍ଚାଇପାରେ ଏହା କାମ୍‌ରାଜ୍‌ଙ୍କ ଜୀବନୀ ପାଠ କଲେ ଜାଣିହୁଏ । ଏହି ତୁଙ୍ଗ ନେତାଙ୍କର ସାଧାରଣ ଜନତାଠାରୁ ଆରମ୍ଭ କରି ଦେଶର ସମଗ୍ର ନେତୃବର୍ଗଙ୍କ ଉପରେ ଥିବା ପ୍ରଭାବ ତାଙ୍କୁ ଦିନେ ତାମିଲ୍‌ନାଡୁର ମୁଖ୍ୟମନ୍ତ୍ରୀ ପଦରେ ଅଧିଷ୍ଠିତ କରିଥିଲା । ସେ ଗୋଟିଏ ଗରିବ ଏବଂ ନିମ୍ନ ନାଦର

ପରିବାରରେ ୧୯୦୩ ମସିହା ଜୁଲାଇ ୧୫ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ ରାମନାଥପୁରମ୍ ଜିଲ୍ଲାର ବିରୁଦ୍ଧ ନଗର ଅଞ୍ଚଳରେ । ତାଙ୍କର ପିତା କୁମାର ସ୍ୱାମୀ ନାଦର ନଡ଼ିଆ ବିକ୍ରି କରି ପରିବାରର ଭରଣ ପୋଷଣ କରୁଥିଲେ । ତାଙ୍କର ମାତାଙ୍କ ନାମ ଥିଲା ଶିବକାମୀ ଅମଲ୍ । ପିତାମାତାଙ୍କର ସେ ଜ୍ୟେଷ୍ଠପୁତ୍ର ଥିଲେ । ତାଙ୍କର ପରିବାରର ଦେବୀ କାମାକ୍ଷୀଙ୍କ ନାମ ଅନୁସାରେ ତାଙ୍କର ନାମକରଣ ହୋଇଥିଲା । କିନ୍ତୁ ସ୍ନେହରେ ସେ ତାଙ୍କର ପୁଅକୁ ରାଜୁ ନାମରେ ଡାକୁଥିଲେ । ପରେ ଏହି ଦୁଇ ନାମ ମିଶି ତାଙ୍କର ନାମ କାମରାଜ୍ ହୋଇଥିଲା ।

ବିରୁଦ୍ଧ ନଗର ସ୍ଥିତ ନାଦର ବିଦ୍ୟାଳୟରେ ସେ ପ୍ରଥମେ ଅଧ୍ୟୟନ କରିଥିଲେ । କିନ୍ତୁ ମାତ୍ର ୧ ବର୍ଷ ପରେ ତାଙ୍କ ପିତାଙ୍କ ଦେହାନ୍ତ ହେଲା । ତାର ଅଳ୍ପଦିନ ପୂର୍ବରୁ ତାଙ୍କର ଜେଜେବାପା ମଧ୍ୟ ପ୍ରାଣତ୍ୟାଗ କରିଥିଲେ । ଏହି ଦୁଇ ମୃତ୍ୟୁ ଫଳରେ ପରିବାର ଶୋକରେ ସଂପୂର୍ଣ୍ଣ ଭାଙ୍ଗି ପଡ଼ିଲା । ଏହାପରେ ତାଙ୍କର ମା ଦାରିଦ୍ର୍ୟ କଷାଘାତରେ ଭାଙ୍ଗି ପଡ଼ିଲେ । କାମ୍‌ରାଜ୍‌ଙ୍କ ଜୀବନରେ ଏହି ଦାରିଦ୍ର୍ୟ ହିଁ ଜୀବନର ନିଷ୍ଠୁର ସତ୍ୟ ଗୁଡ଼ିକ ଉନ୍ମୋଚନ କଲା । ମାତ୍ର ୧୨ ବର୍ଷ ବୟସରେ କାମ୍‌ରାଜ୍ ପରିବାର ପୋଷଣ ପାଇଁ ତାଙ୍କ କକାଙ୍କର ଲୁଗା ଦୋକାନରେ ଜଣେ ସହାୟକ ଭାବେ କାର୍ଯ୍ୟରତ ହେଲେ ।

କାମ୍‌ରାଜ୍ ନିଜେ କୌଣସି ଆନୁଷ୍ଠାନିକ ଶିକ୍ଷା ଗ୍ରହଣ କରିପାରିଲେ ନାହିଁ କିନ୍ତୁ ଯେତେବେଳେ ୧୯୫୪ ମସିହାରେ ସେ ତାମିଲ୍‌ନାଡୁର ମୁଖ୍ୟମନ୍ତ୍ରୀଭାବେ ଅଧିଷ୍ଠିତ ହେଲେ ଶିକ୍ଷାକୁ ସେ ପ୍ରଧାନ ଗୁରୁତ୍ୱ ଦେଇଥିଲେ । ତାଙ୍କ ଶାସନ କାଳ ମଧ୍ୟରେ ଅନେକ ଗରିବ ଛାତ୍ରଙ୍କୁ ବିନା ମୂଲ୍ୟରେ ଶିକ୍ଷାଦାନ କରିବାର ବ୍ୟବସ୍ଥା କରିଥିଲେ । ସେ ଶିକ୍ଷିତ ନ ଥିଲେ ହେଁ ତାଙ୍କର ବୁଦ୍ଧିମତ୍ତା ଏବଂ ପ୍ରଗାଢ଼ ଧୀଶକ୍ତି ତାଙ୍କୁ ମାନବ ଚରିତ୍ର ଅଧ୍ୟୟନ କରିବାରେ ସାହାଯ୍ୟ କରିଥିଲା । ସେ ମଣିଷ ଏବଂ ତାର ସମସ୍ୟାକୁ ଖୁବ୍ ଶୀଘ୍ର ହୃଦୟଙ୍ଗମ କରିପାରୁଥିଲେ । ସମସ୍ୟା ସମାଧାନ କରିବାରେ ସେ ସିଦ୍ଧହସ୍ତ ଥିଲେ । ସେଥିପାଇଁ ତାଙ୍କୁ ଲୋକମାନେ 'ପଦିକଟ୍ଟା ନିଥାଇ' ବା ନିରକ୍ଷର ଜ୍ଞାନୀ ଭାବେ ସମ୍ବୋଧିତ କରୁଥିଲେ ।

ମାତ୍ର ୧୩ ବର୍ଷ ବୟସ ହୋଇଥିଲାବେଳୁ କାମ୍‌ରାଜ୍ ରାଜନୀତି ପ୍ରତି ତାଙ୍କର ଆଗ୍ରହ ପ୍ରକାଶ କରିଥିଲେ । ନିଜେ ନିଜେ ଅକ୍ଷର ପଢ଼ି ସେ ପ୍ରତିଦିନ 'ସ୍ୱଦେଶ ମିଥେରେନ୍' ନାମକ ସମ୍ବାଦପତ୍ର ପଠନ କରୁଥିଲେ । ଏହାର ବିଭିନ୍ନ ଖବର ଉପରେ ତାଙ୍କର ବନ୍ଧୁମାନଙ୍କ ସହିତ ଆଲୋଚନା କରୁଥିଲେ । ଆନିବେଶାନ୍ତଙ୍କର ଗୃହଶାସନର

ଆହ୍ୱାନ ତାଙ୍କୁ ଆକର୍ଷିତ କରିଥିଲା ଏବଂ ତା ପରଠାରୁ ସେ ଦୋକାନରୁ ଖସି ଡ଼କ୍ଟର ଭେରାଦେରାଜୁଲୁ ନାଇଡୁ ଏବଂ ଜର୍ଜ ଜୋସେଫ୍ ଭଳି ନେତାମାନଙ୍କର ସଭାକୁ ଯାଇ ସେମାନଙ୍କ ଭାଷଣ ଶୁଣୁଥିଲେ । ତାଙ୍କର ବନ୍ଧୁ ପରିଜନ କାମ୍‌ରାଜ୍‌ଙ୍କର ରାଜନୀତି ପ୍ରତି ଥିବା ଆଗ୍ରହରେ ବିବ୍ରତ ହୋଇ ପଡ଼ିଲେ ଏବଂ ଏତେ କମ୍ ବୟସରୁ ରାଜନୀତି ପ୍ରତି ଆକୃଷ୍ଟ ନ ହେବାପାଇଁ ତାଙ୍କୁ ପ୍ରବର୍ତ୍ତାଇଲେ । ସେଥିପାଇଁ ତାଙ୍କର ଅନ୍ୟଜଣେ କକାଙ୍କର ତିରୁବନନ୍ତପୁରମ୍‌ରେ ଥିବା କାଠଗୋଲାରେ ତାଙ୍କୁ କାମ କରିବା ପାଇଁ ପଠାଗଲା । ତିରୁବନନ୍ତପୁରମ୍ ଯିବା ପରେ ମଧ୍ୟ କାମରାଜ୍‌ଙ୍କର ପ୍ରକୃତିରେ ପରିବର୍ତ୍ତନ ହୋଇନଥିଲା । ସେଠାରେ ସେ କଂଗ୍ରେସ୍ ଦ୍ୱାରା ଆହୂତ ସତ୍ୟାଗ୍ରହରେ ଯୋଗଦେଲେ । ଏହି ସତ୍ୟାଗ୍ରହ ଉଚ୍ଚ ଶ୍ରେଣୀର ହିନ୍ଦୁମାନେ ହରିଜନମାନଙ୍କ ଉପରେ କରୁଥିବା ଅତ୍ୟାଚାର ବିଷୟରେ ହେଉଥାଏ । ସତ୍ୟାଗ୍ରହରେ ଭାଗନେବା ଖବର ଶୁଣି ତାଙ୍କୁ ତାଙ୍କର କକା ଘରକୁ ଫେରାଇ ଆଣିଲେ । ସେଠାରେ ତାଙ୍କୁ ବିବାହ ପାଇଁ ପ୍ରବର୍ତ୍ତାଇଲେ । କାମରାଜ୍ ଏଥିରେ ବିବ୍ରତ ନ ହୋଇ ସେ ଜୀବନରେ କେବେ ହେଲେ ବିବାହ କରିବେ ନାହିଁ ବୋଲି କକାଙ୍କୁ ଜଣାଇଲେ । ତାଙ୍କର ସାରା ଜୀବନ ଦେଶପାଇଁ ସେ ଉତ୍ସର୍ଗ କରିବେ ବୋଲି ସ୍ପଷ୍ଟ ଭାବେ ଘୋଷଣା କଲେ ।

୧୯୧୯ ମସିହାରେ ଜାଲିଆଁୱାଲାବାଗ୍‌ରେ ହୋଇଥିବା ନରସଂହାର କାମ୍‌ରାଜ୍‌ଙ୍କର ଯୁବ ପ୍ରାଣକୁ ଆନ୍ଦୋଳିତ କଲା । ସେ ପରବର୍ତ୍ତୀ କାର୍ଯ୍ୟକ୍ରମ ବିଷୟରେ ଯୋଜନା କଲେ । ସେ ସ୍ୱାଧୀନତା ଆନ୍ଦୋଳନରେ ନିଜକୁ ସଂପୂର୍ଣ୍ଣ ଭାବେ ଉତ୍ସର୍ଗୀକୃତ କରିଦେଲେ । ମାତ୍ର ୧୬ ବର୍ଷ ବୟସରେ ସେ କଂଗ୍ରେସର ଜଣେ କର୍ମୀଭାବେ ନିଜକୁ ନିୟୋଜିତ କଲେ । କଂଗ୍ରେସ ପାଇଁ ପାଣ୍ଠି ସଂଗ୍ରହ କରିବା ଉଦ୍ଦେଶ୍ୟରେ ସେ ସଂଗଠନ କଲେ । ତାଙ୍କୁ ୨୦ ବର୍ଷ ହୋଇଥିବା ସମୟରେ ଏସ୍. ସତ୍ୟମୂର୍ତ୍ତି ନାମକ କଂଗ୍ରେସ ନେତାଙ୍କୁ ସେ ସାକ୍ଷାତ କଲେ । ପରବର୍ତ୍ତୀ ସମୟରେ ସତ୍ୟମୂର୍ତ୍ତି ତାଙ୍କର ରାଜନୈତିକ ଗୁରୁ ହୋଇଥିଲେ । କାମ୍‌ରାଜ୍ ଖଦୀ ଏବଂ ନିଶା ନିବାରଣ ବିଷୟରେ ପ୍ରଚାର କଲେ । ୧୯୩୦ ମସିହାରେ ସେ ଲବଣ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗଦେଇ ୨ ବର୍ଷ ପାଇଁ କାରାବରଣ କରିଥିଲେ । ଜେଲ୍‌ରେ ଥିବା ଅବସ୍ଥାରେ ସେ ବିରୁଦ୍ଧ ନଗର ମୁନିସ୍‌ପାଲ କର୍ପୋରେସନର ସଭାପତି ଭାବରେ ନିର୍ବାଚିତ ହେଲେ । ତା ପରେ ଜେଲ୍‌ରୁ ମୁକ୍ତି ପାଇ ଏହି ପଦବୀରେ ମାତ୍ର ୧ ଦିନ ରହି ସେ ଇସ୍ତଫା ଦେଲେ । ବ୍ୟକ୍ତିଗତ ସତ୍ୟାଗ୍ରହରେ ସେ ସକ୍ରିୟ ଅଂଶ ଗ୍ରହଣ କଲେ । ଭାରତଛାଡ଼ ଆନ୍ଦୋଳନରେ ଯୋଗଦେଇ ସେ ବାରମ୍ୱାର କାରାବରଣ କଲେ ।



୧୯୩୨ ମସିହାରେ ସେ ମାଡ୍ରାସ ବିଧାନସଭାକୁ ନିର୍ବାଚିତ ହୋଇ ଆସିଥିଲେ । ତାଙ୍କୁ କେହି ପ୍ରତିଦ୍ୱନ୍ଦିତା କରିନଥିଲେ । ୧୯୩୬ ମସିହାରେ ସତ୍ୟମୂର୍ତ୍ତି ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହେଲେ ଏବଂ କାମ୍‌ରାଜ୍‌ଙ୍କୁ ସାଧାରଣ ସଂପାଦକ ଭାବେ ମନୋନୀତ କଲେ । ୧୯୪୦ ମସିହାରେ ସେ ପ୍ରାଦେଶିକ କଂଗ୍ରେସ୍ କମିଟିର ସଭାପତି ହୋଇ ସେହି ପଦରେ ୧୯୪୫ ମସିହା ପର୍ଯ୍ୟନ୍ତ ରହିଲେ । ୧୯୪୬ ମସିହାରେ କାମ୍‌ରାଜ୍ ଲୋକସଭାକୁ ନିର୍ବାଚିତ ହୋଇ ଆସିଲେ । ସେହି ପଦବୀରେ ସେ ୧୯୫୪ ମସିହା ପର୍ଯ୍ୟନ୍ତ ରହି ତତ୍ପରେ ତାମିଲ୍‌ନାଡୁର ମୁଖ୍ୟମନ୍ତ୍ରୀ ପଦରେ ଅଧିଷ୍ଠିତ ହେବା ପାଇଁ ଲୋକସଭା ପଦରୁ ଇସ୍ତଫା ଦେଲେ ।

କାମ୍‌ରାଜ୍ ତାଙ୍କର ରାଜନୈତିକ ଜୀବନରେ ଜଣେ କିଙ୍ଗ୍ ମେକର୍ ଭାବେ ପରିଚିତ ଥିଲେ । ୧୯୪୬ରୁ ୧୯୫୦ ମସିହା ମଧ୍ୟରେ ୩ ଜଣ ମୁଖ୍ୟମନ୍ତ୍ରୀ ପରିବର୍ତ୍ତିତ ହୋଇଛନ୍ତି । ଦଳ ଭିତରେ ତାଙ୍କର ପ୍ରାଧାନ୍ୟ ଏବଂ ପ୍ରଭାବ କେତେ ସୁଦୃଢ଼ ଥିଲା ଏହି ଘଟଣାରୁ ତାର ସୂଚନା ମିଳିଥାଏ । ତେବେ ସେ କଂଗ୍ରେସର ଜଣେ ନିଷ୍ଠାପର ଭକ୍ତ ଥିଲେ । ସେ ଜୀବିତ ଥିବା ପର୍ଯ୍ୟନ୍ତ କାମ୍‌ରାଜ୍ ହିଁ କଂଗ୍ରେସ ଏବଂ କଂଗ୍ରେସ୍ ହିଁ କାମ୍‌ରାଜ୍ ଏହିଭଳି ମନେ ହେଉଥିଲା । ତାଙ୍କର ଅନୁଗ୍ରହ, ତାଙ୍କର ଆଶୀର୍ବାଦ ପାଇଥିବା ବ୍ୟକ୍ତି ପାର୍ଟି କିମ୍ବା ବିଧାନସଭା ଯେ କୌଣସି ସ୍ଥାନରେ ଯେ କୌଣସି ପଦବୀରେ ଅଧିଷ୍ଠିତ ହୋଇପାରୁଥିଲା ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଆମର ଆକାଂକ୍ଷିତ ସ୍ୱାଧୀନତା ମିଳିଲା । ସାରା ଦେଶରେ ଆନନ୍ଦର ଲହଡ଼ି ଖେଳିଗଲା । କାମ୍‌ରାଜ୍ ଭାବ ବିହ୍ୱଳିତ କଣ୍ଠରେ ଦେଶରେ ଥିବା ବିଭିନ୍ନ ସମସ୍ୟା ଉପରେ ଦେଶବାସୀଙ୍କୁ ଜଣାଇଲେ । ଆମ

ଆଗରେ ନେତୃବୃନ୍ଦଙ୍କ ସାମ୍ନାରେ ଅନେକ ଆହ୍ୱାନ ଥିଲା । ପ୍ରତ୍ୟେକ ବ୍ୟକ୍ତିକୁ ବାସସ୍ଥାନ, ଖାଦ୍ୟ ଏବଂ ବସ୍ତ୍ର ଯୋଗାଇବା ପରି ବିରାଟ ସମସ୍ୟା ନେତୃବୃନ୍ଦଙ୍କ ସମ୍ମୁଖରେ ରହିଥିଲା । କାମ୍‌ରାଜ୍ ମହାତ୍ମାଗାନ୍ଧିଙ୍କର ଜଣେ ଅନୁଗାମୀ ଥିଲେ । ଆତତାୟୀ ଗୁଳିରେ ମହାତ୍ମାଗାନ୍ଧିଙ୍କର ମୃତ୍ୟୁ ହେବା ଖବର ଶୁଣି କାମ୍‌ରାଜ୍ ସ୍ତବ୍ଧ ଏବଂ ମର୍ମାହତ ହୋଇପଡ଼ିଲେ । ସେ ଅନେକ ସମୟରେ ସ୍ଥିର ଏବଂ ସ୍ଥିତପ୍ରଜ୍ଞ ହୋଇଥିଲେ ହେଁ ମହାତ୍ମାଗାନ୍ଧିଙ୍କ ତିରୋଧାନ ଖବର ଶୁଣି ତାଙ୍କ ଆଖିରୁ ଅବିଶ୍ରାନ୍ତ ଲୁହ ଝରିଲା । ସେ ସ୍ଥିର ହୋଇ ବସି ରହିଲେ । ସେ ନିଶ୍ଚଳ ହୋଇଗଲେ ।

ମହାତ୍ମାଗାନ୍ଧିଙ୍କ ପରେ କାମ୍‌ରାଜ୍ ପଣ୍ଡିତ ଜବାହାର୍‌ଲାଲ୍ ନେହେରୁଙ୍କ ନେତୃତ୍ୱକୁ ଗ୍ରହଣ କରିନେଲେ ଏବଂ ତାଙ୍କ ସରକାର କିପରି ସୁଦୃଢ଼ ହେବ ସେଥିପାଇଁ କାର୍ଯ୍ୟ ଆରମ୍ଭ କରିଦେଲେ । ୧୯୫୪ ମସିହା ଏପ୍ରିଲ୍ ୧୩ ତାରିଖ ଦିନ ସେ ମାଡ୍ରାସର ମୁଖ୍ୟମନ୍ତ୍ରୀ ପଦରେ ଅଧିଷ୍ଠିତ ହେଲେ । ତାଙ୍କ ଶାସନ କାଳରେ ମାଡ୍ରାସ ପ୍ରଦେଶ ତାମିଲନାଡୁରେ ନାମିତ ହେଲା । ତାଙ୍କ ମନ୍ତ୍ରୀମଣ୍ଡଳରେ ସେ କେବଳ ଦକ୍ଷ ବ୍ୟକ୍ତିମାନଙ୍କୁ ସ୍ଥାନ ଦେଲେ । ଏହା ଫଳରେ ତାଙ୍କ ପ୍ରତି ଅନୁରକ୍ତ ଅନେକ ବ୍ୟକ୍ତିଙ୍କୁ ହରାଇବାକୁ ପଡ଼ିଲା । କିନ୍ତୁ ପରବର୍ତ୍ତୀ ସମୟରେ ଜଣାଗଲା ଯେ ସେ ବାଛିଥିବା ବ୍ୟକ୍ତିମାନେ ହିଁ ସର୍ବଶ୍ରେଷ୍ଠ । ମନ୍ତ୍ରୀମଣ୍ଡଳର କୌଣସି ସଦସ୍ୟଙ୍କ କାର୍ଯ୍ୟରେ ସେ ହସ୍ତକ୍ଷେପ କରୁନଥିଲେ । ସେମାନଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦେଇଥିଲେ ।

ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ସେ ଅନେକ ପରିବର୍ତ୍ତନ ଏବଂ ସଂସ୍କାର ଆଣିଛନ୍ତି । ଶିକ୍ଷାକୁ ସେ ପ୍ରାଥମିକତା ଦେଇଥିଲେ । ପୁରାତନ ବିଦ୍ୟାଳୟ ଏବଂ ମହାବିଦ୍ୟାଳୟ ଗୁଡ଼ିକରେ ସୁବିଧା ଘର, ଲାଇବ୍ରେରୀ ଏବଂ ପରୀକ୍ଷାଗାର ଏବଂ ପାଠାଗାର ଆଦିର ଉନ୍ନତି କରିବା ଏବଂ ନୂତନ ବିଦ୍ୟାଳୟମାନ ପ୍ରତିଷ୍ଠା କରିବାରେ ସେ ମୁଖ୍ୟଭୂମିକା ଗ୍ରହଣ କରିଥିଲେ । ସେ ଶିକ୍ଷାକୁ ବାଧ୍ୟତାମୂଳକ କରିଥିଲେ ଏବଂ ମାଟ୍ରିକ୍ୟୁଲେସନ ପର୍ଯ୍ୟନ୍ତ ବିନା ମୂଲ୍ୟରେ ଶିକ୍ଷା ଗ୍ରହଣ କରିବାର ସୁବିଧା ଦେଇଥିଲେ । ଗ୍ରାମାଞ୍ଚଳର ବିଦ୍ୟୁତ୍‌କରଣ ତାଙ୍କର ଅନ୍ୟତମ ପ୍ରାଥମିକତା ଥିଲା । କୃଷି କ୍ଷେତ୍ରରେ ସବୁ ଜମି ଯେପରି ଜଳସେଚିତ ହୋଇପାରିବ ସେଥିପ୍ରତି ସେ ଦୃଷ୍ଟି ଦେଇଥିଲେ ଏବଂ ଅତି ଅଳ୍ପ ସମୟ ମଧ୍ୟରେ ଏହା କରିବାକୁ ସକ୍ଷମ ହୋଇଥିଲେ । ତାମିଲ୍‌ନାଡୁରେ ଶିଳ୍ପ ଏବଂ ବାଣିଜ୍ୟର ବିକାଶ କରି ଏହି ରାଜ୍ୟକୁ ଭାରତରେ ସାମାଜିକ ଏବଂ ଅର୍ଥନୈତିକ ସ୍ତରରେ ଏକ ଅଗ୍ରଗଣ୍ୟ ରାଜ୍ୟରୂପେ ଗଢ଼ି ତୋଳିବାପାଇଁ ସେ ସମସ୍ତ ଉଦ୍ୟମ ଜାରି ରଖିଥିଲେ ।

୧୯୬୩ ମସିହାରେ କାମ୍‌ରାଜ୍ ଅନୁଭବ କଲେ ଯେ ଯେଉଁ କଂଗ୍ରେସ୍‌କୁ ସେ ଓ ଅନ୍ୟାନ୍ୟ କେତେକ ନେତା ଗଢ଼ିତୋଳିଥିଲେ ତାହା ଧୀରେ ଧୀରେ ବିଭାଜିତ ହେବାକୁ ବସିଲାଣି । କଂଗ୍ରେସରେ ଥିବା ନେତୃବୃନ୍ଦଙ୍କୁ କ୍ଷମତାଲୋଭ ଗ୍ରାସ କରିଲାଣି । ସେ ପଣ୍ଡିତ୍ ଜବାହାରଲାଲ୍ ନେହେରୁଙ୍କୁ ପରାମର୍ଶ ଦେଲେ ଯେ କଂଗ୍ରେସରେ ଥିବା ସମସ୍ତ ତୁଙ୍ଗ ନେତା ଦେଶର ସ୍ୱାର୍ଥ ନିମନ୍ତେ ସେମାନଙ୍କ ପଦବୀରୁ ଇସ୍ତଫା ଦେଇ ଦଳକୁ ପୁନର୍ବାର ସଂଗଠିତ ଏବଂ ସୁଦୃଢ଼ କରିବା ଆବଶ୍ୟକ । ସେ ନିଜେ ମଧ୍ୟ ତାମିଲ୍‌ନାଡୁର ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ଏହି ଯୋଜନାକୁ 'କାମ୍‌ରାଜ୍ ଯୋଜନା' ନାମରେ ନାମିତ କରାଗଲା । ୬ଟି ପ୍ରଦେଶର ମୁଖ୍ୟମନ୍ତ୍ରୀ ଇସ୍ତଫା ଦେଲେ । କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ଥିବା ମୋରାରାଜୀ ଦେଶାଇ, ଲାଲ୍ ବାହାଦୂର ଶାସ୍ତ୍ରୀ, ଜଗଜୀବନ ରାମ୍ ଏବଂ ଏସ୍.କେ. ପଟେଲ ସ୍ୱଇଚ୍ଛାରେ ସେମାନଙ୍କ ପଦବୀରୁ ଇସ୍ତଫା ଦେଲେ । ଏହାର ପରବର୍ତ୍ତୀ ସମୟରେ କାମ୍‌ରାଜ୍‌ଙ୍କୁ ସର୍ବଭାରତୀୟ କଂଗ୍ରେସ୍ ଦଳର ସଭାପତି ପଦରେ ଅଭିଷିକ୍ତ କରାଗଲା । ଏହି ପଦବୀରେ ସେ ଦୀର୍ଘଦିନ ଧରି ରହିଥିଲେ ଏବଂ ଦେଶକୁ ଅନେକ ସଂକଟମୟ ପରିସ୍ଥିତିରୁ ତାଙ୍କର ସୁଚିନ୍ତିତ ଯୋଜନା ଅନୁସାରେ ରକ୍ଷା କରିଥିଲେ ।

୧୯୬୪ ମସିହା ମେ ୨୭ ତାରିଖ ଦିନ ଭାରତ ତାର ପ୍ରଥମ ପ୍ରଧାନମନ୍ତ୍ରୀ ଦେଶର ଜଣେ ବିରାଟ ନେତା ପଣ୍ଡିତ ଜବାହାରଲାଲ୍ ନେହେରୁଙ୍କୁ ହରାଇଲା । ଦେଶବାସୀ ସ୍ତବ୍ଧ ହୋଇଗଲେ । ସାରାଦେଶରେ ଶୋକର ଛାୟା ଖେଳିଗଲା । ତା ପରେ ସମସ୍ତଙ୍କ ମନରେ ଆଶଙ୍କା ଦେଖାଦେଲା । ନେହେରୁଙ୍କ ପରେ କିଏ ପ୍ରଧାନମନ୍ତ୍ରୀ ହେବେ ସେଥିପାଇଁ ଅନେକ କଳ୍ପନା ଜଳ୍ପନା ଅନେକ ଆଶଙ୍କା ଦେଶବାସୀଙ୍କ ମନରେ ଦେଖା ଦେଲା । ସେହି ସମୟରେ କିଙ୍ଗ ମେକର୍ କାମ୍‌ରାଜ୍ ଦେଶକୁ ଏକ ସଂକଟମୟ ପରିସ୍ଥିତିରୁ ଉଦ୍ଧାର କରି ଲାଲ୍ ବାହାଦୂର ଶାସ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ ପଦରେ ଅଭିଷିକ୍ତ କରାଇଲେ । ପୁନର୍ବାର ଦେଶରେ ସ୍ଥିରତା ଆସିବାକୁ ଆରମ୍ଭ ହୋଇଥିଲା ବେଳେ ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୂର ଶାସ୍ତ୍ରୀଙ୍କର ବି ଅକାଳ ବିୟୋଗ ହେଲା । ଦେଶ ପାଇଁ ଆହୁରି ଏକ ସଂକଟ ଘନେଇ ଆସିଲା । ୧୯୬୬ ମସିହା ଜାନୁଆରୀ ୧୧ ତାରିଖ ଦିନ ଲାଲ୍‌ବାହାଦୂର ତାସ୍‌କେଣ୍ଟଠାରେ ପାକିସ୍ଥାନର ଜେନେରାଲ୍ ଆୟୁବ୍ ଖାଁଙ୍କ ସହିତ ଏକ ସନ୍ଧି ସ୍ୱାକ୍ଷର କରିସାରିବା ପରେ ମୃତ୍ୟୁବରଣ କଲେ । ସେତେବେଳେ ପ୍ରଧାନମନ୍ତ୍ରୀ ହେବାପାଇଁ କାମ୍‌ରାଜ୍ ହିଁ ଏକମାତ୍ର ବ୍ୟକ୍ତି ଭାବେ ସମସ୍ତଙ୍କ ଦୃଷ୍ଟିରେ ଥାଆନ୍ତି । କିନ୍ତୁ କାମ୍‌ରାଜ୍ ନିଜେ ପ୍ରଧାନମନ୍ତ୍ରୀ ନ ହୋଇ ପୁନର୍ବାର କିଙ୍ଗ୍ ମେକରର



ଭୂମିକା ନିର୍ବାହ କଲେ । କାମ୍‌ରାଜ୍ ସ୍ଥିର କଲେ ଯେପରି ଇନ୍ଦିରାଗାନ୍ଧିଙ୍କ ନେତୃତ୍ୱରେ ୧୯୬୬ ମସିହାରେ କଂଗ୍ରେସ ବହୁଳ ଭୋଟ୍‌ରେ ବିଜୟୀ ହେବ, ତାହାହିଁ ହେଲା ଏବଂ ୧୯୬୬ ମସିହାରେ ଶ୍ରୀମତୀ ଇନ୍ଦିରାଗାନ୍ଧି ଭାରତର ପ୍ରଧାନମନ୍ତ୍ରୀ ହେଲେ । କାମ୍‌ରାଜ୍ ନିଜେ ନାଦର ପରିବାରର ଏବଂ ନିମ୍ନ ସଂପ୍ରଦାୟରୁ ଆସିଥିବା ଯୋଗୁଁ ତାଙ୍କ ନେତୃତ୍ୱରେ ପରିଚାଳିତ କଂଗ୍ରେସ ନିମ୍ନଜାତିବର୍ଗଙ୍କୁ ଆକୃଷ୍ଟ କଲା ଏବଂ ସେମାନଙ୍କ ବିପୁଳ ଭୋଟ୍ ପାଇ କଂଗ୍ରେସ୍ ନିର୍ବାଚନ ଜିତିଲେ ।

ତାଙ୍କର ରାଜନୈତିକ ବିଜ୍ଞତା ଏବଂ ଜାତୀୟ ଭାବଧାରାରେ ଉଦ୍‌ବୁଦ୍ଧ କୌଶଳ ଯୋଗୁଁ ସେ ଅନ୍ତଃରାଷ୍ଟ୍ରୀୟ ନେତୃବର୍ଗଙ୍କର ଶ୍ରଦ୍ଧା ଓ ସମ୍ମାନ ହାସଲ କରିଥିଲେ । ତାଙ୍କର କୌଣସି ପଦବୀ ବା କ୍ଷମତା ନ ଥିଲେ ହେଁ ସେ ବିଭିନ୍ନ ଦେଶରୁ ନିମନ୍ତ୍ରଣ ପାଇଲେ । ଋଷିଆ, ପୂର୍ବଜର୍ମାନୀ, ଚେକୋସ୍ଲୋଭାକିଆ, ହଙ୍ଗେରୀ, ବୁଲ୍‌ଗାରିଆ, ୟୁଗୋସ୍ଲୋଭିଆ ଆଦି ଦେଶ ପରିଭ୍ରମଣରେ ଯାଇ ପୃଥିବୀର ବିଭିନ୍ନ ରାଷ୍ଟ୍ରନେତାଙ୍କୁ ସେ ସାକ୍ଷାତ କରିଛନ୍ତି । ମୁଖ୍ୟମନ୍ତ୍ରୀହେବା ପୂର୍ବରୁ ସେ ଶ୍ରୀଲଙ୍କା, ମାଲେସିଆ ଆଦି ରାଷ୍ଟ୍ର ଗ୍ରସ୍ତ କରିଛନ୍ତି । କଂଗ୍ରେସ ପାର୍ଟି ଧୀରେ ଧୀରେ ତାର ଏକତା ହରାଉଛି ଏହି ସନ୍ଦେହ ଦୃଢ଼ୀଭୂତ ହେଲା ୧୯୬୭ ମସିହା ସାଧାରଣ ନିର୍ବାଚନରେ । ଡି.ଏମ୍.କେ ଦଳ ଦ୍ୱାରା ତାମିଲନାଡୁରେ କଂଗ୍ରେସ ପରାଜିତ ହେଲା । ତାଙ୍କ ନିଜ ଜନ୍ମସ୍ଥାନରେ କାମ୍‌ରାଜ୍ ମଧ୍ୟ ପରାଜିତ ହେଲେ । ତେବେ ତାର ମାତ୍ର ଦୁଇବର୍ଷ ପରେ କାମ୍‌ରାଜ୍ ନଗରକୋଇଲିରୁ ଲୋକସଭା ଉପନିର୍ବାଚନ ଲଢ଼ି ଜିତିପାରିଥିଲେ ।

ଏହି ଅବଧି ମଧ୍ୟରେ ଭାରତର ରାଷ୍ଟ୍ରପତି ପଦପାଇଁ ଡ଼କ୍ଟର ନିଲମ୍ ସଂଜୀପ୍ ରେଡ୍ଡୀଙ୍କ ନାମ ଶ୍ରୀମତୀ ଇନ୍ଦିରାଗାନ୍ଧୀ ସୁପାରିଶ କରିଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ସେ ଏଥିରୁ ଓହରି ଯାଇ ଭି.ଭି. ଗିରିଙ୍କ ନାମ ପ୍ରସ୍ତାବ ଦେଲେ ।

ଭି.ଭି. ଗିରି ନିର୍ବାଚନ ଜିତିଲେ । କିନ୍ତୁ ଇନ୍ଦିରାଗାନ୍ଧିଙ୍କର ଏହି ବିବାଦୀୟ ପ୍ରସ୍ତାବ ଫଳରେ କାମ୍‌ରାଜ୍ ଏବଂ ଶ୍ରୀମତୀ ଗାନ୍ଧିଙ୍କ ମଧ୍ୟରେ ମନାନ୍ତର ସୃଷ୍ଟି ହେଲା । ଫଳରେ ଜାତୀୟ କଂଗ୍ରେସ ଦୁଇଭାଗ ହୋଇଗଲା । ୧୯୭୧ ସାଧାରଣ ନିର୍ବାଚନରେ ତାମିଲ୍‌ନାଡୁରେ ପୁନର୍ବାର କଂଗ୍ରେସ ଡି.ଏମ୍.କେ ପାର୍ଟିଠାରୁ ହାରିଲା । ୧୯୭୫ ମସିହା ଜୁନ୍ ମାସରେ ଇନ୍ଦିରାଗାନ୍ଧୀ ଦେଶରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କଲେ । ଏହା କାମରାଜ୍‌ଙ୍କ ମନରେ ଗଭୀର ଦୁଃଖ ଦେଇଥିଲା ।

କାମରାଜ୍ ତାଙ୍କର ସାରାଜୀବନ ଦେଶ ଏବଂ ଦେଶବାସୀଙ୍କର ବିକାଶ ପାଇଁ ଉତ୍ସର୍ଗ କରିଥିଲେ । ସେ ଜଣେ ବଳିଷ୍ଠ ଗାନ୍ଧିବାଦୀ ନେତା ଥିଲେ । ଉତ୍ତରଭାରତରେ ଲୋକମାନେ ତାଙ୍କୁ କୃଷ୍ଣକାୟ ଗାନ୍ଧି ବା କାଳାଗାନ୍ଧି ନାମରେ ନାମିତ କରୁଥିଲେ । ଏହା ବିଧିର ବିଧାନ ହୋଇପାରେ କିମ୍ବା ଆକସ୍ମିକ ସଂଯୋଗ ହୋଇପାରେ, ସେ ୧୯୭୫ ଅକ୍ଟୋବର ୨ ତାରିଖ ଗାନ୍ଧି ଜୟନ୍ତୀ ଦିନ ପ୍ରାଣତ୍ୟାଗ କରିଥିଲେ । କାମରାଜ୍ ତାମିଲନାଡୁରେ ଜନ୍ମ ହୋଇଥିଲେ । ସେହି ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇଥିଲେ କିନ୍ତୁ ସେ ନିଜର କର୍ମକ୍ଷେତ୍ର ଭାବେ ଭାରତବର୍ଷକୁ ବାଛିଥିଲେ । ୧୯୭୬ ମସିହା ଜାନୁୟାରୀ ୧୭ ତାରିଖ ଦିନ ଏହି ମହାନ୍ କିଙ୍ଗମେକର କୁମାରସ୍ୱାମୀ କାମରାଜ୍‌ଙ୍କୁ ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନରେ ଭୂଷିତ କରାଯାଇଥିଲା ।

* * *

# ମଦର ଟେରେସା



୧୯୧୦-୧୯୯୭

ଭାରତରତ୍ନ-୧୯୮୦

**ମ**ହାତ୍ମା ଗାନ୍ଧୀଙ୍କୁ ସାରା ଦେଶର ଜନତା ଯେପରି ଶ୍ରଦ୍ଧା, ସ୍ନେହ ଓ ସମ୍ମାନର ସହିତ ବାପୁଜୀ ଆଖ୍ୟା ଦେଇଥିଲେ ସେହିପରି ଅଦ୍‌ମିକ୍ ଗନ୍‌ସା ବୋଜାୟୁ ନାମ୍ନୀ ମହିଳା ସାରା ଦେଶରେ ମଦର ଟେରେସା ନାମରେ ଅଭିହିତ ଥିଲେ । ଅଦ୍‌ମିକ୍ ୧୯୧୦ ମସିହା ଅଗଷ୍ଟ ୨୬ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ ମାସିଡ଼ୋନିଆ ସ୍ଥିତ ସ୍କର୍ଚ୍ଚି ସହରରେ । ସେ ଏକ ଆଲ୍‌ବାନୀୟ ପରିବାରରେ ଜନ୍ମ ନେଇଥିଲେ । ତାଙ୍କ ପିତା ନିକୋଲାର ବୋଜାୟୁ ଜଣେ ବ୍ୟବସାୟୀ ଏବଂ କଣ୍ଟ୍ରାକ୍ଟର ଥିଲେ । ତାଙ୍କର ମା ଗ୍ରାନାଫାଇ ମଧ୍ୟ ଜଣେ ଖୁବ୍ ପ୍ରଭାବଶାଳୀ ମହିଳା ଥିଲେ । ସେ ତାଙ୍କର ସନ୍ତାନମାନଙ୍କୁ ଦାନ, ଧର୍ମ ଏବଂ କରୁଣା ଆଦିର ଅଧିକାରୀ ହେବା ପାଇଁ ଶିକ୍ଷା ଦେଉଥିଲେ । ଅନେକ ସମୟରେ ଗରିବ ବ୍ୟକ୍ତିମାନଙ୍କୁ ଖାଦ୍ୟ ଏବଂ ବସ୍ତ୍ର ଦାନ କଲା ବେଳେ ସେ ଅଦ୍‌ମିକ୍ ଏବଂ ଅନ୍ୟାନ୍ୟ

ସନ୍ତାନ ମାନଙ୍କୁ ସାଙ୍ଗରେ ନେଇ ଯାଉଥିଲେ । ଅଦ୍‌ମିକ୍ ତାଙ୍କ ପରିବାରର କନିଷ୍ଠତମ ସନ୍ତାନ ଥିଲେ । ତାଙ୍କର ରଙ୍ଗ ଲାଲ୍ ଗୋଲାପ ପରି ଥିବାରୁ ଫୁଲକଢ଼ି ନାମରେ ସେ ପରିଚିତ ଥିଲେ । ପିଲାଦିନରୁ ମା ଙ୍କଦ୍ୱାରା ପ୍ରଭାବିତ ହୋଇ ଅଦ୍‌ମିକ୍ ଅତ୍ୟନ୍ତ ଦୟାଶୀଳ ଥିଲେ । ସେ ଚର୍ଚ୍ଚକୁ ଯାଇ ସେଠାରେ ସଂଗୀତ ଗାନ, ପଠନ ଏବଂ ପ୍ରାର୍ଥନା ଆଦିରେ ମଗ୍ନ ରହୁଥିଲେ । ପିଲାଦିନରୁ ସେ ଈଶ୍ୱର ତଥା ମାନବ ସେବାରେ ନିୟୋଜିତ ହେବା ପାଇଁ ବ୍ୟାକୁଳ ଥିଲେ । ଅଦ୍‌ମିକ୍‌ଙ୍କୁ ୧୮ ବର୍ଷ ହୋଇଥିବା ବେଳେ ୧୯୧୮ ମସିହାରେ ଆୟାର୍‌ଲ୍ୟାଣ୍ଡସ୍ଥିତ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ବ୍ଲେସ୍‌ଡ ଭର୍ଜିନ୍ ମେରୀ ଅନୁଷ୍ଠାନରେ ଯୋଗ ଦେଲେ । ୧୯୨୯ ମସିହାରେ ସେ ଭାରତର କଲିକତା ସହରରେ ଥିବା ସେଣ୍ଟ ମେରୀ କନ୍‌ଭେଣ୍ଟ ସ୍କୁଲ୍‌ରେ ଶିକ୍ଷୟିତ୍ରୀଭାବେ ନିଯୁକ୍ତ ହେଲେ । ସେହିଠାରେ ସେ ରୋମାନ୍ କ୍ୟାଥିଲିକ୍ ଚର୍ଚ୍ଚ ଦ୍ୱାରା ଜଣେ ନନ୍ ଭାବରେ କାର୍ଯ୍ୟଭାର ସମ୍ଭାଳିବା ପରେ ତାଙ୍କର ନାମ ପରିବର୍ତ୍ତିତ ହୋଇ ମଦର ଟେରେସା ହୋଇଥିଲା । କଲିକତା ଅବସ୍ଥାନ ସମୟରେ ଥରେ ସେ ଦାର୍ଜିଲିଂ ପରିଭ୍ରମଣରେ ଯାଇଥିଲେ । ଦାର୍ଜିଲିଂରୁ ଟ୍ରେନ୍‌ଯୋଗେ କଲିକତା ଫେରିବା ବାଟରେ ତାଙ୍କୁ ଶୂନ୍ୟବାଣୀ ହୋଇଥିଲା ଯାହାକୁ ଖ୍ରୀଷ୍ଟିଆନ୍ ଧର୍ମରେ ''ଡ଼ିଭାଇନ୍ କଲ୍'' କୁହାଯାଏ । ମଦର ଟେରେସା କୁହନ୍ତି ''ମୁଁ ଦାର୍ଜିଲିଂରୁ ଫେରୁଥାଏ, ସେହି ରେଳଗାଡ଼ିରେ ହିଁ ମୋତେ ଈଶ୍ୱରଙ୍କ ସ୍ୱର ଶୁଭିଲା । ତାଙ୍କୁ ଅନୁସରଣ କରିବା ପାଇଁ ସେ ମୋତେ ନିର୍ଦ୍ଦେଶ ଦେଲେ । ସମାଜର ଦରିଦ୍ରତମ ଜନତାଙ୍କ ସେବାରେ ନିଜକୁ ନିୟୋଜିତ କରାଇବା ପାଇଁ ମୋତେ ଆଦେଶ ମିଳିଲା ।'' ତା ପରଦିନ ଠାରୁ ମଦର ଟେରେସା ନିଜେ ଗରିବ ରହି ଗରିବ ଜନତାର ସେବା କରିବା ପାଇଁ ଦୃଢ଼ ପ୍ରତିଜ୍ଞ ହେଲେ । ବିହାରର ପାଟନା ସହରରେ ସେ ନର୍ସିଂ ତାଲିମ୍ ପାଇଲେ । ତ୍ରୟୋଦଶ ପୋପ୍‌ଙ୍କ ଠାରୁ ଅନୁମତି ନେଇ ସେ ଲରେଟୋ ଗୋଷ୍ଠୀକୁ ପରିତ୍ୟାଗ କରି କଲିକତାର ବସ୍ତି ଅଞ୍ଚଳକୁ ଗରିବ ମାନଙ୍କ ସେବା ଉଦ୍ଦେଶ୍ୟରେ ଚାଲିଲେ ।

୧୯୪୮ ମସିହାରେ କଲିକତାର ବସ୍ତି ଅଞ୍ଚଳରେ ସେ ଏକ ସ୍କୁଲ୍ ସ୍ଥାପନ କଲେ । ସେଠାରେ ପାଠ ପଢ଼ା ସାଙ୍ଗକୁ ବସ୍ତିର ଶିଶୁମାନଙ୍କୁ ସ୍ୱାସ୍ଥ୍ୟ ଏବଂ ପରିଷ୍କାର ପରିଚ୍ଛନ୍ନତା ବିଷୟରେ ସେ ଶିକ୍ଷା ଦେଲେ । କ୍ୟାଥଲିକ୍ ରିଲିଫ୍ ସେବା ମାଧ୍ୟମରେ ସେ ସ୍କୁଲ୍ ଛାତ୍ରଛାତ୍ରୀମାନଙ୍କୁ ମଧ୍ୟାହ୍ନ ଭୋଜନ ଏବଂ କ୍ଷୀର ବିନାମୂଲ୍ୟରେ ବଣ୍ଟନ କରୁଥିଲେ । ୧୯୫୦ ମସିହାରେ ତାଙ୍କର ଲିଖିତ ଦରଖାସ୍ତକୁ ବିଚାର କରି କଲିକତା ମ୍ୟୁନିସିପାଲିଟି କର୍ତ୍ତୃପକ୍ଷ ପ୍ରସିଦ୍ଧ କାଳୀମନ୍ଦିର ନିକଟରେ ଥିବା ତୀର୍ଥଯାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ହଷ୍ଟେଲ ମଦର ଟେରେସାଙ୍କୁ

ଦାନ କଲେ । ସେଠାରେ ସେ ମିଶନାରୀ ଅଫ୍ ଚ୍ୟାରିଟି ସଂସ୍ଥା ପ୍ରତିଷ୍ଠିତ କଲେ । ଏ ସଂସ୍ଥାରେ ଗରିବ ଜନତାର ସେବା ପାଇଁ ଉତ୍ସର୍ଗୀକୃତ କେତେକ ମହିଳା ଯୋଗଦେଲେ । ସେହି ସଂସ୍ଥା ଆନୁକୂଲ୍ୟରେ ସେ ବୃଦ୍ଧ, ଦୃଷ୍ଟିହୀନ, କୁଷ୍ଠରୋଗୀ, ଭିନ୍ନକ୍ଷମ ଏବଂ ମୃତ୍ୟୁ ମୁଖରେ ପଡ଼ିଥିବା ବିଭିନ୍ନ ବ୍ୟକ୍ତିମାନଙ୍କୁ ଖାଦ୍ୟ, ବସ୍ତ୍ର, ଚିକିତ୍ସା ଆଦି ଯୋଗାଇବା ପାଇଁ କେନ୍ଦ୍ରମାନ ସ୍ଥାପନ କଲେ । ଏହି ଦୁସ୍ଥଜନତାର ସେବାପାଇଁ ସେ ଅନ୍ୟ କେତେକ ସେବା ସଂସ୍ଥା ମଧ ଖୋଲିଛନ୍ତି । ନିର୍ମଳ ହୃଦୟ, କୁଷ୍ଠରୋଗୀ ଏବଂ ଆସନ୍ନ ମୃତ୍ୟୁ ବ୍ୟକ୍ତିମାନଙ୍କ ପାଇଁ, ଭିନ୍ନକ୍ଷମ ଏବଂ ମାନସିକ ଅନଗ୍ରସର ଶିଶୁମାନଙ୍କ ପାଇଁ ଅନୁଷ୍ଠାନଗୁଡ଼ିକ ତା ଭିତରୁ ଅନ୍ୟତମ । କୁଷ୍ଠରୋଗୀମାନଙ୍କୁ ପ୍ରୋତ୍ସାହିତ କରି ସେମାନଙ୍କ ପାଇଁ ଶାନ୍ତିନଗର ନାମକ ଏକ କଲୋନୀ ପ୍ରତିଷ୍ଠା କଲେ । ସେଠାରେ କୁଷ୍ଠରୋଗୀମାନେ ଯେପରି ସ୍ୱାବଲମ୍ବୀ ହୋଇପାରିବେ ସେଥିପାଇଁ ବିଭିନ୍ନ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା ।

ଅନେକ ସମୟରେ ମଦର ଟେରେସା କେତେକ ସନ୍ଦେହ ପୂର୍ଣ୍ଣ ବ୍ୟକ୍ତିବିଶେଷଙ୍କ ଠାରୁ ଦାନ ଗ୍ରହଣ କରୁଥିବାର ସମାଲୋଚନା କରାଯାଉଥିଲା । ତାର ଉତ୍ତରରେ ମଦର ଟେରେସା କହିଥିଲେ ଯେ, ସେ କାହାରି ଦାନ ପାଇଁ ଆଗ୍ରହ ପ୍ରକାଶ କରିନଥାନ୍ତି କିମ୍ବା କାହାରିଠାରୁ ଦରମା ବା ସରକାରୀ ସାହାଯ୍ୟ ମଧ ନିଅନ୍ତି ନାହିଁ । ତେବେ ପ୍ରତ୍ୟେକ ବ୍ୟକ୍ତି ସ୍ୱେଚ୍ଛାକୃତ ଭାବରେ ମୁକ୍ତ ହସ୍ତରେ ଦାନ କରିବାରେ କୌଣସି ବାଧା ନାହିଁ । ବ୍ୟକ୍ତିର ଚରିତ୍ର ଉପରେ କୌଣସି ମନ୍ତବ୍ୟ ଦେବା ବା ବିଚାର କରିବାର ଅଧିକାର ତାଙ୍କ ପାଖରେ ନାହିଁ । କେବଳ ଈଶ୍ୱରଙ୍କ ପାଖରେ ହିଁ ବ୍ୟକ୍ତିର ବିଚାର କରାଯାଇଥାଏ ଏବଂ ସେ ହିଁ ଅନ୍ତିମ ନିର୍ଣ୍ଣୟ କରିଥାନ୍ତି ।

ମଦର ଟେରେସା ଜନ୍ମ ନିୟନ୍ତ୍ରଣର ବିପକ୍ଷରେ ନ ଥିଲେ । କିନ୍ତୁ ଗର୍ଭପାତ ଏବଂ ତତ୍‌ସମ୍ବନ୍ଧୀୟ ଆଇନ୍‌କୁ ସେ ବିରୋଧ କରୁଥିଲେ । ରାସ୍ତାକଡ଼ରେ ପଡ଼ି ମୃତ୍ୟୁ ସହିତ ସଂଗ୍ରାମ କରୁଥିବା ଦୁସ୍ଥ ଜନତା ତଥା ଅନ୍ୟାନ୍ୟ ଗରିବ ଶ୍ରେଣୀର ବ୍ୟକ୍ତିମାନଙ୍କୁ ତତ୍‌କ୍ଷଣାତ୍ ସାହାଯ୍ୟ କରିବାକୁ ଅଣ୍ଟାଭିଡ଼ି ବାହାରୁଥିଲେ । ଅନେକ ଭିନ୍ନକ୍ଷମ ଶିଶୁଙ୍କୁ ସେ ଅଳିଆଗଦାରୁ ଟୋଳିଆଣି ତାଙ୍କ ଆଶ୍ରମରେ ସ୍ଥାନ ଦେଉଥିଲେ । ସେ କୁହନ୍ତି "ମା' ପେଟରେ ଯେଉଁ ଶିଶୁ ବଢ଼ୁଥାଏ ତାହା ଈଶ୍ୱରଙ୍କ ଦ୍ୱାରା ପ୍ରେରିତ । ସେ ବଞ୍ଚିବା ପାଇଁ, ସ୍ନେହ ପାଇବା ପାଇଁ ତାକୁ ଈଶ୍ୱର ସୃଷ୍ଟି କରିଛନ୍ତି । ଯେଉଁ ଦେଶରେ ମା ପେଟର ଶିଶୁକୁ ବା ଭ୍ରୁଣକୁ ହତ୍ୟା କରାଯାଏ ସେ ଦେଶ ଅତ୍ୟନ୍ତ ଦାରିଦ୍ର୍ୟ ଭିତରେ ଗତି କରୁଛି ବୋଲି ବୁଝାଯାଏ ।" କଲିକତା ମ୍ୟୁନିସିପାଲିଟିର ମହିଳା ଝାଡୁଦାର ମାନଙ୍କପାଇଁ ବ୍ୟବହାର କରାଯାଉଥିବା ଶାଢ଼ୀର ସମରୂପ ଶାଢ଼ୀ ସେ

ପିନ୍ଧୁଥିଲେ । ନିଜକୁ ଦରିଦ୍ରତମ ମାନବଙ୍କ ସହିତ ସାମଞ୍ଜସ୍ୟ ରଖିବା ପାଇଁ ଏପରି ପୋଷାକ ପରିଧାନ କରିବାକୁ ସେ ଉଚିତ ମନେ କରୁଥିଲେ । ସେ ରହୁଥିବା ଆଜ୍‌ବେଷ୍ଟସ୍ ଘରେ ସାମାନ୍ୟ ବିଜୁଳି ପଙ୍ଖାର ବ୍ୟବସ୍ଥା ମଧ୍ୟ ନଥିଲା ।



ସ୍ୱେଚ୍ଛାକୃତ ଭାବେ ଗରିବ ଏବଂ ଦୁସ୍ଥ ଜନତାର ନିସ୍ୱାର୍ଥପର ସେବା ପାଇଁ ସାରା ବିଶ୍ୱରେ ସେ ଖ୍ୟାତ ହୋଇଥିଲେ । ତାଙ୍କର ଏହି ସେବା ମନୋଭାବ ପାଇଁ ତାଙ୍କୁ ଅନେକ ପୁରସ୍କାର ଏବଂ ସମ୍ମାନ ମିଳିଥିଲା । ୧୯୬୨ ମସିହାରେ ଭାରତ ବର୍ଷରେ ତାଙ୍କୁ ପଦ୍ମଶ୍ରୀ ସମ୍ମାନରେ ସମ୍ମାନିତ କରାଯାଇଥିଲା । ସେହିବର୍ଷ ତାଙ୍କୁ ରମଣ ମେଗାସେସ୍ ପୁରସ୍କାର ମିଳିଥିଲା । ୧୯୭୧ ମସିହାରେ ତାଙ୍କୁ ପ୍ରଥମକରି ୨୩ଶ ପୋପ୍ ଜନ୍ ଶାନ୍ତି ପୁରସ୍କାର ପ୍ରଦାନ କରାଯାଇଥିଲା । ଆନ୍ତର୍ଜାତିକ ଶାନ୍ତି ପ୍ରତିଷ୍ଠା ପାଇଁ ୧୯୭୨ ମସିହାରେ ତାଙ୍କୁ ଜବାହାର୍‌ଲାଲ୍ ନେହେରୁ ପୁରସ୍କାର ମିଳିଥିଲା । ୧୯୭୯ ମସିହାରେ ତାଙ୍କୁ ଯେତେବେଳେ ନୋବେଲ୍ ଶାନ୍ତି ପୁରସ୍କାର ପ୍ରଦାନ କରାଗଲା ସେ କହିଥିଲେ ''ଏହି ପୁରସ୍କାର ମୁଁ ଗରିବ ଜନତାଙ୍କ ନାମରେ ଉତ୍ସର୍ଗ କରୁଛି । ଏହି ପୁରସ୍କାରକୁ ଗ୍ରହଣ କରିବା ସହିତ ମୋର ହୃଦ୍‌ବୋଧ ହେଉଛି ଯେ ପାଶ୍ଚାତ୍ୟ ଜଗତ ପୃଥିବୀରେ ଅନେକ ବ୍ୟକ୍ତି ଗରିବ, ଦରିଦ୍ର ଓ ଦୁସ୍ଥ ଅଛନ୍ତି ବୋଲି ସ୍ୱୀକାର କରୁଛନ୍ତି ।'' ୧୯୮୩ ମସିହାରେ ତାଙ୍କୁ ''ଅର୍ଡର ଅଫ୍ ମେରିଟ୍'' ସମ୍ମାନ ଦିଆଯାଇଥିଲା । ୧୯୯୩ ମସିହାରେ ତାଙ୍କୁ ''ରାଜୀବ୍ ଗାନ୍ଧୀ ସଦ୍‌ଭାବନା'' ପୁରସ୍କାର ମିଳିଥିଲା । ତେବେ ତା ପୂର୍ବରୁ ତାଙ୍କୁ ଭାରତ ବର୍ଷର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତ ରତ୍ନରେ ଭୂଷିତ କରାଯାଇଥିଲା । ତେବେ ଏକଥା ସତ ଯେ ତାଙ୍କ ଆଡ଼କୁ ପୁରସ୍କାର ଏବଂ ସମ୍ମାନର ସ୍ରୋତ ଛୁଟିଥିଲେ ହେଁ ସେ କେବେହେଲେ ଏହି ସ୍ରୋତର ପ୍ରଭାବରେ ନିଜର କର୍ତ୍ତବ୍ୟବୋଧ ଭୁଲିଯାଇନାହାନ୍ତି । ସମ୍ମାନ ମିଳୁ ଅଥବା ନ ମିଳୁ ସେ ତାଙ୍କର କାର୍ଯ୍ୟକ୍ରମକୁ ସମବେଗରେ ଚାଲୁ ରଖିଛନ୍ତି ।

ମଦର ଟେରେସାଙ୍କ ଦ୍ୱାରା ପ୍ରତିଷ୍ଠିତ ମିଶନାରୀଜ୍ ଅଫ୍ ଚ୍ୟାରିଟି ୧୯୪୭ ମସିହାରେ ପ୍ରତିଷ୍ଠିତ ହୋଇ ଏଯାବତ୍ ୪୦୦୦ରୁ ଅଧିକ ନନ୍ ଦେଶର ଚତୁର୍ଦ୍ଦିଗରେ

ବିଭିନ୍ନ ଅନାଥାଶ୍ରମ ଖୋଲିଛନ୍ତି । ଏଡ୍‌ସ୍ ରୋଗୀଙ୍କ ପାଇଁ ଚିକିତ୍ସାଳୟ ଏବଂ ଆଶ୍ରୟଗୃହ ତଥା ସମଗ୍ର ବିଶ୍ୱରେ ଗରିବ ଜନତାର ସେବା ପାଇଁ କେନ୍ଦ୍ରମାନ ପ୍ରତିଷ୍ଠିତ ହୋଇଛି ।

୧୯୮୯ ମସିହାରେ ତାଙ୍କର ଦୁଇଥର ହୃଦ୍‌ଘାତ ହୋଇଥିଲା । ୧୯୯୦ ମସିହାରେ ତାଙ୍କ ଛାତିରେ ଏକ ପେସ୍‌ମେକର ଖଞ୍ଜାଯାଇଥିଲା । ତା ପରେ ସେ ତାଙ୍କଦ୍ୱାରା ପ୍ରତିଷ୍ଠିତ ଅର୍ଡର ମିଶନାରୀଜ୍ ଅଫ୍ ଚ୍ୟାରିଟିର ସର୍ବୋଚ୍ଚ ପଦରୁ ଓହରି ଆସିଥିଲେ । ତତ୍ପରେ ଏହି ଚ୍ୟାରିଟିରେ ଥିବା ସମସ୍ତ ସିଷ୍ଟରଙ୍କୁ ଡ଼କାଇ ତାଙ୍କର ଉତ୍ତରାଧିକାରୀ ଜଣଙ୍କୁ ବାଛିବା ପାଇଁ ଗୁପ୍ତ ବ୍ୟାଲଟ୍‌ର ଆଶ୍ରୟ ନେଇଥିଲେ । ଭୋଟ୍ ଗଣତିବେଳେ ଦେଖାଗଲା ଯେ ସମସ୍ତେ ନିର୍ବିବାଦରେ ତାଙ୍କୁ ହିଁ ପୁନର୍ନିର୍ବାଚିତ କରିଛନ୍ତି । ତେଣୁ ବାଧ ହୋଇ ସେପ୍ଟେମ୍ବର ମାସରେ ପୁନର୍ବାର ସେ ସେହି ପଦବୀକୁ ଫେରିଥିଲେ । ୧୯୯୬ ମସିହା ବେଳକୁ ତାଙ୍କର ସ୍ୱାସ୍ଥ୍ୟ ଅବସ୍ଥାରେ ଆହୁରି ଅବନତି ଘଟିଲା । ଏବଂ ଶେଷରେ ସେ ତାଙ୍କ ପଦବୀରୁ ଅବ୍ୟାହତି ନେଲେ । ସିଷ୍ଟର ନିର୍ମଳାଙ୍କୁ ତାଙ୍କର ଉତ୍ତରାଧିକାରୀ ରୂପେ ବଛାଗଲା । ଏହି 'ଭାରତରତ୍ନ' ବିଜୟିନୀ ଗରିବ ଜନତାର ପ୍ରାଣକର୍ତ୍ତା, ଦୟାର ଅବତାର ମଦର ଟେରେସା ହୃଦ୍‌ଘାତରେ ୧୯୯୭ ମସିହା ସେପ୍ଟେମ୍ବର ୫ ତାରିଖ ଦିନ ଇହଲୀଳା ସମ୍ବରଣ କଲେ । ସାରା ବିଶ୍ୱ ତାଙ୍କ ମୃତ୍ୟୁରେ ଶୋକାତୁର ହୋଇ ଉଠିଲା । ସେତେବେଳେ ଭାରତର ପ୍ରଧାନମନ୍ତ୍ରୀ ଆଇ.କେ ଗୁଜୁରାଲ୍ ଥାଆନ୍ତି । ସେ ତାଙ୍କ ଶୋକ ବାର୍ତ୍ତାରେ କହିଥିଲେ, ''ମା' ଟେରେସା ଆମ ଦେଶର କଲିକତା ନଗରୀକୁ ତାଙ୍କର ବିଶ୍ୱବ୍ୟାପୀ ମିଶନ୍ ଏବଂ କର୍ମସ୍ଥଳୀ ଭାବେ ବାଛିଥିବାରୁ ଆମେ ନିଜକୁ ଭାଗ୍ୟବାନ ମନେକରୁଛୁ ।''

ମା' ସବୁ ବ୍ୟକ୍ତିଙ୍କ ଭିତରେ ଭଗବାନଙ୍କର ସ୍ୱରୂପ ଦେଖୁଥିଲେ । କୌଣସି ଧର୍ମାବଲମ୍ବୀଙ୍କୁ ସେ ବାଛ ବିଚାର କରୁନଥିଲେ । ପ୍ରତ୍ୟେକ ବ୍ୟକ୍ତିଙ୍କୁ ସ୍ନେହ ଓ କରୁଣା ଦୃଷ୍ଟିରେ ଦେଖୁଥିଲେ । ମଦର ଟେରେସାଙ୍କ ବିୟୋଗରେ ଆମେରିକାରେ ଶୋକ ସଭାରେ ଆମେରିକାର ରାଷ୍ଟ୍ରପତି ବିଲ୍ କ୍ଲିଣ୍ଟନ୍ କହିଥିଲେ ''ମଦର ଟେରେସା ଏବଂ ପ୍ରିନ୍‌ସେସ୍ ଡ଼ାଏନା ଦୁଇଟି ଭିନ୍ନ ଭିନ୍ନ ମହିଳା, ଉଭୟଙ୍କର ପୃଷ୍ଠଭୂମି ସଂପୂର୍ଣ୍ଣ ଭିନ୍ନ । ଉଭୟଙ୍କ ପୃଥିବୀରେ ଅନେକ ପ୍ରଭେଦ ରହିଛି । ଉଭୟେ ଚାଲିଗଲେ । କିନ୍ତୁ ଉଭୟେ ଆମକୁ ଜୀବନ କିପରି ବଞ୍ଚିବାକୁ ହୁଏ ତାହା ଶିକ୍ଷା ଦେଇଛନ୍ତି । ଅନ୍ୟମାନଙ୍କ ପାଇଁ ବଞ୍ଚିବାରେ ଜୀବନ ପ୍ରକୃତ ଚରିତାର୍ଥ ହୋଇଥାଏ, ଏହି ଶିକ୍ଷା ଏହି ଦୁଇ ମହୀୟସୀ ମହିଳାଙ୍କଠାରୁ ବିଶ୍ୱବାସୀ ପାଇପାରିଛନ୍ତି ।''

* * *

# ଆଚାର୍ଯ୍ୟ ବିନୋବା ବାଭେ



୧୮୯୫-୧୯୮୨

ଭାରତରତ୍ନ - ୧୯୮୩

**ମ**ହାରାଷ୍ଟ୍ର ରାଜ୍ୟ କୋଲାବା ଜିଲ୍ଲାର ପେଲ୍‌ତାଲୁକାରେ ବିନାୟକ ନରହରି ବାଭେ ୧୧ ସେପ୍ଟେମ୍ବର ୧୮୯୫ ମସିହା ଦିନ ଗାଗୋଡ଼ା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ପିତା ନରହରି ବାଭେ ଏବଂ ମାତା ରୁକ୍ମଣୀ ବାଈଙ୍କର ସେ ଜ୍ୟେଷ୍ଠପୁତ୍ର ଥିଲେ । ତାଙ୍କର ତିନୋଟି ଭାଇ ଏବଂ ଗୋଟିଏ ଭଉଣୀ ଥିଲେ । ପରିବାର ଉଚ୍ଚଶିକ୍ଷିତ ଥିଲା । ପିତା ନରହରି ଭାବେ ବିଜ୍ଞାନ ଏବଂ କଳାର ଜଣେ ପ୍ରଖ୍ୟାତ ବିଦ୍ୱାନ ଥିଲେ । ମାତା ରୁକ୍ମଣୀ ବାଈ ଜଣେ ଧର୍ମପରାୟଣା ବିଦୁଷୀ ମହିଳା ଥିଲେ । ସେ ଗରିବ, ନିରନ୍ନ, ଅସୁସ୍ଥ ବ୍ୟକ୍ତିମାନଙ୍କୁ ସାହାଯ୍ୟ କରିବାରେ ଧ୍ୟାନ ଦେଉଥିଲେ । ତାଙ୍କର ଜ୍ୟେଷ୍ଠପୁତ୍ର ବିନାୟକଙ୍କୁ ଉପଦେଶ ଦେଇ ସେ କୁହନ୍ତି 'ଭଗବାନ ସର୍ବତ୍ର ବିଦ୍ୟମାନ । ଏହି ଧରାର ପ୍ରତିଟି ଅଣୁ ପରମାଣୁରେ ଭଗବାନଙ୍କର ସତ୍ତା ରହିଛି ।'

ପ୍ରତିଦିନ ସେ ବିଷ୍ଣୁସହସ୍ର ନାମ ଜପ କରନ୍ତି । ତାଙ୍କର ଦୈନନ୍ଦିନ କାର୍ଯ୍ୟ ସଂପାଦନ ମଧ୍ୟରେ ଜପତପ କଥା ସେ କେବେ ବି ଭୁଲନ୍ତି ନାହିଁ । ଭାରତୀୟ ପୁରାତନ ଶାସ୍ତ୍ର, ପୁରାଣ ତଥା ସାହିତ୍ୟ ଚର୍ଚ୍ଚାରେ ଅନେକ ସମୟ ଦିଅନ୍ତି । ଭାଗବତ ଗୀତା ତାଙ୍କର ଅତି ପ୍ରିୟ ଗ୍ରନ୍ଥ । ତେବେ ଏହି ଗ୍ରନ୍ଥ ସଂସ୍କୃତରେ ଲିଖିତ ହୋଇଥିବାରୁ ସାଧାରଣ ଜନତା ଏହା ପଢ଼ି ବୁଝିବା କଷ୍ଟକର ହେଉଥିଲା । ତେଣୁ ସେ ବିନାୟକଙ୍କୁ ଏ ବିଷୟ କହିବା ପରେ ବିନୋଭାଜୀ ତାଙ୍କୁ ଶ୍ରୀ ବାମନ ପଣ୍ଡିତଜୀଙ୍କ ଦ୍ୱାରା ମରାଠୀ ଭାଷାରେ ଲିଖିତ ଏକ ଭାଗବତ ଗୀତା ଆଣି ଦେଇଥିଲେ । ତେବେ ଏହା ମଧ୍ୟ ଯଥେଷ୍ଟ କ୍ଳିଷ୍ଟ ହୋଇଥିବାରୁ ତାଙ୍କୁ ବୁଝିବା ତାଙ୍କ ପକ୍ଷରେ କଷ୍ଟକର ହେଲା ।

ଏହା ପରେ ବିନୋବା ବାଭେ ଗୀତାକୁ ସରଳ ମରାଠୀ ଭାଷାରେ ଅନୁବାଦ କରିବା ପାଇଁ ମନସ୍ଥ କଲେ । ତେଣୁ ୧୯୩୨ ମସିହାରେ ତାଙ୍କ ଦ୍ୱାରା ଲିଖିତ 'ଗୀତାଇ' ପୁସ୍ତିକା ପ୍ରକାଶିତ ହେଲା । ଏହା ମହାରାଷ୍ଟ୍ରର ସାଧାରଣ ଜନତାଙ୍କ ମଧ୍ୟରେ ଖୁବ୍ ଆଦୃତ ହୋଇଥିଲା । ବିନାୟକଙ୍କର ଜେଜେ ବାପା ଶମ୍ଭୁରାଓ ଖୁବ୍ ଧର୍ମପରାୟଣ ଥିଲେ ହେଁ ତାଙ୍କର ଚିନ୍ତନ ବେଶ୍ ଆଧୁନିକ ଥିଲା । ପ୍ରତିବର୍ଷ ସେ ଗ୍ରାମବାସୀମାନଙ୍କୁ ଶିବମନ୍ଦିରର ଏକ ନିର୍ଦ୍ଦିଷ୍ଟ ପୂଜା ଦିନ ଭୋଜି ଦେଉଥିଲେ । ସେହିଦିନ ସେ ଜଣେ ମୁସଲମାନ ଗାୟକଙ୍କୁ ଆଣି ମନ୍ଦିରରେ ଭଜନ ସଂଧ୍ୟାର ଆୟୋଜନ କରୁଥିଲେ । ବିନାୟକଙ୍କର ଜେଜେମା ମଧ୍ୟ ଜଣେ ନିଷ୍ପାପର ଧର୍ମପରାୟଣା ମହିଳା ଥିଲେ । ସେ ୫୬ ବର୍ଷ ବୟସରେ ମରାଠୀ ଲେଖିବା ଓ ପଢ଼ିବା ଶିକ୍ଷା କରିଥିଲେ । 'ଶିବଲୀଳାମୃତ', 'ପାଣ୍ଡବପ୍ରତାପ' ଏବଂ 'ଭକ୍ତିବିଜୟ' ପରି ବଡ଼ ବଡ଼ ଗ୍ରନ୍ଥ ସେ ପାଠ କରିଥିଲେ ।

ବିନାୟକଙ୍କର ସ୍ମୃତି ଶକ୍ତି ଏବଂ ବୁଦ୍ଧିମତା ଖୁବ୍ ପ୍ରଖର ଥିଲା । ସେ ଧାର୍ମିକ ସ୍ୱଭାବର ଥିଲେ । ମାତ୍ର ୧୧ ବର୍ଷ ବୟସରେ ସେ ଆଜୀବନ ବ୍ରହ୍ମଚର୍ଯ୍ୟ ପାଳନ କରିବାର ପ୍ରତିଜ୍ଞା ଗ୍ରହଣ କରିଥିଲେ । ବରୋଦାଠାରେ ଶିବାଜୀ ରାଓ ଗାଇକୱାଡଙ୍କ ଦ୍ୱାରା ପ୍ରତିଷ୍ଠିତ କଳାଭବନରେ ସେ ଯୋଗଦାନ କଲେ । ଦ୍ୱିତୀୟ ବାଧ୍ୟତାମୂଳକ ଭାଷା ଭାବରେ ସେ ଫରାସୀ ଭାଷାକୁ ବାଛି ଥିଲେ । ବିନାୟକଙ୍କ ବାପାଙ୍କର ଇଚ୍ଛା ଥିଲା ତାଙ୍କୁ ଉଚ୍ଚତର ଶିକ୍ଷା ପାଇଁ ବିଦେଶ ପଠାଇବା । ବରୋଦାରେ ଶିବାଜୀ ରାଏ ଗାଇକ୍ୱାଡ୍ ଏକ ବିରାଟ ପାଠାଗାର ପ୍ରତିଷ୍ଠା କରିଥାନ୍ତି । ସେଠାରେ ବିନାୟକ ବହୁ ସମୟ ଧରି ଅଧ୍ୟୟନ କରୁଥିଲେ ଏବଂ ବିଭିନ୍ନ ବିଷୟର ଅନେକ ପୁସ୍ତକ ସେଠାରେ ସେ ପଢ଼ିଥିଲେ । ମୋରାପାନ୍ଙ୍କର କେକାୱାଲି ଏବଂ ଆର୍ଯ୍ୟଭାରତ ପୁସ୍ତକ ସେ ମୁଖସ୍ଥ କରିଦେଇଥିଲେ ।

ଜଣେ ଅତି ବିଚକ୍ଷଣ ଛାତ୍ର ଥିଲେ ହେଁ ଖୁବ୍ ଶୀଘ୍ର ଆନୁଷ୍ଠାନିକ ଶିକ୍ଷାରେ ତାଙ୍କର ଆଗ୍ରହ କମିଗଲା । ଇଣ୍ଟରମିଡ଼ିଏଟ୍ ପରୀକ୍ଷା ଦେବାପାଇଁ ୧୯୧୬ ମସିହାରେ ସେ ବମ୍ବେ ଯାଉଥିଲେ । କିନ୍ତୁ ହଠାତ୍ ତାଙ୍କ ମନରେ ପରିବର୍ତ୍ତନ ଆସିଲା । ସୁରଟ୍ ଠାରେ ସେ ରେଳଗାଡ଼ିରୁ ଓହ୍ଲାଇ ବନାରସ୍ ଅଭିମୁଖେ ଅନ୍ୟଗାଡ଼ି ଧରିଲେ । ବନାରସ୍ ଯାଇ ସେଠାରେ ସେ ସଂସ୍କୃତ ଅଧ୍ୟୟନ କରି ସମସ୍ତ ହିନ୍ଦୁ ଶାସ୍ତ୍ର ଅଧ୍ୟୟନ କଲେ । ସେ ଅନେକ ଭାଷା କହି ପାରୁଥିଲେ ମରାଠୀ, ତାମିଲ, ତେଲୁଗୁ ଆଦି ଭାଷାରେ ସେ ଅନର୍ଗଳ ବକ୍ତୃତା ଦେଇପାରୁଥିଲେ । ବିନାୟକ ଖୁବ୍ ଦାନଶୀଳ ଥିଲେ ଏବଂ ତାଙ୍କର ନିଜର ବ୍ୟବହାରିକ ବସ୍ତୁ ମଧ ଦାନ କରିଦେଉଥିଲେ । ଅନେକ ସମୟରେ ସେ ନିଜର ଦେହ ଏବଂ ଖାଦ୍ୟ ବସ୍ତ୍ର ପ୍ରତି ଉଦାସୀନ ରହି ଜଙ୍ଗଲରେ ଭ୍ରମଣ କରି ବିଭିନ୍ନ ଦାର୍ଶନିକ ଚିନ୍ତନରେ ମଗ୍ନ ରହୁଥିଲେ ।

ବିନାୟକଙ୍କ ପିତା ତାଙ୍କୁ ଦୁଇଖଣ୍ଡ ପୁସ୍ତକ ଉପହାର ସ୍ୱରୂପ ଦେଇଥିଲେ । ଗୋଟିଏ ଭଗବତ୍ ଗୀତା ଏବଂ ଅନ୍ୟଟି ରାମାୟଣ । ସେ ବହିଦୁଇଟିକୁ ଆମୂଳଚୂଳ ପଢ଼ିବା ପରେ ତହିଁରେ ଥିବା ଶିକ୍ଷା ଏବଂ ଉପଦେଶ ଗୁଡ଼ିକୁ ଜୀବନର ବାକି ସମୟରେ ଉପଯୋଗ କରିଥିଲେ । ଶୈଶବରୁ ସେ ଚିନି ଖାଇବେ ନାହିଁ ବୋଲି ପ୍ରତିଜ୍ଞା କରିଥିଲେ । କାରଣ ଚିନି ବିଦେଶରୁ ଆମଦାନୀ ହେଉଥିଲା । ସେ ଏହି ଅଭ୍ୟାସକୁ ଦେଶ ସ୍ୱାଧୀନ ହେବା ପର୍ଯ୍ୟନ୍ତ ଜାରି ରଖିଥିଲେ । ଏକ କ୍ରାନ୍ତିକାରୀ ଦଳରେ ସେ ଯୋଗଦେଇ ଦେଶର ସ୍ୱାଧୀନତା ପାଇଁ ବିଭିନ୍ନ ସ୍ଥାନରେ ବୋମା ନିକ୍ଷେପ କରିବାର ଯୋଜନା କରିଥିଲେ । ସେ ଚାହୁଁଥିଲେ ଯେ ଯଦି ବଞ୍ଚିରହିବେ ସ୍ୱାଧୀନ ହୋଇ ବଞ୍ଚିରହିବେ ନଚେତ୍ ଦେଶ ପାଇଁ ହସି ହସି ପ୍ରାଣ ଦେବେ କିମ୍ବା ହିମାଳୟକୁ ଯାଇ ସେଠାରେ ତପସ୍ୟା କରି ବିଭିନ୍ନ ଗ୍ରନ୍ଥ ଅଧ୍ୟୟନ କରିବେ । ମୋଟାମୋଟି ଭାବେ ବିଦେଶୀ ଶାସନକୁ ସେ କଠୋର ପ୍ରତିବାଦ କରୁଥିଲେ ।

ବିନାୟକ ଗାନ୍ଧିଜୀଙ୍କୁ ସାକ୍ଷାତ କରିବା ପରେ ତାଙ୍କ ଦ୍ୱାରା ପ୍ରଦତ୍ତ ବିଭିନ୍ନ ଉପଦେଶରେ ପ୍ରଭାବିତ ହୋଇଥିଲେ । ସାବରମତୀଠାରେ ସେ ୧୯୧୬ ମସିହା ଜୁନ୍ ମାସରେ ଗାନ୍ଧିଜୀଙ୍କ ଆଶ୍ରମରେ ଯୋଗଦେଲେ । ସେଠାରେ ଏକ ସରଳ ପବିତ୍ର ଜୀବନ ଯାପନରେ ବ୍ରତୀ ହେଲେ । ଭାରତବର୍ଷର ଗ୍ରାମ୍ୟ ଜୀବନରେ କିପରି ଉନ୍ନତି ଆସିବ ତହିଁରେ ସେ ମନ ଦେଇଥିଲେ । ବିନାୟକ ଘରୁ ଚାଲିଆସିବା ପରଠାରୁ ତାଙ୍କର ପିତାଙ୍କ ପାଖକୁ କୌଣସି ଖବର ଯାଇନଥାଏ । ଗାନ୍ଧିଜୀ ପ୍ରଥମ ଥର ପାଇଁ ଚିଠିଲେଖି ତାଙ୍କର ପିତାଙ୍କୁ ବିନାୟକଙ୍କର ଅବସ୍ଥିତି ବିଷୟ ଜଣାଇଲେ । ବିନାୟକଙ୍କର ସରଳ ଜୀବନଯାପନ ଏବଂ ଉଚ୍ଚଭାବନା ଗାନ୍ଧିଜୀଙ୍କୁ ସମ୍ମୋହିତ କରିଥିଲା । ତା ପରେ

ବିନାୟକଙ୍କୁ ଗାନ୍ଧିଜୀ ବିନୋଭା ବୋଲି ସମ୍ବୋଧନ କଲେ । ସେ ଆଶ୍ରମରେ ବିନୋଭା ତାଙ୍କର ସହକର୍ମୀମାନଙ୍କୁ ସଂସ୍କୃତ ପଢ଼ାଇବା ଆରମ୍ଭ କଲେ । ତେଣୁ ସେଠିକାର ବାସିନ୍ଦାମାନେ ତାଙ୍କୁ ଆଚାର୍ଯ୍ୟ ଆଖ୍ୟା ଦେଲେ । ଆଚାର୍ଯ୍ୟ ଅର୍ଥ ଶିକ୍ଷକ । ବିନୋଭା ଗାନ୍ଧିଜୀଙ୍କ ପରି ଖୁବ୍ କ୍ଷୀଣକାୟ ଥିଲେ ହେଁ ସାରାଦିନ କାର୍ଯ୍ୟ କରନ୍ତି । ଆଶ୍ରମରେ ତାଙ୍କର ଦୃଢ଼ ଇଚ୍ଛାଶକ୍ତି ଏବଂ ଉତ୍ସର୍ଗୀକୃତ ମନୋଭାବ ଯୋଗୁଁ ସେ ଆଶ୍ରମର ବଗିଚାରେ ବାଲ୍‌ଟି ବାଲ୍‌ଟି ପାଣି ଆଣି ଚାରି ପାଞ୍ଚଘଣ୍ଟା କାଳ ଅବିରତ ବଗିଚା କାମ କରୁଥିଲେ ।

୧୯୧୬ ମସିହାରେ ବିନୋବାଙ୍କର ମାତୃବିୟୋଗ ହେଲା । ତା ପରେ ସେ ସଂସ୍କୃତରେ ବେଦଶାସ୍ତ୍ର ପଢ଼ିବାକୁ ଲାଗିଲେ । ସେ ସମୟରେ ଯମୁନାଲାଲ୍ ବଜାଜ୍ ନାମକ ଜଣେ ଧନୀ ବ୍ୟବସାୟୀ ଗାନ୍ଧିଜୀଙ୍କ ସଂପର୍କରେ ଆସିଲେ । ଏବଂ ୱାର୍ଦ୍ଧାରେ ଏକ ଆଶ୍ରମ ଖୋଲିବା ପାଇଁ ଗାନ୍ଧିଜୀଙ୍କୁ ନିବେଦନ କଲେ । ଆଶ୍ରମ ଉଦ୍ଦେଶ୍ୟରେ ସେ ଖଣ୍ଡିଏ ବଡ଼ ଜମି ଦାନ କରିଥାନ୍ତି । ଏବେ ୱାର୍ଦ୍ଧା ଠାରେ ଆଶ୍ରମ ଖୋଲିବା ଦାୟିତ୍ୱ ବିନୋବାଙ୍କ ଉପରେ ନ୍ୟସ୍ତ ହେଲା । ୱାର୍ଦ୍ଧା ନିକଟସ୍ଥ ପୌନାଠାରେ ୧୯୨୧ ମସିହା ଏପ୍ରିଲ୍ ୮ ତାରିଖ ଦିନ ଆଶ୍ରମର ଶୁଭାରମ୍ଭ ହେଲା । ଏହା ସାବରମତୀ ଆଶ୍ରମ ପରି ହୋଇଥିଲା । ୧୯୩୨ ମସିହାରେ ବ୍ରିଟିଶ୍ ସରକାର କଂଗ୍ରେସ ଦଳକୁ ବେନିୟମ୍ ଘୋଷଣା କରିଥାଏ । ଦଳ ପକ୍ଷରୁ ବିନୋବାଜୀ ବିଭିନ୍ନ ସଭାରେ ଭାଷଣ ଦେବା ଯୋଗୁଁ ତାଙ୍କୁ ବନ୍ଦୀ କରାଗଲା ଏବଂ ଧୂଳିଆ ଜେଲ୍‌ରେ ରଖାଗଲା । ସେହି ଜେଲ୍‌ରେ ଥିବା ସମୟରେ ସେ ପ୍ରାୟ ୨୦୦ ଜଣ ରାଜନୈତିକ ନେତା ଏବଂ କର୍ମୀଙ୍କୁ ଭେଟି ଥିଲେ । ସେହିଠାରେ ସ୍ୱାମୀ ଗୁରୁଜୀ ମଧ୍ୟ ତାଙ୍କ ସହିତ ଥିଲେ । ପ୍ରତିଦିନ ସଂଧ୍ୟାରେ ସେ ନେତା ଓ କର୍ମୀମାନଙ୍କୁ ଭଗବତ ଗୀତା ଉପରେ ପ୍ରବଚନ ଦିଅନ୍ତି ଏବଂ ତାହାକୁ ସ୍ୱାମୀ ଗୁରୁଜୀ ଲିପିବଦ୍ଧ କରନ୍ତି । ତାଙ୍କର ପ୍ରବଚନ ଗୁଡ଼ିକ ଗୀତା ପ୍ରବଚନ ନାମରେ ଏକ ପୁସ୍ତିକା ରୂପରେ ପରବର୍ତ୍ତୀ ସମୟରେ ପ୍ରକାଶିତ ହୋଇ ଇଂରାଜୀ, ଫ୍ରେଞ୍ଚ ଏବଂ ଜର୍ମାନ ଭାଷାରେ ଅନୁଦିତ ହୋଇ ଜନପ୍ରିୟତା ହାସଲ କରିଛି । ୧୯୪୦ ମସିହାରେ ବିନୋବାଜୀଙ୍କୁ ଗାନ୍ଧିଜୀ କହିଲେ ଯେ, ବ୍ରିଟିଶ୍ ସରକାର ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ କଂଗ୍ରେସ ପାର୍ଟି ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କରୁଛି । ଏବଂ ସେ ବିନୋବାଜୀଙ୍କୁ ପ୍ରଥମ ସତ୍ୟାଗ୍ରହୀ ଭାବେ ମନୋନୀତ କରିବାକୁ ଚାହିଁଲେ । ଉତ୍ତରରେ ବିନୋଭାଜୀ କହିଲେ ଆପଣଙ୍କ ଇଚ୍ଛା ମୋ ପାଇଁ ଆଦେଶ । ୧୯୪୦ ମସିହା ଅକ୍ଟୋବର ୧୭ ତାରିଖ ଦିନ ବିନୋବାଜୀ ସତ୍ୟାଗ୍ରହ କଲେ । ବ୍ରିଟିଶ୍ ସରକାରଙ୍କୁ କୌଣସି ପ୍ରକାରର ସହଯୋଗ ନ

କରିବା ପାଇଁ ସେ ଲୋକମାନଙ୍କୁ ନିବେଦନ କଲେ । ତା ଛଡ଼ା ବିଶ୍ୱଯୁଦ୍ଧରେ ଭାରତ ଯେପରି ସଂପୃକ୍ତ ନ ହୁଏ ସେଥିପାଇଁ ମଧ୍ୟ ସେ ସମସ୍ତଙ୍କୁ ନିବେଦନ ଜଣାଇଲେ । ତାଙ୍କର ଏହି ସତ୍ୟାଗ୍ରହ ପାଇଁ ତାଙ୍କୁ



ପୁନର୍ବାର ବନ୍ଦୀ କରାଗଲା । ତିନିମାସ ପାଇଁ କାରାଦଣ୍ଡରେ ଦଣ୍ଡିତ କରାଗଲା । କିନ୍ତୁ ଜେଲ୍‌ରୁ ମୁକ୍ତି ପାଇବା ପରେ ପରେ ସେ ପୁନର୍ବାର ସତ୍ୟାଗ୍ରହ କଲେ । ପୁଣିଥରେ ତାଙ୍କୁ ଛ ମାସ ପାଇଁ ବନ୍ଦୀ କରାଗଲା । ଦ୍ୱିତୀୟଥର ମଧ୍ୟ ସେ ଜେଲ୍‌ରୁ ମୁକ୍ତି ପାଇବା ପରେ ସତ୍ୟାଗ୍ରହ କଲେ ଏବଂ ଏଥର ଏକବର୍ଷ ପାଇଁ ଜେଲ୍‌ରେ ରହିଲେ । ୧୯୪୭ ମସିହାରେ ଭାରତ ସ୍ୱାଧୀନ ହେଲା । କିନ୍ତୁ ତା ସହିତ ଭାରତ ବିଭାଜିତ ହେବା ଦୁଃଖ ଗାନ୍ଧିଜୀ ତଥା ବିନୋବାଜୀଙ୍କୁ ଶୋକାତୁର କରାଇଲା । ତାର ପରବର୍ତ୍ତୀ ଦୁଃଖଦ ସମ୍ବାଦ ଆସିଲା ଗାନ୍ଧିଜୀଙ୍କ ବିୟୋଗରେ । ଏ ଦୁଇଟି ଯାକ ଘଟଣା ବିନୋବାଜୀଙ୍କ ପରି ଋଷିପ୍ରତିମ ବ୍ୟକ୍ତିଙ୍କ ହୃଦୟରେ ମଧ୍ୟ ଭୀଷଣ ଦୁଃଖ ଜନ୍ମାଇଲା ।

ଭାରତର ଗ୍ରାମମାନଙ୍କରୁ ଦାରିଦ୍ର୍ୟ ଦୂରୀକରଣ ପାଇଁ ବିନୋବାଜୀଙ୍କର ଚେଷ୍ଟା ଅବ୍ୟାହତ ରହିଲା । ତେଲେଙ୍ଗାନା ଜିଲ୍ଲାରେ ସେ ତାଙ୍କର ଶାନ୍ତିପୂର୍ଣ୍ଣ ପଦଯାତ୍ରା ଆରମ୍ଭ କଲେ । ପୁଚାମ୍‌ପଲ୍ଲୀ ଗ୍ରାମରେ ୧୯୫୧ ମସିହା ଏପ୍ରିଲ୍ ୧୮ ତାରିଖ ଦିନ ପହଞ୍ଚିଲେ । ସେଠାରେ ଦାରିଦ୍ର୍ୟର ନଗ୍ନରୂପ ଦେଖି ସେ ଅତ୍ୟନ୍ତ ମର୍ମାହତ ହେଲେ । ସେଠିକାର ବୁଭୁକ୍ଷୁ ଜନତା ବିନୋବାଜୀଙ୍କପାଖକୁ ଆସି କିଛି ଜମି ଏବଂ କାମ ଦେବାପାଇଁ ଅନୁରୋଧ କଲେ । ଜମି, ଖାଦ୍ୟ ଏବଂ କାମ ବିନା ସେମାନେ ତଥାପି ପରାଧୀନ ବୋଲି ବିନୋବାଜୀଙ୍କୁ ଜଣାଇଲେ । ସେହିଠାରେ ବିନୋବାଜୀଙ୍କ ମନରେ କେତେକ ଚିନ୍ତା ଜାଗ୍ରତ ହେଲା । ସେ ଗ୍ରାମବାସୀମାନଙ୍କୁ ଡ଼ାକାଇ ସଭାର ଆୟୋଜନ କଲେ । ସଭାରେ ସେ ଧନୀକ ସଂପ୍ରଦାୟକୁ ଗରିବ ମାନଙ୍କ ଉଦ୍ଦେଶ୍ୟରେ କିଛି ଜମି ଦାନ କରିବା ପାଇଁ ଅନୁରୋଧ କଲେ । ସେହି ସଭାରେ ରାମଚନ୍ଦ୍ର ରେଡ୍ଡି ନାମକ ଜଣେ ଧନୀକ ବ୍ୟକ୍ତି

ତାଙ୍କର ଶହେ ଏକର ଜମି ଗରିବମାନଙ୍କ ଉଦ୍ଦେଶ୍ୟରେ ଦାନ କଲେ । ଫଳରେ ବିନୋବାଜୀଙ୍କ ମନରେ ଆଶାର ସଂଚାର ହେଲା ଏବଂ ତାଙ୍କର ମାନସ ସନ୍ତାନ ଭୂଦାନ ଆନ୍ଦୋଳନର ଅଙ୍କୁରୋଦ୍‌ଗମ ସେହି ସଭାରୁ ହିଁ ହୋଇଥିଲା । ବିନୋଭାଜୀ ପ୍ରତିଦିନ ସକାଳ ୩ଟା ବେଳେ ଶଯ୍ୟାତ୍ୟାଗ କରି ପଦଯାତ୍ରାରେ ଯାଉଥିଲେ । ବୁଲି ବୁଲି ସେ ପାଟ୍‌ନା ଜିଲ୍ଲାରେ ୧୯୫୪ ମସିହାରେ ପହଞ୍ଚିଲେ । ସେଠାରେ ସେ ଭୂମି ଦାନ ଗ୍ରହଣ କରି ଅନ୍ୟୁନ ଚାରି ଲକ୍ଷ ଭୂମିହୀନଙ୍କୁ ଭୂମି ଯୋଗାଇ ପାରିଥିଲେ ।

ଏହି ପଦଯାତ୍ରା ସମୟରେ ବିନୋବାଜୀ ସର୍ବୋଦୟ ଆନ୍ଦୋଳନ, ଯାହା ଗରିବଠାରୁ ଧନୀ ପ୍ରତ୍ୟେକଙ୍କର ଅଭ୍ୟୁଥାନ ପାଇଁ ପ୍ରାୟୋଜିତ ହୋଇଥିଲା ତାର ଶୁଭାରମ୍ଭ କଲେ । ଏହା ଫଳରେ ସେ ଅନେକ ଗରିବ ବୁଭୁକ୍ଷିତ ଲୋକଙ୍କୁ ସାହାରା ହୋଇପାରିଲେ । ବିନୋବାଜୀଙ୍କର ଅନେକ ସଦ୍‌ଗୁଣ ଥିଲା । ତନ୍ମଧ୍ୟରେ ତାଙ୍କର କାର୍ଯ୍ୟରେ ନିମଗ୍ନ ରହିବା ତଥା ସଂପୂର୍ଣ୍ଣ ମନଧ୍ୟାନ ଦେଇ କାର୍ଯ୍ୟ କରିବା ପ୍ରଧାନ ଥିଲା । ଥରେ ସେ ଭାଗବତ୍ ଗୀତା ପାଠ କରୁଥିବା ସମୟରେ ତାଙ୍କର ଜଙ୍ଘକୁ ଏକ କଙ୍କଡ଼ା ବିଛା ଆଘାତ କରିଥିଲା । କିନ୍ତୁ ସେ ଗୀତାରସରେ ବୁଡ଼ିରହିଥିବା ଯୋଗୁଁ ବିଛାର ଏହି ଦଂଶନ ତାଙ୍କୁ ବିଚଳିତ କରିପାରିନଥିଲା । ଅନେକ ସମୟ ପରେ ଦଂଶିତ ସ୍ଥାନରେ ରକ୍ତ ଜମାଟ ବାନ୍ଧି କଳାପଡ଼ି ଭୀଷଣ କଷ୍ଟ ହେବାରୁ ଏହା ଜଣାପଡ଼ିଥିଲା । ଏହା ଜାଣିବା ପରେ ସେ ବିଛାର ନାହୁଡ଼ଟି ଠିକ୍ ସ୍ଥାନରୁ ଟାଣି ବାହାର କରିଦେଇ ପୁନର୍ବାର ସେ ଚରଖାରେ ସୂତା କାଟିବାରେ ମଗ୍ନ ରହିଲେ । ଯେପରିକି ତାଙ୍କର କୌଣସି ପ୍ରକାରର ଅସୁବିଧା ହୋଇନଥିଲା । ଏହା ତାଙ୍କର ଦୃଢ଼ ଇଚ୍ଛାଶକ୍ତି ଏବଂ ଏକାଗ୍ରତା ରକ୍ଷା କରିବା ଦକ୍ଷତାର ସୂଚନା ଦିଏ ।

୧୯୬୦ ମସିହାରେ ବିନୋବାଜୀ ଡ଼କାୟତ ପରିବେଷ୍ଟିତ ଚମ୍ବଲ ଉପତ୍ୟକାରେ ପ୍ରବେଶ କରିଥିଲେ । ଯେ କୌଣସି ବ୍ୟକ୍ତି ଚମ୍ବଲର ନାଁ ଶୁଣିଲେ ଭୟରେ ଥର ହର ହୋଇ ଉଠୁଥିଲେ । ଏହା ଅନେକ ହିଂସ୍ର ଓ ନିଷ୍ଠୁର ଡ଼କାୟତମାନଙ୍କର ବାସସ୍ଥଳୀ ଭାବେ ଜଣାଶୁଣା ଥିଲା । ସେତେବେଳର କୁଖ୍ୟାତ ଡ଼କାୟତ ଅବତାର ସିଂ ବିନୋବାଜୀଙ୍କ ବ୍ୟକ୍ତିତ୍ୱରେ ଏତେଦୂର ପ୍ରଭାବିତ ହୋଇଥିଲା ଯେ ସେ ଡ଼କାୟତି ଛାଡ଼ି ତାଙ୍କର ଜଣେ ଶିଷ୍ୟ ପାଲଟି ଗଲା । ବିନୋବାଜୀ ଏହି ଘଟଣାକୁ ଈଶ୍ୱରଙ୍କ ଇଚ୍ଛା ଓ ଆଦେଶ ବୋଲି ଅଭିହିତ କରିଥିଲେ । ତା ପରେ ପରେ ୨୧ ଜଣ ଅତି ବିପଦଜନକ ଡ଼କାୟତ ବିନୋବାଜୀଙ୍କ ପାଖରେ ଆତ୍ମସମର୍ପଣ କରିଥିଲେ । କୌଣସି ପଦପଦବୀରେ ନଥାଇ, କୌଣସି ଅସ୍ତ୍ର ବ୍ୟବହାର ନକରି କିମ୍ବା ଆକ୍ରମଣ ନକରି କଠୋର ପ୍ରାଣ ଡକାୟତମାନଙ୍କ ଚିନ୍ତା ଓ ଚୈତନ୍ୟକୁ କେବଳ ତାଙ୍କ ଅନାବିଳ ବ୍ୟକ୍ତିତ୍ୱର ପ୍ରଭାବରେ ପରିବର୍ତ୍ତନ କରାଇ

ଯେପରି ସେମାନଙ୍କୁ ସମାଜର ମୁଖ୍ୟ ସ୍ରୋତରେ ସାମିଲ୍ କରାଇପାରିଲେ ସେପରି ଅନ୍ୟ ଏକ ଦୃଷ୍ଟାନ୍ତ ବିଶ୍ୱର ଅନ୍ୟ କେଉଁ ଦେଶରେ ଏ ଯାବତ ଦୃଷ୍ଟିପଥକୁ ଆସିନାହିଁ ।

୧୯୫୪ ମସିହାରେ ବିନୋବାଜୀ ପାଟ୍ନା ଜିଲ୍ଲା ଆସିଲେ । ସେଠାରେ ତାଙ୍କୁ ସ୍ୱାଗତ କରାଯାଇଥିଲା । ହଠାତ୍ ଭିଡ଼ ଭିତରୁ ଗୋଟିଏ କ୍ଷୀଣକାୟ ଦରିଦ୍ର ବ୍ୟକ୍ତି ଆସି ବିନୋବାଜୀଙ୍କ ହାତରେ ଉପହାର ସ୍ୱରୂପ ଗୋଟିଏ ପ୍ୟାକେଟ୍ ଧରାଇ ଦେଲା । ବିନୋବାଜୀ ତାକୁ ଖୋଲି ଦେଖିଲେ ତହିଁରେ କିଛି ମାଟି ରହିଛି । ସାଙ୍ଗେ ସାଙ୍ଗେ ବିନୋଭାଜୀ ତାକୁ ସେହି ସଭାରେ ନିଲାମ କରିବା ପାଇଁ ଚାହିଁଲେ । ସଭାରେ ଉପସ୍ଥିତ ଜଣେ ବ୍ୟକ୍ତି ୪୦ ଏକର ଜମି ବଦଳରେ ବିନୋବାଙ୍କ ହାତରେ ଥିବା ମାଟିକୁ କିଣିବାକୁ ଇଛାକଲେ । ସମବେତ ଜନତା ମଧ୍ୟରେ ସେ ଘୋଷଣା କଲେ ଯେ ବିନୋଭାଜୀଙ୍କ ହାତରୁ ସେ ଗ୍ରହଣ କରିଥିବା ମାଟିର ପ୍ୟାକେଟ ପ୍ରକୃତରେ ଭଗବାନଙ୍କ ହାତରୁ ପ୍ରସାଦ ଗ୍ରହଣ କରିବା ସହିତ ସମାନ ।

୧୯୫୯ ମସିହାରେ ଆଜ୍‌ମେରଠାରେ ସର୍ବୋଦ୍ୱୟ ଅଧିବେଶନ ଅନୁଷ୍ଠିତ ହେଲା । ଏହା ବିରାଟ ସଫଳତା ହାସଲ କଲା । କିନ୍ତୁ ଏହି ଅଧିବେଶନ ପରେ ବିନୋବାଜୀ ମୌନବ୍ରତ ଗ୍ରହଣ କଲେ । ସେ ଲୋକମାନଙ୍କୁ ସଦ୍‌ଚରିତ୍ର ପାଇଁ ତିନୋଟି ଆବଶ୍ୟକତା ଉପରେ ଗୁରୁତ୍ୱ ଦେବାପାଇଁ ଉପଦେଶ ଦେଉଥିଲେ । ଉତ୍ତମ ଶିକ୍ଷା, ଉତ୍ତମ ବନ୍ଧୁତା ଏବଂ ଶିକ୍ଷା ସମାପ୍ତି ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ । ଆଚାର୍ଯ୍ୟ ବିନୋବାଜୀ କୌଣସି କ୍ଷମତା ବା ଉଚ୍ଚ ପଦପଦବୀରେ କେବେବି ଅଧିଷ୍ଠିତ ହେବା ପାଇଁ ଇଚ୍ଛା କରିନଥିଲେ । ତଥାପି ସେ ଭାରତର କୋଟି କୋଟି ଜନତାଙ୍କର ହୃଦୟ ସିଂହାସନରେ ରାଜକୀୟ ସମ୍ମାନ ପାଉଥିଲେ ।

ସେ ମହାତ୍ମାଗାନ୍ଧୀଙ୍କର ଜଣେ ପଟ୍ଟଶିଷ୍ୟ ଥିଲେ ଏବଂ ଗାନ୍ଧୀବାଦରେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଆସ୍ଥା ରଖିଥିଲେ ତଥା ତାହାକୁ ନିଜେ ଅବଲମ୍ବନ କରିଥିଲେ । ୧୯୮୨ ମସିହା ନଭେମ୍ବର ୫ ତାରିଖ ଦିନ ତାଙ୍କର ହୃଦ୍‌ଘାତ ହେଲା । ତାଙ୍କୁ ଚିକିତ୍ସା ପାଇଁ ଡ଼ାକ୍ତରଖାନାକୁ ନେବା ବେଳେ ସେ ଚିକିତ୍ସା ପାଇଁ ବାରଣ କରିଥିଲେ । ତପ୍ରରେ ସେ ଉପବାସ ବ୍ରତ ରଖିଥିଲେ । ଶେଷରେ ୧୯୮୨ ନଭେମ୍ବର ୧୫ ତାରିଖ ଦିନ ତାଙ୍କର ମହାପ୍ରୟାଣ ହୋଇଥିଲା । ବିନୋବାଜୀ ତାଙ୍କ ଜୀବଦ୍ଦଶା ମଧ୍ୟରେ ଗରିବ, ଭୂମିହୀନ, ପତିତ, ନିପେଷିତ ଜନତାର ବିକାଶ ପାଇଁ କେତେକ ଅଭିନବ ରାସ୍ତା ସାରା ବିଶ୍ୱକୁ ପ୍ରଦର୍ଶନ କରିଛନ୍ତି । ତାଙ୍କର ଭୂଦାନ ତଥା ସର୍ବୋଦୟ ଆନ୍ଦୋଳନ ଆଜି ପର୍ଯ୍ୟନ୍ତ ଏକ ଅନନ୍ୟ ପ୍ରୟୋଗ ଭାବେ ବିଶ୍ୱବାସୀଙ୍କ ସମ୍ମୁଖରେ ଉଦାହରଣ ହୋଇ ରହିଛି । ବିନୋବାଜୀଙ୍କୁ ୧୯୮୩ ମସିହାରେ ମରଣୋତ୍ତର ଭାରତରତ୍ନ ଉପାଧିରେ ସମ୍ମାନିତ କରାଯାଇଥିଲା ।

***

# ଖାଁ ଅବ୍ଦୁଲ୍ ଗଫର ଖାଁ



୧୮୯୦–୧୯୮୮

ଭାରତ ରତ୍ନ ୧୯୮୭

**ଖାଁ** ଅବ୍ଦୁଲ୍ ଗଫର ଖାଁ ବାଦ୍‌ଶାହା ଖାଁ ନାମରେ ହିଁ ପରିଚିତ ଥିଲେ । ଭରତୀୟ ସ୍ୱାଧୀନତା ଆନ୍ଦୋଳନ ଇତିହାସରେ ତାଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି । ଭାରତରେ ବ୍ରିଟିଶ୍ ରାଜ୍ ଚାଲୁଥିବା ସମୟରେ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ଥିବା ହସ୍ତନଗରର ଉତ୍‌ମାଞ୍ଜାଇ ଗ୍ରାମରେ ବାଦ୍‌ଶାହା ଖାଁ ଜନ୍ମ ଗ୍ରହଣ କରିଥିଲେ । ସେ ଅଞ୍ଚଳର ପଠାଣ୍ ମୁଖିଆମାନଙ୍କ ପରିବାରରେ ତାଙ୍କର ଜନ୍ମ ହୋଇଥିଲା । ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ଏକ ପଛୁଆ ରାଜ୍ୟ । ତାର ଅଧିବାସୀମାନେ ଅତି ଗରିବ ଥିଲେ । କୃଷି ସେ ଅଞ୍ଚଳର ମୁଖ୍ୟ ଜୀବିକା ହୋଇଥିଲେ ହେଁ କୃଷିର ବିକାଶ ତଥା ଉତ୍ପାଦନ ବୃଦ୍ଧି କରିବା ପାଇଁ ସରକାର କୌଣସି ପଦକ୍ଷେପ ନେଉ ନ ଥିଲେ ।

ଲୋକମାନଙ୍କୁ କୃଷି ବୈଷୟିକ ଜ୍ଞାନ କୌଶଳ ଦେବାପାଇଁ ମଧ କୌଣସି ବ୍ୟକ୍ତି ନ ଥିଲେ । ଉନ୍ନତ ବିହନ କିମ୍ବା ସାର ତାଙ୍କୁ ଯୋଗାଇ ଦିଆଯାଉନଥିଲା । ଫଳରେ ସେଠିକାର ଅଧିବାସୀ ମାନେ ଅତି ଦୟନୀୟ ଜୀବନଯାପନ କରୁଥିଲେ । ପିଲାମାନେ ପଢ଼ିବା ପାଇଁ ସ୍କୁଲ୍ ନ ଥିଲା କିମ୍ବା ପାଠପଢ଼ି କୌଣସି ଠାରେ ଜୀବିକା ଅର୍ଜନ କରିବା ପାଇଁ ସୁଯୋଗ ନ ଥିଲା । ସେ ଅଞ୍ଚଳକୁ ଗରିବ ଏବଂ ଦୁର୍ବଳ କରି ରଖିବା ବ୍ରିଟିଶ୍ ସାମ୍ରାଜ୍ୟର ଏକ ସୁଚିନ୍ତିତ ଯୋଜନା ଥିଲା ।

ବାଦ୍‌ଶାହା ଖାଁ ଙ୍କର ପିତାଜୀ ଖାଁ ବୈରାମ୍ ଖାଁ ଜଣେ ଦୟାଶୀଳ ଏବଂ ଧର୍ମପରାୟଣ ବ୍ୟକ୍ତି ଥିଲେ । ସେ ଗରିବ ମାନଙ୍କର କଲ୍ୟାଣ ପାଇଁ ଅନେକ କାର୍ଯ୍ୟ କରିଥିଲେ । ତାଙ୍କର ଜେଜେବାପା ଖାଁ ସୈଫୁଲା ଖାଁ ସେହିପରି ସେବା ଏବଂ ତ୍ୟାଗ ମନୋଭାବର ଥିଲେ । ଅତଏବ ବାଦ୍‌ଶାହା ଖାଁ ଗୋଟିଏ ଉତ୍ସର୍ଗୀକୃତ ସେବା ମନୋଭାବ ସମ୍ପନ୍ନ ପରିବାର ଏବଂ ପରିବେଶରେ ବଢ଼ିବାର ସୁଯୋଗ ପାଇଥିଲେ ।

ବାଦ୍‌ଶାହା ଖାଁ ପେଶ୍‌ୱାର ସ୍ଥିର ମୁନିସ୍‌ପାଲିଟି ସ୍କୁଲ୍‌ରେ ତାଙ୍କର ପ୍ରାଥମିକ ଶିକ୍ଷା ଲାଭ କରିବା ପରେ ପେଶଓ୍ୱାର ସ୍ଥିତ ଏଡ୍‌ଓ୍ୱାର୍ଡ ମେମୋରିଆଲ ମିଶନ ସ୍କୁଲ୍‌ରେ ଭର୍ତ୍ତିହେଲେ । ପେଶ୍ୱାର ଠାରେ ବ୍ରିଟିଶ ସରକାରଙ୍କର ସୈନ୍ୟବାହିନୀର ଗୋଟିଏ ଦଳ ରହୁଥାନ୍ତି । ସେମାନଙ୍କୁ ଦେଖିବା ପରେ ବାଦ୍‌ଶାହା ଖାଁ ସୈନ୍ୟବାହିନୀରେ ଯୋଗଦେବାକୁ ମନସ୍ଥ କଲେ । ବାଦଶାହା ଖାଁ ଜଣେ ସୁସ୍ଥ ସବଳ ଦୀର୍ଘକାୟ ବ୍ୟକ୍ତି ଥିଲେ । ସେ ସୈନ୍ୟବାହିନୀରେ ଯୋଗ ଦେବାପାଇଁ ଦରଖାସ୍ତ ଦେବା ସଙ୍ଗେ ସଙ୍ଗେ ବ୍ରିଟିଶ୍ ସରକାର ତାହା ଗ୍ରହଣ କଲେ । ତେବେ ଖୁବ୍ ଶୀଘ୍ର ତାଙ୍କର ସ୍ୱପ୍ନ ଭାଙ୍ଗି ଚୁରମାର୍ ହୋଇଗଲା । ଜଣେ ବ୍ରିଟିଶ୍ ଲେଫ୍ଟନାଣ୍ଟ ତାଙ୍କର ଜଣେ ପଠାନ୍ ବନ୍ଧୁଙ୍କୁ ଗାଳିଦେଇ ଅପମାନିତ କରିଥିବାର ଦେଖିଲେ । ଏହା ଦେଖିବା ପରେ ସେ ସୈନ୍ୟବାହିନୀରୁ ଇସ୍ତଫା ଦେଇ ପୁନର୍ବାର ପାଠପଢ଼ାରେ ମନ ଦେଲେ । କାମ୍ବେଲପୁର୍‌ରେ ଥିବା ହାଇସ୍କୁଲ୍‌ରେ ସେ ଯୋଗଦେଲେ କିନ୍ତୁ ସେଠିକାର ଜଳବାୟୁ ସହିତ ସେ ନିଜକୁ ଖାପ ଖୁଆଇ ପାରିଲେ ନାହିଁ । ତେଣୁ ଆଲିଗଡ଼ ଯାଇ ହାଇସ୍କୁଲ୍‌ରେ ନାମ ଲେଖାଇଲେ । ବାଦ୍‌ଶାହା ଖାଁଙ୍କର ବଡ଼ଭାଇ ଡ଼କ୍ଟର ଖାଁସାହାବ ତାଙ୍କର ପାଠପଢ଼ା ଛାଡ଼ି ଇଂଲଣ୍ଡରେ ଚାକିରୀ କରୁଥାନ୍ତି । ବାଦ୍‌ଶାହା ଖାଁ ଇଂଲଣ୍ଡ ଆସି ପାଠ ପଢ଼ିବା ପାଇଁ ସେ ପରାମର୍ଶ ଦେଲେ । ବାଦ୍‌ଶାହା ଖାଁ ପ୍ରସ୍ତୁତ ହେଲେ ଏବଂ ଘର ଛାଡ଼ିଲା ବେଳକୁ ମା ଙ୍କ ଆଶୀର୍ବାଦ ନେବାପାଇଁ ଗଲାବେଳେ ମା କାନ୍ଦିକାନ୍ଦି ତାଙ୍କୁ ନ ଯିବାପାଇଁ ଅନୁରୋଧ କଲେ । ମା ଙ୍କ ଆଖିରେ ଲୁହ ଦେଖି ବାଦ୍‌ଶାହା

ନିଜ କୋହ ସମ୍ଭାଳି ପାରିଲେ ନାହିଁ । ଫଳରେ ସେ ଇଂଲଣ୍ଡ ନ ଯାଇ ସାରା ଜୀବନ ଦେଶ ଏବଂ ଦେଶବାସୀଙ୍କ ପାଇଁ କାମ କରିବାକୁ ଦୃଢ଼ ନିଶ୍ଚିତ ହେଲେ ।

ବାଦ୍‌ଶାହା ଖାଁ ତାଙ୍କ ପାଖଆଖ ଲୋକଙ୍କର ସମସ୍ୟା ଦୂର କରାଇବା ପାଇଁ ମନସ୍ଥ କଲାବେଳେ ତାଙ୍କର ଦୁଃଖ ଦୁର୍ଦ୍ଦଶା ଦେଖି ମର୍ମାହତ ହେଲେ । ବ୍ରିଟିଶ୍ ସରକାର ସୀମାନ୍ତ ପ୍ରଦେଶର ଲୋକମାନଙ୍କ ପାଇଁ ଯେଉଁ ଶକ୍ତ ଆଇନ୍ କାନୁନ୍ ପ୍ରଚଳନ କରିଥିଲେ ତା ଫଳରେ ଯେ କୌଣସି ଲୋକଙ୍କୁ ଯେ କୌଣସି ସମୟରେ ବନ୍ଦୀ ହୋଇ ଜେଲ୍ ଭୋଗିବାକୁ ପଡୁଥିଲା । ଯେ କୌଣସି ଛୋଟ ମୋଟ ଅପରାଧର ସନ୍ଦେହ ହେଲେ ଲୋକମାନଙ୍କୁ ବେତ୍ରାଘାତ କରାଯାଉଥିଲା । ବିଭିନ୍ନ ପ୍ରକାରର କୌଶଳ ପ୍ରୟୋଗ କରି ବ୍ରିଟିଶ୍‌ମାନେ ପଠାନ୍ ମାନଙ୍କୁ ବିଭାଜିତ କରି ରଖିଥିଲେ । ସେମାନେ ଯେପରି ସଂପୂର୍ଣ୍ଣ ଭାବରେ ତାଙ୍କର ଅନୁଗତ ରହିବେ ସେଥିପାଇଁ ସେ ଅନେକ ପ୍ରକାରର ଚକ୍ରାନ୍ତ କରିଥିଲେ ।

ମୌଲାନା ଆବୁଲ୍ କାଲାମ ଆଜାଦଙ୍କ ଦ୍ୱାରା ପ୍ରଚାରିତ ସମ୍ବାଦ ପତ୍ର 'ଅଲ୍‌ହିଲାଲ୍' ବାଦ୍‌ଶାହା ଖାଁ ପଢ଼ିଥିଲେ । ଏହି ସମ୍ବାଦପତ୍ର ସ୍ୱାଧୀନତା, ଗଣତନ୍ତ୍ର ଏବଂ ନ୍ୟାୟ ବିଚାର ଆଦି ବିଷୟରେ ଲୋକମାନଙ୍କୁ ଅବଗତ କରାଉଥିଲା । ଲୋକମାନଙ୍କଉପରେ ବ୍ରିଟିଶ୍ ସରକାର କରୁଥିବା ନିର୍ମମ ଅତ୍ୟାଚାର ଏବଂ ଅବିଚାର ବିରୁଦ୍ଧରେ ଏହି ପତ୍ରିକାରେ ଲେଖା ପ୍ରକାଶିତ ହେଉଥିଲା । ୧୯୧୨ ମସିହାରେ ଜଣେ ସୁନ୍ଦରୀ ପଠାଣ ବାଳିକାଙ୍କୁ ବାଦ୍‌ଶାହା ଖାଁ ବିବାହ କଲେ । ୧୯୧୩ ମସିହାରେ ପୁତ୍ର ଖାଁ ଅବଦୁଲ୍ ସମୀର ଖାଁ ଜନ୍ମ ହେଲେ । ସେତେବେଳେ ଭାରତରେ ମୁସ୍‌ଲିମ୍ ଲିଗ୍ ରାଜନୈତିକ କ୍ଷେତ୍ରରେ ତାର ଅସ୍ତିତ୍ୱ ଜାହିର୍ କରିସାରିଥାଏ । ବାଦ୍‌ଶାହା ଖାଁ ଙ୍କର ମନେହେଲା ଯେ ମୁସ୍‌ଲିମ୍ ଲିଗ୍ ମଧ୍ୟ ବ୍ରିଟିଶ୍‌ରାଜ୍ ବିରୁଦ୍ଧରେ ସଂଗ୍ରାମ କରୁଛି ଏବଂ ଏହି ଦଳ ପଠାନ୍ ମାନଙ୍କର ବିଭିନ୍ନ ସମସ୍ୟାକୁ ଦୂର କରିପାରିବ । କିନ୍ତୁ ଖୁବ୍ ଶୀଘ୍ର ସେ ଜାଣିବାକୁ ପାଇଲେ ମୁସ୍‌ଲିମ୍‌ଲିଗ୍ ବ୍ରିଟିଶ୍‌ମାନଙ୍କ ମନ୍ତ୍ରଣାରେ ହିଁ କାର୍ଯ୍ୟ କରୁଥିଲା । ସେ ହୃଦୟଙ୍ଗମ କଲେ ଯେ ମୁସ୍‌ଲିମ୍‌ଲିଗ୍‌ର ମୁଖ୍ୟ ଉଦ୍ଦେଶ୍ୟ ଜନସାଧାରଣଙ୍କୁ ଭାରତୀୟ ସ୍ୱାଧୀନତା ସଂଗ୍ରାମରୁ ଏବଂ ଭାରତୀୟ ଜାତୀୟ କଂଗ୍ରେସର ମୁଖ୍ୟସ୍ରୋତରୁ ଅଲଗା କରି ରଖିବା । ଫଳରେ ବାଦ୍‌ଶାହା ଖାଁଙ୍କର ଏହି ପାର୍ଟିପ୍ରତି ମୋହ ଭଙ୍ଗ ହେଲା । ମାନସିକ ସ୍ତରରେ ସେ ଖୁବ୍ ଅବସାଦଗ୍ରସ୍ତ ହେଲେ । ତା ପର ଠାରୁ ବାଦ୍‌ଶାହା ଖାଁଙ୍କର ପ୍ରତ୍ୟେକଟି କାର୍ଯ୍ୟକ୍ରମ ଉପରେ ବ୍ରିଟିଶ୍ ଗୋଇନ୍ଦାଙ୍କର ତୀକ୍ଷ୍ଣ ନଜର ରହିଲା । ସେ ଏବଂ ତାଙ୍କର ସହକର୍ମୀମାନଙ୍କୁ ବ୍ରିଟିଶ୍ ପୋଲିସ୍ ବନ୍ଦୀ କରି ଜେଲ୍‌ରେ ରଖିଲା । ଜେଲ୍‌ରେ ତାଙ୍କ ଉପରେ ଅକଥନୀୟ ଅତ୍ୟାଚାର କରାଗଲା । ତାଙ୍କୁ ବାରମ୍ବାର

ରାଜନୈତିକ କାର୍ଯ୍ୟକଳାପରୁ ଦୂରେଇ ରହିବା ପାଇଁ ପରାମର୍ଶ ଦିଆଗଲା । କିନ୍ତୁ ପ୍ରତ୍ୟେକ ଥର ବ୍ରିଟିଶ୍ ମାନଙ୍କର ପରାମର୍ଶକୁ ସେ ଅଗ୍ରାହ୍ୟ କଲେ ଏବଂ ତା ସହିତ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ପାଇଁ ତାଙ୍କର ପ୍ରତିଜ୍ଞା ଆହୁରି ତୀବ୍ର ହେଲା ।

ତାଙ୍କୁ ଏକାକୀ ବନ୍ଦୀଶାଳାରେ କିଛି ମାସ ରଖିବା ପରେ ଉତ୍ତରପଶ୍ଚିମ ସୀମାନ୍ତରେ ଥିବା ଡ଼େରା ଇସ୍‌ମାଇଲ୍ ଖାଁ ନାମକ ବନ୍ଦୀଶାଳାକୁ ପଠାଇ ଦିଆଗଲା । ଏଠାରେ ସେ ସାଧାରଣ କଏଦୀମାନଙ୍କ ସହିତ ରଖାଗଲେ । ସେହି ଜେଲ୍‌ରେ ଥିବା କଏଦୀମାନେ ଖୁବ୍ ଗରିବ ଏବଂ ଅଶିକ୍ଷିତ । ଅତି ଛୋଟ ଛୋଟ ଦୋଷ ପାଇଁ ତାଙ୍କୁ ଜେଲ୍ ଦଣ୍ଡ ଭୋଗିବାକୁ ପଡୁଥିଲା । ସେଠାରେ ଥିବା ବେଳେ ବାଦ୍‌ଶାହା ଖାଁ କଏଦୀମାନଙ୍କୁ ତାଙ୍କର ବଦ୍‌ଗୁଣ ଗୁଡ଼ିକ ତ୍ୟାଗ କରି ଦେଶ ପାଇଁ ଲଢ଼ିବା ପାଇଁ ପ୍ରବର୍ତ୍ତାଇଲେ । ସେ କଏଦୀମାନଙ୍କ ଉପରେ ଏପରି ପ୍ରଭାବ ବିସ୍ତାର କଲେ ଯେ ଶେଷରେ ବାଧ ହୋଇ ତାଙ୍କୁ ସେଠାରୁ ଆଣି ଡ଼େରା ଗାଜିଖାନ୍ ଜେଲ୍‌ରେ ରାଜନୈତିକ ବନ୍ଦୀ ମାନଙ୍କ ସହିତ ରଖାଗଲା । ଶେଷରେ ୧୯୨୪ ମସିହାରେ ତାଙ୍କୁ ଜେଲ୍‌ରୁ ମୁକ୍ତ କରାଗଲା ଏବଂ ସଶସ୍ତ୍ର ବାହିନୀଙ୍କ ସାଙ୍ଗରେ ତାଙ୍କ ଗାଁକୁ ଅଣାଗଲା । ତାଙ୍କର ପ୍ରତ୍ୟାବର୍ତ୍ତନ ଖବର ବନାଗ୍ନିପରି ଚାହୁଁ ଚାହୁଁ ଚାରିଆଡ଼େ ବ୍ୟାପିଗଲା । ସେହିଦିନ ସନ୍ଧ୍ୟାବେଳେ ହଜାର ହଜାର ଲୋକଙ୍କ ଗହଣରେ ଏକ ସଭା କରାଯାଇ ତାଙ୍କୁ ହଥଡ଼୍ ଇ ଆଫ୍‌ଗାନରେ ଭୂଷିତ କରାଗଲା । ୧୯୨୮ ମସିହାରେ ବାଦ୍‌ଶାହା ଖାଁ ଲକ୍ଷ୍ନୌ ଆସି ମହାତ୍ମା ଗାନ୍ଧି ଏବଂ ପଣ୍ଡିତ୍ ଜବାହାର୍‌ଲାଲ୍ ନେହେରୁଙ୍କ ସହ ସାକ୍ଷାତ କଲେ । ପଣ୍ଡିତ ନେହେରୁଙ୍କ ସାଙ୍ଗରେ ସେ ଦୀର୍ଘଦିନ ଆଫ୍‌ଗାନିସ୍ଥାନ ବିଷୟରେ ଆଲୋଚନା କଲେ । ମୌଲାନା ଆବୁଲ କାଲାମ ଆଜାଦ୍ ଆଦି ଅନେକ ନେତୃବୃନ୍ଦଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଏହା ପରେ ସେ ହୃଦୟଙ୍ଗମ କଲେ ଯେ ପ୍ରକୃତରେ ଭାରତର ସ୍ୱାଧୀନତା ପାଇଁ ଏଇମାନେ ହିଁ ଲଢୁଛନ୍ତି ଏବଂ ଏଇମାନେ ହିଁ ଭାରତବାସୀଙ୍କର ଦୁଃଖ ସମସ୍ୟା ସମାଧାନ କରିପାରିବେ । ମହାତ୍ମାଗାନ୍ଧିଙ୍କ ଦ୍ୱାରା ବାଦ୍‌ଶାହା ଖାଁ ଖୁବ୍ ପ୍ରଭାବିତ ହୋଇଥିଲେ । ସେ ତାଙ୍କ ଦ୍ୱାରା ଏତେ ମାତ୍ରାରେ ପ୍ରଭାବିତ ହୋଇ ଗାନ୍ଧିନୀତି ଅବଲମ୍ବନ କଲେ ଯେ ଲୋକମାନେ ତାଙ୍କୁ 'ସୀମାନ୍ତ ଗାନ୍ଧୀ' ନାମରେ ଅଭିହିତ କଲେ ।

୧୯୨୯ ମସିହାରେ ବାଦ୍‌ଶାହା ଖାଁ ଏକ ସଂଗଠନ ଗଢ଼ିଲେ । ତାର ନାମ ଥିଲା ଖୁଦାଇ ଖିଦ୍‌ମତ କାର । ଅର୍ଥାତ୍ ଭଗବାନଙ୍କର ଭୃତ୍ୟ । ପ୍ରଭୁଙ୍କ ଭୃତ୍ୟ । ସେମାନେ ନାଲି ପୋଷାକ ପିନ୍ଧୁଥିଲେ । ତାଙ୍କୁ ଲାଲ୍ ଡ଼ଗଲେ ବାଲେ କୁହାଯାଉଥିଲା । ଏଇ ଦଳରେ ସାମିଲ ହେବାକୁ ହେଲେ ପ୍ରଥମେ ଅହିଂସାର ଦୀକ୍ଷା ନେବାକୁ ପଡୁଥିଲା । ଖୁଦାଇ ଖିଦ୍‌ମଦ୍‌ଗାର୍

ଆନ୍ଦୋଳନ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶର ଚାରିଆଡ଼େ ବ୍ୟାପକ ହେଲା । ୧୯୨୯ ଡ଼ିସେମ୍ବର ମାସରେ ଲାହୋର ଠାରେ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନ ଅନୁଷ୍ଠିତ ହେବାର ଥାଏ । ବାଦ୍‌ଶାହା ଖାଁ ସେ ଅଧିବେଶନରେ ଅନ୍ୟ କେତେକ ପଠାନ୍‌ଙ୍କ ସହିତ ମିଶି ଯୋଗ ଦେଇଥିଲେ । ଏହି ଅଧିବେଶନରେ 'ଖୁଦାଇ ଖିଦ୍‌ମଦ୍‌ଗାର୍' ଦଳ ଭାରତର ସଂପୂର୍ଣ୍ଣ ସ୍ୱାଧୀନତା ପାଇଁ କାର୍ଯ୍ୟରତ ହେବା ପାଇଁ ଶପଥ ନେଲା । ଏହା ପରେ ସେ ଗାଁ ଗାଁ ବୁଲି ଏହି ଦଳର ସଂଖ୍ୟା ବୃଦ୍ଧି କରିବାରେ ଲାଗିଲେ । ଏହି ଦଳର ଆନ୍ଦୋଳନକୁ ପ୍ରସାରିତ କରିବାରେ ଲାଗିଲେ । ତାଙ୍କର ଏହି ଉଦ୍ୟମ ବ୍ରିଟିଶ୍ ପୋଲିସ ଏବଂ ସି.ଆଇ.ଡ଼ିଙ୍କ ଦୃଷ୍ଟିରେ ପଡୁଥିଲେ ହେଁ ସେମାନେ ତାଙ୍କୁ ପ୍ରତିରୋଧ କରି ପାରିନଥିଲେ ।

କିଛିଦିନ ପରେ ବାଦ୍‌ଶାହା ଖାଁ ପୁନର୍ବାର ବନ୍ଦୀ ହେଲେ । ୩ ବର୍ଷ ସଶ୍ରମ କାରାଦଣ୍ଡରେ ଦଣ୍ଡିତ ହେଲେ । ସେ ପଞ୍ଜାବର ଗୁଜୁରାଟ ଜେଲ୍‌ଖାନାକୁ ପଠାଗଲେ । ଜେଲ୍‌ରେ ଥିଲାବେଳେ ଦେଶର ଅନ୍ୟାନ୍ୟ ନେତୃବର୍ଗଙ୍କ ସହିତ ତାଙ୍କର ସାକ୍ଷାତ ହେଲା ଏବଂ ସେ ବିଭିନ୍ନ ରାଜନୈତିକ ସମସ୍ୟା ବିଷୟରେ ସେମାନଙ୍କ ସହିତ ଆଳାପ ଆଲୋଚନା କରିବାକୁ ସୁଯୋଗ ପାଇଲେ । ଜେଲ୍ ରହଣି ଭିତରେ ସେ ବାଇବେଲ୍, ଭାଗବତ ଗୀତା, ଗୁରୁ ଗ୍ରନ୍ଥ ସାହେବ ପାଠ କରି ହୃଦୟଙ୍ଗମ କଲେ ଯେ ପ୍ରତ୍ୟେକ ଧର୍ମଗ୍ରନ୍ଥ କେବଳ ଗୋଟିଏ କଥାରେ ବିଶ୍ୱାସ କରେ ତାହା ହେଉଛି ପ୍ରତ୍ୟେକ ଜୀବନ୍ତ ପ୍ରାଣୀଙ୍କୁ ପ୍ରେମ, ସ୍ନେହ, ଦୟା ଏବଂ କ୍ଷମା ସୂତ୍ରରେ ବାନ୍ଧି ରଖିବା । ଭାରତୀୟ ଜାତୀୟ କଂଗ୍ରେସ ପଠାନ୍ ମାନଙ୍କୁ ସମସ୍ତ ସହଯୋଗ ଏବଂ ସୁବିଧା ଯୋଗାଇ ଦେବାପାଇଁ କବାବ୍ ଦେଇଥିଲା ଏବଂ ତାର ପ୍ରତିବଦଳରେ 'ଖୋଦାଇ ଖିଦ୍‌ମଦ୍‌ଗାର୍' ଭାରତର ସ୍ୱାଧୀନତା ପାଇଁ ପ୍ରତିଶ୍ରୁତି ବଦ୍ଧ ହେଲା । ଅତିଶୀଘ୍ର ବ୍ରିଟିଶ୍ ସରକାର ଅନୁଭବ କଲେ ଯେ କଂଗ୍ରେସ ଠାରୁ 'ଖୋଦାଇ ଖିଦ୍‌ମଦ୍‌ଗାର୍'କୁ ବିଚ୍ଛିନ୍ନ କରିବା ଏକାନ୍ତ ଆବଶ୍ୟକ । ସେମାନେ ଏ ଦୁହିଁଙ୍କ ଭିତରେ ବିଭେଦ ସୃଷ୍ଟି କରିବା ପାଇଁ ପ୍ରଚାର କଲେ ଯେ ଭାରତୀୟ ଜାତୀୟ କଂଗ୍ରେସ ହିନ୍ଦୁମାନଙ୍କର ଏକ ଦଳ ଏବଂ 'ଖୋଦାଇ ଖିଦ୍‌ମଦ୍‌ଗାର' ମୁସଲମାନଙ୍କର ଦଳ ହୋଇଥିବାରୁ ଏମାନେ ଏକତ୍ର କାର୍ଯ୍ୟ କରିବା ଅନୁଚିତ । ବ୍ରିଟିଶ୍‌ଙ୍କ ମତରେ ଭାରତୀୟ ଜାତୀୟ କଂଗ୍ରେସ ତାଙ୍କର ନିଜର ସ୍ୱାଧୀନତା ପାଇଁଚେଷ୍ଟା କରିବେ ଏବଂ ତା ପାଇଯିବା ପରେ ସେମାନେ 'ଖୋଦେଇ ଖିଦ୍‌ମଦ୍‌ଗାରେ' ମାନଙ୍କର ସ୍ୱାର୍ଥ କଥା ଭୁଲିଯିବେ । ତେବେ ସୁଖର କଥା ଯେ ଏ ସବୁ ଅପପ୍ରଚାର ଶୁଣିବା ପରେ ମଧ ବ୍ରିଟିଶ୍ ସରକାରଙ୍କ ଚାଲ୍‌ରେ ଭୁଲି ନ ଯାଇ ଖୋଦାଇ ଖିଦ୍‌ମଦ୍‌ଗାର ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ଆପ୍ରାଣ ଉଦ୍ୟମ ଜାରି ରଖିଲେ ।



୧୯୩୦ ମସିହାରେ ବିଶଲ ଭାଇ ପଟେଲ କଂଗ୍ରେସ ନେତାମାନଙ୍କର ଏକ ପ୍ରତିନିଧିଦଳକୁ ସୀମାନ୍ତ ପ୍ରଦେଶକୁ ପଠାଇଥିଲେ । ବ୍ରିଟିଶ୍ ଶାସକମାନେ ଏହି ପ୍ରତିନିଧି ଦଳ ଯେପରି ସୀମାନ୍ତ ପ୍ରଦେଶରେ ପହଞ୍ଚି ନପାରିବ ସେଥିପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । କିନ୍ତୁ ଉଦ୍ୟମ ବିଫଳ ହେଲା । ସେହି ଦଳ ସ୍ଥାନୀୟ ଅର୍ଥନୈତିକ ଅବସ୍ଥା ଏବଂ ପୋଲିସ୍‌ର ଅତ୍ୟାଚାର ତଥା ସେନାବାହିନୀର ହିଂସାତ୍ମକ କାର୍ଯ୍ୟକଳାପ ବିଷୟରେ ଅଧ୍ୟୟନ କଲେ । ପରେ ଏହି ଦଳ ତାଙ୍କ ପରିଦର୍ଶନର ଏକ ରିପୋର୍ଟ ଲେଖି ଭାରତର ବିଭିନ୍ନ ସମ୍ବାଦ ପତ୍ରରେ ପ୍ରକାଶ କଲେ । ବ୍ରିଟିଶ୍ ସରକାର ତୁରନ୍ତ ଏହିସବୁ ପ୍ରକାଶନ ଉପରେ ନିଷେଧାଜ୍ଞା ଜାରି କଲେ । କିନ୍ତୁ କଂଗ୍ରେସ ଦଳ ଗୁପ୍ତ ଭାବରେ ଏହିସବୁ ଖବର ଏବଂ ରିପୋର୍ଟକୁ ଆମେରିକା ଏବଂ ଇଂଲଣ୍ଡକୁ ପଠାଇ ବିଭିନ୍ନ ଅନ୍ତଃରାଷ୍ଟ୍ରୀୟ ଖବର କାଗଜରେ ପ୍ରକାଶ କରିଥିଲେ । ଫଳରେ ସୀମାନ୍ତ ପ୍ରଦେଶ ଅନ୍ତଃରାଷ୍ଟ୍ରୀୟ ସମୁଦାୟର ଦୃଷ୍ଟି ଆକର୍ଷଣ କଲା । ଏହା ପରେ ବ୍ରିଟିଶ୍ ସରକାର କଂଗ୍ରେସ ଏବଂ ଖୁଦାଇ ଖିଦ୍‌ମଦ୍‌ଗାର ମଧ୍ୟରେ ବିଭେଦ ସୃଷ୍ଟି କରିବା ପାଇଁ ଅନ୍ୟ ଏକ ଚାଲ୍ ଖେଳିଲା । ସେ କଂଗ୍ରେସର ଦ୍ୱାରସ୍ଥ ହୋଇ ଖୁଦାଇ ଖିଦ୍‌ମଦ୍‌ଗାର ମୁସ୍‌ଲିମ୍ ଲିଗ୍‌ଦ୍ୱାରା ପରିଚାଳିତ ବୋଲି ପ୍ରଚାର କଲା । ଖୁଦାଇ ଖିଦ୍‌ମଦ୍‌ଗାର ସହିତ ସଂପର୍କ ରଖିଲେ ତାହା ଭାରତ ବର୍ଷରେ ହିନ୍ଦୁ ମୁସ୍‌ଲିମ୍ ମଧ୍ୟରେ ଥିବା ପ୍ରଭେଦକୁ ଆହୁରି ଗାଢ଼ କରିବ ବୋଲି ସେମାନେ କହିଲେ । ମହାତ୍ମାଗାନ୍ଧି, ପଣ୍ଡିତ ଜବାହାରଲାଲ୍ ନେହେରୁ, ଅବୁଲ କାଲାମ୍ ଆଜାଦ୍ – ଏମାନେ ବ୍ରିଟିଶ୍ ସରକାରଙ୍କ ଚକ୍ରାନ୍ତ କଥା ବୁଝିପାରିଲେ ଏବଂ ଖୁଦାଇ ଖିଦ୍‌ମଦ୍‌ଗାରକୁ ସମର୍ଥନ କରିବା ଚାଲୁ ରଖିଲେ ।

୧୯୩୧ ମସିହାରେ ଐତିହାସିକ ଗାନ୍ଧୀ–ଇର୍‌ୱଇନ୍ ସନ୍ଧି ହେଲା । ଅନେକ ରାଜନୈତିକ ନେତୃବୃନ୍ଦ ଜେଲ୍‌ରୁ ମୁକ୍ତି ପାଇଲେ । କିନ୍ତୁ ବାଦ୍‌ଶାହା ଖାନ୍‌ଙ୍କୁ ମୁକ୍ତି ମିଳିଲା ନାହିଁ । ମୁସ୍‌ଲିମ୍ ଲିଗ୍‌ର ଏକ ପ୍ରତିନିଧି ଦଳ ବାଦ୍‌ଶାହା ଖାନ୍‌ଙ୍କୁ ଜେଲ୍‌ରେ ସାକ୍ଷାତ କରି କଂଗ୍ରେସ୍ ପାର୍ଟିଠାରୁ ସଂପର୍କ ଛିନ୍ନ କରିବା ପାଇଁ ପ୍ରବର୍ତ୍ତାଇଲେ । କିନ୍ତୁ ବାଦ୍‌ଶାହା ଖାଁ ଏହି ପ୍ରତିନିଧି ଦଳକୁ ସାକ୍ଷାତ କରିବା ପାଇଁ ମନା କରିଦେଲେ । ବାଦ୍‌ଶାହା ଖାଁ ତଥାପି ଜେଲ୍‌ରେ ରହିଥିବା କଥା ମହାତ୍ମା ଗାନ୍ଧିଙ୍କୁ କୁହାଗଲା । ଲର୍ଡ ଇରଉଇନ୍‌ଙ୍କୁ ମହାତ୍ମାଗାନ୍ଧି

ଭେଟି ବାଦ୍‌ଶାହା ଖାଁଙ୍କୁ ତୁରନ୍ତ ଖଲାସ କରିବା ପାଇଁ ଜଣାଇଲେ । ପ୍ରଥମେ ଲର୍ଡ ଇର୍‌ୱଇନ୍ ତାଙ୍କର ଅନୁରୋଧକୁ ପ୍ରତ୍ୟାଖ୍ୟାନ କଲେ ହେଁ ମହାତ୍ମା ଗାନ୍ଧିଙ୍କର ବାରମ୍ବାର ହସ୍ତକ୍ଷେପ ଫଳରେ ଶେଷରେ ବାଦ୍‌ଶାହା ଖାଁଙ୍କୁ ମୁକ୍ତି ଦିଆଗଲା ।

ଜେଲ୍‌ରୁ ମୁକ୍ତି ପାଇ ବାଦ୍‌ଶାହା ଖାଁ ଯେତେବେଳେ ସୀମାନ୍ତ ପ୍ରଦେଶରେ ଆସି ପହଞ୍ଚିଲେ ତାଙ୍କୁ ସେଠାରେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଗଲା । ଲୋକମାନେ ଯେତେବେଳେକୁ ଆହୁରି ଦରିଦ୍ର ଏବଂ ଦୁର୍ବଳ ହୋଇସାରିଥାନ୍ତି । କିନ୍ତୁ ସ୍ୱାଧୀନତା ସଂଗ୍ରାମ ପାଇଁ ଥିବା ତାଙ୍କର ମନୋବଳ ଦୃଢ଼ ଥାଏ । ବାଦ୍‌ଶାହା ଖାଁ ସେମାନଙ୍କୁ ପୁଣି ଥରେ ଉଠି ଯୁଦ୍ଧ କରିବା ପାଇଁ ପ୍ରୋତ୍ସାହିତ କଲେ । ଏହାପରେ ସର୍ବଭାରତୀୟ କଂଗ୍ରେସ କମିଟି ଅଧିବେଶନ ୧୯୩୧ ମସିହାରେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ସଭାପତିତ୍ୱରେ କରାଚୀଠାରେ ଅନୁଷ୍ଠିତ ହେଲା । ହଜାର ହଜାର 'ଖୋଦାଇ ଖିଦ୍‌ମଦ୍‌ଗାର' ସଭ୍ୟ ତହିଁରେ ଯୋଗଦେଲେ । କଂଗ୍ରେସ କାର୍ଯ୍ୟକାରୀ କମିଟିରେ ବାଦ୍‌ଶାହା ଖାଁଙ୍କୁ ସଭ୍ୟଭାବେ ଗ୍ରହଣ କରାଗଲା । ସେ କଂଗ୍ରେସର ଜାତୀୟ ଆନ୍ଦୋଳନରେ ଭାଗ ନେବା ବିଷୟ ବିଭିନ୍ନ ଖବର କାଗଜରେ ବହୁଳ ଭାବେ ପ୍ରଚାରିତ ହେଲା । ସାରା ଦେଶରେ ତାଙ୍କ ନାମ ଖୁବ୍ ଜଣାଶୁଣା ହୋଇ ସାରିଥାଏ । ତାଙ୍କୁ ଧୀରେ ଧୀରେ ଲୋକେ ସୀମାନ୍ତ ଗାନ୍ଧି ରୂପେ ଜାଣିବାକୁ ପାଇଲେ । ସମଗ୍ର ଦେଶର ଲୋକେ ତାଙ୍କୁ ସ୍ନେହ ଏବଂ ଭକ୍ତି କରୁଥିଲେ । ବ୍ରିଟିଶ୍ ବାରମ୍ବାର ତାଙ୍କୁ କଂଗ୍ରେସ ବିରୁଦ୍ଧରେ ପ୍ରବର୍ତ୍ତାଇବା ପାଇଁ ଚେଷ୍ଟା କଲା । କିନ୍ତୁ ସେ ତାଙ୍କ ସିଦ୍ଧାନ୍ତରେ ଅଟଳ ଥିଲେ । ତେଣୁ ୧୯୩୧ ମସିହାରେ ତାଙ୍କୁ ପୁଣିଥରେ ବନ୍ଦୀ କରାଗଲା । ତା ସହିତ ପଠାନ୍‌ମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ମଧ୍ୟ କରାଗଲା । ସମସ୍ତ ଅତ୍ୟାଚାରକୁ ସେମାନେ ବିଚଳିତ ନହୋଇ ସହ୍ୟ କଲେ । ବ୍ରିଟିଶ୍ ସରକାରଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ ପଠାନ୍‌ମାନେ ତାଙ୍କର ଅହିଂସା ପଥରେ ଅବିଚଳିତ ରହିଲେ । ବାଦ୍‌ଶାହା ଖାଁ ବାରମ୍ବାର କହିଛନ୍ତି ଯେ ଏହା କେବଳ ଏକ ରାଜନୈତିକ ଆନ୍ଦୋଳନ ନୁହେଁ ବରଂ ଏହା ଏକ ଆଧ୍ୟାତ୍ମିକ ଆନ୍ଦୋଳନ । ଏହା ମାଧ୍ୟମରେ ଲୋକଙ୍କୁ ପରସ୍ପର ପ୍ରତି ସ୍ନେହ ସଦ୍‌ଭାବ ଏବଂ ସମ୍ମାନ ବୃଦ୍ଧି କରାଇବା ତଥା ଦେଶପ୍ରତି ନିଜର କର୍ତ୍ତବ୍ୟ ବୋଧ ଜାଗରଣ କରାଇବା ଏହାର ଉଦ୍ଦେଶ୍ୟ ।

ଦୀର୍ଘ ତିନି ବର୍ଷ ପରେ ବାଦ୍‌ଶାହା ଖାଁଙ୍କୁ ଜେଲ୍‌ରୁ ମୁକ୍ତି ଦିଆଗଲା ସତ କିନ୍ତୁ ତାଙ୍କର ନିଜର ଜନ୍ମମାଟି ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶକୁ ଯିବା ପାଇଁ ବାରଣ କରାଗଲା । ତେଣୁ ସେ ଭାରତ ଆସିଲେ । ଭାରତରେ ଅନ୍ୟାନ୍ୟ କଂଗ୍ରେସ ନେତା ମାନଙ୍କୁ ଭେଟିଲେ । ୱାର୍ଦ୍ଧାରେ ଗାନ୍ଧିଜୀଙ୍କ ସହିତ ସେବାଗ୍ରାମ ଆଶ୍ରମରେ କିଛିଦିନ ରହିଲେ । ୧୯୩୪ ମସିହାରେ

ବମ୍ବେଠାରେ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନ ହେବାର ଥିଲା । ସେଠାରେ ତାଙ୍କୁ ସଭାପତିର ଆସନ ଦେବାପାଇଁ ପ୍ରାୟ ସମସ୍ତ କଂଗ୍ରେସ ନେତା ଇଚ୍ଛା ପ୍ରକାଶ କଲେ । କିନ୍ତୁ ସ୍ୱୟଂ ବାଦ୍‌ଶାହା ଖାଁ ଭଦ୍ର ଭାବରେ ଏହାକୁ ପ୍ରତ୍ୟାଖ୍ୟାନ କଲେ । ସେ କହିଲେ ଯେ ମୁଁ ଜଣେ ସାମାନ୍ୟ ସୈନିକ ଏବଂ ଜଣେ ଖୁଦାଇ ଖିଦ୍‌ମଦ୍‌ଗାର । କେବଳ ସେବା କରିବା ମୋର କାର୍ଯ୍ୟ । ତାଙ୍କୁ କୌଣସି ପଦପଦବୀ ଆବଶ୍ୟକ ନ ଥିଲା । ତେବେ ବାଦ୍‌ଶାହା ଖାଁ ତାଙ୍କର ଆମାୟିକ ବ୍ୟବହାର ଏବଂ ବିଚକ୍ଷଣ ବ୍ୟକ୍ତିତ୍ୱର ପ୍ରଭାବରେ ଅନେକ ବ୍ୟକ୍ତିଙ୍କୁ ଜାତୀୟ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାପାଇଁ ପ୍ରବର୍ତ୍ତାଇ ପାରୁଥିଲେ । ତେଣୁ ଧୀରେ ଧୀରେ ଲୋକଙ୍କ ଉପରେ ତାଙ୍କର ପ୍ରଭାବ ବଢ଼ିବାରେ ଲାଗିଲା । ବ୍ରିଟିଶ୍ ସରକାର ତାଙ୍କୁ ପୁନର୍ବାର ବନ୍ଦୀକରି ୨ ବର୍ଷ କାରାଦଣ୍ଡ ଦେଲେ । ୧୯୩୬ ମସିହାରେ ସେ କାରାଗାରରୁ ମୁକ୍ତି ପାଇଲେ । କିନ୍ତୁ ୧୯୩୭ ମସିହାରେ ତାଙ୍କୁ ଉତ୍ତର ପଶ୍ଚିମ ସୀମାନ୍ତ ଅଞ୍ଚଳକୁ ଯିବାକୁ ଅନୁମତି ମିଳିଲା । ସେତେବେଳକୁ ପ୍ରାଦେଶିକ ବିଧାନ ସଭାର ନିର୍ବାଚନ ସରିଯାଇଥାଏ । ଖୋଦାଇ ଖିଦ୍‌ମଦ୍‌ଗାର ଦଳ ବିପୁଳ ବିଜୟ ହାସଲ କରିଥାଏ । ସାର୍ ନୱାଜ୍ ସହିଦ୍ ଜାଦ୍ କୟୁମ୍‌ଙ୍କୁ ସରକାର ଗଢ଼ିବା ପାଇଁ ରାଜ୍ୟପାଳ ଅନୁରୋଧ କଲେ । କିନ୍ତୁ ଏହି ସରକାର ଗୋଟିଏ ଅବିଶ୍ୱାସ ପ୍ରସ୍ତାବରେ ହାରିଯିବାରୁ ବରଖାସ୍ତ ହେଲା । ତା ପରେ ବାଦ୍‌ଶାହା ଖାଁଙ୍କର ଜ୍ୟେଷ୍ଠଭ୍ରାତା ଡ଼କ୍ଟର ଖାଁ ସାହେବ୍ ଖୁଦାଇ ଖିଦ୍‌ମଦ୍‌ଗାର ଦଳର ସାହାଯ୍ୟରେ ସରକାର ଗଢ଼ିଲେ । ତେବେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବା ପରେ ସମସ୍ତ କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେବା ସହିତ ଡ଼କ୍ଟର ଖାଁ ସାହେବଙ୍କ ସରକାର ମଧ୍ୟ ଇସ୍ତଫା ଦେଲା । ଗାନ୍ଧିଜୀ ଏବଂ ବାଦ୍‌ଶାହା ଖାଁ ଉଭୟେ କଂଗ୍ରେସ୍ କାର୍ଯ୍ୟକାରୀ କମିଟିରୁ ଇସ୍ତଫା ଦେଲେ କାରଣ ସେମାନେ ଅନୁଭବ କଲେ ଯେ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ବ୍ରିଟିଶ୍ ସରକାରଙ୍କୁ ସାହାଯ୍ୟ ଦେବା ଅର୍ଥ ହିଂସାକୁ ପ୍ରୋତ୍ସାହନ ଦେବା । ସେମାନେ ଅହିଂସାର ପୂଜାରୀ ହୋଇଥିବା ଯୋଗୁଁ ଏହି ପରିସ୍ଥିତି ଉପୁଜିବା ପୂର୍ବରୁ ଇସ୍ତଫା ଦେବା ଶ୍ରେୟସ୍କର ମନେକଲେ ।

୧୯୪୭ ମସିହାରେ ଭାରତ ସ୍ୱାଧୀନତା ପ୍ରାପ୍ତି ହେଲା । ବ୍ରିଟିଶ୍ ସରକାର ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶକୁ ଏକ ସ୍ୱତନ୍ତ୍ର ରାଜ୍ୟ ଭାବେ କିମ୍ବା ଭାରତର ଏକ ଅଂଶଭାବେ ରହିବା ନିରାପଦ ନୁହେଁ ବୋଲି ଭାବୁଥିଲେ । ତେଣୁ ତାହାକୁ ପାକିସ୍ତାନ ସହିତ ମିଶାଇ ଦେଲେ । ବାଦ୍‌ଶାହାଙ୍କ ସହିତ ବିଶ୍ୱାସଘାତକତା ହେଲା ବୋଲି ସେ ଅନୁଭବ କଲେ ।

ତାଙ୍କ ଲୋକଙ୍କର ସ୍ୱାଧୀନତା ପାଇଁ ସେ ତଥାପି ସଂଗ୍ରାମ ଚଳେଇଲେ । ପାକିସ୍ତାନ ସହିତ କୌଣସି ପ୍ରକାରର ବନ୍ଧୁତ୍ୱକୁ ସେ ପ୍ରଶୟ ଦେଲେ ନାହିଁ । ଫଳରେ ପାକିସ୍ତାନ ସରକାର ତାଙ୍କ ଉପରେ ଜୋରିମାନା ବସାଇଲେ ଏବଂ ତାଙ୍କର ସମସ୍ତ ସମ୍ପତ୍ତିକୁ ବ୍ୟାଜ୍ୟାପ୍ତି



କଲେ । ବାଦ୍‌ଶାହା ଖାଁ ସ୍ୱାଧୀନତା ପୂର୍ବରୁ ୧୫ ବର୍ଷ ଜେଲ୍‌ରେ କଟେଇଛନ୍ତି । ସ୍ୱାଧୀନତା ପରେ ପାକିସ୍ତାନୀ ସରକାର ତାଙ୍କୁ ୧୬ ବର୍ଷ ଜେଲ୍ ଦଣ୍ଡ ଦେଇଛନ୍ତି । ସେ କହିଥିଲେ ''ପାକିସ୍ତାନର ସରକାର ମୋତେ ଏବଂ ହଜାର ହଜାର ଖୋଦାଇ ଖିଦ୍‌ମଦ୍‌ଗାର ସଭ୍ୟଙ୍କୁ କେଉଁ ଉଦ୍ଦେଶ୍ୟରେ ଦୀର୍ଘକାଳ ଜେଲ୍‌ଦଣ୍ଡ ଦେଇଛନ୍ତି ତାହା ମୁଁ ବୁଝିପାରୁନାହିଁ ।''

ଏହି ଭଦ୍ର, ନମ୍ର, ଦୀର୍ଘକାୟ ଓ ବଳିଷ୍ଠ ନେତାଙ୍କୁ ଭାରତ ଗଭୀର ଶ୍ରଦ୍ଧା ଓ ସମ୍ମାନ ଜଣାଏ । ୧୯୬୯ ମସିହାରେ ବାଦ୍‌ଶାହା ଖାନ୍ ଭାରତ ସରକାରଙ୍କଠାରୁ ସ୍ୱତନ୍ତ୍ର ନିମନ୍ତ୍ରଣ ପାଇ ଭାରତ ପରିଦର୍ଶନରେ ଆସିଥିଲେ । ଭାରତର କୋଣ ଅନୁକୋଣରେ ସେ ଭ୍ରମଣ କରି ବିଭିନ୍ନ ବ୍ୟକ୍ତିଙ୍କୁ ଭେଟିଲେ । ବିଭିନ୍ନ ସ୍ଥାନରେ ଭାରତର ଶିଳ୍ପ, ବାଣିଜ୍ୟ ଏବଂ ଶିକ୍ଷାକ୍ଷେତ୍ରରେ ଅଗ୍ରଗତି ବିଷୟରେ ପ୍ରସନ୍ନ ହୋଇ ତାଙ୍କର ବକ୍ତବ୍ୟ ଦେଲେ । ୧୯୮୫ ମସିହାରେ କଂଗ୍ରେସର ବମ୍ବେଠାରେ ଶତବାର୍ଷିକୀ ପାଳନ ବେଳେ ବାଦ୍‌ଶାହା ଖାଁ ହିଁ ଏହି ଅଧିବେଶନର ମୁଖ୍ୟ ଆକର୍ଷଣ ଥିଲେ ।

୧୯୮୭ ମସିହାରେ ଭାରତ ସରକାର ତାଙ୍କୁ ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତ ରତ୍ନରେ ଭୂଷିତ କଲେ । ତାଙ୍କର ଜାତି ପ୍ରତି ନିଃସ୍ୱାର୍ଥ ସେବାପାଇଁ ସେ ଆଜି ମୃତ୍ୟୁପରେ ମଧ୍ୟ ଅମର ହୋଇ ରହିଛନ୍ତି । ଖାଁ ଅବ୍‌ଦୁଲ୍ ଗଫର ଖାଁ ୯୮ ବର୍ଷ ବୟସରେ ୧୯୮୮ ମସିହାରେ ଦେହତ୍ୟାଗ କଲେ ।

***

# ଏମ୍.ଜି. ରାମଚନ୍ଦ୍ରନ୍ (ଏମ୍.ଜି.ଆର୍)



୧୯୧୭-୧୯୮୭

ଭାରତରତ୍ନ - ୧୯୮୮

**ପୂ**ରାନାମ ମରୋଥ୍ ଗୋପାଲା ରାମଚନ୍ଦ୍ରନ୍ । ଶ୍ରଦ୍ଧାରେ ସମସ୍ତେ କହନ୍ତି ଏମ୍.ଜି. ରାମଚନ୍ଦ୍ରନ୍ । ଜନ୍ମ ୧୯୧୭ ମସିହା ଜାନୁୟାରୀ ୧୭ ତାରିଖ । ପିତା ଗୋପାଳ ମେନନ୍, ମାତା ସତ୍ୟଭାମା । ଜନ୍ମସ୍ଥାନ ଶ୍ରୀଲଙ୍କାସ୍ଥିତ କାଣ୍ଡିର ଏକ ଚା ବଗିଚାରେ ଥିବା ଶ୍ରମିକବସ୍ତି ।

କେହି କେବେ ସ୍ୱପ୍ନରେ ଭାବି ନ ଥିବେ ଯେ ଏଭଳି ଏକ ନିସହାୟ ଚା' ବଗିଚା ଶ୍ରମିକର ପୁତ୍ର ଭାରତ ପ୍ରସିଦ୍ଧ ହୋଇପାରିବ । ତେବେ କଠିନ ଶ୍ରମ, ଅଧ୍ୟବସାୟ ଏବଂ ଦୃଢ଼ମାନସିକତା ଦିନେ ଏମ୍.ଜି.ଆର୍ ଙ୍କୁ ଯଶ ଏବଂ ଖ୍ୟାତିର ଶୀର୍ଷରେ ପହଞ୍ଚାଇ ପାରିଥିଲା । ସେ କେବଳ ଭାରତ ନୁହେଁ, ବିଦେଶରେ ମଧ୍ୟ ଜଣେ ଅତି ଉଚ୍ଚକୋଟୀର ଚଳଚ୍ଚିତ୍ର ଅଭିନେତା ଏବଂ ତାମିଲ୍‌ନାଡୁ ରାଜ୍ୟର ମୁଖ୍ୟମନ୍ତ୍ରୀ ଭାବେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ ।

ଏମ୍.ଜି.ଆରଙ୍କର ଜନ୍ମର ଅଳ୍ପଦିନ ମଧ୍ୟରେ ତାଙ୍କର ପିତାଙ୍କର ମୃତ୍ୟୁ ହେଲା । ପିତାଙ୍କ ମୃତ୍ୟୁପରେ ତାଙ୍କୁ ୨ ବର୍ଷ ହୋଇଥିଲା ବେଳେ ତାଙ୍କର ମା ତାଙ୍କୁ ଧରି ତାମିଲ୍‌ନାଡୁସ୍ଥିତ କୁମ୍ଭକୋନମ୍ ସହରକୁ ଚାଲି ଆସିଥିଲେ । ପରିବାରର ଅନ୍ୟ କେହି ଉପାର୍ଜନ କ୍ଷମ ନ ଥିବା ଯୋଗୁଁ ଏମ୍.ଜିଆରଙ୍କର ପାଠପଢ଼ା ପ୍ରାଥମିକ ବିଦ୍ୟାଳୟ ସ୍ତରରେ ହିଁ ସ୍ଥଗିତ ରହିଲା । ତା ପରେ ସେ ଗୋଟିଏ ନାଟକ ଦଳରେ ଯୋଗ ଦେଲେ । ସେ ଦଳର ନାମ ମଦୁରାଇ ବୟ ଡ୍ରାମା କମ୍ପାନୀ । ତାଙ୍କୁ ସେତେବେଳକୁ ମାତ୍ର ୭ ବର୍ଷ ବୟସ । ସେ ଜଣେ ସହାୟକ ଭାବେ ଦଳରେ ଯୋଗଦେଇଥିଲେ ସତ କିନ୍ତୁ ତାଙ୍କର ଅନ୍ତର୍ଦୃଷ୍ଟି ଏବଂ ତାଙ୍କର ଶାରୀରିକ ସୌନ୍ଦର୍ଯ୍ୟ ଯୋଗୁଁ ନାଟକ ମାନଙ୍କରେ ଛୋଟ ଛୋଟ ଭୂମିକାରେ ଅବତୀର୍ଣ୍ଣ ହେଲେ । ୧୯୩୬ ମସିହାରେ 'ସତୀ ଲୀଳାବତୀ' ନାମକ ଚଳଚ୍ଚିତ୍ରରେ ସେ ଏକ କ୍ଷୁଦ୍ର ଭୂମିକାରେ ଅଭିନୟ କରିବା ପାଇଁ ସୁଯୋଗ ପାଇଲେ । ୧୯୪୭ ମସିହାରେ ପ୍ରଥମ କରି ସେ ରାଜକୁମାରୀ ଚଳଚ୍ଚିତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅଭିନୟ କଲେ । ତା ପରଠାରୁ ସେ ସଫଳତା ମାର୍ଗରେ ପାହାବ ପରେ ପାହାଚ ଅତିକ୍ରମ କରି ଚାଲିଲେ । ଅଳ୍ପ କେତେ ବର୍ଷ ମଧ୍ୟରେ ତାମିଲ୍ ସିନେମା ଜଗତରେ ସେ ତାଙ୍କର ସ୍ଥାନକୁ ସୁରକ୍ଷିତ କଲେ ଏବଂ ଦେଶରେ ଜଣେ ବିଖ୍ୟାତ ଅଭିନେତା, ନିର୍ଦ୍ଦେଶକ ଏବଂ ପ୍ରଯୋଜକ ଭାବେ ଖ୍ୟାତି ଅର୍ଜନ କଲେ ।

୧୯୭୭ ମସିହା ବେଳକୁ ଏମ୍.ଜି.ଆର ପ୍ରାୟ ୧୪୦ଟି ଚଳଚ୍ଚିତ୍ରରେ ଅଭିନୟ କରି ସାରିଥିଲେ । ତନ୍‌ମଧ୍ୟରୁ କେତେକ ଚଳଚ୍ଚିତ୍ର ରାଜନୈତିକ ନେତୃବୃନ୍ଦ ଯଥା ଆନ୍ନାଦୁରାଇ, କରୁଣାନିଧିଙ୍କ ଦ୍ୱାରା ରଚିତ ହୋଇଥିଲା । 'ମଲାଇକାଲାମ୍', 'ଆଦିମାଇପେନ୍', 'ନାମ୍ପାନାଇଡୁ', 'ପେଙ୍ଗଲ୍ ଥନ୍‌ଗାମ୍' ଆଦି ଚଳଚ୍ଚିତ୍ର ସୁପର ଡୁପର ହିଟ୍ ହେଲା । ୧୯୭୨ ମସିହାରେ ତାଙ୍କୁ 'ରିଥାକେରନ୍' ଚଳଚ୍ଚିତ୍ରରେ ଅଭିନୟ ପାଇଁ ଶ୍ରେଷ୍ଠ ଅଭିନେତାର ଜାତୀୟ ପୁରସ୍କାର ମିଳିଥିଲା । ସେ ନିଜେ ଦାରିଦ୍ର୍ୟର କଷାଘାତରେ ପଡ଼ି ଶିକ୍ଷାଲାଭ କରିବାରୁ ବଞ୍ଚିତ ହୋଇଥିବା ଯୋଗୁଁ ତାଙ୍କର ପ୍ରତ୍ୟେକ ଚଳଚ୍ଚିତ୍ରରେ ଅନ୍ୟୁନ ଗୋଟିଏ ଗୀତରେ ସେ କେତେକ ଶିକ୍ଷଣୀୟ ବାର୍ତ୍ତାର ପ୍ରୟୋଗ କରୁଥିଲେ । ଯାହାଦ୍ୱାରା ସାଧାରଣ ବ୍ୟକ୍ତି ଯେପରି ଶିକ୍ଷାପାଇଁ ଆକର୍ଷିତ ହେବ ସେଥିପାଇଁ ସେ ଦୃଷ୍ଟି ଦେଉଥିଲେ । ପ୍ରାୟତଃ ତାଙ୍କର ସମସ୍ତ ସଂଗୀତ ଅତ୍ୟନ୍ତ ଜନପ୍ରିୟତା ହାସଲ କରୁଥିଲା । ସେ ସଂଗୀତର ଭାବ ଏବଂ ମାଧୁର୍ଯ୍ୟ ଉପରେ ଅଧିକ ଜୋର୍ ଦେଉଥିଲେ । ତାଙ୍କର ବିଭିନ୍ନ ଜନପ୍ରିୟ ସଂଗୀତ ଗୁଡ଼ିକ ମଧ୍ୟରେ 'ଥୁଙ୍ଗଡେ ଥାମ୍ବି ଥୁଙ୍ଗଡ଼େ', 'ନିଲ୍ ସାମ୍ଭରି ହେଦ୍‌ନା ଥେୟାର୍ ଭଙ୍କତେ' ଇତ୍ୟାଦି ଦୀର୍ଘସୂତ୍ରିକାର

କୁପ୍ରଭାବ ଉପରେ ରଚିତ । (୨) 'ଚିନ୍ନାପାୟଲେ ଚିନ୍ନାପାୟଲେ ଇତି କଲ୍ଲୁଗା' ଏହା ଚରିତ୍ର ଗଠନ ଏବଂ ଆତ୍ମବିଶ୍ୱାସ ଉପରେ ପ୍ରତିଫଳିତ (୩) 'ଥିରୁଦାଦେ ପାପା ପାପା ଥିରୁଦାଢ଼େ'– ଏହି ଗୀତଟି କୁଅଭ୍ୟାସ ବିଶେଷ କରି ଚୌର୍ଯ୍ୟବୃତ୍ତି ପରିହାର କରିବା ଉପରେ ଆଧାରିତ । (୪) 'ତୁଙ୍ଗାନ୍ ଦେଶୁ ଗାନ୍ଧୀ ପିରନ୍ଦାତୁ ଭୂମି ଭୂମିଇଲ୍ ଏଥାନ୍ କାକା'– ଏହା ଶ୍ରମ ମର୍ଯ୍ୟାଦା ଉପରେ ରଚିତ । (୫) 'ଉନ୍ନାଇ ଆରିନ୍ଥଲ୍ ନି ଉନ୍ନାଇ ଆରିନ୍ଥଲ୍ ଉଲାଗାଥିଲ୍ ପୁରା ଦାଲାମ୍'– ଏହି ସଂଗୀତଟି ମଧ୍ୟ ଆତ୍ମବିଶ୍ୱାସର ଗଠନ ଏବଂ ବିକାଶ ଉପରେ ଆଧାରିତ ହୋଇଛି ।

ଏମ୍.ଜି.ଆର୍ ନିଜେ ଜଣେ ସଦାଚାରୀ ବ୍ୟକ୍ତି ଥିଲେ ଏବଂ ସେ ସାଧାରଣ ଜନତାଙ୍କୁ ଉତ୍ତମ ବ୍ୟବହାର ଏବଂ ଅନୁଶାସନ ବିଷୟ ତାଙ୍କ ଚଳଚ୍ଚିତ୍ର ମାଧ୍ୟମରେ ଶିକ୍ଷା ଦେବାର ପ୍ରୟାସ କରିଥିଲେ । ତାଙ୍କ ଚଳଚ୍ଚିତ୍ରରେ ଜୁଆ ଖେଳ, ମଦ୍ୟପାନ, ଧର୍ଷଣ ଆଦି ଦୃଶ୍ୟକୁ ସେ ସ୍ଥାନ ଦେଇ ନାହାନ୍ତି । ତାଙ୍କର ପ୍ରଶଂସକମାନେ ତାଙ୍କୁ ଦାୟାଦେବମ୍ ବା ତାଙ୍କ ହୃଦୟର ଦେବତା ନାମରେ ନାମିତ କରିଥିଲେ ।

ଏମ୍.ଜି.ଆର୍ ଯେଉଁ ନାୟିକା ମାନଙ୍କ ସହିତ ଅଭିନୟ କରିଛନ୍ତି ସେମାନଙ୍କ ମଧ୍ୟରେ ଜାନକୀ, ପଦ୍ମିନୀ, ସରୋଜା ଦେବୀ, ଜୟଲଳିତା ଇତ୍ୟାଦି ଅନ୍ୟତମ । 'ମରୁଦାନାଲାଦୌ ଇଲା ଭରୁସି' ଚଳଚିତ୍ର ପ୍ରସ୍ତୁତି ସମୟରେ ସେହି ଚିତ୍ରର ନାୟିକା ଜାନକୀଙ୍କ ସହିତ ଏମ୍.ଜି.ଆର୍‌ଙ୍କର ପ୍ରେମ ହେଲା । ଶେଷରେ ସେ ଜାନକୀଙ୍କୁ ବିବାହ କଲେ । ବିବାହ ପରେ ମଧ୍ୟ ସେହି ଦୁଇଜଣ ଲୋକପ୍ରିୟ ନାୟକ ନାୟିକା ଭାବରେ ଅନେକ ଚଳଚ୍ଚିତ୍ରରେ ଅଭିନୟ କରିଥିଲେ । ଜୟଲଳିତା ଏମ୍.ଜି.ଆରଙ୍କ ରାଜନୈତିକ ଦଳରେ ଯୋଗଦେଇ ପରବର୍ତ୍ତୀକାଳରେ ତାମିଲ୍‌ନାଡୁର ମୁଖ୍ୟମନ୍ତ୍ରୀ ଭାବେ କାର୍ଯ୍ୟଭାର ସମ୍ଭାଳିଲେ ।

ପି.ଏନ୍. ଆନାଦୋରାଇଙ୍କ ଭାଷଣ ଏବଂ ତାଙ୍କ ରଚନା ବହି ଦ୍ୱାରା ଏମ୍.ଜି.ଆର ବହୁଳ ଭାବରେ ପ୍ରଭାବିତ ହୋଇଥିଲେ । ୧୯୫୩ ମସିହାରେ ଦ୍ରାବିଡ଼ ମୁନତ୍ରାକାଜାଗମ୍‌ରେ ଯୋଗଦେଲେ । ୧୯୬୨ରେ ସେ ରାଜ୍ୟର ବିଧାନ ସଭାରେ ସଭ୍ୟ ଭାବେ ଶପଥ ନେଲେ । ବିଧାନ ସଭାକୁ ସେ ୧୯୬୭ ମସିହାରେ ନିର୍ବାଚିତ ହୋଇ ଆସିଲେ ଏବଂ ପରବର୍ତ୍ତୀ ୧୯୭୧, ୧୯୭୭, ୧୯୮୦ ଏବଂ ୧୯୮୪ ମସିହା ନିର୍ବାଚନରେ ମଧ୍ୟ ସେ ଜୟଲାଭ କଲେ । ଆନ୍ନାଦୋରାଇଙ୍କ ମୃତ୍ୟୁ ପରେ ୧୯୬୧ ମସିହାରେ ଏମ୍.ଜି.ଆର ତାଙ୍କର ସଂପୂର୍ଣ୍ଣ ସହଯୋଗ କରୁଣାନିଧିଙ୍କୁ ଦେଲେ । ତେବେ ୧୯୭୨ ମସିହାରେ ତାଙ୍କର କରୁଣାନିଧିଙ୍କ ସହିତ ମନାନ୍ତର ଘଟିବାରୁ



ଏମ୍.ଜି.ଆର ତାଙ୍କ ଦଳ ଛାଡ଼ି ସର୍ବଭାରତୀୟ ଆନ୍ନା ଦ୍ରାବିଡ୍ରମୁନନ୍ତ୍ରାକାର୍ଯ୍ୟାଳୟମ୍ ଦଳ ବା ଏ.ଆଇ.ଡ଼ି.ଏମ୍.କେ ଦଳ ଗଠନ କଲେ । ଏହି ଦଳର ସେ ପ୍ରଥମ ସଭାପତି ହେଲେ । ସେ 'ଆନ୍ନା' ନାମକ ଏକ ଖବର କାଗଜ ପ୍ରକାଶନ ଆରମ୍ଭ କଲେ । ଏହାର ସଂପାଦନ ଦାୟିତ୍ୱରେ ସେ ନିଜେ ରହିଲେ । ଏ.ଆଇ.ଡ଼ି.ଏମ୍.କେ ଦକ୍ଷିଣ ଭାରତରେ ଖୁବ୍ ଲୋକପ୍ରିୟତା ହାସଲ କଲା ଏବଂ ପରବର୍ତ୍ତୀ ନିର୍ବାଚନ ମାନଙ୍କରେ ବିପୁଳ ସଂଖ୍ୟାରେ ଜୟଲାଭ କଲା ।

୧୯୭୭ ମସିହାରେ ପ୍ରଥମ କରି ଏମ୍.ଜି. ରାଜଚନ୍ଦ୍ରନ୍ ଜଣେ ଚଳଚ୍ଚିତ୍ର ଅଭିନେତା ହୋଇ ମଧ୍ୟ ତାମିଲ୍‌ନାଡୁ ଭଳି ରାଜ୍ୟର ମୁଖ୍ୟମନ୍ତ୍ରୀ ପଦଭାର ସମ୍ଭାଳିଲେ । ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସେ ମୁଖ୍ୟମନ୍ତ୍ରୀ ହୋଇ ରହିଥିଲେ । ଏମ୍.ଜି.ଆର୍ ଜଣେ ଜନପ୍ରିୟ ମୁଖ୍ୟମନ୍ତ୍ରୀ ଥିଲେ । ଘରପୋଡ଼ି, ବନ୍ୟା, ବାତ୍ୟା, ମରୁଡ଼ି ଆଦି ପ୍ରାକୃତିକ ବା ଦୈବୀ ଦୁର୍ବିପାକ ସମୟରେ ସେ ସ୍ୱୟଂ ଉପସ୍ଥିତ ରହି ରିଲିଫ୍ କାର୍ଯ୍ୟର ତଦାରଖ କରୁଥିଲେ । ୧୯୬୨ ମସିହାରେ ଭାରତ ବର୍ଷକୁ ଚୀନ୍ ଆକ୍ରମଣ କରିଥିବା ସମୟରେ ସେ ପ୍ରଥମ ବ୍ୟକ୍ତି ଭାବେ ସେତେବେଳେ ୭୫ ହଜାର ଟଙ୍କା ରିଲିଫ୍ ପାଣ୍ଠିକୁ ମୁକ୍ତ ହସ୍ତରେ ଦାନ କରିଥିଲେ ।

ତାଙ୍କ ରାଜ୍ୟରୁ ଦାରିଦ୍ର୍ୟର ମୂଳୋତ୍ପାଟନ କରିବା ପାଇଁ ଏମ୍.ଜି.ଆର୍ ଯଥା ସମ୍ଭବ ଚେଷ୍ଟା କରିଥିଲେ । ତାମିଲ୍‌ନାଡୁର ପ୍ରତ୍ୟେକ ଶିଶୁ ଏବଂ ମହିଳାଙ୍କୁ ସେ ଜୋତା ଯୋଗାଇ ଦେବାପାଇଁ ଯୋଜନା କରିଥିଲେ । ବସ୍ତି ବାସିନ୍ଦା ମାନଙ୍କୁ ଆବଶ୍ୟକୀୟ ବାସନକୁସନ ଏବଂ ବସ୍ତ୍ର ଯୋଗାଣ ପାଇଁ ତାଙ୍କର ଯୋଜନା ଥିଲା । ବିନାମୂଲ୍ୟରେ

ବିଜୁଳୀ ଯୋଗାଇବା ପାଇଁ ସେ ଚିନ୍ତା କରିଥିଲେ । କିନ୍ତୁ ପାଣି ଅଭାବରୁ ତାଙ୍କର ଏହି ସମସ୍ତ ଯୋଜନା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଶୈଶବରେ ସେ ନିଜେ କ୍ଷୁଧା ପ୍ରପୀଡ଼ିତ ହୋଇଥିବାରୁ ସମସ୍ତ ପ୍ରାଥମିକ ବିଦ୍ୟାଳୟରେ ଶିଶୁମାନଙ୍କୁ ବିନାମୂଲ୍ୟରେ ମଧ୍ୟାହ୍ନ ଭୋଜନ ଦେବାର ଆୟୋଜନ କରିଥିଲେ । ଏହି ଯୋଜନା ପାଇଁ ୨୦୦ କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଥିଲା । କେନ୍ଦ୍ର ସରକାର ଏଥିପାଇଁ କୌଣସି ଅର୍ଥନୈତିକ ସାହାଯ୍ୟ ଦେବାକୁ ମନା କରିଦେଲେ । ଏଥିରେ ବିବ୍ରତ ନ ହୋଇ ଏମ୍.ଜି.ଆର ତାଙ୍କର ନିଜସ୍ୱ ପାଣ୍ଠିରୁ ଏଥିପାଇଁ ଅର୍ଥର ପ୍ରାବଧାନ କରି ତାଙ୍କ ଯୋଜନାର ଅନେକ ଅଂଶକୁ କାର୍ଯ୍ୟକାରି କରାଇଥିଲେ । ଯେ କୌଣସି କାର୍ଯ୍ୟ ଯଦି ସାମାଜିକ ଏବଂ ଅର୍ଥନୈତିକ ଦୃଷ୍ଟିରୁ ନିମ୍ନସ୍ତରରେ ଥିବା ବ୍ୟକ୍ତି ତଥା ଦଳିତ, ଅବହେଳିତ ଗୋଷ୍ଠୀର କଲ୍ୟାଣ କରୁଥାଏ ସେ ଦିଗରେ ଏମ୍.ଜି.ଆର୍ ସର୍ବଦା ସଚେତନ ଓ ସଚେଷ୍ଟ ଥିଲେ ।

ରାଜ୍ୟବାସୀଙ୍କୁ ଶିକ୍ଷା ସମ୍ବନ୍ଧୀୟ ସମସ୍ତ ସୁବିଧା ସୁଯୋଗ ଯୋଗାଇ ଦେବାପାଇଁ ଏମ୍.ଜି.ଆର ସର୍ବଦା ଚେଷ୍ଟାରତ ଥିଲେ । ସେ ତାମିଲ୍ ବିଶ୍ୱବିଦ୍ୟାଳୟ, ଏମ୍.ଜି.ଆର୍ ମେଡ଼ିକାଲ ବିଶ୍ୱବିଦ୍ୟାଳୟ ଏବଂ ମହିଳା ବିଶ୍ୱବିଦ୍ୟାଳୟ ସ୍ଥାପନ କରିଥିଲେ । ସେ ମହିଳାମାନଙ୍କୁ ସମ୍ମାନ ଦେଉଥିଲେ । ୧୯୮୩ ମସିହାରେ ମାଡ୍ରାସ ବିଶ୍ୱବିଦ୍ୟାଳୟ ତାଙ୍କୁ ଅନରିକନ୍ଧା ଏବଂ ଡ଼କ୍ଟର ଅଫ୍ ଲ ଉପାଧି ପ୍ରଦାନ କରିଥିଲେ । ଏମ୍.ଜି.ଆର ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଦେଶ ଓ ବିଦେଶର ବିଭିନ୍ନ ସ୍ଥାନ ପରିଦର୍ଶନରେ ଯାଇଥିଲେ । ଶ୍ରୀଲଙ୍କା, ବର୍ମା, ସିଙ୍ଗାପୁର, ଜାପାନ, ହଙ୍ଗକଙ୍ଗ, ଫ୍ରାନ୍ସ, ମେକ୍ସିକୋ, ୟୁ.ଏସ୍.ଏ, ଋଷିଆ ଇତ୍ୟାଦି ଦେଶ ସେ ଭ୍ରମଣ କରିଛନ୍ତି । କେବେହେଲେ ସେ ତାଙ୍କର ଅତୀତକୁ ଭୁଲି ନ ଥିଲେ । ଗରିବ କିମ୍ବା ଭିନ୍ନକ୍ଷମ ବ୍ୟକ୍ତିମାନଙ୍କ ପ୍ରତି ସେ ଖୁବ୍ ସଦୟ ଥିଲେ । ତାଙ୍କ ନିଜସ୍ୱ ସଂପତ୍ତିର ଏକ ମୁଖ୍ୟ ଭାଗ ସେ ଉଇଲ୍ ଦ୍ୱାରା ମୂକବଧିର ମାନଙ୍କ ପାଇଁ ଏକ ଛାତ୍ରାବାସ ଏବଂ ତାଙ୍କ ଅଧୀନରେ ଥିବା ଖଣ୍ଡିଏ ଜମି ବାଳକ ମାନଙ୍କ ପାଇଁ ଏକ ଛାତ୍ରାବାସ ପାଇଁ ଦାନ କରିଛନ୍ତି । ୧୯୮୭ ମସିହା ଡ଼ିସେମ୍ବର ୨୪ ତାରିଖ ଦିନ ଏମ୍.ଜି.ଆର୍‌ଙ୍କର ୭୦ ବର୍ଷ ବୟସରେ ଦେହାନ୍ତ ହେଲା । ତା'ର ଅଳ୍ପଦିନ ପରେ ୧୯୮୮ ମସିହା ଜାନୁୟାରୀ ମାସରେ ତାଙ୍କୁ ମରଣୋତ୍ତର ଭାରତରତ୍ନ ଉପାଧି ପ୍ରଦାନ କରାଗଲା ।

***

# ଡକ୍ଟର ବାବା ସାହେବ ଆମ୍ବେଦ୍କର



୧୮୯୧-୧୯୫୬

ଭାରତରତ୍ନ-୧୯୯୦

**ଡ**କ୍ଟର ଭୀମରାଓ ରାମଜୀ ଆମ୍ବେଦ୍କର ପରବର୍ତ୍ତୀ କାଳରେ ଡ଼କ୍ଟର ବାବା ସାହେବ ଆମ୍ବେଦ୍କର ନାମରେ ପରିଚିତ ହେଲେ । ସେ ବିବିଧ କ୍ଷେତ୍ରରେ ପାରଦର୍ଶିତା ହାସଲ କରିଥିଲେ ହେଁ ପଛୁଆ ବର୍ଗଙ୍କର ଅଭ୍ୟୁତ୍ଥାନ ପାଇଁ, ସେମାନଙ୍କର ଆତ୍ମସମ୍ମାନ ଓ ମର୍ଯ୍ୟାଦା ପୁନଃପ୍ରତିଷ୍ଠା ପାଇଁ ତାଙ୍କର ସଂଗ୍ରାମ ଅବ୍ୟାହତ ଥିଲା । ୧୯୫୬ ମସିହା ଅକ୍ଟୋବର ୧୪ ତାରିଖ ଦିନ ଡ଼କ୍ଟର ଆମ୍ବେଦ୍କର ବୌଦ୍ଧଧର୍ମ ଗ୍ରହଣ କରିବା ସମୟରେ ତାଙ୍କ ସହିତ ଲକ୍ଷ ଲକ୍ଷ ଜନତା ସେହି ଧର୍ମରେ ଦୀକ୍ଷିତ ହେଲେ । ସେ ହିନ୍ଦୁଧର୍ମକୁ ପ୍ରତାରଣା କରିଛନ୍ତି ବୋଲି ଅନେକ ସମାଲୋଚକ ମତ ଦେଇଥିଲେ । କିନ୍ତୁ ଏକଥା ସତ ଯେ ନିରୀହ,

ନିଷ୍ପେଷିତ, ଦଳିତ, ଅତ୍ୟାଚାରିତ, ପଛୁଆ ବର୍ଗଙ୍କର ସେ ପ୍ରାଣକର୍ତ୍ତା ସାଜି ସେମାନଙ୍କ ଆତ୍ମମର୍ଯ୍ୟାଦାକୁ ପ୍ରତିଷ୍ଠିତ କରାଇବାରେ ସଫଳକାମୀ ହୋଇଥିଲେ ।

୧୮୯୧ ମସିହା ଏପ୍ରିଲ୍ ୧୪ ତାରିଖ ଦିନ କେନ୍ଦ୍ରୀୟ ଭାରତର ମାଓ ଗ୍ରାମରେ ଭୀମରାଓ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ରାମଜୀ ଏବଂ ମାତା ଭୀମବାଈଙ୍କର ସେ ଚତୁର୍ଦ୍ଦଶ ସନ୍ତାନ ଥିଲେ । ତାଙ୍କୁ ଆଦରରେ ବାପା ମା ଭୀମା ବୋଲି ଡ଼ାକୁଥିଲେ । ସେ କଲେଜ ଅଧ୍ୟୟନ ସମୟରେ ଭୀମରାଓ ନାମରେ ନାମିତ ହୋଇଥିଲେ । ତାଙ୍କର ଜେଜେବାପା ମାଗଧୀଙ୍କ ପରି ତାଙ୍କ ବାପା ରାମଜୀ ମଧ୍ୟ ରାଜନୀତି ସରକାରଙ୍କ ସୈନ୍ୟବାହିନୀରେ କାମ କରୁଥିଲେ । ସେତେବେଳେ ସୈନ୍ୟବାହିନୀରେ ସମସ୍ତ ସୈନିକ ଓ କର୍ମଚାରୀଙ୍କର ସନ୍ତାନ ମାନଙ୍କ ପାଇଁ ବ୍ରିଟିଶ୍ ସରକାର ଶିକ୍ଷାକୁ ବାଧ୍ୟତା ମୂଳକ କରିଥିଲେ । ସେମାନଙ୍କ ସନ୍ତାନମାନଙ୍କ ପାଇଁ ସରକାର ସ୍କୁଲ ଏବଂ କଲେଜ ପ୍ରତିଷ୍ଠା କରିଥିଲେ । ସେତେବେଳର ମାହାର୍ ମାନଙ୍କ ମଧ୍ୟରେ ମାଲୋଜୀ ଏବଂ ରାମଜୀ ଶିକ୍ଷାର ସୁବିଧା ପାଇ ଭାଗ୍ୟବାନ୍ ହୋଇଥିଲେ । ଭୀମାଙ୍କୁ ୫ ବର୍ଷ ହୋଇଥିଲା ବେଳେ ସେ ଟାପୋଲର ଏକ ସ୍କୁଲ୍‌ରେ ନାମ ଲେଖାଇଲେ । ତା ପରେ ସେ ସତାରାରେ ପାଠ ପଢ଼ିଲା ବେଳେ ତାଙ୍କର ସାଙ୍ଗିଆ ଆମ୍ବେଦ୍‌କର ହୋଇଥିଲା ।

ଜଣେ ଅଛୁଁଆ ଜାତିର ବାଳକ ଏତେ ବାବ ପାଠ ପଢ଼ିବା ସେ ସମୟରେ ଏକ ବିରଳ ଘଟଣା । ସେଥିପାଇଁ ମାହାର ସଂପ୍ରଦାୟ ଏକ ସଭା ଡ଼କାଇ ଭୀମରାଓଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ସେ ମାତ୍ର ୧୭ ବର୍ଷ ବୟସରେ ରାମବାଈ ନାମ୍ନୀ ଏକ ୯ ବର୍ଷର ବାଳିକାଙ୍କୁ ବିବାହ କରିଥିଲେ । ବମ୍ବେସ୍ଥିତ ବାଇକୁଲା ସହରର ଏକ ହାଟରେ ଥିବା ଗୋଟିଏ ଚାଳଘରେ ତାଙ୍କର ବିବାହ ସଂପନ୍ନ ହୋଇଥିଲା । ବିବାହ ପରେ ଭୀମରାଓ ଏଲ୍‌ଫିନ୍‌ଷ୍ଟୋନ୍ କଲେଜରେ ଅଧ୍ୟୟନ କଲେ । ମାହାର ଜାତିର ହୋଇଥିବାରୁ କଲେଜରେ ତାଙ୍କୁ ଅପମାନିତ ହେବାକୁ ପଡୁଥିଲା । ତାଙ୍କ ଭଳି ତାଙ୍କ ପାଖରେ ଥିବା ଅନ୍ୟାନ୍ୟ ଅଛୁଆଁ ଜାତିର ଛାତ୍ର ଛାତ୍ରୀ ମଧ୍ୟ ଅପମାନିତ ହେଉଥିବାର ଦେଖି ସେ ବିବ୍ରତ ହେଉଥିଲେ । କଲେଜ ଜୀବନରେ ସେ ପାଠ ପଢ଼ାରେ ସର୍ବଦା ନିମଗ୍ନ ରହୁଥିଲେ । ଇଣ୍ଟରମିଡ଼ିଏଟ୍ ପାଠ ସାରିବା ପରେ ଆଉ ପାଠ ପଢ଼ାଇବାପାଇଁ ରାମଜୀଙ୍କ ସାଧ୍ୟ ନ ଥିଲା । ସୌଭାଗ୍ୟ ବଶତଃ ବରୋଦାର ମହାରାଜା ସୟାଜି ରାଓ ଗାଇକ୍ୱାଡ଼୍ ତାଙ୍କୁ ଏକ ବୃତ୍ତି ଦେଇ ବି.ଏ ପଢ଼ାଇଲେ । ୧୯୧୨ ମସିହାରେ ସେ ବି.ଏ ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେଲେ ।

ତାଙ୍କ ବାପାଙ୍କର ମୃତ୍ୟୁ ପରେ ଭୀମଜୀଙ୍କ ଉପରେ ପରିବାର ଚଳାଇବାର ଦାୟିତ୍ୱ ନ୍ୟସ୍ତ ହେଲା । ପୁନର୍ବାର ବରୋଦାର ମହାରାଜା ସୟାଜୀ ରାଓ ଗାଇକ୍ୱାଡ଼୍

ତାଙ୍କୁ ସାହାଯ୍ୟ କଲେ । ସେ ବୃତ୍ତି ପ୍ରଦାନ ପୂର୍ବକ ତାଙ୍କୁ ଆମେରିକା ଉଚ୍ଚଶିକ୍ଷା ପାଇଁ ପ୍ରେରଣ କଲେ । ସର୍ତ୍ତ ଥିଲା ସେ ଆମେରିକାରୁ ଫେରିଆସି ଦଶବର୍ଷ ବରୋଦା ରାଜ୍ୟରେ ଚାକିରୀ କରିବେ । ଆମେରିକାରେ ସେ କଠିନ ପରିଶ୍ରମ କଲେ । ତାଙ୍କର ଲକ୍ଷ୍ୟ କେବଳ ୟୁନିଭରସିଟିର ଡ଼ିଗ୍ରୀ ହାସଲ ନ ଥିଲା ବରଂ ଦେଶ ସେବା କରିବା ପାଇଁ ବିଭିନ୍ନ ବିଷୟ ଯଥା: ଅର୍ଥଶାସ୍ତ୍ର, ରାଜନୀତି ବିଜ୍ଞାନ ଏବଂ ସାମାଜିକ ବିଜ୍ଞାନରେ ଜ୍ଞାନ ଆହରଣ କରିବା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ତା ଛଡ଼ା ଆଇନ୍, ନୀତିଶାସ୍ତ୍ର ଏବଂ ଆନ୍‌ଥ୍ରୋପଲୋଜି ବିଷୟରେ ମଧ୍ୟ ସେ ଗଭୀର ଗବେଷଣା କରିଥିଲେ । ସେଠାରେ ପୁରାତନ ଭାରତୀୟ ବାଣିଜ୍ୟ ବିଷୟରେ ଥେସିସ୍ ଲେଖି ୧୯୧୫ ମସିହାରେ ସେ କଳାରେ ସ୍ନାତକୋତ୍ତର ଉପାଧି ପାଇଥିଲେ । ତାଙ୍କର ଅନ୍ୟଏକ ବିଷୟ ଥିଲା ‘‘ଭାରତର ଲାଭାଂଶ–ଏକ ଐତିହାସିକ ଏବଂ ବିଶ୍ଳେଷଣାତ୍ମକ ଅଧ୍ୟୟନ’’ । ସେଥିପାଇଁ ସେ କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି ଡ଼ିଗ୍ରୀ ପାଇଥିଲେ । ଏହା ପରେ ଆମ୍ବେଦ୍‌କର ଇଂଲଣ୍ଡ ଯାଇ ସେଠାରେ ଅର୍ଥଶାସ୍ତ୍ର ଏବଂ ରାଜନୀତି ବିଜ୍ଞାନ ଅଧ୍ୟୟନ କଲେ । ସେହି ସମୟରେ ବରୋଦା ସରକାର ତାଙ୍କର ବୃତ୍ତି ବନ୍ଦ କରିଦେବା ଫଳରେ ସେ ବାଧ୍ୟହୋଇ ଭାରତ ଫେରି ଆସିଲେ । ସୟାଜି ରାଓ ଗାଇକ୍ୱାଡ଼୍‌ଙ୍କ ସହିତ ହୋଇଥିବା ଚୁକ୍ତି ଅନୁସାରେ ସେ ବାକି ଥିବା ସମୟ ବରୋଦା ରାଜ୍ୟର ସେବାରେ ରହିଲେ । ତତ୍ପରେ ସେ ୧୯୧୭ ମସିହାରେ ବମ୍ବେ ଫେରିଆସି ସିଡ଼େନ୍‌ହାମ୍ ମହାବିଦ୍ୟାଳୟରେ ଜଣେ ଅଧ୍ୟାପକ ଭାବେ କାର୍ଯ୍ୟ କଲେ । ଏ ଚାକିରିରେ ଯୋଗଦେବାର ମୁଖ୍ୟ ଉଦ୍ଦେଶ୍ୟ ଥିଲା କିଛି ଅର୍ଥ ସଂଚୟ କରି ତାଙ୍କର ଉଚ୍ଚତର ଗବେଷଣାକୁ ସେ ଯେପରି ସାରିପାରିବେ । ଏହି ସମୟରେ କୋହ୍ଲାପୁରର ସାହୁ ମହାରାଜ ଦଳିତ ଶ୍ରେଣୀର କଲ୍ୟାଣ ପାଇଁ ଆଗ୍ରହ ଦେଖାଉଥିଲେ । ସେ ଭୀମରାଓଙ୍କ ସାହାଯ୍ୟରେ ଏକ ସମ୍ବାଦପତ୍ର ‘ମୁକନାୟକ’ ପ୍ରକାଶ କଲେ । ୧୯୨୦ ମସିହାରେ ଆମ୍ବେଦ୍‌କର ପୁନର୍ବାର ଲଣ୍ଡନଯାଇ ତାଙ୍କର ଶିକ୍ଷା ସମାପ୍ତ କରି ଭାରତକୁ ଫେରିଲେ । ସେତେବେଳେକୁ ସେ ଜଣେ ବାରିଷ୍ଟର ହୋଇଥାନ୍ତି । ତତ୍ପରେ ସେ ‘ବହିଷ୍କୃତ ହିତକାରିଣୀ ସଭା’ ସଂଗଠନ ଗଢ଼ିଲେ । ‘ବହିଷ୍କୃତ ହିତକାରିଣୀ ସଭା’ର ଲକ୍ଷ୍ୟ ଦଳିତ ସଂପ୍ରଦାୟର ଉନ୍ନତି ସାଧନ କରିବା । ସେ କେତେକ ବିଦ୍ୟାଳୟ ସ୍ଥାପନ କରି ତହିଁରେ ଗରିବ ବାଳକମାନଙ୍କ ପାଇଁ ପଠନ କକ୍ଷ ଏବଂ ପାଠାଗାର ଆଦି ସ୍ଥାପନ କଲେ । ଦଳିତ ଶ୍ରେଣୀପାଇଁ ସେ ପିତୃସ୍ଥାନୀୟ ଥିଲେ । ତାଙ୍କୁ ସେଥିପାଇଁ ବାବା ନାମରେ ଅଭିହିତ କରାଗଲା । ସମ୍ମାନର ସହିତ ତାଙ୍କୁ ବାବା ସାହେବ ବୋଲି ଲୋକମାନେ ଡାକିଲେ । ୧୯୨୯ ମସିହାରେ ସରକାର ତାଙ୍କୁ ବମ୍ବେ ବିଧାନସଭା ପାଇଁ ମନୋନୀତ କଲେ । ୧୯୨୭ ମସିହା ମାର୍ଚ୍ଚ ୧୯ ତାରିଖରେ ସେ ମାହାଡ଼ଠାରେ ଦଳିତ ଶ୍ରେଣୀର

ଏକ ସଭା ଆୟୋଜନ କଲେ । ସେଥିରେ ପ୍ରାୟ ଦଶହଜାର ବ୍ୟକ୍ତି ଯୋଗ ଦେଇଥିଲେ । ସଭାରେ ବାବା ସାହେବ ଉଦ୍‌ବୋଧନ ଦେଇ ଲୋକମାନଙ୍କୁ ଆତ୍ମନିର୍ଭରଶୀଳ ଏବଂ ଆତ୍ମଜ୍ଞାନବୃଦ୍ଧି ପାଇଁ ଉଦ୍‌ବୋଧନ ଦେଇଥିଲେ । ଦଳିତ ଶ୍ରେଣୀର ଲୋକ ଯେପରି ସାଧାରଣ ପୁଷ୍କରିଣୀମାନଙ୍କରେ ଜଳପାନ କରିପାରିବେ ଏବଂ ମନ୍ଦିର ମାନଙ୍କରେ ପ୍ରବେଶ କରିପାରିବେ ସେଥିପାଇଁ ବାବା ସାହେବ ଆନ୍ଦୋଳନାତ୍ମକ ସଂଘର୍ଷ କରିଥିଲେ । ସାଇମନ୍ କମିଶନଙ୍କ ଅନୁମୋଦନ କ୍ରମେ ବ୍ରିଟିଶ୍ ସରକାର ଭାରତର ବିଭିନ୍ନ ବର୍ଗର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ରାଉଣ୍ଡ ଟେବୁଲ୍ କନ୍‌ଫରେନ୍‌ସରେ ଯୋଗଦେବା ପାଇଁ ଇଂଲଣ୍ଡକୁ ଆମନ୍ତ୍ରଣ କରିଥିଲେ । ଅସ୍ପୃଶ୍ୟ ମାନଙ୍କର ପ୍ରତିନିଧିତ୍ୱ କରିବା ପାଇଁ ଡ଼କ୍ଟର ଆମ୍ବେଦ୍‌କରଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଇଥିଲା । ରାଉଣ୍ଡଟେବୁଲ୍ କନ୍‌ଫରେନ୍ସର ଦ୍ୱିତୀୟ ପର୍ଯ୍ୟାୟକୁ ମଧ୍ୟ ସେ ନିମନ୍ତ୍ରିତ ହୋଇଥିଲେ ଏବଂ ତାଙ୍କୁ ଭାରତର ସମ୍ବିଧାନର ରୂପରେଖ ପ୍ରସ୍ତୁତ କରିବାରେ ଦାୟିତ୍ୱ ଦିଆଯାଇଥିଲା । ଏହି ସଭାରେ ମହାତ୍ମାଗାନ୍ଧୀ ମଧ୍ୟ ଯୋଗଦେଇଥିଲେ । ୧୯୩୨ ମସିହା ନଭେମ୍ବର ମାସରେ ରାଉଣ୍ଡ ଟେବୁଲ୍ କନ୍‌ଫରେନ୍ସର ତୃତୀୟ ପର୍ଯ୍ୟାୟ ଆଲୋଚନା ହୋଇଥିଲା ଏବଂ ସେଥିରେ ବି ଡ଼କ୍ଟର ଆମ୍ବେଦ୍‌କର ଯୋଗଦେଇଥିଲେ । ୧୯୩୬ ମସିହାରେ ସେ ତାଙ୍କର ଏକ ନୂତନ ଦଳ ଗଠନ କରିଥିଲେ । ତାର ନାମ ଥିଲା ସ୍ୱାଧୀନ ଶ୍ରମିକ ଦଳ (Independent Labour Party) । ୧୯୩୭ ମସିହା ଫେବୃଆରୀ ୧୭ ତାରିଖ ଦିନ ନିର୍ବାଚନ ହେଲା । ଡ଼କ୍ଟର ଆମ୍ବେଦ୍‌କର ଏବଂ ତାଙ୍କର ଅନେକ ସଭ୍ୟ ଏହି ନିର୍ବାଚନରେ ବହୁଳ ଭୋଟ୍ ବ୍ୟବଧାନରେ ବିଜୟୀ ହେଲେ । କୋଙ୍କଣ ଅଞ୍ଚଳରେ ସେ ଚାଷଜମି ଉପରେ ଗୋଟି ପ୍ରଥାକୁ ରଦ୍ଦ କରିଥିଲେ ।

୧୯୩୯ ମସିହାରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେଲା । ବ୍ରିଟିଶ୍ ସରକାର ଭାରତ ଏହି ଯୁଦ୍ଧରେ ଇଂଲଣ୍ଡକୁ ସହଯୋଗ କରିବା ପାଇଁ ଚାହୁଁଥିଲେ । ଏହା ଜାଣିବା ପରେ ପ୍ରତ୍ୟେକ ରାଜ୍ୟରେ ଥିବା କଂଗ୍ରେସ ସରକାର ଇସ୍ତଫା ଦେଇଥିଲା । ଏହି ସମୟରେ ଡ଼କ୍ଟର ଆମ୍ବେଦ୍‌କର ଏକ ପୁସ୍ତକ ପ୍ରକାଶ କଲେ । ତାର ବିଷୟ ଥିଲା ପାକିସ୍ଥାନ ବିଷୟରେ ଚିନ୍ତନ । ଏହା ସବୁ ବର୍ଗରେ ଖୁବ୍ ସମାଲୋଚିତ ହେଲା । ସେ ବମ୍ବେ ରାଜ୍ୟପାଳଙ୍କୁ ସାକ୍ଷାତ କରି ମାହାର ମାନଙ୍କୁ ସୈନ୍ୟବାହିନୀରେ ଗ୍ରହଣ କରିବା ଉପରେ ଥିବା ନିଷେଧାଜ୍ଞାକୁ ଉଠାଇ ନେବାପାଇଁ ଏବଂ ଏକ ସ୍ୱତନ୍ତ୍ର ମାହାର ବାଟାଲିୟନ୍ ଗଠନ ପାଇଁ ପରାମର୍ଶ ଦେଇଥିଲେ । ଏହାପରେ ତାଙ୍କୁ ୧୯୪୧ ମସିହା ଜୁଲାଇ ମାସରେ ଭାରତର ଭାଇସ୍‌ରାୟ ସାମରିକ ପରାମର୍ଶ ଦାତା କମିଟିରେ ଗ୍ରହଣ କଲେ । ୧୯୪୨ ମସିହା ଅଗଷ୍ଟ ୯ ତାରିଖ ଦିନ ମହାତ୍ମାଗାନ୍ଧୀ ଭାରତଛାଡ଼ ଆନ୍ଦୋଳନ ଆରମ୍ଭ କଲେ । କର ବା ମର ଉଦ୍ଦେଶ୍ୟ ନେଇ ଏହି ଡାକରା ଦିଆଯାଇଥିଲା ।

୧୯୪୫ ମସିହା ଶେଷ ଭାଗରେ ଲର୍ଡ ୱାଭେଲ୍ ଭାରତ ବର୍ଷରେ ସାଧାରଣ ନିର୍ବାଚନ ପ୍ରକ୍ରିୟା ଆରମ୍ଭ ପାଇଁ ଘୋଷଣାନାମା ପ୍ରକାଶ କଲେ । ଏହି ସମୟ ବେଳକୁ ବ୍ରିଟିଶ୍ ସରକାର ମଧ୍ୟ ହୃଦୟଙ୍ଗମ କରୁଥିଲେ ଯେ ଆଉ ଭାରତବର୍ଷକୁ ପରାଧୀନ ରଖିବା ସମ୍ଭବପର ନୁହେଁ । ସେତେବେଳର ବ୍ରିଟିଶ୍ ପ୍ରଧାନମନ୍ତ୍ରୀ କ୍ଲିମେଣ୍ଟ ଅଟ୍‌ଲି ଭାରତ ପୂର୍ଣ୍ଣ ସ୍ୱାଧୀନତା ପାଇବା ପାଇଁ ହକଦାର ବୋଲି ପ୍ରକାଶ୍ୟରେ ଘୋଷଣା କଲେ । ସେହି ସମୟରେ ଡ଼କ୍ଟର ଆମ୍ବେଦ୍‌କର 'ପିପୁଲ୍‌ସ୍ ଏଜୁକେସନାଲ୍ ସୋସାଇଟି' ଗଠନ କରି ତାଙ୍କର ପ୍ରଥମ ମହାବିଦ୍ୟାଳୟ ସିଦ୍ଧାର୍ଥ କଲେଜ ସ୍ଥାପନ କଲେ । ମନ୍ତ୍ରିମଣ୍ଡଳର ପରାମର୍ଶ କ୍ରମେ ପ୍ରାଦେଶିକ ବିଧାନସଭାରେ ଥିବା ସଭ୍ୟମାନଙ୍କୁ ନେଇ ଏକ ପରିଷଦ ଭାରତର ସମ୍ବିଧାନ ପ୍ରସ୍ତୁତି ପାଇଁ ଗଠନ କରାଗଲା । ମୁସ୍‌ଲିମ୍ ଲିଗ୍ ଏବଂ ଅନୁସୂଚିତ ଜାତିଙ୍କ ସହାୟତାରେ ଡ଼କ୍ଟର ଆମ୍ବେଦ୍‌କରଙ୍କୁ ଏହି ପରିଷଦରେ ସଭ୍ୟ ପଦ ମିଳିଲା । ୧୯୪୭ ଅଗଷ୍ଟ ମାସରେ ସେ ବିଧାନସଭାକୁ ରାଜ୍ୟ ଏବଂ ସଂଖ୍ୟାଲଘୁ ବର୍ଗ ବିଷୟରେ ଏକ ଚିଠା ପ୍ରସ୍ତୁତ କରିଦେଲେ । ୧୯୪୭ ଏପ୍ରିଲ୍ ୨୯ ତାରିଖ ଦିନ ଏହି ପରିଷଦ ଘୋଷଣା କଲେ ଯେ ଭାରତରେ କୌଣସି ପ୍ରକାରର ଅସ୍ପୃଶ୍ୟତା ରହିବ ନାହିଁ । ବ୍ରିଟିଶ୍ ପାର୍ଲାମେଣ୍ଟରେ ୧୯୪୭ ମସିହା ଜୁଲାଇ ୧୫ ତାରିଖ ଦିନ ଭାରତୀୟ ସ୍ୱାଧୀନତା ଆକ୍ଟ ଘୋଷିତ ହେଲା । ଏବଂ ତା ପରେ ପରେ ଭାରତର ପ୍ରଥମ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଡ଼କ୍ଟର ଆମ୍ବେଦକରଙ୍କୁ ଏହି ମନ୍ତ୍ରିମଣ୍ଡଳରେ ଆଇନ୍‌ମନ୍ତ୍ରୀଭାବେ ଗ୍ରହଣ କରାଗଲା । ଏହି ପଦବୀ ସେ ଗ୍ରହଣ କଲେ ।

୧୯୪୭ ଅଗଷ୍ଟ ୧୫ ତାରିଖ ଦିନ ଭାରତ ସ୍ୱାଧୀନ ହେଲା । ଭାରତର ସମ୍ବିଧାନ ରଚନା କରିବା ପାଇଁ ଯେଉଁ କମିଟି ଗଠନ କରାଗଲା ତାର ସଭାପତି ପଦ ଡ. ଆମ୍ବେଦକରଙ୍କୁ ପ୍ରଦାନ କରାଗଲା । ୧୯୪୮ ଫେବୃୟାରୀ ମାସ ବେଳକୁ ଏହି ବିରାଟ ଏବଂ କଷ୍ଟସାଧ୍ୟ କାର୍ଯ୍ୟ ଆମ୍ବେଦକର ସମ୍ପୂର୍ଣ୍ଣ କଲେ । ୧୯୪୮ ଅକ୍ଟୋବର ମାସ ବେଳକୁ ତାଙ୍କର ପ୍ରସିଦ୍ଧ ପୁସ୍ତକ 'ଦ ଅନ୍‌ଟଚେବୁଲ୍ ବା ଅଛୁଆଁ ଲୋକ' ପ୍ରକାଶିତ ହେଲା । ସେ ହିନ୍ଦୁ ଲ ର କେତେକ ପରିବର୍ତ୍ତନ କରି ତାହାକୁ ସାମ୍ବିଧାନିକ ପରିଷଦରେ ଉପସ୍ଥାପନ କଲେ । ୧୯୫୨ ମସିହାର ପ୍ରଥମ ଭାଗରେ ସମ୍ବିଧାନ ପ୍ରସ୍ତୁତି ସରିବା ପରେ ପରବର୍ତ୍ତୀ ପ୍ରଥମ ସାଧାରଣ ନିର୍ବାଚନ ଅନୁଷ୍ଠିତ ହେଲା । ବାବା ସାହେବ ବିଧାନ ସଭା ପାଇଁ ଲଢ଼ି ନିର୍ବାଚନରେ ହାରିଥିଲେ । ପୁନର୍ବାର ସେ ୧୯୫୨ ମସିହା ମାର୍ଚ୍ଚ ମାସରେ ରାଜ୍ୟସଭାକୁ ନିର୍ବାଚିତ ହେବାରେ ସକ୍ଷମ ହେଲେ ।

ଏହି ସମୟରେ କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଡ଼କ୍ଟର ଆମ୍ବେଦକରଙ୍କୁ ଆଇନରେ ଡ଼କ୍ଟରେଟ୍ ଡ଼ିଗ୍ରୀ ପ୍ରଦାନ କରାଗଲା । ଏହି ଡ଼ିଗ୍ରୀ ଗ୍ରହଣ କରିବା ପାଇଁ ସେ ୧୯୫୨

ମସିହା ଜୁନ୍ ୫ ତାରିଖ ଦିନ ନ୍ୟୁୟର୍କ ଯାତ୍ରା କଲେ । ତାର ପରବର୍ଷ ହାଇଦ୍ରାବାଦ୍‌ର ଓସ୍‌ମାନିଆ ବିଶ୍ୱବିଦ୍ୟାଳୟ ତାଙ୍କୁ ସାହିତ୍ୟରେ ସମ୍ମାନଜନକ ଡ଼କ୍ଟରେଟ୍ ଡ଼ିଗ୍ରୀ ପ୍ରଦାନ କଲେ । ବୟସ ଏବଂ ସ୍ୱାସ୍ଥ୍ୟହାନୀ ହୋଇଥିଲେ ମଧ୍ୟ ଆମ୍ବେଦକର ଅବିରତ ତାଙ୍କ କାର୍ଯ୍ୟରେ ନିମଗ୍ନ ଥାଆନ୍ତି । ଯେତେବେଳେ ସେ ଜାଣିପାରିଲେ ଯେ ହିନ୍ଦୁ ଜାତିପ୍ରଥା ଦଳିତ ମାନଙ୍କୁ ସାମାଜିକ ନ୍ୟାୟ ଏବଂ ନାଗରିକ କ୍ଷମତା କେବେବି ଦେବା ସମ୍ଭବପର ନୁହେଁ ସେତେବେଳେ ସେ ଏକ ବିକଳ୍ପ ଧର୍ମ ଗ୍ରହଣ କରିବା ଯୋଜନାରେ ରହିଲେ । ସେ ଏକ ଧର୍ମ ଚାହୁଁଥିଲେ ଯେଉଁ ଧର୍ମରେ ପ୍ରତ୍ୟେକ ନାଗରିକ ସମାନ ବିବେଚିତ ହେଉଥିବେ ସେ ସେହିପରି ଏକ ଧର୍ମର ସନ୍ଧାନରେ ରହିଲେ । ତାଙ୍କ ପ୍ରଶ୍ନର ଉତ୍ତର ବୌଦ୍ଧ ଧର୍ମରେ ସେ ଆବିଷ୍କାର କଲେ । ଅନ୍ୟାନ୍ୟ ଅନେକ ଧର୍ମ ପୁସ୍ତକ ପଢ଼ିବା ପରେ ଶେଷରେ ୧୯୫୬ ମସିହା ଅକ୍ଟୋବର ୧୪ ତାରିଖ ଦିନ ସେ ବୌଦ୍ଧ ଧର୍ମ ଗ୍ରହଣ କଲେ । ଗୌତମ ବୁଦ୍ଧଙ୍କର ବାଣୀରେ ସେ ଯଥେଷ୍ଟ ପ୍ରଭାବିତ ହୋଇଥିଲେ ଏବଂ ବୌଦ୍ଧ ଧର୍ମାବଲମ୍ବୀମାନଙ୍କର ଘନିଷ୍ଠ ସମ୍ପର୍କରେ ଆସି ସେ ଏକ ସାଧାରଣ ସଭାରେ ଗୌତମ ବୁଦ୍ଧଙ୍କର ଜନ୍ମ ଦିନରେ ଦିଲ୍ଲୀଠାରେ ଭାଷଣ ଦେଲେ । କଲୋମ୍ବୋରେ ହେଉଥିବା ବୌଦ୍ଧଧର୍ମାବଲମ୍ବୀ ମାନଙ୍କର ମହାସଭାରେ ସେ ସକ୍ରିୟ ଅଂଶ ଗ୍ରହଣ କଲେ । ଧୀରେ ଧୀରେ ତାଙ୍କର ବୟସ ବଢ଼ିଲା ଏବଂ ତା ସହିତ ଅସୁସ୍ଥତା ବି । ଅସୁସ୍ଥତା ସତ୍ତ୍ୱେ ତାଙ୍କର ଲେଖାପଢ଼ା ଅବିରତ ଚାଲିଥାଏ । ଶେଷରେ ତାଙ୍କର ପୁସ୍ତକ 'ବୁଦ୍ଧଦେବ ଏବଂ ତାଙ୍କ ବାଣୀ' ପ୍ରକାଶିତ ହେଲା । ତାଙ୍କର ଅନ୍ୟଦୁଇ ପୁସ୍ତକ ଭାରତରେ ବିପ୍ଳବ ଏବଂ ପ୍ରତି ବିପ୍ଳବ ତଥା ବୁଦ୍ଧ  ମଧ୍ୟ ପ୍ରକାଶିତ ହେଲା । ସେ ଜଣେ ଅତି ବିବଦମାନ ବ୍ୟକ୍ତିତ୍ୱ ହୋଇଥିଲେ ହେଁ ଭାରତର ସମ୍ବିଧାନ ପ୍ରସ୍ତୁତ କରିବାରେ ତାଙ୍କର ଭୂମିକା ଅତୀବ ପ୍ରଶଂସନୀୟ । ତା ଛଡ଼ା ହିନ୍ଦୁ ଲ ରେ ସଂସ୍କାର ଆଣିବା ପାଇଁ ସେ ମୁଖ୍ୟତଃ ଦାୟୀ । ୧୯୫୬ ମସିହାରେ ତାଙ୍କର ମୃତ୍ୟୁ ହେବା ପୂର୍ବରୁ ସେ ଦଳିତ ମାନଙ୍କୁ ସମାଜରେ ସମ୍ମାନାସ୍ପଦ ସ୍ଥାନ ଦେବାରେ ସଫଳ ହୋଇଥିଲେ । ଆଜି ଆଧୁନିକ ଭାରତରେ ମନ୍ଦିର ଏବଂ ସମସ୍ତ ସାଧାରଣ ସ୍ଥାନ ଦଳିତ ମାନଙ୍କ ପାଇଁ ଉନ୍ମୁକ୍ତ ରହିଛି । ୧୯୫୬ ମସିହା ଡ଼ିସେମ୍ବର ୬ ତାରିଖ ଦିନ ଆମ୍ବେଦକରଙ୍କର ନିର୍ବାଣ ପ୍ରାପ୍ତି ହେଲା । ତାଙ୍କୁ ମରଣୋତ୍ତର ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନ ୧୯୯୦ ମସିହାରେ ଦିଆଗଲା ।

* * *

# ନେଲ୍‌ସନ୍ ମାଣ୍ଡେଲା



୧୯୧୮
ଭାରତରତ୍ନ - ୧୯୯୦

ଦକ୍ଷିଣ ଆଫ୍ରିକାର ସାମାଜିକ ଓ ରାଜନୈତିକ କ୍ଷେତ୍ରକୁ ସଂକୀର୍ଣ୍ଣ ବର୍ଣ୍ଣବୈଷମ୍ୟ ବହୁକାଳ ଯାଏଁ ଆଚ୍ଛନ୍ନ କରି ରଖିଥିଲା । ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ମହାତ୍ମାଗାନ୍ଧି ପ୍ରଥମେ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ପ୍ରବାସୀ ଭାରତୀୟମାନଙ୍କୁ ନାଗରିକ ଅଧିକାର ଏବଂ ସାମାଜିକ କ୍ଷେତ୍ରରେ ସମାନ ସ୍ଥାନ ଦେବାପାଇଁ ଦାବୀ କରି ସେଠାରେ ଆନ୍ଦୋଳନ କରିଥିଲେ । ତେବେ ଦକ୍ଷିଣ ଆଫ୍ରିକାର ସ୍ଥାନୀୟ କୃଷ୍ଣକାୟ ମାନଙ୍କ ପ୍ରତି ସେଠିକାର ଗୋରା ସରକାର ବର୍ଣ୍ଣବୈଷମ୍ୟ ଭାବ ରଖି ଅବିଚାର କରୁଥିଲେ । ତାଙ୍କ ବିରୁଦ୍ଧରେ ବିଂଶ ଶତାବ୍ଦୀର ମଧ୍ୟଭାଗରେ ଯେଉଁ ସାମାଜିକ ଚେତନାର ସୂତ୍ରପାତ ହେଲା ତାର କର୍ଣ୍ଣଧାର ଥିଲେ ନେଲ୍‌ସନ୍ ମାଣ୍ଡେଲା । ଦୀର୍ଘ ୨୭ ବର୍ଷ କାଳ ସେ ଦକ୍ଷିଣ ଆଫ୍ରିକାରେ ରାଜନୈତିକ ବନ୍ଦୀ ଭାବେ ରହିଲେ । କିନ୍ତୁ ଜେଲ୍‌ରୁ ମୁକ୍ତି ହେବା ପରେ



୧୯୯୪ ମସିହାରେ ସେ ଦକ୍ଷିଣ ଆଫ୍ରିକା ଗଣତନ୍ତ୍ରର ପ୍ରଥମ କୃଷ୍ଣକାୟ ରାଷ୍ଟ୍ରପତି ଭାବେ ନିର୍ବାଚିତ ହେଲେ । ଏହା ସମଗ୍ର ପୃଥିବୀରେ ଏକ ଆଲୋଡ଼ନ ସୃଷ୍ଟି କଲା । ବିଶ୍ୱର ସମସ୍ତ ସ୍ୱାଧୀନ ରାଷ୍ଟ୍ର ଚମତ୍କୃତ ହେଲା ନେଲ୍‌ସନ୍ ମାଣ୍ଡେଲାଙ୍କର ଏହି ଅଭୂତପୂର୍ବ ସାଫଲ୍ୟରେ । ତାଙ୍କର ଏହି ଅନନ୍ୟ ଆନ୍ଦୋଳନ ଏବଂ ଦେଶ ପାଇଁ କୃଷ୍ଣକାୟମାନଙ୍କ ପାଇଁ ନିଷ୍ଠା ଓ ତ୍ୟାଗର ନିଦର୍ଶନ ଇତିହାସରେ ବିରଳ । ଭାରତ ବର୍ଷରେ ମହାତ୍ମାଗାନ୍ଧିଙ୍କୁ ଜାତିର ଜନକ ଭାବେ ଅବିହିତ ହେଲା ପରି ନେଲ୍‌ସନ୍ ମାଣ୍ଡେଲାଙ୍କୁ ଦକ୍ଷିଣ ଆଫ୍ରିକାର ଜନକ ବୋଲି କୁହାଯାଏ ।

୧୯୧୮ ଜୁଲାଇ ୧୯ ତାରିଖରେ ନେଲ୍‌ସନ୍ ମାଣ୍ଡେଲା ସାଉଥ୍ ଆଫ୍ରିକାର ଉମ୍‌ଟାଟା ଫ୍ରାନ୍‌ସକିରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ହେନେରୀ ମାକାନୀ ସ୍ୱାଡ୍ ଡାଡ୍‌ଲା ଏବଂ ତାଙ୍କର ତୃତୀୟ ପତ୍ନୀ ନସଡେଲି ଫ୍ୟାନୀ । ହେନେରୀ ଡାଡ୍‌ଲା ପାରାମାଉଣ୍ଟ ଦକ୍ଷିଣ ଆଫ୍ରିକାର ହେମ୍ବୁ ଜନଜାତିର ମୁଖିଆ ଏବଂ ମୁଖ୍ୟ ପରିଷଦ ଥିଲେ । ମାଣ୍ଡେଲାଙ୍କୁ ସେ ତାଙ୍କରି ପରି ତାଙ୍କ ଜାତିର ମୁଖିଆ ଭାବେ ଗଢ଼ି ତୋଳିବାକୁ ଚେଷ୍ଟା କରୁଥିଲେ । ହେନେରୀ ଡାଡ୍‌ଲା ଚାରିଜଣ ମହିଳାଙ୍କୁ ବିବାହ କରିଥିଲେ ଏବଂ ସମୁଦାୟ ତାଙ୍କର ୧୨ଟି ସନ୍ତାନ ଥିଲେ । ମାଣ୍ଡେଲାଙ୍କର ମାତା ନିରକ୍ଷର ଥିଲେ । କିନ୍ତୁ ମାଣ୍ଡେଲାଙ୍କୁ ଶିକ୍ଷା ଦେବାପାଇଁ ତାଙ୍କୁ ସ୍ଥାନୀୟ ଏକ ବିଦ୍ୟାଳୟରେ ଭର୍ତ୍ତି କରାଗଲା । ସେ ଆବାଲ୍ୟରୁ ଧୀରସ୍ଥିର ଏବଂ ପରିଶ୍ରମୀ ଥିଲେ ।

ନେଲ୍‌ସନ୍ ମାଣ୍ଡେଲାଙ୍କୁ ମାତ୍ର ୧୦ ବର୍ଷ ହୋଇଥିଲା ବେଳେ ତାଙ୍କର ପିତାଙ୍କର ମୃତ୍ୟୁ ହେଲା । ତା ପରେ ତାଙ୍କ ପାଠପଢ଼ା ତାଙ୍କର ଜଣେ କକାପୁଅ ଭାଇ ଜଙ୍ଗିଟାୱାଙ୍କ ଦାୟିତ୍ୱରେ ହୋଇଥିଲା । ସେ ମଧ୍ୟ ମାଦିବା ଜନଜାତି ଗୋଷ୍ଠୀର ମୁଖିଆ ଥିଲେ । ୧୯୨୮ ମସିହାରେ ନେଲ୍‌ସନ୍ କେକେୱାନୀ ପ୍ରସାଦରେ ଅବସ୍ଥାନ କଲେ । ତାଙ୍କ ସମ୍ପର୍କୀୟ ଜଷ୍ଟିସ୍‌ଙ୍କ ସହିତ ରହି ସେ ଇଂରାଜୀ, ଭୂଗୋଳ ଏବଂ ଇତିହାସ ଆଦି ବିଷୟ ପାଠ କଲେ ।

ପ୍ରତିଦିନ ସେ ଓ ତାଙ୍କ ସମ୍ପର୍କୀୟ ଭାଇ ସ୍କୁଲ୍‌ରୁ ଫେରିବା ପରେ ସଂଧ୍ୟାବେଳେ ତାଙ୍କ ପାଳିତ ଗାଈଗୋରୁଙ୍କୁ ଘରକୁ ଫେରାଇ ଆଣନ୍ତି ଏବଂ କ୍ଷୀର ଦୁହଁନ୍ତି । ସଂଧ୍ୟାବେଳେ ସେମାନେ ନିଆଁ ପାଖରେ ବସି ସେକି ହେଲାବେଳେ ବୟୋଜ୍ୟେଷ୍ଠମାନଙ୍କଠାରୁ ତାଙ୍କ ଦେଶର ବିଭିନ୍ନ ହାଲ୍‌ଚାଲ୍ ଶୁଣନ୍ତି । ଗୋରାମାନେ ତାଙ୍କ ଦେଶକୁ ଆସିବା ପୂର୍ବରୁ ସେମାନେ କିପରି ଥିଲେ ସେ ବିଷୟରେ ଶୁଣିନ୍ତି । ନେଲ୍‌ସନ୍ ମାଣ୍ଡେଲା ମୁଖିଆମାନଙ୍କ ଦପ୍ତରକୁ ଯେଉଁ ସବୁ କେସ୍ ଆସି ବିଚାର କରାଯାଏ ସେ ବିଷୟ ଧ୍ୟାନ ସହକାରେ ଶୁଣନ୍ତି ଏବଂ ନିଜେ ଜଣେ ଓକିଲ ହେବାପାଇଁ ଚେଷ୍ଟା କରନ୍ତି । କ୍ଲାର୍କବେରୀ ଏବଂ ପରେ ଫିଲ୍‌ଡଟାଉନ୍‌ରେ ଥିବା କୃଷ୍ଣକାୟମାନଙ୍କ ପାଇଁ ଉଦ୍ଦିଷ୍ଟ ଥିବା ସ୍କୁଲ୍‌ମାନଙ୍କରେ ଅଧ୍ୟୟନ କରିବାପାଇଁ ନେଲ୍‌ସନ୍‌ଙ୍କୁ ପଠାଗଲା । ସେ ସମୟରେ କୃଷ୍ଣକାୟ, ଗୋରା ଏବଂ ଏସୀୟ ଛାତ୍ରମାନଙ୍କ ପାଇଁ ଭିନ୍ନ ଭିନ୍ନ ସ୍କୁଲ୍ ଉଦ୍ଦିଷ୍ଟ ଥିଲା । ଗୋରା ମାନଙ୍କର ପ୍ରତ୍ୟେକ ଶିଶୁଙ୍କ ପାଇଁ ଶିକ୍ଷା ବାଧ୍ୟତା ମୂଳକ ହୋଇଥିଲା ବେଳେ ଅନେକ କୃଷ୍ଣକାୟ ଶିଶୁ ସ୍କୁଲ୍‌କୁ ଯାଇପାରୁନଥିଲେ କିମ୍ବା ଅଧାରୁ ପାଠପଢ଼ା ଛାଡ଼ିଦେଉଥିଲେ ।

ପ୍ରତି ଶନିବାର ଦିନ ମାଣ୍ଡେଲା ପାଖରେ ଅର୍ଥ ଥିଲେ କିଛି ମାଛ ଏବଂ ଅନ୍ୟାନ୍ୟ ଖାଦ୍ୟ ପଦାର୍ଥ କିଣିବା ପାଇଁ ସାତ ମାଇଲ୍ ଚାଲିଚାଲି ଯାଉଥିଲେ । ୧୯୩୮ ମସିହାରେ ସେ ତାଙ୍କର ସ୍କୁଲ୍ ପାଠ ସାରିବା ପରେ ଫିଲ୍‌ଡଟାଉନ୍ ନିକଟସ୍ଥ ପୋର୍ଟହାରେରେ ଥିବା ମହାବିଦ୍ୟାଳୟରେ ନାମ ଲେଖାଇଲେ । ସେଠାରେ ସେ କଳାରେ ସ୍ନାତକ ଡ଼ିଗ୍ରୀ ହାସଲ କଲେ । ଏହିଠାରେ ଛାତ୍ର ଥିଲାବେଳେ ଅଲିଭର୍ ଟମ୍ବୋ ନାମକ ବ୍ୟକ୍ତିଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ସେ ଏବଂ ଟମ୍ବୋ ସାରାଜୀବନ ଘନିଷ୍ଠ ବନ୍ଧୁ ହୋଇ ରହିଲେ । ସେ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ଛାତ୍ରଛାତ୍ରୀମାନେ ତାଙ୍କୁ ଦିଆଯାଉଥିବା ନିକୃଷ୍ଟ ଖାଦ୍ୟ ପେୟ ବିରୁଦ୍ଧରେ ଅଭିଯୋଗ କଲେ । ଟମ୍ବୋ ଏବଂ ମାଣ୍ଡେଲା ଏହାର ନେତୃତ୍ୱ ନେଇଥିଲେ । ସେମାନେ ହରତାଲ୍ କରିବା ଯୋଗୁଁ ତାଙ୍କୁ ବିଶ୍ୱବିଦ୍ୟାଳୟରୁ ବରଖାସ୍ତ କରାଗଲା । ୧୯୪୧ ମସିହାରେ ତାଙ୍କୁ ମାତ୍ର ୨୩ ବର୍ଷ ହୋଇଥିଲା ବେଳେ ନେଲ୍‌ସନ୍ ମାଣ୍ଡେଲା ଜୋହାନ୍‌ସବର୍ଗକୁ ଆସିଲେ ଏବଂ ସେଠାରେ ଗୋଟିଏ ଖଣିରେ ପୋଲିସ୍ ଭାବେ ଯୋଗଦେଲେ । ସେତେବେଳକୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇସାରିଥିଲା । ଦକ୍ଷିଣ ଆଫ୍ରିକା, ଜର୍ମାନୀ ବିରୁଦ୍ଧରେ ଯୁଦ୍ଧରେ ଇଂଲଣ୍ଡ ସହିତ ହାତ ମିଳାଇଥାଏ । ଯୁଦ୍ଧରେ ବ୍ୟବହୃତ ପଦାର୍ଥର ଅଧିକ ଉତ୍ପାଦନ ଆବଶ୍ୟକତା ପଡ଼ିଲା । ଫଳରେ ପ୍ରତ୍ୟେକଟି କଳକାରଖାନା ଅଧିକ ସକ୍ରିୟ ହୋଇପଡ଼ିଲେ । ଯୁଦ୍ଧ ଉପଯୋଗୀ

ବିଭିନ୍ନ କାର୍, ଟ୍ରକ୍ ଠାରୁ ଆରମ୍ଭ କରି ସୈନିକ ମାନଙ୍କପାଇଁ ଅସ୍ତ୍ରଶସ୍ତ୍ର, ଜୋତା, ପୋଷାକ, ସିଗାରେଟ୍, ଖାଦ୍ୟପଦାର୍ଥ ଆଦିର ଆବଶ୍ୟକତା ପୂରଣ କରିବାକୁ ପଡ଼ିଲା । ସେଥିପାଇଁ ଅଧିକ ଶ୍ରମିକ ଆବଶ୍ୟକ ହେଲେ । ସେତେବେଳର ଦକ୍ଷିଣଆଫ୍ରିକା ସରକାର କୃଷ୍ଣକାୟମାନେ ସୈନବାହିନୀରେ ଯୋଗଦେବାପାଇଁ ବାହିଁଲେ । କିନ୍ତୁ ସେମାନଙ୍କୁ ଅସ୍ତ୍ରଶସ୍ତ୍ର ଦିଆଗଲା ନାହିଁ । ଡ଼କ୍ଟର ଏ.ବି ଜୁମାଙ୍କୁ ଆଫ୍ରିକୀୟ ଜାତୀୟ କଂଗ୍ରେସ (ଏ.ଏନ୍.ସି)ର ନୂତନ ସଭାପତି ରୂପେ ନିର୍ବାଚିତ କରାଗଲା । ସେ ଏ.ଏନ୍.ସି କୁ ଏକ ଆଧୁନିକ ରାଜନୈତିକ ଆନ୍ଦୋଳନରେ ପରିଣତ କଲେ ।

ନେଲ୍‌ସନ୍ ଆଲେକ୍‌ଜାଣ୍ଡ୍ରାରେ ଅବସ୍ଥାନ କରି ସେହିଠାରୁ ପତ୍ର ବିନିମୟ ପାଠ୍ୟକ୍ରମ ମାଧମରେ ସ୍ନାତକ ଡ଼ିଗ୍ରୀ ହାସଲ କଲେ । ଜଣେ ଶ୍ୱେତକାୟ ଓକିଲଙ୍କ ଅଧୀନରେ ଓକିଲାତି ଶିକ୍ଷା କଲେ । ସେହି ବରିଷ୍ଠ ଓକିଲ ମାଣ୍ଡେଲା କିପରି ଏହି ବ୍ୟବସାୟରେ ଅଧିକ ଲାଭବାନ ହେବେ ସେଥିପାଇଁ ଧ୍ୟାନ ଦେଲେ । ସେହି ସମୟରେ ମାଣ୍ଡେଲା ୱାଲଟର୍ ଶିଶୁଲୁଙ୍କୁ ସାକ୍ଷାତ କଲେ ଏବଂ ତାଙ୍କ ପରିବାର ସହିତ ଅର୍‌ଲାଣ୍ଡୋରେ ଅବସ୍ଥାନ କଲେ ।

୧୯୪୨ ମସିହାରେ ମାଣ୍ଡେଲା ଆଫ୍ରିକାନ୍ ନ୍ୟାସନାଲ୍ କଂଗ୍ରେସ ବା ଏ.ଏନ୍.ସିରେ ଯୋଗଦେଇ ରାଜନୀତିରେ ପ୍ରବେଶ କଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସେତେବେଳେ ଶିଖର ପର୍ଯ୍ୟାୟରେ ପହଞ୍ଚିଥିଲା । ସେ ସମୟରେ ଏ.ଏନ୍.ସିର କେତେକ ଯୁବ ଆଫ୍ରିକୀୟ ସଭ୍ୟଙ୍କ ଉଦ୍ୟମରେ ଆନ୍‌ଟନ୍ ଲେମ୍ବେଡେଙ୍କ ନେତୃତ୍ୱରେ ଏକ ଛୋଟ ଦଳ ଗଠନ କରାଗଲା । ସେମାନେ ଏ.ଏନ୍.ସି କୁ ଏକ ଜନଆନ୍ଦୋଳନରେ ପରିଣତ କରିବା ପାଇଁ ମନସ୍ଥ କଲେ । ଜାତୀୟ ସ୍ତରରେ ସେମାନେ ନିଜର ଏବଂ କୃଷ୍ଣକାୟ ମାନଙ୍କର ସ୍ଥିତିକୁ ସୁଦୃଢ଼ କରିବା ପାଇଁ କେତେକ ନୀତି ନିର୍ଦ୍ଧାରଣ କଲେ ।

୧୯୪୪ ମସିହାରେ ନେଲ୍‌ସନ୍ ମାଣ୍ଡେଲା ହେଭିଲିନ୍ ମସେ ନାମକ ଜଣେ ନର୍ସଙ୍କୁ ବିବାହ କଲେ । ତାର ପରବର୍ଷ ତାଙ୍କର ପ୍ରଥମ ପୁତ୍ର ଜନ୍ମ ଗ୍ରହଣ କଲା । ପରେ ସେମାନଙ୍କର ଆଉ ଗୋଟିଏ ପୁଅ ଏବଂ ଦୁଇଟି ଝିଅ ଜାତ ହେଲେ । ନେଲ୍‌ସନ୍ ମାଣ୍ଡେଲା ଖୁବ୍ ସ୍ୱାସ୍ଥ୍ୟ ସଚେତନ ଥିଲେ ଏବଂ ଶରୀରକୁ ସକ୍ଷମ ରଖିବା ପାଇଁ ସେ ପ୍ରତିଦିନ ଜିମ୍‌ନାସିଅମ୍‌କୁ ଯାଉଥିଲେ ଏବଂ ମୁଷ୍ଟିଯୁଦ୍ଧ ଶିକ୍ଷା କରୁଥିଲେ । ଏହା ସହିତ ସେ ତାଙ୍କର ଓକିଲାତି ଶିକ୍ଷା ୟୁଥ୍ ୱାଟରର ଷ୍ଟାଣ୍ଡ ବିଶ୍ୱବିଦ୍ୟାଳୟରେ ଚାଲୁ ରଖିଲେ ।



ଆଫ୍ରିକାରେ କୃଷ୍ଣକାୟ ବ୍ୟକ୍ତିମାନଙ୍କୁ ଦେଶର ସବୁ ରେଲ୍‌ଗାଡ଼ି ଏବଂ ବସ୍‌ରେ ଯିବାକୁ ଅନୁମତି ନ ଥିଲା । ଅଣଶ୍ୱେତକାୟ ବ୍ୟକ୍ତିମାନଙ୍କୁ ଦେଶର ସବୁ ପାର୍କ ଏବଂ ଲାଇବ୍ରେରୀଗୁଡ଼ିକ ବାରଣ ଥିଲା । ସମୁଦ୍ର ତଟଗୁଡ଼ିକ ମଧ୍ୟ କେବଳ ଶ୍ୱେତକାୟ ବ୍ୟକ୍ତିମାନଙ୍କ ପାଇଁ ସଂରକ୍ଷିତ ଥିଲା । ବିଭିନ୍ନ ପ୍ରେକ୍ଷାଳୟରେ ପ୍ରବେଶ ନିଷେଧ ଥିଲା । ଶ୍ରମଭିତ୍ତିକ ଅନୁଷ୍ଠାନ ଗୁଡ଼ିକରେ କେତେକ ନିର୍ଦ୍ଦିଷ୍ଟ ସ୍ତର ଉପରର ପଦବୀ କୃଷ୍ଣକାୟମାନଙ୍କୁ ମିଳି ନ ଥିଲା ।

୧୯୪୮ ମସିହା ବେଳକୁ ମାଣ୍ଡେଲା ଏ.ଏନ୍.ସି ର ଯୁବମଣ୍ଡଳରେ ପ୍ରସିଦ୍ଧି ଲାଭ କରିଥାନ୍ତି । ଫଳରେ ସେ ଏ.ଏନ୍.ସିର ଯୁବମଣ୍ଡଳର ସାଧାରଣ ସଂପାଦକ ଭାବେ ନିର୍ବାଚିତ ହେଲେ । ତାର ପରବର୍ତ୍ତୀ ସମୟରେ ସେ ଏହି ସଂଗଠନକୁ ଜାତୀୟ ସ୍ତରରେ ପରିଚିତ କରାଇପାରିଲେ ।

୧୯୪୯ ମସିହାର ଶେଷ ବେଳକୁ ଏ.ଏନ୍.ସି ଦକ୍ଷିଣ ଆଫ୍ରିକାରେ ଗୋରା ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ ଏବଂ ତାର ପ୍ରଥମ ପଦକ୍ଷେପ ଭାବେ ସେ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । ୧୯୫୦ ଜୁନ୍ ୨୬ ତାରିଖ ଦିନ ତାଙ୍କୁ ମୁଖ୍ୟ ସ୍ୱେଚ୍ଛାସେବୀଭାବେ ଏବଂ ଏହି ପ୍ରତିବାଦର ମୁଖ୍ୟ ସଂଗଠକ ଭାବେ ଅଧିଷ୍ଠିତ କରାଗଲା । ୧୯୫୧ ମସିହାରେ ସେ ଯୁବମଣ୍ଡଳର ସଭାପତି ହେଲେ । ୧୯୯୨ ମସିହାରେ ସେ ଟ୍ରାନ୍ସଭାଲ୍ ପ୍ରଦେଶର ସଭାପତି ଭାବେ ଅଧିଷ୍ଠିତ ହେଲେ । ଏହି ପଦବୀ ତାଙ୍କୁ ଜାତୀୟ ସ୍ତରରେ ପରିଚିତ କରାଇବା ସହିତ ଚାରିଜଣ ଉପରାଷ୍ଟ୍ରପତିଙ୍କ ମଧ୍ୟରେ ସେ ଜଣେ ହୋଇ ପରିଚିତ ହେଲେ ।

ଏ.ଏନ୍.ସି ତାଙ୍କର ଆନ୍ଦୋଳନକୁ ତୀବ୍ରତର କଲେ ଏବଂ ଯେତେ ସବୁ ବର୍ଣ୍ଣଗତ ବୈଷମ୍ୟ ଜନିତ ଆଇନ୍ କାନୁନ୍ ଥିଲା ସେ ସବୁକୁ ଅମାନ୍ୟ କରିବା ପାଇଁ ସେ ଦକ୍ଷିଣ ଆଫ୍ରିକୀୟମାନଙ୍କୁ ଆହ୍ୱାନ କଲେ । ଏଥିପାଇଁ ଏହା ଏକ ଅହିଂସା ଆନ୍ଦୋଳନ ଥିଲା । ସେ ଆନ୍ଦୋଳନ ପାଇଁ ମାଣ୍ଡେଲାଙ୍କୁ ବନ୍ଦୀ କରାଗଲା କିନ୍ତୁ ଅଳ୍ପ କିଛିଦିନ ପରେ ତାଙ୍କୁ

ଜେଲ୍‌ରୁ ମୁକ୍ତି ବି ମିଳିଥିଲା । ତେବେ ୬ ମାସ ପାଇଁ ସେ ଜୋହାନ୍‌ସବର୍ଗ ଛାଡ଼ି ଅନ୍ୟଆଡ଼େ ଯିବେ ନାହିଁ ଏବଂ କୌଣସି ସଭା ସମିତିରେ ଯୋଗ ଦେବେ ନାହିଁ ବୋଲି ତାଙ୍କ ଉପରେ ସର୍ତ୍ତ ରଖାଗଲା । ସେହି ସମୟ ମଧ୍ୟରେ ମାଣ୍ଡେଲା ଓକିଲାତି ବ୍ୟବସାୟ ପାଇଁ ଥିବା ସର୍ବୋଚ୍ଚ ପରୀକ୍ଷା ଦେଇ ସେଥିରେ କୃତକାର୍ଯ୍ୟ ହେଲେ ଏବଂ ଓକିଲାତି ବ୍ୟବସାୟ ଆରମ୍ଭ କଲେ । ସେ ଅଲିଭର୍ ଟମ୍ବୋଙ୍କ ସହିତ ମିଶି ଜୋହାନ୍ସବର୍ଗରେ ଓକିଲାତି ବ୍ୟବସାୟ ଆରମ୍ଭ କରିଥିଲେ । ତଥାପି ବର୍ଣ୍ଣବୈଷମ୍ୟର ନିୟମ କାନୁନ୍ ତାଙ୍କ ପିଛା ଛାଡ଼ିଲା ନାହିଁ । ସେ କେବଳ ସରକାରଙ୍କ ଦ୍ୱାରା ନୁହେଁ ବରଂ ଓକିଲ ସମୁଦାୟଙ୍କ ଦ୍ୱାରା ମଧ୍ୟ ଅତ୍ୟାଚାରିତ ହେଲେ । ତାଙ୍କର ଓକିଲାତି ବ୍ୟବସାୟ ପାଇଁ ପାଇଥିବା ଅନୁମତିକୁ ରଦ୍ଦ କରିବା ପାଇଁ ଓକିଲ ସମୁଦାୟ ସୁପ୍ରିମ୍ କୋର୍ଟରେ ନିବେଦନ କଲେ । ତେବେ ଜଷ୍ଟିସ୍ ରାମସ୍ୱବଟମ୍ ଏହି ଆବେଦନକୁ ଖାରଜ କଲେ । ମାନ୍ୟବର ଜଷ୍ଟିସ୍ ରାମ୍‌ସବଟମ ତାଙ୍କ ବିଚାରପତ୍ରରେ ଉଲ୍ଲେଖ କରିଥିଲେ ଯେ, ମାଣ୍ଡେଲା ଯାହାକିଛି କରିଛନ୍ତି ତାଙ୍କର ଦେଶବାସୀଙ୍କ କଲ୍ୟାଣ ପାଇଁ କରିଛନ୍ତି ତେଣୁ ତାଙ୍କୁ ଏହି ସମ୍ମାନନୀୟ ବ୍ୟବସାୟରୁ ବଞ୍ଚିତ କରିବା ଯୁକ୍ତିଯୁକ୍ତ ହେବନାହିଁ । ତା ପରେ ମାଣ୍ଡେଲା ଏ.ଏନ୍.ସିର କର୍ମକର୍ତ୍ତାମାନଙ୍କ ସହିତ ମିଶି ତାଙ୍କର ଆନ୍ଦୋଳନାତ୍ମକ କାର୍ଯ୍ୟ ଚାଲୁ ରଖିଲେ । ୧୯୫୬ ଡ଼ିସେମ୍ବର ମାସରେ ସେ ଏବଂ ଅନ୍ୟ ୧୫୬ ଜଣ ବିଦ୍ରୋହୀଙ୍କ ବିରୁଦ୍ଧରେ ରାଜଦ୍ରୋହ ମକଦ୍ଦମା ଚାଲିଥିଲା । ସେ ମକଦ୍ଦମା ୧୯୬୧ ମସିହା ପର୍ଯ୍ୟନ୍ତ ଚାଲିଲା ଏବଂ ଶେଷରେ ତାଙ୍କୁ ଏହି ଅଭିଯୋଗରୁ ମୁକ୍ତ କରାଗଲା । ୧୯୫୮ ମସିହାରେ ସେ ୱିନି ମାଣ୍ଡେଲାଙ୍କୁ ବିବାହ କରିଥିଲେ । ୧୯୬୦ ମସିହାରେ ଫାର୍କ ଭିଲେରେ ଦକ୍ଷିଣ ଆଫ୍ରିକାର ନିରାପତ୍ତା ବାହିନୀଙ୍କ ଦ୍ୱାରା ଏକ ନରସଂହାର ହୋଇଥିଲା । ତହିଁରେ ୬୭ ଜଣ କୃଷ୍ଣକାୟ ବ୍ୟକ୍ତିଙ୍କୁ ନିର୍ମମ ଭାବେ ହତ୍ୟା କରାଯାଇଥିଲା । ନିହତ କୃଷ୍ଣକାୟ ବ୍ୟକ୍ତିମାନେ ବର୍ଣ୍ଣବୈଷମ୍ୟ ନୀତି ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କରୁଥିଲେ । ତା ପରେ ଏ.ଏନ୍.ସି ଏବଂ ପାନ୍ ଆମେରିକାନ୍ କଂଗ୍ରେସ୍‌କୁ ନିଷିଦ୍ଧ କରାଗଲା । ୧୯୬୧ ମସିହା ମାର୍ଚ୍ଚ ମାସରେ ସେ ପୁନର୍ବାର ବନ୍ଦୀ ହେବା ଏବଂ ତାଙ୍କର ଦଳ ନିଷିଦ୍ଧ ହେବାରୁ ବର୍ତ୍ତିବା ପାଇଁ ଆତ୍ମଗୋପନ କଲେ । ପୋଲିସ୍ ଦୃଷ୍ଟିରୁ ରକ୍ଷା ପାଇବା ପାଇଁ ଛଦ୍ମବେଶରେ ବୁଲିଛନ୍ତି । କେତେବେଳେ ଜଣେ ସାଧାରଣ ଶ୍ରମିକ ବେଶରେ ତ କେତେବେଳେ ଜଣେ ଡ୍ରାଇଭର ବେଶରେ ବୁଲି ସେ ତାଙ୍କର ସାଂଗଠନିକ କାର୍ଯ୍ୟ କରିଥିଲେ । ଛଦ୍ମବେଶ ଧାରଣ କରିବାରେ ସିଦ୍ଧହସ୍ତ ହୋଇଥିବାରୁ ତାଙ୍କୁ କୃଷ୍ଣ ବହୁରୂପୀ ବୋଲି କୁହାଯାଏ ।

ଶାନ୍ତିପୂର୍ଣ୍ଣ ତଥା ଅହିଂସା ଆନ୍ଦୋଳନର ଧାରା ଇଚ୍ଛାନୁରୂପ ଫଳପ୍ରାପ୍ତି ହେଉନଥିବାରୁ ଏ.ଏନ୍.ସିର ନେତୃମଣ୍ଡଳୀ ଏକ ହିଂସାତ୍ମକ ଆନ୍ଦୋଳନ ଆରମ୍ଭ କରିବା ପାଇଁ ସିଦ୍ଧାନ୍ତ ନେଲେ । ୧୯୬୧ ମସିହା ଜୁନ୍ ମାସରେ ଉନ୍‌ଖଣ୍ଟୋ ଉଇସିଜ୍ ବା ଜାତୀୟ ବର୍ଚ୍ଛା ନାମକ ଏକ ସଶସ୍ତ୍ର ବାହିନୀ ମାଣ୍ଡେଲାଙ୍କ ନେତୃତ୍ୱରେ ଗଠିତ ହେଲା । ରିଭୋନିଆରେ ତାଙ୍କର ବିଚାର ଚାଲିଥିଲା ବେଳେ ମାଣ୍ଡେଲା କହିଥିଲେ "ଆମେ ଦୀର୍ଘକାଳ ଉତ୍ସୁକ ହୋଇ ଦକ୍ଷିଣ ଆଫ୍ରିକାର ରାଜନୈତିକ ଏବଂ ସାମାଜିକ ଅବସ୍ଥାର ବିଶ୍ଳେଷଣ କରିବା ପରେ ମୁଁ ଏବଂ ମୋର କେତେକ ସହକର୍ମୀ ଏହି ସିଦ୍ଧାନ୍ତରେ ପହଞ୍ଚିଲୁ ଯେ ଆମ ଦେଶରେ ହିଂସାର ମାର୍ଗ ଗ୍ରହଣ କରିବା ଉଚିତ ହେବ । ଆମର ସମସ୍ତ ଶାନ୍ତି ଏବଂ ଅହିଂସାର ମାର୍ଗକୁ ସରକାର ବଳପ୍ରୟୋଗ କରି ବନ୍ଦ କରୁଥିବା ସମୟରେ ଆମେ ସେହି ମାର୍ଗରେ ଅଗ୍ରସର ହେବା ନିତାନ୍ତ ଭୁଲ୍ ଏବଂ ଅବାସ୍ତବ ବୋଲି ମନେ କଲୁ । ଆମର ସମସ୍ତ ଶାନ୍ତିପୂର୍ଣ୍ଣ ଉଦ୍ୟମ ବିଫଳ ହେବା ପରେ ଆମର ସମସ୍ତ ଅହିଂସା ମାର୍ଗକୁ ବଳପୂର୍ବକ ବନ୍ଦ କରିବା ପରେ ଆମ ପାଖରେ ଜାତୀୟ ବର୍ଚ୍ଛା ନାମକ ଶସ୍ତ୍ର ବାହିନୀ ଗଠନ କରିବା ବ୍ୟତୀତ ଅନ୍ୟ କିଛି ଉପାୟ ନ ଥିଲା ।"

୧୯୬୨ ମସିହା ଜାନୁୟାରୀ ମାସରେ ଗୁପ୍ତ ଭାବରେ ମାଣ୍ଡେଲା ଦକ୍ଷିଣ ଆଫ୍ରିକା ଛାଡ଼ି ପାନ୍ ଆମେରିକାନ୍ କନ୍‌ଫରେନ୍‌ସରେ ଯୋଗ ଦେବାପାଇଁ ଆବିହାବାଭାରେ ପହଞ୍ଚିଲେ । ସେ ସ୍ଥାନରୁ ସେ ଆଲ୍‌ଜେରିଆ ଯାଇ ସେଠାରେ ସୈନ୍ୟବାହିନୀର ତାଲିମ୍ ନେଲେ । ସେ ଲଣ୍ଡନ ଯାଇ ସେଠାରେ ବିପକ୍ଷ ଦଳର ନେତାମାନଙ୍କୁ ସାକ୍ଷାତ କଲେ । ତତ୍‌ପରେ ସେ ଦକ୍ଷିଣ ଆଫ୍ରିକା ଫେରିଆସି ଅଗଷ୍ଟ ୫ ତାରିଖ ପୁନର୍ବାର ବନ୍ଦୀ ହେଲେ । ବେନିୟମ୍ ଭାବେ ସେ ଦେଶ ଛାଡ଼ି ଥିବାରୁ ଏବଂ ହରତାଳ୍ ଆଦି ପାଇଁ ପ୍ରବର୍ତ୍ତାଉଥିବା ଯୋଗୁଁ ବନ୍ଦୀ କରାଯାଇଥିଲା । ତାଙ୍କୁ ୫ ବର୍ଷ କାରାଦଣ୍ଡ ଭୋଗିବାକୁ ପଡ଼ିଲା ।

ରିଭୋନିଆ ସ୍ଥିତ ଏ.ଏନ୍.ସି ମୁଖ୍ୟ କାର୍ଯ୍ୟାଳୟକୁ ପୋଲିସ୍ ଚଢ଼ାଉ କଲା । ସେତେବେଳକୁ ମାଣ୍ଡେଲା ଜେଲ୍‌ରେ ଥାନ୍ତି । ଏ.ଏନ୍.ସିର ପ୍ରାୟ ସମସ୍ତ ମୁଖ୍ୟ କର୍ମକର୍ତ୍ତା ବନ୍ଦୀ ହେଲେ । ମାଣ୍ଡେଲାଙ୍କର ଡ଼ାଏରୀ ସମେତ ଅନ୍ୟାନ୍ୟ ଅନେକ କାଗଜପତ୍ର ଜବତ ହେଲା । ତାଙ୍କ ଡ଼ାଏରୀରେ ତାଙ୍କର ବିଦେଶ ଗ୍ରସ୍ତ କାଳର ସମସ୍ତ ତଥ୍ୟ ଉଲ୍ଲେଖ ଥାଏ । ମାଣ୍ଡେଲା ଏବଂ ତାଙ୍କର ଅନେକ ସହକର୍ମୀଙ୍କ ବିରୁଦ୍ଧରେ ମକଦ୍ଦମା ଚାଲିଲା । ଏହି ମକଦ୍ଦମା ରିଭୋନିଆ ରାଜଦ୍ରୋହ କେସ୍ ନାମରେ ଅଭିହିତ । ମାଣ୍ଡେଲା ତାଙ୍କ ମକଦ୍ଦମା ନିଜେ ଲଢ଼ୁଥାନ୍ତି କିନ୍ତୁ ତାଙ୍କୁ ଆଜୀବନ କାରାଦଣ୍ଡ ଶୁଣାଇ ଦିଆଗଲା । ବର୍ଣ୍ଣବୈଷମ୍ୟ



ବିରୁଦ୍ଧରେ ହୋଇଥିବା ପ୍ରତିବାଦ ବିଷୟ ଥିବା ସମସ୍ତ ବିବରଣୀ ମଧ୍ୟରେ ତାଙ୍କର ବକ୍ତବ୍ୟ ଏକ ଐତିହାସିକ ତଥ୍ୟ ଭାବେ ପ୍ରସିଦ୍ଧି ଲାଭ କଲା ।

ଏହି ମକଦ୍ଦମାର ଶେଷରେ କାଠଗଡ଼ା ଭିତରେ ଥାଇ ମାଣ୍ଡେଲାଙ୍କ ବକ୍ତବ୍ୟର ଶେଷ ଦୁଇଧାଡ଼ି ଏହି ପ୍ରକାର ''ମୁଁ ମୋର ଜୀବନରେ ଗୋରା ମାନଙ୍କର ଆଧିପତ୍ୟ ବିରୁଦ୍ଧରେ ଯୁଦ୍ଧ କରିଛି । କୃଷ୍ଣକାୟ ମାନଙ୍କର ଅଧିକାର ପାଇଁ ଲଢ଼ିଛି । ଗୋଟିଏ ଗଣତନ୍ତ୍ର ଏବଂ ମୁକ୍ତ ସମାଜର ସ୍ୱପ୍ନ ଦେଖିଛି । ମୁଁ ଇଚ୍ଛା କରେ ଯେ ପ୍ରତ୍ୟେକ ବ୍ୟକ୍ତି ପାରସ୍ପରିକ ସଦ୍‌ଭାବ ନେଇ ରହନ୍ତୁ । ଏହା ଏକ ଆଦର୍ଶ । ଏହି ଆଦର୍ଶ ପାଇଁ, ଏହି ଆଦର୍ଶକୁ କାର୍ଯ୍ୟକାରୀ କରିବା ପାଇଁ ମୁଁ ବଞ୍ଚିଛି । ଆବଶ୍ୟକ ହେଲେ ଏ ଆଦର୍ଶ ପାଇଁ ମୁଁ ମରିବା ପାଇଁ ମଧ୍ୟ ପ୍ରସ୍ତୁତ ।''

ରବନ୍ ଦ୍ୱୀପରେ ମାଣ୍ଡେଲା ୧୮ ବର୍ଷ ଜେଲ୍‌ରେ ବିତାଇଛନ୍ତି । ତା ପରେ ସେ କେପ୍‌ଟାଉନ୍‌ର ପଲ୍‌ସ୍ମୁର ଜେଲ୍‌କୁ ୧୯୮୨ ମସିହାରେ ଆସିଲେ । ସେତେବେଳେ ସାରା ବିଶ୍ୱରେ ମାଣ୍ଡେଲା ମୁକ୍ତି ଅଭିଯାନ ତୀବ୍ରତର ହେଲା । ୧୯୮୫ ମସିହାରେ କେତେକ ସର୍ତ୍ତରେ ଦକ୍ଷିଣ ଆଫ୍ରିକାର ରାଷ୍ଟ୍ରପତି ପି.ଡବ୍ଲୁ ବୋଥା ମାଣ୍ଡେଲାଙ୍କୁ ମୁକ୍ତ କରିବା ପାଇଁ ରାଜି ହେଲେ । କିନ୍ତୁ ମାଣ୍ଡେଲା ଏହି ସର୍ତ୍ତ ମୂଳକ ମୁକ୍ତିକୁ ପ୍ରତ୍ୟାଖ୍ୟାନ କଲେ । ତତ୍‌ପରବର୍ତ୍ତୀ ସରକାରରେ ରାଷ୍ଟ୍ରପତି ଏଫ୍.ଡ଼ବ୍ଲୁ ବିକ୍ଲାର ମାଣ୍ଡେଲାଙ୍କୁ ୧୯୯୦ ମସିହା ଫେବୃୟାରୀ ୧୧ ତାରିଖ ଦିନ ମୁକ୍ତ କଲେ । ଏ.ଏନ୍.ସି. ଉପରେ ଥିବା ନିଷିଦ୍ଧ ଆଦେଶକୁ ମଧ୍ୟ ପ୍ରତ୍ୟାହାର କରିନେଲେ । ଜେଲ୍‌ରୁ ମୁକ୍ତ ହେବା ପରେ ମାଣ୍ଡେଲା ଏ.ଏନ୍.ସି.ର ନେତୃତ୍ୱ ପୁନର୍ବାର ସମ୍ଭାଳିଲେ ଏବଂ ସରକାରଙ୍କ ସହିତ ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ଆଲୋଚନା ଚଳାଇଲେ । ମାଣ୍ଡେଲା ଏବଂ ତାଙ୍କର ସହଯୋଗୀମାନେ ସଶସ୍ତ୍ର ସଂଗ୍ରାମରୁ ବିରତ ହେବା ପାଇଁ ସ୍ୱୀକୃତି ଦେଲେ । ୧୯୯୧ ମସିହାରେ ସରକାର ବର୍ଣ୍ଣବୈଷମ୍ୟ ସଂପର୍କୀୟ ସମସ୍ତ ନିୟମ କାନୁନ୍ ଗୁଡ଼ିକ ଉଠାଇ ଦେଲେ । ୧୯୯୩ ମସିହାରେ ନୋବେଲ୍ ଶାନ୍ତି ପୁରସ୍କାର

ମାଣ୍ଡେଲା ଏବଂ ବିକ୍ଲାର ଉଭୟେ ମିଳିତ ଭାବେ ଗ୍ରହଣ କଲେ । ଏହି ପୁରସ୍କାର ସେମାନଙ୍କୁ ଦକ୍ଷିଣ ଆଫିକାରେ ଗଣତନ୍ତ୍ର ପ୍ରତିଷ୍ଠା କରିବା ଏବଂ ବର୍ଣ୍ଣଗତ ସାମ୍ୟତା ଏବଂ ସଦ୍‌ଭାବନା ଆଣିବା ନିମିତ୍ତ ପ୍ରଦାନ କରାଯାଇଥିଲା ।

୧୯୯୪ ମସିହାରେ ଦକ୍ଷିଣ ଆଫ୍ରିକାର ପ୍ରଥମ କୃଷ୍ଣକାୟ ରାଷ୍ଟ୍ରପତିଭାବେ ମାଣ୍ଡେଲା ନିର୍ବାଚିତ ହେଲେ । ୧୯୯୨ ମସିହାରେ ସେ ତାଙ୍କର ସ୍ତ୍ରୀ ୟୁନିଙ୍କୁ ଛାଡ଼ପତ୍ର ଦେଇଥିଲେ । କିନ୍ତୁ ପରେ ତାଙ୍କୁ ତାଙ୍କ ମନ୍ତ୍ରୀମଣ୍ଡଳରେ ଜଣେ ଉପମନ୍ତ୍ରୀଭାବେ ଗ୍ରହଣ କଲେ । ୧୯୯୫ ମସିହାରେ ତାଙ୍କୁ ଏହି ପଦରୁ ବରଖାସ୍ତ କରି ଅଗଷ୍ଟ ୧୯୯୫ରେ ତାଙ୍କୁ ପୁନର୍ବାର ଛାଡ଼ପତ୍ର ଦେଲେ ।  ମାଣ୍ଡେଲାଙ୍କୁ ବିଶ୍ୱର ୫୦ରୁ ଊର୍ଦ୍ଧ୍ୱ ବିଶ୍ୱବିଦ୍ୟାଳୟ ସମ୍ମାନଜନକ ଡ଼ିଗ୍ରୀ ପ୍ରଦାନ କରିଛନ୍ତି । ଜୀବନର ସୁଦୀର୍ଘ ପଥ ସେ ରାଜନୈତିକ କାର୍ଯ୍ୟକ୍ରମରେ ବିନିଯୋଗ କରିଥିଲେ । ଶେଷରେ ୧୯୯୯ ମସିହା ଜୁନ୍ ମାସରେ ସକ୍ରିୟ ରାଜନୀତିରୁ ଅବ୍ୟାହତି ନେଇ ଅଧୁନା ତାଙ୍କର ଜନ୍ମସ୍ଥାନ ଫ୍ରାନ୍ସ କି କୁନୁ ସହରରେ ଅବସ୍ଥାନ କରୁଛନ୍ତି ।  ୧୯୯୦ ମସିହାରେ ନେଲ୍‌ସନ୍ ମାଣ୍ଡେଲା ଜେଲ୍‌ରୁ ମୁକ୍ତିଲାଭ କରିବା ପରେ ଭାରତ ସରକାର ତାଙ୍କୁ ନିମନ୍ତ୍ରଣ କରି ଦିଲ୍ଲୀ ଆଣିଥିଲେ । ସେଠାରେ ଆମ ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତ ରତ୍ନ ଉପାଧିରେ ତାଙ୍କୁ ଭୂଷିତ କରାଗଲା । ଯେଉଁ ଅଳ୍ପକେତେକ ବିଦେଶୀ ନାଗରିକଙ୍କୁ ଏହି ସମ୍ମାନ ମିଳିଛି ତନ୍ମଧ୍ୟରେ ନେଲ୍‌ସନ୍ ମାଣ୍ଡେଲା ଅନ୍ୟତମ । ମହାତ୍ମାଗାନ୍ଧୀଙ୍କ ମୃତ୍ୟୁର ଅନେକ ବର୍ଷ ପରେ ପୁନର୍ବାର ତାଙ୍କ ନୀତି ଅନୁସରଣ କରି ସେ ଅଭୂତପୂର୍ବ ସଫଳତା ପାଇଥିଲେ । ତା ଛଡ଼ା ଆମ ଦେଶବାସୀଙ୍କ ପାଇଁ ମଧ୍ୟ ସେ ସୂଚେଇ ଦେଇଥିଲେ ଯେ ଅହିଂସାର ମାର୍ଗ ହିଁ ପ୍ରତ୍ୟେକ କ୍ରାନ୍ତିର ସର୍ବୋତ୍ତମ ପନ୍ଥା ।

* * *

## ରାଜୀବ ଗାନ୍ଧୀ



୧୯୪୪-୧୯୯୧

ଭାରତରତ୍ନ - ୧୯୯୧

**ରା**ଜନୀତିରେ ପ୍ରବେଶ କରି ଭାରତର ପ୍ରଧାନମନ୍ତ୍ରୀ ହେବା ରାଜୀବ ଗାନ୍ଧୀଙ୍କ କପାଳରେ ଲେଖା ଥିଲା । ସେ ତାଙ୍କର ବାଲ୍ୟ କାଳରୁ ଯୌବନ ଅବସ୍ଥା ପର୍ଯ୍ୟନ୍ତ କେବେହେଲେ ଭାରତର ରାଜନୀତିରେ ପ୍ରବେଶ କରିବା ପାଇଁ ଇଚ୍ଛା କରିନଥିଲେ । ତଥାପି ଅବସ୍ଥା ଚକ୍ରରେ ପଡ଼ି ରାଜନୀତିକୁ ଆସିବା ପାଇଁ ବାଧ୍ୟ ହୋଇଥିଲେ । ଯଦିଓ ତାଙ୍କର ମାତା ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଏବଂ ଅଜା ପଣ୍ଡିତ ଜବାହାର୍‌ଲାଲ୍ ନେହେରୁ ଭାରତର ପ୍ରଧାନମନ୍ତ୍ରୀ ହୋଇସାରିଛନ୍ତି ତଥାପି ସେ ଭିନ୍ନ ଏକ ଜୀବନଯାପନ କରିବା ପାଇଁ ସର୍ବଦା ଇଚ୍ଛା କରିଥିଲେ । ନିଜେ ଖୁବ୍ ଧୀର, ଶାନ୍ତ ସାମାନ୍ୟ ଲାଜକୁଳା ଏବଂ

ମିଷ୍ଟଭାଷୀ ଥିଲେ । ୧୯୮୦ ମସିହା ଜୁନ୍ ୨୦ ତାରିଖ ଦିନ ତାଙ୍କ ସାନଭାଇ ସଞ୍ଜୟ ଗାନ୍ଧୀଙ୍କର ବିମାନ ଦୁର୍ଘଟଣାରେ ମୃତ୍ୟୁ ଏବଂ ଆତତାୟୀ ଗୁଳିରେ ତାଙ୍କ ମାତା ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ୧୯୮୪ ମସିହା ଅକ୍ଟୋବର ୩୧ ତାରିଖ ଦିନ ମୃତ୍ୟୁ ହେବା ପରେ ଭାଗ୍ୟ ତାଙ୍କୁ ରାଜନୀତି ଭିତରେ ପଶିବା ପାଇଁ ବାଧ କଲା ଏବଂ ସେ ଭାରତର ସର୍ବ କନିଷ୍ଠ ପ୍ରଧାନମନ୍ତ୍ରୀ ଭାବେ ଅଧିଷ୍ଠିତ ହେଲେ । ରାଜୀବ୍ ଗାନ୍ଧୀ ୧୯୪୪ ମସିହା ଅଗଷ୍ଟ ୨୦ ତାରିଖ ଦିନ ବମ୍ବେ ନଗରୀ (ବର୍ତ୍ତମାନର ମୁମ୍ବାଇ)ରେ ଫିରୋଜ ଗାନ୍ଧୀ ଏବଂ ଇନ୍ଦିରା ଗାନ୍ଧୀଙ୍କର ଜ୍ୟେଷ୍ଠ ପୁତ୍ର ଭାବେ ଜନ୍ମ ଗ୍ରହଣ କରିଥିଲେ । ସେ ଜଣେ ଜର୍ମାନ ମହିଳା ଦ୍ୱାରା ସିଦ୍ଧି ନିକେତନରେ ପ୍ରାଥମିକ ଶିକ୍ଷା କରିଥିଲେ ଏବଂ ତାଙ୍କୁ ୧୦ ବର୍ଷ ହେଲା ବେଳକୁ ତାଙ୍କୁ ଏକ ବୋର୍ଡିଂ ସ୍କୁଲ୍‌ରେ ଭର୍ତ୍ତି କରାଗଲା । ଡେ଼ରାଡୁନ୍‌ର ଡୁନ୍ ସ୍କୁଲ୍‌ରେ ସେ ଉଚ୍ଚ ମାଧ୍ୟମିକ ପରେ ଉଚ୍ଚତର ଶିକ୍ଷା ପାଇଁ ଲଣ୍ଡନ ଗଲେ ଏବଂ ଲଣ୍ଡନର ଇମ୍ପିରିଆଲ୍ କଲେଜରେ ତାଙ୍କର ନାମ ଲେଖାଗଲା ।

ଇମ୍ପିରିଆଲ୍ କଲେଜରେ ଅଧ୍ୟୟନ କଲାବେଳେ ନିଜର ଖର୍ଚ୍ଚ ତୁଲାଇବା ପାଇଁ ରାଜୀବ ଏବଂ ତାଙ୍କର କେତେକ ବନ୍ଧୁ ଗୋଟିଏ ଆଇସ୍‌କ୍ରିମ୍ ପାର୍ଲର ଏବଂ ବେକରୀରେ ଅସ୍ଥାୟୀ ଭାବେ ଦୈନିକ କିଛି ଘଣ୍ଟା ପରିଶ୍ରମ କରୁଥିଲେ । ତା ପରେ ରାଜୀବ ଗାନ୍ଧୀ ବିଦେଶରେ ଏକ କଲେଜରେ ମେକାନିକାଲ ଇଞ୍ଜିନିୟରିଂ ପଢ଼ିବା ପାଇଁ ନାମ ଲେଖାଇଲେ । କିନ୍ତୁ ଡ଼ିଗ୍ରୀ ପାଇବା ପୂର୍ବରୁ ଭାରତ ଫେରି ଆସିଲେ । ଉଡ଼ାଜାହାଜ ଚଳାଇବାରେ ରାଜୀବଗାନ୍ଧୀଙ୍କର ଖୁବ୍ ଆଗ୍ରହ ଥିଲା । ଭାରତକୁ ଆସିବା ପରେ ସେ ଇଚ୍ଛା ବଳବତ୍ତର ହେଲା । ପୁନର୍ବାର ଇଂଲଣ୍ଡ ଯାଇ ସେଠାରେ ସେ ଉଡ଼ାଜାହାଜ ଚଳାଇବା ଏବଂ ଟ୍ରାଇଡିଂ କରିବା ଶିକ୍ଷା କଲେ । ସେଠାରୁ ଫେରି ଦିଲ୍ଲୀ ଫ୍ଲାଇଙ୍ଗ୍ କ୍ଲବରେ ଯୋଗ ଦେଲେ ଏବଂ ତାର ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ତାଙ୍କୁ ପ୍ରାଇଭେଟ ପାଇଲଟିଂ ଲାଇସେନ୍ସ ଏବଂ କମର୍ସିଆଲ୍ ପାଇଲଟିଂ ଲାଇସେନ୍ସ ଉଭୟ ମିଳିଥିଲା । ପରେ ସେ ଇଣ୍ଡିଆନ ଏୟାର ଲାଇନ୍‌ସରେ ଜଣେ ପାଇଲଟ୍ ଭାବେ ଯୋଗ ଦେଇ ଆଭ୍ରୋ ଉଡ଼ାଜାହାଜରେ ବେଙ୍କ୍ ପାଇଲଟ୍ ଭାବେ କାର୍ଯ୍ୟରତ ହେଲେ ।

୧୯୬୮ ମସିହା ଫେବୃଆରୀ ୨୫ ତାରିଖ ଦିନ ରାଜୀବ ସୋନିଆ ମାଇନୁ ନାମକ ଜଣେ ଇଟାଲୀୟ ମହିଳାଙ୍କୁ ବିବାହ କଲେ । ସୋନିଆଙ୍କୁ ରାଜୀବ୍ ପ୍ରଥମେ କେମ୍ବ୍ରିଜ୍‌ରେ ଅଧ୍ୟୟନ କଲାବେଳେ ଭେଟିଥିଲେ । ୧୯୭୦ ଜୁନ୍ ୧୯ ତାରିଖ ଦିନ

ତାଙ୍କର ପ୍ରଥମ ସନ୍ତାନ ରାହୁଲ୍ ଜନ୍ମ ଗ୍ରହଣ କଲେ ଏବଂ ତା ପରେ ୧୯୭୨ ଜାନୁଆରୀ ୧୨ ତାରିଖ ଦିନ ତାଙ୍କର କନ୍ୟା ପ୍ରିୟଙ୍କା ଜାତ ହେଲେ । ରାଜନୀତିର ଦୁନିଆ ଠାରୁ ଦୂରରେ ରହି ରାଜୀବ ଏବଂ ସୋନିଆ ଏକ ସୁଖୀ ଏବଂ ସୁନ୍ଦର ଜୀବନଯାପନ କରିବାକୁ ଲାଗିଲେ । ଇଣ୍ଡିଆନ ଏୟାର ଲାଇନ୍ସରେ ରାଜୀବ୍ ପ୍ରାୟ ୧୪ ବର୍ଷ କାଳ ଜଣେ କମର୍ସିଆଲ୍ ପାଇଲଟ୍ ଭାବେ କାର୍ଯ୍ୟ କରିଥିଲେ ।

ରାଜୀବ ଗାନ୍ଧୀ ରାଜନୀତିରେ ପ୍ରବେଶ କରିବା ପାଇଁ ଚାହୁଁ ନ ଥିଲେ ମଧ୍ୟ ତାଙ୍କ ସାନଭାଇ ସଞ୍ଜୟ ଗାନ୍ଧୀଙ୍କର ଦୁଃଖଦ ମୃତ୍ୟୁପରେ ତାଙ୍କ ମାତା ଇନ୍ଦିରା ଗାନ୍ଧୀ ତାଙ୍କୁ ପାଇଲଟ୍ ଚାକିରୀ ଛାଡ଼ି ରାଜନୀତିରେ ପ୍ରବେଶ କରିବା ପାଇଁ ପରାମର୍ଶ ଦେଇଥିଲେ । ୧୯୮୧ ମସିହାରେ ହୋଇଥିବା ସ୍ୱତନ୍ତ୍ର ନିର୍ବାଚନରେ ସେ ଉତ୍ତରପ୍ରଦେଶର ଆମେଥି ନିର୍ବାଚନ ମଣ୍ଡଳୀରୁ ଜୟଯୁକ୍ତ ହୋଇ କଂଗ୍ରେସ ପାର୍ଟିରେ ଜଣେ ସାଧାରଣ ସଂପାଦକ ଭାବେ ୧୯୮୩ ମସିହାରେ କାର୍ଯ୍ୟଭାର ସମ୍ଭାଳିଥିଲେ । ୧୯୮୪ ମସିହା ଅକ୍ଟୋବର ୩୧ ତାରିଖ ଦିନ ଇନ୍ଦିରାଗାନ୍ଧୀଙ୍କୁ ତାଙ୍କର ବଡ଼ିଗାର୍ଡ ହତ୍ୟା କରିବା ପରେ ୧୯୮୪ ମସିହା ଅକ୍ଟୋବର ୩୧ ତାରିଖ ଦିନ ରାଜୀବ ଗାନ୍ଧୀ ପଶ୍ଚିମ ବଙ୍ଗର କଣ୍ଟାଇଠାରେ ଗୋଟିଏ ସଭାରେ ଭାଷଣ ଦେଉଥାନ୍ତି, ଦିନ ପ୍ରାୟ ୧୧ଟା ବେଳେ ପୋଲିସ୍‌ର ୱାୟାରଲେସ୍ ମାଧ୍ୟମରେ ମାତାଙ୍କର ମୃତ୍ୟୁ ଖବର ତାଙ୍କୁ ଜଣାଇ ଦିଆଯାଇଥିଲା ।

ତତ୍‌କ୍ଷଣାତ୍ ରାଜୀବଗାନ୍ଧୀଙ୍କୁ କୋଲାଘାଟ୍ ନାମକ ସ୍ଥାନକୁ ଅପସାରିତ କରାଯାଇ ସେଠାରେ ତାଙ୍କ ଅପେକ୍ଷାରତ ଏକ ହେଲିକପ୍ଟର ଯୋଗେ ଦିଲ୍ଲୀକୁ ଅଣାଗଲା । ଆକସ୍ମିକ ଘଟଣାରେ ରାଜୀବ ଗାନ୍ଧୀ ବାକ୍‌ଶୂନ୍ୟ ହୋଇପଡ଼ିଥିଲେ । ତାଙ୍କୁ ଦିଲ୍ଲୀର ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ୍ ସାଇନ୍ସକୁ ନିଆଗଲା । ସେଠାରେ ସେ ତାଙ୍କର ନିହତ ମାତାଙ୍କୁ ଶେଷ ଦର୍ଶନ କରିଥିଲେ । ରାଷ୍ଟ୍ରପତି ଜୈଲ୍ ସିଂ ମଧ୍ୟ ସେତେବେଳେ ମରିସିଅସ୍ ଏବଂ ୟେମେନ୍ ଗସ୍ତରେ ଯାଇଥିଲେ । ଏହି ହୃଦୟବିଦାରକ ସମ୍ବାଦ ଶୁଣିବା ପରେ ସେ ମଧ୍ୟ ଭାରତ ଫେରି ଆସିଲେ । ସେତେବେଳେ ଦେଶର ଅବସ୍ଥା ଏତେ ସଂକଟ ଜନକ ଥିଲା ଯେ ତତ୍‌କ୍ଷଣାତ୍ ରାଷ୍ଟ୍ରପତି ଜ୍ଞାନୀ ଜୈଲ ସିଂ ତାଙ୍କୁ ରାଷ୍ଟ୍ରପତି ଭବନକୁ ଆସିବା ପାଇଁ ଅନୁରୋଧ ଜଣାଇଲେ । ସମୟର ଅପଚୟ ନ କରି ତାଙ୍କୁ ସେହିଦିନ ସଂଧ୍ୟାରେ ରାଷ୍ଟ୍ରପତି ଭବନରେ ପ୍ରଧାନମନ୍ତ୍ରୀ ପଦ ଓ ଗୋପନୀୟତା ଶପଥପାଠ କରାଗଲା । ଏହିଭଳି ଏକ ବିୟୋଗାତ୍ମକ ପରିସ୍ଥିତିରେ ରାଜୀବ ଗାନ୍ଧୀ ମାତ୍ର ୪୦ ବର୍ଷ

ବୟସରେ ଭାରତର ସପ୍ତମ ଏବଂ ସର୍ବକନିଷ୍ଠ ପ୍ରଧାନମନ୍ତ୍ରୀ ଭାବରେ ଶପଥ ନେଲେ ।

ଭାରତର ସମ୍ବିଧାନରେ ମଧ୍ୟବର୍ତ୍ତୀକାଳୀନ ପ୍ରଧାନମନ୍ତ୍ରୀ ରହିବାର କୌଣସି ବନ୍ଦୋବସ୍ତ ନାହିଁ । ଏଣୁ କଂଗ୍ରେସ କାର୍ଯ୍ୟକାରୀ କମିଟି ନଭେମ୍ବର ୩ ତାରିଖରେ ଏବଂ କଂଗ୍ରେସ ପାର୍ଲାମେଣ୍ଟାରୀ କମିଟି ନଭେମ୍ବର ୫ ତାରିଖରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପାଇଁ ଶୋକ ପ୍ରସ୍ତାବ ରଖିଲେ । ଏବଂ ରାଜୀବ ଗାନ୍ଧୀଙ୍କର ପ୍ରଧାନମନ୍ତ୍ରୀତ୍ୱକୁ ଅନୁମୋଦନ କଲେ ।

ଦେଶର ପ୍ରଧାନମନ୍ତ୍ରୀ ପଦରେ ଅଧିଷ୍ଠିତ ହେବା ପରେ ପରେ ଇନ୍ଦିରାଗାନ୍ଧୀଙ୍କ ହତ୍ୟା ଘଟଣାକୁ ଆଧାର କରି ଦେଶରେ ଦେଖାଦେଇଥିବା ହିଂସା ଏବଂ ଗୋଷ୍ଠୀସଂଘର୍ଷ ପାଇଁ ସେ ଖୁବ୍ ମର୍ମାହତ ହୋଇଥିଲେ । ଦେଶର ରାଜଧାନୀ ନଗରୀର ବାରିଆଡ଼େ ନିଆଁ ଜଳୁଥିଲା । ଏହି ସଂକଟମୟ ପରିସ୍ଥିତିରେ ସେ ଦେଶବାସୀଙ୍କୁ ଧୈର୍ଯ୍ୟ ଏବଂ ଶାନ୍ତି ବଜାୟ ରଖିବା ପାଇଁ ନିବେଦନ କରିଥିଲେ ।

ପ୍ରଧାନମନ୍ତ୍ରୀ ଭାବେ ସେ ଖୁବ୍ ଭଦ୍ର, ଅନୁଶାସିତ ତଥା ଅତ୍ୟାଧୁନିକ ଥିଲେ । ଅତି କମ୍ ବୟସରେ ବିଶେଷ ରାଜନୈତିକ ଅଭିଜ୍ଞତା ନ ଥାଇ ବିଶ୍ୱର ସର୍ବ ବୃହତ୍ତମ ଗଣତନ୍ତ୍ର ରାଷ୍ଟ୍ରର ପ୍ରଧାନମନ୍ତ୍ରୀ ହେବା ସହଜ ବ୍ୟାପାର ନ ଥିଲା । ତା ଛଡ଼ା ସେ ଯେଉଁ ପରିସ୍ଥିତିରେ ଏହି ପଦ ସମ୍ଭାଳି ଥିଲେ ସେତେବେଳକୁ ଦେଶରେ ଏକ ରକମ ଅରାଜକତା ବ୍ୟାପକ ହୋଇସାରିଥିଲା । ବିଭିନ୍ନ ପ୍ରଦେଶରେ ଭିନ୍ନ ଭିନ୍ନ ଚିନ୍ତାଧାରା କେନ୍ଦ୍ରୀୟ ନେତୃବର୍ଗଙ୍କ ଚିନ୍ତାର ବିଷୟ ହୋଇଥିଲା । ତେବେ ଧୀରେ ଧୀରେ ରାଜୀବ ଗାନ୍ଧୀ ଏହି ଅବସ୍ଥାକୁ ସଜାଡ଼ିବା ପାଇଁ ଚେଷ୍ଟା କଲେ । ବିଭାଜିତ ଭାବଧାରାକୁ ସଂଯୋଜିତ କରିବାରେ ତାଙ୍କର ଦକ୍ଷତାର ପରିଚୟ ମିଳିଲା । ମିଜୋରାମ୍‌ରେ ଗତ ପଚାଶ ବର୍ଷ ଧରି ଚାଲିଥିବା ସାମରିକ ବିଦ୍ରୋହକୁ ସେ ଦୂର କଲେ । ଆସାମ ରାଜ୍ୟକୁ ସେ ଜାତୀୟ ମହାସ୍ରୋତରେ ପୁନର୍ବାର ଫେରାଇ ଆଣିଲେ । ରାଜନୀତିରେ ଧୁରୀଣ ତାଙ୍କର ମାତା ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଯେଉଁ ସଫଳତା ପାଇ ପାରି ନ ଥିଲେ ତାହା ଅଳ୍ପ କିଛି ବର୍ଷ ମଧ୍ୟରେ ସେ ହାସଲ କଲେ । ଅସୁସ୍ଥ ରାଜନୈତିକ ପୃଷ୍ଠଭୂମିରେ ସେ ଖୁବ୍ ଶୀଘ୍ର ମିଷ୍ଟର କ୍ଲିନ୍ ବା ପରିଷ୍କାର ବ୍ୟକ୍ତି ଭାବେ ଅଭିହିତ ହେଲେ । ତାଙ୍କର ଚିନ୍ତାଧାରା ଅତ୍ୟାଧୁନିକ ଥିଲା । ଦେଶରେ ଦ୍ରୁତ ପ୍ରଗତି ପାଇଁ କମ୍ପ୍ୟୁଟର ଜ୍ଞାନ କୌଶଳର ବିକାଶ, ପ୍ରସାର ଏବଂ ପ୍ରସାରଣ ସେବାରେ ଭାରତର ଭିତ୍ତିଭୂମିକୁ ଦୃଢ଼ କଲେ । ତା ଛଡ଼ା ଶିଳ୍ପ ସଂସ୍ଥାମାନଙ୍କର ଅର୍ଥନୀତିକୁ ଆତ୍ମନିର୍ଭରଶୀଳ କରାଇବା ତାଙ୍କର ଅନ୍ୟତମ ପ୍ରୟାସ ଥିଲା । ତାଙ୍କ ଉଦ୍ୟମ



ଫଳରେ ଆଜି ଭାରତୀୟ ଶିଳ୍ପର ପରିସର ଅତ୍ୟନ୍ତ ବ୍ୟାପକ । ଆମ ଦେଶରେ ପ୍ରାୟ ସମସ୍ତ ଯନ୍ତ୍ରପାତି ଉତ୍ପାଦିତ ହୋଇପାରୁଛି ।

ପଣ୍ଡିତ ଜବାହାର ଲାଲ୍ ନେହେରୁଙ୍କ ଶାସନ କାଳରେ ଭାରତର ବୈଦେଶିକ ନୀତି ଅଣ ସାମରିକ ଥିଲା । ତେଣୁ ପୃଥିବୀର ବିଭିନ୍ନ ସାମରିକ ମେଣ୍ଟ ସହିତ ଆମର କୌଣସି ସଂପର୍କ ନ ଥିଲା । ପଣ୍ଡିତ ନେହେରୁ ଜ୍ଞାନରେ ବିଶ୍ୱାସ କରୁଥିଲେ ଏବଂ ବିଜ୍ଞାନରେ ବିଶ୍ୱାସ ରଖୁଥିବା ବ୍ୟକ୍ତି ଥିଲେ । ୧୯୮୫ ମସିହା ଜାନୁଆରୀ ୨୮ ତାରିଖ ଦିନ ଦିଲ୍ଲୀଠାରେ ୬ଟି ବେସାମରିକ ଦେଶର ମୁଖ୍ୟମାନଙ୍କର ଏକ ଶିଖର ସମ୍ମିଳନୀ ରାଜୀବଗାନ୍ଧୀଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଯୋଗ ଦେଇଥିବା ଦେଶ ମାନେ ହେଲେ ଭାରତ, ତାଞ୍ଜାନିଆ, ମେକ୍ସିକୋ, ଆର୍ଜେଣ୍ଟିନା, ଗ୍ରୀସ ଏବଂ ସ୍ୱିଡ଼େନ୍ । ଏହି ଦେଶମାନଙ୍କର ସହଯୋଗରେ ଏବଂ ଭାରତର ନେତୃତ୍ୱରେ ଏକ ସମ୍ମିଳିତ ସ୍ୱର ବିଶ୍ୱର ଚାରୋଟି ସୁପର ପାୱାର ବା ମହାଶକ୍ତିଙ୍କ ନିକଟରେ ପହଞ୍ଚିପାରିଲା । ଏହାହିଁ ଥିଲା ଭାରତର ବୈଦେଶିକ ନୀତିର ମୂଳମନ୍ତ୍ର । ୧୯୮୫ ମସିହା ଅକ୍ଟୋବର ୨୩ ତାରିଖ ଦିନ ନ୍ୟୁୟର୍କଠାରେ ରାଜୀବଗାନ୍ଧୀ କାଉନ୍ସିଲ୍ ଅଫ୍ ଫରେନ୍ ରିଲେସନ୍‌ରେ ଭାଷଣ ଦେଲେ ଏବଂ ଭବିଷ୍ୟତରେ ଭାରତ ବୈଦେଶିକ ନୀତିର ରୂପରେଖ ବିଷୟରେ ସୂଚନା ଦେଇଥିଲେ । ସେ ଋଷିଆ ପରିଦର୍ଶନରେ ଯାଇ ଋଷିଆର ତୁଙ୍ଗ ନେତା ମିଖାଇଲ୍ ଗର୍ବାଚଭ୍‌ଙ୍କ ସହ ସାକ୍ଷାତ କଲେ । ଏହି ସାକ୍ଷାତକାର ଭାରତ ଏବଂ ସୋଭିଏତ୍ ଋଷିଆର ଆନ୍ତର୍ଜାତିକ ସଂପର୍କକୁ ଅଧିକ ଦୃଢ଼ିଭୂତ କଲା । ରାଜୀବ ଇଜିପ୍ଟ, ଫ୍ରାନ୍ସ, ଆଲ୍‌ଜେରିଆ, ଆମେରିକା ଏବଂ ସ୍ୱିଜର୍‌ଲ୍ୟାଣ୍ଡ ଗସ୍ତରେ ଗଲେ । ୧୯୮୫ ମସିହା ଜୁନ୍ ମାସରେ ସେ ତାଙ୍କର ଐତିହାସିକ ଆମେରିକା ଗ୍ରସ୍ତ ବେଳେ ତତ୍କାଳୀନ ଆମେରିକୀୟ ରାଷ୍ଟ୍ରପତି ରୋନାଲ୍ଡ ରିଗାନ୍ କହିଥିଲେ "ଆମେ ଭାରତର ଐକ୍ୟ ପ୍ରତି

ଅଙ୍ଗୀକାର ବଦ୍ଧ ଏବଂ ଏହାପ୍ରତି ଯେ କେହି ହୀନଦୃଷ୍ଟି ପକାଇଲେ ଆମେ ତାହା ବରଦାସ୍ତ କରିବୁ ନାହିଁ । ଭାରତ ସହିତ ବନ୍ଧୁତାକୁ ଆମେରିକା ବାସୀ ସବୁଠାରୁ ଅଧିକ ଗୁରୁତ୍ୱ ଦିଅନ୍ତି । ଆମ ଭିତରେ ଥିବା ରାଜନୈତିକ ଏବଂ ଗଣତାନ୍ତ୍ରିକ ଭାବଧାରା ଦୁଇଦେଶ ମଧ୍ୟରେ ସଂପର୍କରେ ସେପରି କାର୍ଯ୍ୟ କରେ ।'' ରାଜୀବ ଗାନ୍ଧୀଙ୍କ ଆମେରିକା ଗ୍ରସ୍ତ ପରେ ସେହି ଦେଶବାସୀଙ୍କ ଉପରେ ତାଙ୍କର ଗଭୀର ପ୍ରଭାବ ପଡ଼ିଥିଲା । ଭାରତର ଗଣତନ୍ତ୍ରପ୍ରତି ଅଙ୍ଗୀକାରବଦ୍ଧତା ତଥା ଆମ ଦେଶର ଅର୍ଥନୈତିକ ଏବଂ ବିଜ୍ଞାନଭିତ୍ତିକ ସଫଳତା ଆମେରିକାବାସୀଙ୍କୁ ଅତ୍ୟନ୍ତ ବିମୋହିତ କରିଥିଲା । ବିକାଶଶୀଳ ଦେଶମାନଙ୍କରେ ଭାରତର ନେତୃତ୍ୱ ତଥା ଭାତୃତ୍ୱ ବିଷୟରେ ସମସ୍ତେ ଅବଗତ ହେଲେ । ସେ ବିଶ୍ୱଶାନ୍ତିରେ ବିଶ୍ୱାସ ରଖୁଥିଲେ । ବିଶ୍ୱଶାନ୍ତି ପାଇଁ ସେ ଉଦ୍ୟମ କରୁଥିଲେ ଏବଂ ଏ ଦିଗରେ ତାଙ୍କର ଉଦ୍ୟମ ପାଇଁ ନ୍ୟାସନାଲ ଇଣ୍ଟିଗ୍ରେସନ ଆସେମ୍ଲି ତାଙ୍କୁ 'ମ୍ୟାନ ଅଫ୍ ଦ ଇୟର' ସମ୍ମାନରେ ଭୂଷିତ କରିଥିଲା । ସିଲଂଠାରେ ତାମିଲମାନଙ୍କର ସମସ୍ୟା ଦୂର କରିବା ପାଇଁ ସେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ଏବଂ ଶ୍ରୀଲଙ୍କାର ରାଷ୍ଟ୍ରପତିଙ୍କ ସହିତ ୧୯୮୭ ମସିହାରେ ଏକ ସନ୍ଧି ସ୍ୱାକ୍ଷର କରିଥିଲେ ।

ରାଜୀବ ଗାନ୍ଧୀ ଜଣେ ଶକ୍ତିଶାଳୀ ଏବଂ ପରିମାର୍ଜିତ ଦୂରଦୃଷ୍ଟି ସଂପନ୍ନ ରାଜନୀତିଜ୍ଞ ଭାବେ ବିଶ୍ୱ ସ୍ତରରେ ପ୍ରତିଷ୍ଠିତ ହୋଇ ଦୀର୍ଘ ୫ ବର୍ଷ କାଳ ଶାସନ କଲେ । ତେବେ ଶାସନକାଳର ଶେଷ ଦୁଇବର୍ଷ ତାଙ୍କର ଭାବ ମୂର୍ତ୍ତିରେ କେତେକ ଆଞ୍ଚ ଆସିଥିଲା । ବିଭିନ୍ନ ରାଜନୈତିକ ବିବାଦ ତାଙ୍କ ଭାବମୂର୍ତ୍ତି ଏବଂ ଚରିତ୍ରକୁ କ୍ଷୁଣ୍ଣ କରିଥିଲା । ବୋଫର୍ସ ମାମଲାରେ ସେ ଦୁର୍ନୀତି ଗ୍ରସ୍ତ ବୋଲି ଅଭିଯୁକ୍ତ ହୋଇଥିଲେ । ଫଳରେ ସେ ୧୯୮୯ ମସିହା ନିର୍ବାଚନରେ ହାରି ଯାଇଥିଲେ । ୧୯୯୦-୯୧ ମସିହାରେ ଯେତେବେଳେ ଗଲ୍ଫ ଅଞ୍ଚଳରେ ଯୁଦ୍ଧ ହୋଇଥିଲା ରାଜୀବ ଗାନ୍ଧୀ ବିରୋଧୀ ଦଳରେ ଥିଲେ ମଧ୍ୟ ଏହି ଯୁଦ୍ଧର ଅବସାନ ଘଟାଇ ଶାନ୍ତି ଫେରସ୍ତ ଆଣିବା ପାଇଁ ଉଦ୍ୟମ କରିଥିଲେ ।

୧୯୮୯ ମସିହାରେ ଭାରତ ବର୍ଷରେ ସ୍ଥିର ସରକାର ନ ଥିଲା ଏବଂ ତତ୍କାଳୀନ ରାଷ୍ଟ୍ରପତି ଆର୍‌ ଭେଙ୍କଟରମଣ ପୁନର୍ବାର ନିର୍ବାଚନ କରିବା ପାଇଁ ଆଦେଶ ଦେଲେ । ରାଜୀବ ଗାନ୍ଧୀ ସାରାଦେଶ ଅବିଶ୍ରାନ୍ତ ଭାବରେ ଭ୍ରମଣ କରି ସ୍ଥିର ସରକାର ଦେବା ପାଇଁ ଭାରତୀୟ ଜନତାଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଲେ । ୧୯୯୧ ମେ ୨୧ ତାରିଖ ଦିନ ନିର୍ବାଚନ ପ୍ରଚାର ଗସ୍ତରେ ଥିଲାବେଳେ ପେରାମ୍‌ବଦୁରଠାରେ ସେ ମଞ୍ଚ ଉପରକୁ

ଯାଉଥିବା ସମୟରେ ଜଣେ ଯୁବତୀ ତାଙ୍କ ଆଶୀର୍ବାଦ ଗ୍ରହଣ କରିବା ପାଇଁ ଆଗେଇ ଆସିଲେ । ସେ ନଇଁ ପଡ଼ି ପାଦ ସ୍ପର୍ଶ କରିବା ବାହାନାରେ ନିଜ ଅଣ୍ଟାରେ ଲାଗିଥିବା ମାନବ ବୋମାର ସୁଇଚ୍ ଟିପି ବିସ୍ଫୋରଣ ଘଟାଇଲେ । ସଭା ସ୍ଥଳରେ ବିରାଟ ବିସ୍ଫୋରଣ ହେଲା । ଆଖି ପିଛୁଳାକେ ରାଜୀବଗାନ୍ଧୀଙ୍କ ଶରୀର ଖଣ୍ଡ ଖଣ୍ଡ ହୋଇଗଲା । ତା ସହିତ ସେ ମହିଳା ଏବଂ ଅନ୍ୟ କେତେଜଣ କର୍ମୀ ମଧ୍ୟ ଖଣ୍ଡ ବିଖଣ୍ଡିତ ହୋଇ ମୃତ୍ୟୁ ବରଣ କଲେ । ପରବର୍ତ୍ତୀ ସମୟରେ ଅନୁସନ୍ଧାନକାରୀ ଦଳ ଜାଣିପାରିଲେ ଯେ ସେହି ହତ୍ୟାକାରୀ ମହିଳା ଏଲ୍.ଟି.ଟି.ଇ ସଂଗଠନରୁ ଆସିଥିଲା । ସେ ଗୋଟିଏ ମାନବ ବୋମା ବହନ କରିଥିଲା । ରାଜୀବ ଗାନ୍ଧୀଙ୍କର ହତ୍ୟା ଖବର ଶୁଣି ସାରା ବିଶ୍ୱରେ ଶୋକର ଛାୟା ଖେଳିଗଲା । ଭାରତ ବର୍ଷକୁ ବିଜ୍ଞାନ ଏବଂ ଶିଳ୍ପ କ୍ଷେତ୍ରରେ ବିଶ୍ୱରେ ସର୍ବଶ୍ରେଷ୍ଠ ଦେଶ କରି ଗଢ଼ି ତୋଳିବାର ସ୍ୱପ୍ନ ସାକାର ହୋଇ ପାରିଲା ନାହିଁ । ଜଣେ ଭଦ୍ର, ମିଷ୍ଟଭାଷୀ, ଆମାୟିକ ଯୁବ ପ୍ରଧାନମନ୍ତ୍ରୀଙ୍କର ଅକାଳ ବିୟୋଗରେ ଦେଶର ଅଗଣିତ ଜନତା ମ୍ରିୟମାଣ ହୋଇପଡ଼ିଲେ । ତାଙ୍କର ମରଶରୀରକୁ ଦିଲ୍ଲୀ ଅଣାଯାଇ ଯେତେବେଳେ ଶବ ଶୋଭାଯାତ୍ରା କରାଗଲା ସେ ଶୋଭା ଯାତ୍ରାରେ କଂଗ୍ରେସ ସମେତ ସମସ୍ତ ବିରୋଧୀଦଳର ନେତା ଓ କର୍ମୀମାନେ ଯୋଗ ଦେଇଥିଲେ । ଦିଲ୍ଲୀ ଜନପଥ ଜନତାର ମହାସମୁଦ୍ରରେ ପରିଣତ ହୋଇଥିଲା । ଏହା ହିଁ ତାଙ୍କ ଜନପ୍ରିୟତାର ସର୍ବଶ୍ରେଷ୍ଠ ନିଦର୍ଶନ । ୧୯୯୧ ମସିହା ଜୁନ୍ ୧୭ ତାରିଖ ଦିନ ଭାରତ ସରକାର ରାଜୀବ ଗାନ୍ଧୀଙ୍କୁ ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନ ମରଣୋତ୍ତର ପ୍ରଦାନ କରିଥିଲେ ।

* * *

# ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ



୧୮୭୫-୧୯୫୦

ଭାରତରତ୍ନ-୧୯୯୧

ଏକ ରକ୍ଷଣଶୀଳ ହିନ୍ଦୁ ପରିବାରରେ ବଲ୍ଲଭ ଭାଇ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପ୍ରାଇମେରୀ ଶିକ୍ଷା କରମାସଦ୍ ଏବଂ ହାଇସ୍କୁଲ୍ ପେଟ୍‌ଲାରେ ହୋଇଥିଲା । କିନ୍ତୁ ସେତେବେଳେ ସ୍କୁଲ ମାନଙ୍କରେ ଶିକ୍ଷକ ଅଭାବ ଥିବାରୁ ସେ ମୁଖ୍ୟତଃ ସ୍ୱୟଂଶିକ୍ଷା ଲାଭ କରି ଶିକ୍ଷିତ ହୋଇଥିଲେ । ଅତି ବାଲ୍ୟ କାଳରୁ ତାଙ୍କର ନେତୃତ୍ୱ ନେବା ଏବଂ ସାଙ୍ଗଠନିକ ପାରଦର୍ଶିତା ଗୁଣ ଗୁଡ଼ିକ ବିକଶିତ ହୋଇ ଉଠୁଥିଲା । ପିତାଙ୍କଠାରୁ ଶିକ୍ଷା କରି ସେ ଅବିଚାର ବିରୁଦ୍ଧରେ ଲଢ଼େଇ କରୁଥିଲେ । ମାତ୍ର ୧୬ ବର୍ଷ ବୟସରେ ୧୮୯୧ ମସିହାରେ ଜାଭାର୍‌ବାଇଙ୍କ ସହିତ ତାଙ୍କର ବିବାହ ସଂପନ୍ନ ହୋଇଥିଲା । ନାଦିଆଦ୍ ହାଇସ୍କୁଲ୍‌ରୁ ୨୨ ବର୍ଷ ବୟସରେ ତାଙ୍କର ହାଇସ୍କୁଲ୍ ପରୀକ୍ଷା ସରିଲା । ତା ପରେ ସେ

ଆଇନ ସ୍ନାତକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ସ୍ୱାଧୀନଭାବେ ଗୋଧ୍ରାରେ ଆଇନ୍ ବ୍ୟବସାୟ ଆରମ୍ଭ କଲେ । ତା ପରେ ହେଡ଼ା ଜିଲ୍ଲା ଅନ୍ତର୍ଗତ ବର୍ଷାଦ୍‌କୁ ସେ ଚାଲି ଆସିଥିଲେ । ତାଙ୍କର କନ୍ୟା ମଣିବେନ୍ ୧୯୦୪ରେ ଏବଂ ପୁତ୍ର ଦୟାଭାଇ ୧୯୦୫ରେ ଜନ୍ମଗ୍ରହଣ କଲେ । ୧୯୦୯ ମସିହାରେ ତାଙ୍କର ଧର୍ମପତ୍ନୀ ଜାଭର୍‌ବାଇ ମୃତ୍ୟୁବରଣ କରିଥିଲେ । ସ୍ତ୍ରୀ ଙ୍କର ଦୁଃଖଦ ବିୟୋଗ ପରେ ବଲ୍ଲଭ ଭାଇ ଆଇନ ଶାସ୍ତ୍ରରେ ଉଚ୍ଚତର ଅଧ୍ୟୟନ ପାଇଁ ଇଂଲଣ୍ଡ ଯାତ୍ରା କଲେ । ୧୯୧୩ ମସିହାରେ ସେ ବାରିଷ୍ଟର ହୋଇ ଭାରତ ବର୍ଷକୁ ଫେରିଲେ । ଅହମ୍ମଦାବାଦ୍‌ରେ ଆଇନ୍ ବ୍ୟବସାୟ ଆରମ୍ଭ କରି ଅତି ଅଳ୍ପ ସମୟ ମଧ୍ୟରେ ସେ ଜଣେ ପ୍ରଖ୍ୟାତ ଆଇନବ୍ୟବସାୟୀ ଭାବେ ନିଜକୁ ପ୍ରତିଷ୍ଠିତ କରିପାରିଲେ । ସେତେବେଳେ ସେ ବିଦେଶୀ ପୋଷାକ ପିନ୍ଧୁଥିଲେ ଏବଂ ଗୁଜରାଟ ଧନାଢ଼୍ୟ ବ୍ୟକ୍ତିମାନଙ୍କ ପାଇଁ ଉଦ୍ଦିଷ୍ଟ ଗୁଜୁରାଟ କ୍ଲବ୍‌ର ସେ ଜଣେ ପ୍ରମୁଖ ସଦସ୍ୟ ଥିଲେ ଏବଂ ବ୍ରିଜ୍ ଖେଳରେ ଚମ୍ପିଆନ୍ ହୋଇଥିଲେ । ଦିନେ ସଂଧ୍ୟାରେ ମହାତ୍ମାଗାନ୍ଧୀ ଗୁଜୁରାଟ କ୍ଲବ୍‌କୁ ବକ୍ତୃତା ଦେବାକୁ ଆସିଥିଲେ । ବଲ୍ଲଭ ଭାଇ କିନ୍ତୁ ତାଙ୍କ କଥା ନ ଶୁଣି ତାଙ୍କର ବନ୍ଧୁ ମାନଙ୍କ ସାଙ୍ଗରେ ବ୍ରିଜ୍ ଖେଳରେ ମଗ୍ନ ଥିଲେ । ଗାନ୍ଧିଜୀଙ୍କ କଥା ସେ ପ୍ରାୟତଃ ଶୁଣୁନଥାନ୍ତି । ଗାନ୍ଧିଜୀ ଏହା ଲକ୍ଷ୍ୟ କରି ବାରମ୍ବାର ତାଙ୍କ ପାଖକୁ ଆସିବା ଫଳରେ ଧୀରେ ଧୀରେ ତାଙ୍କର ଧ୍ୟାନ ଗାନ୍ଧିଜୀଙ୍କ ଆଡ଼କୁ ଗଲା । ଗାନ୍ଧିଜୀ ଭାରତର ସ୍ୱାଧୀନତା ସଂଗ୍ରାମରେ କିପରି ଅହିଂସା ମାର୍ଗରେ ପରିଚାଳିତ ହୋଇ ଜୟଲାଭ କରିହେବ ସେ ବିଷୟରେ ଭାଷଣ ଦେଉଥାନ୍ତି । ସତ୍ୟାଗ୍ରହ ମାଧ୍ୟମରେ ଭାରତବାସୀ ବ୍ରିଟିଶ୍ ବିରୁଦ୍ଧରେ ଲଢ଼ିବା ପାଇଁ ସେ ଇଚ୍ଛା କରୁଥାନ୍ତି । ସେ ବାରମ୍ବାର ଗାନ୍ଧିଜୀଙ୍କ କଥା ଶୁଣିବାକୁ ପାଇଲେ । ବାରମ୍ବାର ସେ ବିଭିନ୍ନ ସଭାରେ ଗାନ୍ଧିଜୀଙ୍କ ବକ୍ତୃତା ଶୁଣିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଲୁହା ଚୁମ୍ବକ ଆଡ଼କୁ ଆକର୍ଷିତ ହେଲା ପରି ଗାନ୍ଧିଜୀଙ୍କ ଦ୍ୱାରା ପ୍ରଭୂତ ଭାବେ ପ୍ରଭାବିତ ହେଲେ ଏବଂ ପରେ ତାଙ୍କର ଜଣେ ପଟ୍ଟଶିଷ୍ୟ ଭାବେ ଉଭା ହେଲେ । ଗାନ୍ଧିଜୀଙ୍କ ପ୍ରତି ତାଙ୍କର ଅତିଶୟ ଭକ୍ତି ଏବଂ ସମ୍ମାନ ଜାଗ୍ରତ ହେଲା । ଅପରପକ୍ଷରେ ଗାନ୍ଧିଜୀ ମଧ୍ୟ ତାଙ୍କୁ ଖୁବ୍ ସ୍ନେହ ଏବଂ ଶ୍ରଦ୍ଧାର ସହିତ ଗ୍ରହଣ କରୁଥିଲେ । ୧୯୧୭ ମସିହାରେ ତାଙ୍କ ଦୁହିଁଙ୍କ ମଧ୍ୟରେ ସଂପର୍କ ଆହୁରି ପ୍ରଗାଢ଼ ହେଲା । ସେତେବେଳେ ଗାନ୍ଧିଜୀ ଗୁଜୁରାଟ ସଭାର ସଭାପତି ଏବଂ ବଲ୍ଲଭ ଭାଇ ପଟେଲ ଏହାର ସେକ୍ରେଟାରୀ ଭାବରେ ନିର୍ବାଚିତ ହୋଇଥିଲେ । ୧୯୧୮ ମସିହାରେ କଇରା ଜିଲ୍ଲାର କୃଷକମାନେ ଅତ୍ୟଧିକ ବର୍ଷା ଏବଂ ବନ୍ୟାରେ ଫସଲ ହାନୀ ଯୋଗୁଁ ଭୂରାଜସ୍ୱ ଦେବାପାଇଁ ଅକ୍ଷମ ହେଲେ । ସେମାନେ

ଗୁଜୁରାଟ ସଭାକୁ ସାହାଯ୍ୟ ଭିକ୍ଷା କରିଥିଲେ । ଫଳ ସ୍ୱରୂପ ବଲ୍ଲଭଭାଇ ଭୂରାଜସ୍ୱ ମାଫ୍ କରିବା ପାଇଁ ସରକାରଙ୍କୁ ଏକ ଦରଖାସ୍ତ ଦେଇଥିଲେ । ସରକାର କିନ୍ତୁ ବଲ୍ଲଭ ଭାଇଙ୍କ



ଅନୁରୋଧକୁ ପ୍ରତ୍ୟାଖ୍ୟାନ କଲା । ବଲ୍ଲଭ ଭାଇ ଉପଯୁକ୍ତ ବିଚାର ପାଇବା ପାଇଁ ଏବଂ ଗରିବ କୃଷକର ଦାବି ପୂରଣ ପାଇଁ ଏକ ସଂଘର୍ଷର ଆୟୋଜନ କଲେ । ତାଙ୍କ ବଳିଷ୍ଠ ନେତୃତ୍ୱ ଏବଂ ପରିଚାଳନାରେ କୃଷକମାନେ ଏକ 'ଟିକସ ନାହିଁ' ଆନ୍ଦୋଳନ ଶାନ୍ତି ପୂର୍ଣ୍ଣ ଭାବରେ ଚଳାଇଲେ । ସେ ଚାଷୀମାନଙ୍କୁ ଯେ କୌଣସି ପରିସ୍ଥିତିରେ ଶାନ୍ତି ବଜାୟ ରଖିବା ପାଇଁ ନିର୍ଦ୍ଦେଶ ଦେଉଥିଲେ । ବଲ୍ଲଭ ଭାଇ ତାଙ୍କର ବିଦେଶୀ ପୋଷାକ ଛାଡ଼ି ଧୋତି ଏବଂ କୁର୍ତ୍ତା ପିନ୍ଧି ଏହି ଆନ୍ଦୋଳନରେ ଯୋଗ ଦେଲେ । ସରକାର ଏହି ଆନ୍ଦୋଳନକୁ ବିଫଳ କରିବା ପାଇଁ କୃଷକମାନଙ୍କର ଜମି, ଫସଲ ଏବଂ ଗାଈଗୋରୁଙ୍କୁ ଅଧିକାର କରିନେଲେ । ତଥାପି ଚାଷୀମାନେ ତାଙ୍କ ଆନ୍ଦୋଳନରୁ ନିବୃତ୍ତ ହେଲେ ନାହିଁ । ଆତ୍ମସମର୍ପଣ କଲେ ନାହିଁ । ଶେଷରେ ସରକାର ବାଧହୋଇ ତାଙ୍କ ଅନୁରୋଧ ରକ୍ଷା କରି ଟିକସ୍ ଛାଡ଼ କରିଥିଲେ ।

ଶାନ୍ତି ଏବଂ ଅହିଂସା ମାଧ୍ୟମରେ ମିଳିଥିବା ସଫଳତା ଗାନ୍ଧିଜୀ ଏବଂ ତାଙ୍କ ମଧ୍ୟରେ ଥିବା ବନ୍ଧନକୁ ଆହୁରି ଦୃଢ଼ୀଭୂତ କଲା । ୧୯୧୯ ମସିହାରେ ସେ ରାଉଲଟ୍‌ବିଲ୍ ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କରିଥିଲେ । ମହାତ୍ମାଗାନ୍ଧି ଦେଶକୁ ଅସହଯୋଗ ଆନ୍ଦୋଳନର ଆହ୍ୱାନ ଦେଲାବେଳେ ବଲ୍ଲଭ ଭାଇ ପଟେଲ ତାଙ୍କର ଅତି ଲୋଭନୀୟ ଆଇନ ବ୍ୟବସାୟ ପରିତ୍ୟାଗ କରି ତହିଁରେ ଯୋଗ ଦେଲେ । ତାଙ୍କ ଭାଇ ଦିପକ ଭାଇ ପଟେଲଙ୍କ ସହିତ ୧୯୨୩ ମସିହାରେ ସେ ନାଗପୁରରେ ପତାକା ସତ୍ୟାଗ୍ରହରେ ଭାଗ ନେଲେ । ବ୍ରିଟିଶ୍ ସରକାର ଜାତୀୟ ପତାକା ସହ ଏକ ପଦଯାତ୍ରାକୁ ବିରୋଧ କରିଥିବା ଯୋଗୁଁ ତାର ପ୍ରତିବାଦରେ ଏହି ପତାକା ସତ୍ୟାଗ୍ରହ ହୋଇଥିଲା । ଗାନ୍ଧିଜୀଙ୍କୁ

ସେ ବାପୁ ନାମରେ ଅଭିହିତ କରିଥିଲେ । ତାଙ୍କରି ପ୍ରଭାବରେ ସେ ଚରଖା ଚଲାଇ ସୂତା କାଟୁଥିଲେ । ସେ ବିଦେଶୀ ବସ୍ତୁ ବର୍ଜନ କରି ସ୍ୱଦେଶୀ ପଦାର୍ଥ ବ୍ୟବହାର କରିବା ପାଇଁ ଦେଶବାସୀଙ୍କୁ ଆହ୍ୱାନ ଦେଇଥିଲେ । ବିଦେଶୀ ବସ୍ତ୍ରକୁ ରାସ୍ତାକୁ ଆଣି ତହିଁରେ ଅଗ୍ନି ସଂଯୋଗ କରିବା ପାଇଁ ସେ ଲୋକମାନଙ୍କୁ ଆହ୍ୱାନ ଦେଇଥିଲେ । ସ୍ୱୟଂ ଉଦାହରଣ ହେବାପାଇଁ ନିଜର ସାର୍ଟ, ବୁଟ୍, କୋର୍ଟ ଆଦି ବିଦେଶୀ ବସ୍ତ୍ରକୁ ଆଣି ରାସ୍ତାରେ ପୋଡ଼ିଥିଲେ । ତାଙ୍କ ବଡ଼ଭାଇ ବିଶାଲ ଭାଇ ପଟେଲ ବଲ୍ଲଭ ଭାଇଙ୍କର ଯଥେଷ୍ଟ ପୂର୍ବରୁ ରାଜନୀତିରେ ପ୍ରବେଶ କରିଥାନ୍ତି । ତେବେ ଦୁଇ ଭାଇ ଉଭୟେ ଦେଶର ସ୍ୱାଧୀନତା ପାଇଁ ଲଢୁଥିଲେ ବି ସେମାନଙ୍କର ମାର୍ଗ ସାମାନ୍ୟ ଭିନ୍ନ ଥିଲା । ବଲ୍ଲଭ ଭାଇ ମହାତ୍ମାଗାନ୍ଧିଙ୍କୁ ଅନୁସରଣ କରି ଅହିଂସା ମାର୍ଗରେ ପରିଚାଳିତ ଥିଲେ । କିନ୍ତୁ ବିଶାଲ ଭାଇ ମୋତିଲାଲ ନେହେରୁ ଏବଂ ଚିତ୍ତରଂଜନ ଦାସଙ୍କ ନେତୃତ୍ୱରେ ପରିଚାଳିତ ସ୍ୱରାଜ ପାର୍ଟିରେ ଯୋଗଦେଇ କେନ୍ଦ୍ରୀୟ ବିଧାନସଭାରେ ଥାଇ ସାମ୍ବିଧାନିକ ଉପାୟରେ ସରକାରଙ୍କ ବିରୁଦ୍ଧରେ ଲଢୁଥାନ୍ତି । ଦୁଇ ଭାଇଙ୍କ ମଧ୍ୟରେ ରାଜନୈତିକ ମତଭେଦ ଥିଲେ ହେଁ ପରସ୍ପର ପ୍ରତି ଶ୍ରଦ୍ଧା ଓ ସମ୍ମାନ ବଜାୟ ରହିଥିଲା ।

୧୯୨୪ ମସିହାରେ ବଲ୍ଲଭ ଭାଇ ଅହମ୍ମଦାବାଦ ନଗରପାଳିକାର ସଭାପତି ଭାବେ ନିର୍ବାଚିତ ହେବା ପରେ ଗୁଜୁରାଟି ଭାଷାକୁ ସରକାରୀ ଭାଷା ଏବଂ ଖଦୀକୁ ମୁନିସପାଲଟି ନଗରପାଳ ପ୍ରତିଷ୍ଠାନର କର୍ମଚାରୀମାନଙ୍କର ପୋଷାକ ଭାବେ ଗ୍ରହଣ କଲେ । ୧୯୨୮ ମସିହାରେ ସରକାର ଭୂରାଜସ୍ୱ ବୃଦ୍ଧି କରିଥିଲେ । ଏହି ଅଯୌକ୍ତିକ ଟିକସ ବୃଦ୍ଧି ବିରୁଦ୍ଧରେ ସେ ଏକ 'ଟିକସ୍ ନାହିଁ' ଆନ୍ଦୋଳନ ବର୍ଦଲେଇ ଠାରେ ଆରମ୍ଭ କଲେ । ସେ ବର୍ଦୋଲୋଇରେ ଅବସ୍ଥାନ କରି ଲୋକମାନଙ୍କୁ ଗାନ୍ଧିଜୀଙ୍କର ଶାନ୍ତିପୂର୍ଣ୍ଣ ଏବଂ ଅହିଂସାମାର୍ଗରେ ପରିଚାଳିତ ପ୍ରତିବାଦ ବିଷୟରେ ବୁଝାଉଥାନ୍ତି । ତାଙ୍କ କଥାରେ ଉତ୍ସାହିତ ହୋଇ ଚାଷୀମାନେ ଟିକସ୍ ଦେବାକୁ ମନା କଲେ । ଏହା ଦେଖି ସରକାର ନିରୀହ ଚାଷୀମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କରିଦେଲେ । ସେ ତାଙ୍କର ଜମି, ଚାଷସାମଗ୍ରୀ ଏବଂ ଗାଈଗୋରୁଙ୍କୁ ବାଜ୍ୟାପ୍ତ କଲେ । ଫଳରେ ଅନେକ ଚାଷୀ ତାଙ୍କର ସ୍ତ୍ରୀ ପିଲା କୁଟୁମ୍ବଙ୍କୁ ନେଇ ନିକଟସ୍ଥ ବରଦା ରାଜ୍ୟକୁ ପଳାୟନ କଲେ । ଚାଷୀମାନଙ୍କୁ ଭୟଭୀତ କରିବା ପାଇଁ ସରକାର ଅନେକ ବୃହତକାୟ ନିର୍ମମ ପଠାନ୍‌ମାନଙ୍କୁ ଟିକସ ଆଦାୟ ପାଇଁ ନିୟୋଜିତ କଲେ । କେତେକ ଚାଷୀ ଏଥିରେ ଭୟଭୀତ ହେଲେ ସତ କିନ୍ତୁ ଏଥିରେ ଅଧିକାଂଶ ତାଙ୍କ ଜିଦ୍‌ରେ ଅଟଳ ରହିଲେ ଏବଂ ଟିକସ୍ ଦେଲେ ନାହିଁ ।

ଏହାପରେ ସେମାନେ ପଠାନ୍ ଗୋଷ୍ଠୀକୁ ଏକଘରିଆ କଲେ । ସେମାନଙ୍କ ସହିତ ସାମାଜିକ ସଂପର୍କ ରଖିବାକୁ ବାରଣ କଲେ । ପଠାନ୍‌ମାନଙ୍କୁ କ୍ଷୀର, ପନିପରିବା ଏବଂ ଅନ୍ୟାନ୍ୟ ଆବଶ୍ୟକୀୟ ସାମଗ୍ରୀ ବିକ୍ରି କଲେ ନାହିଁ ।

ଏହି ଆନ୍ଦୋଳନ ପ୍ରାୟ ୬ ମାସ କାଳ ଚାଲିଲା । ସେତେବେଳେ ଆଶଙ୍କା କରାଯାଉଥିଲା ଯେ କୌଣସି ସମୟରେ ବଲ୍ଲଭ ଭାଇ ପଟେଲ୍‌ଙ୍କୁ ସରକାର ବନ୍ଦୀ କରିନେବେ । ଏହି ସମୟରେ କେନ୍ଦ୍ରୀୟ ବିଧାନ ସଭାର ସଭାପତି ବଲ୍ଲଭଭାଇ ପଟେଲ ଏବଂ ଅନ୍ୟ କେତେକ ନେତା ମିଶି ସରକାରଙ୍କୁ କିଛି ଗୋଟେ ବୁଝାମଣା କରିବା ପାଇଁ ପ୍ରଭାବିତ କଲେ । ତହିଁରେ ରାଜି ହୋଇ ସରକାର ସତ୍ୟାଗ୍ରହୀ ବନ୍ଦୀମାନଙ୍କୁ ଜେଲ୍‌ରୁ ମୁକ୍ତି ଦେଲେ ଏବଂ ତାଙ୍କର ବ୍ୟାଜ୍ୟାପ୍ତ ହୋଇଥିବା ଜମି ତାଙ୍କୁ ଫେରସ୍ତ କଲେ । ଫଳରେ ବଲ୍ଲଭଭାଇ ପଟେଲଙ୍କର ଆଉ ଗୋଟିଏ ବିଜୟ ହେଲା । ଏଥିରେ ଗାନ୍ଧିଜୀ ଅତ୍ୟନ୍ତ ପ୍ରୀତ ହୋଇ ତାଙ୍କର ଶିଷ୍ୟଙ୍କୁ ଗର୍ବର ସହିତ ସର୍ଦ୍ଦାର ବୋଲି ଅବିହିତ କଲେ । ସେହିଦିନ ଠାରୁ ବଲ୍ଲଭ ଭାଇ ପଟେଲ ଜନସମାଜରେ ସର୍ଦ୍ଦାର ପଟେଲ ନାମରେ ପରିଚିତ ହେଲେ ।

ଲୁଣ କାରବାରରେ ବ୍ରିଟିଶ ସରକାରଙ୍କର ଏକଚାଟିଆ ବ୍ୟବସାୟ ଚାଲିଥିଲା । ୧୯୩୦ ମସିହାରେ ଗାନ୍ଧିଜୀ ଲବଣ ସତ୍ୟାଗ୍ରହ ଆରମ୍ଭ କଲେ । ସରକାରଙ୍କର ନିୟମକୁ ଅମାନ୍ୟ କରି ସେ ଲୁଣ ଚାଷୀ ମାନଙ୍କ ଦ୍ୱାରା ଲୁଣ ଚାଷ କରାଇଲେ । ମହାତ୍ମା ଗାନ୍ଧି ସ୍ୱୟଂ ସାବରମତୀ ଆଶ୍ରମରୁ ସମୁଦ୍ର ଉପକୂଳରେ ପଦଯାତ୍ରାରେ ଆସି ଲୁଣ ମାରିଲେ । ମାର୍ଚ୍ଚ ୧୨ ତାରିଖ ଦିନ ଏହି ପଦଯାତ୍ରା ଆରମ୍ଭ ହେବାର ଥିଲା । ସର୍ଦ୍ଦାର ପଟେଲ ତାର ଏକ ସପ୍ତାହ ପୂର୍ବରୁ ଅନ୍ୟାନ୍ୟ ପଦଯାତ୍ରୀ ଦଳଙ୍କ ପାଇଁ ଖାଦ୍ୟ ଏବଂ ରହଣୀ ବନ୍ଦୋବସ୍ତ କରିବା ପାଇଁ ସେଠାକୁ ଗଲେ । ସେଠାରେ ପହଞ୍ଚି ଜନତାଙ୍କୁ ଏକ ବିସ୍ଫୋରକ ଭାଷଣ ଶୁଣାଇଥିଲେ । ତେଣୁ ତାଙ୍କୁ ରାଜ୍ ଗ୍ରାମରେ ବନ୍ଦୀ କରାଗଲା ଏବଂ ଜେଲ୍‌ରେ ରଖାଗଲା । ୧୯୩୧ ମସିହାରେ ଗାନ୍ଧି ଏବଂ ଇର୍ୱିଉଇନ୍‌ଙ୍କ ମଧ୍ୟରେ ଏକ ସନ୍ଧି ହେବା ଫଳରେ ଲବଣ ସତ୍ୟାଗ୍ରହର ଅନ୍ତ ହେଲା । ଏବଂ ଯେଉଁମାନଙ୍କୁ ବନ୍ଦୀ କରାଯାଇଥିଲା ସେମାନେ ଜେଲ୍‌ରୁ ମୁକ୍ତି ପାଇଲେ । ୧୯୩୧ ମସିହାରେ କରାଚୀ ଠାରେ ସର୍ଦ୍ଦାର ପଟେଲଙ୍କ ସଭାପତିତ୍ୱରେ କଂଗ୍ରେସ ଅଧିବେଶନ ହୋଇଥିଲା । ଦୁର୍ଭାଗ୍ୟକ୍ରମେ ମହାତ୍ମାଗାନ୍ଧି ଏବଂ ସର୍ଦ୍ଦାର ପଟେଲ ସେଠାରେ ପହଞ୍ଚିବାପରେ ତାଙ୍କୁ କଳା ପତାକା ଦେଖାଯାଇଥିଲା । କେତେକ ବ୍ୟକ୍ତି

ଗାନ୍ଧି ଇର୍ଉଇନ୍ ସନ୍ଧିରେ ସନ୍ତୁଷ୍ଟ ନ ଥିଲେ । ତାଛଡ଼ା ଠିକ୍ କରାଚୀ ଅଧିବେଶନର ଅବ୍ୟବହିତ ପୂର୍ବରୁ ଭଗତ୍ ସିଂଙ୍କୁ ଫାଶୀ ହୋଇଥିଲା ଏବଂ କଂଗ୍ରେସ ନେତୃବୃନ୍ଦ ତାଙ୍କୁ ବଞ୍ଚାଇବାରେ ସକ୍ଷମ ହୋଇନଥିଲେ । ସେଥିପାଇଁ ମଧ୍ୟ ଜନତା କଂଗ୍ରେସ ଉପରେ ଅସନ୍ତୁଷ୍ଟ ଥିଲା । ଗାନ୍ଧିଜୀ ଏବଂ ଅନ୍ୟାନ୍ୟ ନେତାମାନେ ବକ୍ତୃତା ଦେଲାବେଳେ ଜନତା ତାଙ୍କୁ ଗାଳି ଦେଇଥିଲେ କିନ୍ତୁ ସର୍ଦ୍ଦାର ପଟେଲଙ୍କର ହସ୍ତକ୍ଷେପ ପରେ ସେ ଖୁବ୍ ଚତୁରତାର ସହିତ ଏହି ପରିସ୍ଥିତିକୁ ସମ୍ଭାଳି ନିୟନ୍ତ୍ରଣାଧୀନ କରିଥିଲେ ।

କରାଚୀ ଅଧିବେଶନ ପରେ ସିମ୍ଲାରେ ଭାଇସ୍‌ରାୟଙ୍କ ସହିତ ଗାନ୍ଧିଜୀ ଆଲୋଚନା ପାଇଁ ଗଲାବେଳେ ସର୍ଦ୍ଦାର ପଟେଲ ତାଙ୍କ ସହିତ ଯୋଗ ଦେଇଥିଲେ । ଲଣ୍ଡନ୍‌ରେ ରାଉଣ୍ଡଟେବୁଲ କନ୍‌ଫରେନ୍ସରେ ଯୋଗଦେବା ପାଇଁ ଗାନ୍ଧିଜୀଙ୍କୁ ନିମନ୍ତ୍ରଣ ମିଳିଥିଲା । ଯଦିଓ ଗାନ୍ଧିଜୀ ଜାଣିଥିଲେ ଯେ ରାଉଣ୍ଡ ଟେବୁଲ କନ୍‌ଫରେନ୍ସରେ କୌଣସି ଫଳପ୍ରାପ୍ତିର ଆଶା ନାହିଁ ତଥାପି ସେ ତହିଁରେ ଯୋଗଦେବାପାଇଁ ସମ୍ମତି ଦେଇଥିଲେ । ଦେଶରେ ଗାନ୍ଧିଜୀଙ୍କ ଅନୁପସ୍ଥିତି ବେଳେ ସର୍ଦ୍ଦାର ପଟେଲ ଦେଶ ଭିତରେ ହେଉଥିବା ବିଭିନ୍ନ ପରିସ୍ଥିତି ବିଷୟରେ ତାଙ୍କୁ ନିୟମିତ ଲେଖି ଜଣାଉଥିଲେ । ରାଉଣ୍ଡ ଟେବୁଲ କନ୍‌ଫରେନ୍ସ ଲଣ୍ଡନରେ ଚାଲିଥିବା ସମୟରେ ଏପଟେ ଭାରତ ବର୍ଷରେ ବ୍ରିଟିଶ୍ ସରକାରଙ୍କ ଅତ୍ୟାଚାର ବଢ଼ି ଚାଲିଥାଏ । ମହାତ୍ମାଗାନ୍ଧି ଲଣ୍ଡନରୁ ଫେରି ଭାରତରେ ପହଞ୍ଚିବା ପରେ ପରେ ତାଙ୍କୁ ବନ୍ଦୀ କରାଗଲା ଏବଂ ଅନ୍ୟାନ୍ୟ ନେତାମାନଙ୍କ ସହିତ ତାଙ୍କୁ ବି ଜେଲ୍ ଦଣ୍ଡ ଦିଆଗଲା । ଗାନ୍ଧିଜୀ ଏବଂ ସର୍ଦ୍ଦାର ପଟେଲ ଉଭୟଙ୍କୁ ପୁନେସ୍ଥିତ ଏର୍ୱାଡ଼ା କେନ୍ଦ୍ରୀୟ ଜେଲ୍‌ରେ ରଖାଗଲା । ସେମାନେ ଏକତ୍ର ୧୬ ମାସ କାଳ ଜେଲ୍‌ରେ ରହିଲେ । ସର୍ଦ୍ଦାର ପଟେଲ୍ ମହାତ୍ମା ଗାନ୍ଧିଙ୍କୁ ସବୁ ପ୍ରକାରର ସହାୟତା କରୁଥିଲେ । ଏହି ସହାବସ୍ଥାନ ସମୟରେ ସେମାନଙ୍କ ଭିତରେ ଥିବା ସୁସଂପର୍କ ଆହୁରି ସୁଦୃଢ଼ ହୋଇଥିଲା ।

୧୯୩୨ ମସିହା ନଭେମ୍ବର ମାସରେ ସର୍ଦ୍ଦାର ପଟେଲ୍ ଜେଲ୍‌ରେ ଥିବା ସମୟରେ ତାଙ୍କର ମା' ମୃତ୍ୟୁବରଣ କଲେ । ମା ଙ୍କର ଦଶାହ କାର୍ଯ୍ୟ ସଂପାଦନ କରିବା ପାଇଁ ସେ କୌଣସି ସର୍ତ୍ତରଖି ଜେଲ୍‌ରୁ ମୁକ୍ତି ପାଇବା ପାଇଁ ଅସମ୍ମତ ହେଲେ । ୧୯୩୩ ମସିହାରେ ଜେନେଭା ଠାରେ ତାଙ୍କର ଜ୍ୟେଷ୍ଠଭ୍ରାତା ବିଥଲ ଭାଇ ପ୍ରାଣତ୍ୟାଗ କଲେ । ସେ ଜାତିସଂଘରେ ଭାରତର ସ୍ୱାଧୀନତା ବିଷୟ ଉତ୍ଥାପନ କରିବା ପାଇଁ ଜେନେଭା ଯାଇଥିଲେ । ବିଥଲ ଭାଇଙ୍କ ମର ଶରୀରକୁ ବମ୍ବେ ଅଣାଗଲା ଅନ୍ତିମ ସଂସ୍କାର ପାଇଁ । ଜେଲ୍‌ରେ ଥାଇ ସର୍ଦ୍ଦାର ପଟେଲ ତାଙ୍କ ଜ୍ୟେଷ୍ଠଭ୍ରାତାଙ୍କର ମୃତ୍ୟୁଖବର ପାଇ ଅତ୍ୟନ୍ତ

ମର୍ମାହତ ହେଲେ । ତଥାପି ପୁନର୍ବାର ସେ ପାରୋଲ୍‌ରେ ଆସି ଅନ୍ତିମ ସଂସ୍କାର ତଥା ଦଶାହ କ୍ରିୟା କରିବାପାଇଁ ଅସମ୍ମତ ହେଲେ । ୧୯୩୪ ମସିହା ଜୁଲାଇ ମାସରେ ଅସୁସ୍ଥତା କାରଣରୁ ସେ ଜେଲ୍‌ରୁ ମୁକ୍ତି ଲାଭ କଲେ ।

ବମ୍ବେରେ ମନ୍ତ୍ରୀ ପଦପାଇଁ ସର୍ଦ୍ଦାର ପଟେଲ ସମ୍ମତ ହେଲେନାହିଁ ଏବଂ କଂଗ୍ରେସ ପାର୍ଲାମେଣ୍ଟାରୀ କମିଟିର ଚେୟାରମ୍ୟାନ ପଦବୀରେ ଅଧିଷ୍ଠିତ ହେଲେ ୧୯୩୬ ମସିହାରେ । ତାଙ୍କର ବଳିଷ୍ଠ ନେତୃତ୍ୱରେ ବିଭିନ୍ନ ରାଜ୍ୟରେ ଥିବା କଂଗ୍ରେସ ମନ୍ତ୍ରିମଣ୍ଡଳ ସୁରୁଖୁରୁରେ ଚାଲିଲା । ୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ହେଲାବେଳେ କଂଗ୍ରେସ ମନ୍ତ୍ରିମଣ୍ଡଳଗୁଡ଼ିକ ଇସ୍ତଫା ଦେଲା । କାରଣ କଂଗ୍ରେସ ଏହି ଯୁଦ୍ଧରେ ବ୍ରିଟିଶ୍ ସରକାରଙ୍କର ପକ୍ଷରେ ସଂଗ୍ରାମ କରିବା ପାଇଁ ଅନିଚ୍ଛା ପ୍ରକାଶ କରିଥିଲା । ଗାନ୍ଧିଜୀ ଏହା ପରେ ଏକ ବ୍ୟକ୍ତିଗତ ସତ୍ୟାଗ୍ରହର ଯୋଜନା କଲେ । ଅନେକ ନେତା ବନ୍ଦୀ ହେଲେ । ୧୯୪୨ ମସିହା ମାର୍ଚ୍ଚ ମାସରେ ଉଇଲ୍‌ସନ୍ ଚର୍ଚ୍ଚିଲ୍‌ଙ୍କ ମନ୍ତ୍ରୀମଣ୍ଡଳର ଜଣେ ବରିଷ୍ଠ ସଦସ୍ୟ ସାର୍ କ୍ରାପସିଜ୍‌ଙ୍କ ନେତୃତ୍ୱରେ ଏକ ମିଶନ୍ ଭାରତ ବର୍ଷ ଆସିଥିଲା । ସେହି ମିଶନ୍ ଭାରତକୁ ଯୁଦ୍ଧରେ ଯୋଗଦେବାପାଇଁ ପ୍ରବର୍ତ୍ତାଇଥିଲା । କିନ୍ତୁ ତାଙ୍କର ଏହି ଉଦ୍ୟମ ସଫଳ ହେଲାନାହିଁ । ସେହି ବର୍ଷ ଅଗଷ୍ଟ ୮ ତାରିଖ ଦିନ ସର୍ବଭାରତୀୟ କଂଗ୍ରେସ କମିଟି ବମ୍ବେରେ ଅଧିବେଶନ କରି ସେହିଠାରେ ମହାତ୍ମାଗାନ୍ଧି ଭାରତଛାଡ଼ ଆନ୍ଦୋଳନର ଘୋଷଣା କଲେ । ଏହାପରେ ଅନେକ କଂଗ୍ରେସ ନେତୃବର୍ଗଙ୍କୁ ବ୍ରିଟିଶ୍ ସରକାର ଅହମ୍ମଦାନଗର ଦୁର୍ଗରେ ବନ୍ଦୀ କରି ରଖିଲା । ମହାତ୍ମାଗାନ୍ଧିଙ୍କୁ ପୁନେସ୍ଥିତ ଆଗା ଖାଁ ପ୍ୟାଲେସ୍‌ରେ ରଖାଗଲା ।

ଯେତେବେଳେ କଂଗ୍ରେସ୍ ନେତାମାନେ ଜେଲ୍‌ରେ ଥିଲେ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ନେତୃତ୍ୱରେ ପରିଚାଳିତ ମୁସ୍‌ଲିମ୍ ଲିଗ୍ ଭାରତ ବର୍ଷର ମୁସଲ୍‌ମାନ୍ ସଂପ୍ରଦାୟଙ୍କୁ ଏକ ସ୍ୱତନ୍ତ୍ର ପାକିସ୍ଥାନ ରାଷ୍ଟ୍ର ଗଠନ ଉଦ୍ଦେଶ୍ୟରେ ପ୍ରବର୍ତ୍ତଉ ଥିଲା । ଭାରତରେ ସର୍ବତ୍ର ସାଂପ୍ରଦାୟିକ ଦଙ୍ଗା ତେଜି ଉଠିଲା । ଏହି ସମୟରେ ବିଭିନ୍ନ ଆନ୍ତର୍ଜାତିକ ଚାପ ଯୋଗୁଁ ବ୍ରିଟିଶ୍ ସରକାର ଅନୁଭବ କଲା ଯେ ସେମାନେ ଆଉ ଅଧିକ ଦିନ ଭାରତ ବର୍ଷରେ ତିଷ୍ଠି ପାରିବେ ନାହିଁ । ୧୯୪୬ ମସିହାରେ ପଣ୍ଡିତ୍ ଜବାହାରଲାଲ୍ ନେହେରୁଙ୍କ ନେତୃତ୍ୱରେ ଏକ ଅସ୍ଥାୟୀ ସରକାର ଗଠନ କରାଗଲା । ତହିଁରେ ସର୍ଦ୍ଦାର ପଟେଲ୍ ଗୃହ ମନ୍ତ୍ରଣାଳୟର ଦାୟିତ୍ୱରେ ରହିଲେ । ୧୯୪୭ ଫେବୃଆରୀ ମାସରେ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ କ୍ଲେମେଣ୍ଟ ଅଟିଲ୍ ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ଦିଆଯିବ ବୋଲି ଘୋଷଣା କଲେ । ଲର୍ଡ

ମାଉଣ୍ଟବାଟେନ୍‌ଙ୍କୁ ନୂତନ ଭାଇସ୍‌ରାୟ ଭାବେ ନିଯୁକ୍ତି କରାଯାଇଥିଲା । ଶାସନଭାର ହସ୍ତାନ୍ତର କରିବାର କାର୍ଯ୍ୟ ତାଙ୍କ ଉପରେ ନ୍ୟସ୍ତ କରାଗଲା । ମୁସ୍‌ଲିମ୍ ଲିଗ୍ କିନ୍ତୁ ସ୍ୱତନ୍ତ୍ର ପାକିସ୍ଥାନ ଗଠନ କରିବା ପାଇଁ ତାଙ୍କ ଜିଦ୍‌ରେ ଅଟଳ ରହିଲା । ୧୯୪୭ ମସିହା ଅଗଷ୍ଟ ୧୫ ଦିନ ଭାରତକୁ ସ୍ୱାଧୀନତା ମିଳିଲା । କିନ୍ତୁ ସେହିଦିନ ହିଁ ଭାରତ ବିଭାଜିତ ହେଲା । ସ୍ୱାଧୀନତାର ପ୍ରଥମ ତିନି ବର୍ଷ ସର୍ଦ୍ଦାର ପଟେଲ ଉପ ପ୍ରଧାନମନ୍ତ୍ରୀ ଏବଂ ଗୃହ ମନ୍ତ୍ରୀ ଭାବେ କାର୍ଯ୍ୟ କଲେ । ତା ଛଡ଼ା ସେ ସୂଚନା ଏବଂ ପ୍ରସାରଣ ବିଭାଗର ଦାୟିତ୍ୱ ମଧ ତୁଲେଇଲେ । ତାଙ୍କର ସଫଳତାମାନଙ୍କ ମଧରେ ସବୁଠାରୁ ସ୍ମରଣୀୟ ବିଷୟ ହେଉଛି ବିଭିନ୍ନ ଗଡ଼ଜାତ ତଥା ଦେଶୀୟ ରାଜ୍ୟ ଗୁଡ଼ିକର ଭାରତ ସହିତ ବିଲୟ ଏବଂ ଭାରତକୁ ରାଜନୈତିକ ଦୃଷ୍ଟିର ଏକୀକରଣ । ତାଙ୍କ ପରାକାଷ୍ଠାରେ ମୁଗ୍ଧହୋଇ ଗାନ୍ଧିଜୀ ଲେଖିଥିଲେ, ''ଦେଶୀୟ ରାଜ୍ୟଗୁଡ଼ିକର ସମିଶ୍ରଣ ପ୍ରକୃତରେ ଏକ ପ୍ରଶଂସନୀୟ କାର୍ଯ୍ୟ । ତେବେ ମୋର ଗଭୀର ବିଶ୍ୱାସ ସର୍ଦ୍ଦାର ପଟେଲ ହିଁ ଏକମାତ୍ର ବ୍ୟକ୍ତି ଯେ କି ଏହି କାର୍ଯ୍ୟକରିବାକୁ ସକ୍ଷମ ହୋଇପାରିଛନ୍ତି ।''

ପଣ୍ଡିତ ନେହେରୁ ଏବଂ ସର୍ଦ୍ଦାର ପଟେଲ୍ ଗାନ୍ଧିଜୀଙ୍କର ଦୁଇ ପଟ୍ଟଶିଷ୍ୟ ଥିଲେ । କିନ୍ତୁ ଦୁଃଖର କଥା ଏ ଦୁହିଁଙ୍କ ମଧ୍ୟରେ କେତେକ ମତଭେଦ ସୃଷ୍ଟି ହେଲା । ଗାନ୍ଧିଜୀ ଉଭୟ ଦେଶପାଇଁ ଜଣେ ଜଣେ ଅମୂଲ୍ୟ ରତ୍ନ ବୋଲି ହୃଦୟଙ୍ଗମ କରିଥିଲେ । ତେଣୁ ଦେଶର ବିକାଶ ପାଇଁ ସେ ଉଭୟଙ୍କୁ ଏକତ୍ର କାର୍ଯ୍ୟକରିବାପାଇଁ ଅନୁରୋଧ କଲେ । ଭାରତର ସ୍ୱାଧୀନତା ଏବଂ ଦେଶର ବିକାଶ ପାଇଁ ନେହେରୁଙ୍କ ସହିତ ମିଶି କାର୍ଯ୍ୟକରିବା ପାଇଁ ସେ ୧୯୪୮ ମସିହା ଜାନୁୟାରୀ ୩୦ ତାରିଖ ଦିନ ପୁନର୍ବାର ପଟେଲଙ୍କୁ କହିଥିଲେ । ଗାନ୍ଧିଜୀଙ୍କ ସହିତ କଥାବାର୍ତ୍ତା କରି ସେ ତାଙ୍କ ବସାରେ ପହଞ୍ଚିବା ମାତ୍ରେ ଗାନ୍ଧିଜୀଙ୍କୁ ଗୁଳି କରି ହତ୍ୟା କରାଯାଇଥିବା ଖବର ଶୁଣିବାକୁ ପାଇଲେ । ଘଟଣା ସ୍ଥଳକୁ ସେ ତତ୍‌କ୍ଷଣାତ୍ ଆସିଲେ । ତାଙ୍କ ପରେ ପରେ ପଣ୍ଡିତ ଜବାହାର୍‌ଲାଲ୍ ନେହେରୁ ପହଞ୍ଚିଲେ । ଉଭୟ ନେତା ପରସ୍ପରକୁ ଦୁଃଖ ଏବଂ ନିରବତା ମଧରେ କୋଳାଗ୍ରତ କଲେ । ପଟେଲ୍ ଦୁଃଖରେ ଭାଙ୍ଗି ପଡ଼ି ଥିଲେ । ତାଙ୍କ ଆଖିରୁ ଅବିଶ୍ରାନ୍ତ ଲୁହ ବହି ଚାଲିଥାଏ । ତାଙ୍କର ପ୍ରିୟ ବାପୁ ଆଉ ଇହ ଜଗତରେ ନ ଥାନ୍ତି । ଗୃହମନ୍ତ୍ରୀ ଥିବା ଯୋଗୁଁ ସେ ସାଦା ପୋଷାକ ଧାରୀ ପୋଲିସ୍ ମାନଙ୍କୁ ଗାନ୍ଧିଜୀଙ୍କ ପ୍ରାର୍ଥନା ସଭାରେ ରହିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । କିନ୍ତୁ ଗାନ୍ଧିଜୀ ଏହାକୁ ବାରଣ କରିଥିଲେ । ଗାନ୍ଧିଜୀଙ୍କ ଶେଷ ଇଚ୍ଛାକୁ ସମ୍ମାନ ଜଣାଇ ସର୍ଦ୍ଦାର ପଟେଲ୍ ପଣ୍ଡିତ ନେହେରୁଙ୍କ ସହିତ ସମସ୍ତ



ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆଲୋଚନା କରୁଥିଲେ । ପଣ୍ଡିତ ନେହେରୁ ମଧ୍ୟ ତଦନୁରୂପ ସର୍ଦ୍ଦାର ପଟେଲଙ୍କ ସହିତ ଘନିଷ୍ଠତା ବଜାୟ ରଖିଥିଲେ ।

ସର୍ଦ୍ଦାର ପଟେଲ ଜଣେ ଦକ୍ଷ ରାଜନେତା, ଜଣେ ଅନୁଶାସିତ ଏବଂ ଦୂର ଦୃଷ୍ଟି ସଂପନ୍ନ ବ୍ୟକ୍ତି ଥିଲେ । ସେ ପ୍ରଶାସନିକ ସେବାର ମହତ୍ତ୍ୱ ବୁଝୁଥିଲେ । ଭାରତୀୟ ପ୍ରଶାସନିକ ସେବା, ଭାରତୀୟ ପୋଲିସ୍ ସେବା ଏବଂ ଅନ୍ୟ କେନ୍ଦ୍ରୀୟ ସେବାର ସେ ପ୍ରାରମ୍ଭ କରିଥିଲେ ।

ସର୍ଦ୍ଦାର ପଟେଲ ସର୍ବପ୍ରଥମେ ଜଣେ ଭାରତୀୟ ଥିଲେ । ସେ ଦେଶବାସୀଙ୍କୁ ସବୁବେଳେ ନିଜକୁ କୌଣସି ଜାତି ଗୋଷ୍ଠୀ ପ୍ରଦେଶ ବା ଧର୍ମ ଭିତ୍ତିକ ବିଭାଜନରେ ନ ବାଣ୍ଟି ଜଣେ ଭାରତୀୟ ଭାବେ ନିଜର ପରିଚୟ ଦେବାପାଇଁ ପରାମର୍ଶ ଦେଉଥିଲେ । ୧୯୫୦ ମସିହା ଡ଼ିସେମ୍ବର ୧୫ ତାରିଖ ଦିନ ଭାରତର ଲୌହ ମାନବ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍ ସ୍ୱାଧୀନ ଭାରତର ପ୍ରଥମ ଗୃହମନ୍ତ୍ରୀ ଥିବା ସମୟରେ ପ୍ରାଣତ୍ୟାଗ କରିଥିଲେ । ତାଙ୍କର ମର ଶରୀର ଶୋଭା ଯାତ୍ରାରେ ବାହାରିଲା ବେଳେ ଲକ୍ଷ୍ୟ ଲକ୍ଷ୍ୟ ଜନତା ତାଙ୍କ ଶବାଧାର ପାର୍ଶ୍ୱରେ ଚାଲିଥିଲେ । ସମସ୍ତଙ୍କ ଚକ୍ଷୁରୁ ଅଶ୍ରୁ ନୀରବରେ ଗଡ଼ି ଚାଲିଥିଲା । ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁ, ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ବମ୍ବେ ଆସି ଶବାଧାରରେ ମାଲ୍ୟାର୍ପଣ କରିଥିଲେ । ନେହେରୁ ତାଙ୍କୁ ଆଧୁନିକ ଭାରତର ନିର୍ମାତା ବୋଲି ଅଭିହିତ କରିଥିଲେ । ୧୯୯୧ ମସିହା ଜୁନ୍ ୧୭ ତାରିଖ ଦିନ ତାଙ୍କୁ ମରଣୋତ୍ତର ଭାରତରତ୍ନ ସମ୍ମାନରେ ଭୂଷିତ କରାଯାଇଥିଲା ।

***

# ମୋରାରଜୀ ଦେଶାଇ



୧୮୯୬ - ୧୯୯୫

ଭାରତରତ୍ନ-୧୯୯୧

**ସ୍ୱା**ଧୀନ ଭାରତର ୪ର୍ଥ ପ୍ରଧାନମନ୍ତ୍ରୀ ଭାବେ ମୋରାରଜୀ ଦେଶାଇ ଅଧିଷ୍ଠିତ ହୋଇଥିଲେ । ପଣ୍ଡିତ ଜବାହାରଲାଲ ନେହେରୁ ଶ୍ରୀଯୁକ୍ତ ଲାଲ ବାହାଦୁର ଶାସ୍ତ୍ରୀ, ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ପରେ ଶ୍ରୀଯୁକ୍ତ ମୋରାରଜୀ ଦେଶାଇ ୧୯୭୭ ମସିହାରେ ଭାରତର ପ୍ରଧାନମନ୍ତ୍ରୀ ହୋଇଥିଲେ । ସେତେବେଳେ ତାଙ୍କର ବୟସ ୮୧ ବର୍ଷ । କଂଗ୍ରେସ ଦଳ ଭିନ୍ନ ଅନ୍ୟ କୌଣସି ଦଳରୁ ହୋଇଥିବା ପ୍ରଧାନମନ୍ତ୍ରୀମାନଙ୍କ ମଧ୍ୟରେ ସେ ଥିଲେ ସର୍ବ ପ୍ରଥମ । ଦେଶରେ ସମସ୍ତେ ତାଙ୍କୁ ଶ୍ରଦ୍ଧା ଏବଂ ସମ୍ମାନ ସହ ମୋରାରଜୀ ଭାଇ ବୋଲି ସମ୍ବୋଧନ କରୁଥିଲେ ।

ମୋରାରଜୀ ଦେଶାଇ ୧୮୯୬ ମସିହା ଫେବୃଆରୀ ୨୯ ତାରିଖରେ ତତ୍‌କାଳୀନ ବମ୍ବେ ପ୍ରେସିଡେନ୍‌ସିସ୍ଥିତ ବଲସାଡ୍‌ରେ ଜନ୍ମ ଗ୍ରହଣ କରିଥିଲେ । ଏବେ ତାହା ଗୁଜୁରାଟ ପ୍ରଦେଶରେ ଅବସ୍ଥିତ । ତାଙ୍କର ପିତା ମାନସିକ ଅବସାଦ ଗ୍ରସ୍ତ ହୋଇ ଆତ୍ମହତ୍ୟା କରିଥିଲେ । ତେଣୁ ଶୈଶବରୁ ହିଁ ମୋରାରଜୀଙ୍କୁ ଅନେକ କଠିନ ପରିସ୍ଥିତିରେ ସମ୍ମୁଖୀନ ହେବାକୁ ପଡ଼ିଥିଲା । କିନ୍ତୁ ପ୍ରତିକୂଳ ପରିସ୍ଥିତିରେ ସେ ଭାଙ୍ଗି ନପଡ଼ି ବରଂ ଅଧିକ ଦୃଢ଼ମନା ହୋଇ ପ୍ରତ୍ୟେକ ସମସ୍ୟା ଏବଂ ବାଧା ଅତିକ୍ରମ କରିବାର ଚେଷ୍ଟା କରୁଥିଲେ । ମୁମ୍ବାଇର ପ୍ରେସିଡେନ୍ସି ମହାବିଦ୍ୟାଳୟରୁ ସ୍ନାତକ ଡିଗ୍ରୀ ହାସଲ କରିବା ପରେ ଗୁଜୁରାଟ ସିଭିଲ୍ ସର୍ଭିସ୍‌ରେ ଯୋଗଦେଲେ । ପାଠ ପଢ଼ିବା ସମୟରେ ଅତି ମେଧାବୀ ଛାତ୍ର ତାଲିକାରେ ତାଙ୍କ ନାମ ନଥିଲେ ହେଁ ତର୍କ ପ୍ରତିଯୋଗିତାରେ ସେ ସବୁବେଳେ ଅନ୍ୟାନ୍ୟ ପ୍ରତିଯୋଗୀମାନଙ୍କ ମଧ୍ୟରେ ସର୍ବାଗ୍ରେ ରହୁଥିବାରୁ ବିଶ୍ୱବିଦ୍ୟାଳୟ ସ୍ତରରେ ତର୍କ ଦଳର ସଚିବ ହୋଇଥିଲେ । ତେବେ ଅଧିକାଂଶ ସମୟ ସେ ନିଜ ଜିଦ୍ ଓ ଚିନ୍ତନରେ ଅଟଳ ରହୁଥିଲେ । ମହାତ୍ମା ଗାନ୍ଧୀ ଏବଂ ବାଲ୍ ଗଙ୍ଗାଧର ତିଳକ ଆଦି ମହାପୁରୁଷମାନଙ୍କ ଦ୍ୱାରା ସେ ପ୍ରଭାବିତ ହୋଇଥିଲେ ।

ଛାତ୍ର ଜୀବନରୁ ଆରମ୍ଭକରି ଯୌବନ ଯାଏଁ ମୋରାରଜୀଙ୍କ ଜୀବନ ଅନେକ ସମସ୍ୟା ଜଡ଼ିତ ଥିଲା । ଫଳରେ ତାଙ୍କ ବ୍ୟକ୍ତିତ୍ୱ ଖୁବ୍ କଠୋର ଏବଂ ମଜବୁତ୍ ହୋଇଥିଲା । ପିତାଙ୍କ ଆତ୍ମହତ୍ୟା, ମା'ଙ୍କ କଠୋର ସ୍ୱଭାବ, ଆତ୍ମୀୟସ୍ୱଜନଙ୍କ ଉପେକ୍ଷା, ଚାକିରୀ କ୍ଷେତ୍ରରେ ଉପେକ୍ଷା ପ୍ରଭୃତି ଅନେକ ଘଟଣା ଓ ପରିସ୍ଥିତି ତାଙ୍କ ବ୍ୟକ୍ତିତ୍ୱକୁ ଦୃଢ଼ ଏବଂ ଅନୁଶାସିତ କରାଇଥିଲା । ବ୍ରିଟିଶ୍ ଶାସିତ ଭାରତରେ ଗୁଜୁରାଟ ସିଭିଲ୍ ସର୍ଭିସ୍‌ରେ ଉତ୍ତୀର୍ଣ୍ଣ ହୋଇ ଅଫିସର ହେବାର ଯୋଗ୍ୟତା ଅର୍ଜନ କରିଥିଲେ ବି ତାଙ୍କୁ 'କଲେକ୍ଟରଙ୍କ ବ୍ୟକ୍ତିଗତ ସହକାରୀ ଭାବେ ନିଯୁକ୍ତ କରାଯାଇଥିଲା । ଏପ୍ରକାର ଉପେକ୍ଷାକୁ ତାଙ୍କର ବିଦ୍ରୋହୀ ସ୍ୱଭାବ ସ୍ୱୀକାର କରିବା ସମ୍ଭବ ନଥିଲା । ପରବର୍ତ୍ତୀ ସମୟରେ ସେ ଜଣେ ସଚ୍ଚା ଗାନ୍ଧିବାଦୀ ଭାବେ ଦେଶବାସୀଙ୍କ ଦ୍ୱାରା ସ୍ୱୀକୃତ ହୋଇଥିଲେ । ତଥାପି ତାଙ୍କ ଦଳର ଅନ୍ୟାନ୍ୟ ସଦସ୍ୟମାନଙ୍କ ସମ୍ମୁଖରେ ମୋରାରଜୀ କେବଳ ନିଜ ଚିନ୍ତାଧାରାକୁ ହିଁ ଗୁରୁତ୍ୱ ଦେଉଥିବା ବ୍ୟକ୍ତିତ୍ୱ ଭାବେ ଜଣାଶୁଣା ଥିଲେ ।

ମୋରାରଜୀ ଦେଶାଇ ପ୍ରାକୃତିକ ଚିକିତ୍ସା ପଦ୍ଧତି ଉପରେ ଆସ୍ଥା ରଖୁଥିଲେ । ନିଜର ପରିସ୍ରାକୁ ଅନେକ ରୋଗରେ ଫଳପ୍ରଦ ଭାବେ ବ୍ୟବହାର କରାଯାଇପାରେ ବୋଲି ଶ୍ରୀ ଦେଶାଇ ଦର୍ଶାଇଥିଲେ । ତାଙ୍କର ଏହି ଚିନ୍ତାଧାରା ଯୋଗୁଁ ଅନେକଙ୍କଠାରୁ

ସମାଲୋଚିତ ହେଲେ ହେଁ ସେ ନିଜ ପାଇଁ ଏହି ପଦ୍ଧତିର ସଫଳ ପ୍ରୟୋଗ କରି ଶତାୟୁ ହେବାଯାଏଁ ନିରୋଗ ରହିପାରିଥିଲେ ।

୧୯୩୦ ମସିହାରେ ସେ ବ୍ରିଟିଶ୍ ସରକାରଙ୍କ ଚାକିରୀରୁ ତ୍ୟାଗପତ୍ର ଦେଇ ସ୍ୱାଧୀନତା ଆନ୍ଦୋଳନରେ ସମ୍ପୂର୍ଣ୍ଣ ଭାବେ ନିଜକୁ ନିୟୋଜିତ କଲେ । ତାଙ୍କର ସକ୍ରିୟତା ଏବଂ ଆବଶ୍ୟକତାକୁ ହୃଦୟଙ୍ଗମ କରି କଂଗ୍ରେସ ପାର୍ଟି ମୋରାରଜୀଙ୍କୁ ଗୁଜୁରାଟ ପ୍ରଦେଶର ସାଧାରଣ ସମ୍ପାଦକ ଭାବେ ନିର୍ବାଚିତ କଲା । ତାଙ୍କ କାର୍ଯ୍ୟକାଳ ମଧ୍ୟରେ ମୋରାରଜୀ ଗୁଜୁରାଟ ପ୍ରଦେଶରେ ଭାରତୀୟ ଯୁବ-କଂଗ୍ରେସର ଏକ ଶାଖା ଖୋଲି ଯୁବକମାନଙ୍କୁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାପାଇଁ ଉତ୍ସାହିତ କଲେ । ସର୍ଦ୍ଦାର ବଲ୍ଲଭଭାଇ ପଟେଲ ମୋରାରଜୀଙ୍କ ଆଚରଣରେ ମୁଗ୍ଧ ହୋଇ ତାଙ୍କୁ ଯୁବ କଂଗ୍ରେସର ଅଧ୍ୟକ୍ଷ ଭାବେ ନିଯୁକ୍ତି ଦେଲେ । ୧୯୩୦ ମସିହାରେ ୩ ମାସ ପାଇଁ ତାଙ୍କୁ ଜେଲ୍ ଏବଂ ୩୦୦ ଟଙ୍କା ଜୋରିମାନା ହୋଇଥିଲା । ତେବେ ଉଚ୍ଚତର ନ୍ୟାୟାଳୟ ଏହି ଦଣ୍ଡାଦେଶକୁ ଖାରଜ କରିଦେଇଥିଲେ । ୧୯୩୨ ମସିହାରେ ପୁଣି ଥରେ ବ୍ରିଟିଶ୍ ସରକାର ତାଙ୍କୁ ଦେଢ଼ବର୍ଷ ପାଇଁ ସଶ୍ରମ କାରାଦଣ୍ଡ ଦେଇଥିଲେ । ଜେଲ୍‌ରୁ ମୁକ୍ତି ପାଇବା ପରେ ତାଙ୍କୁ ପୁନର୍ବାର ୨ ବର୍ଷ କାଳ ଜେଲ୍‌କୁ ପଠାଗଲା । ତେବେ ଆଇନ ଅମାନ୍ୟ ଆନ୍ଦୋଳନକୁ ସ୍ଥଗିତ ରଖାଗଲା ପରେ ତାଙ୍କ ନିସର୍ତ୍ତ ମୁକ୍ତି ମିଳିଲା । ମହାତ୍ମା ଗାନ୍ଧୀଙ୍କ ସତ୍ୟାଗ୍ରହ ଆନ୍ଦୋଳନରେ ଭାଗ ନେବା ଯୋଗୁଁ ତାଙ୍କୁ ବନ୍ଦୀ କରାଯାଇ ୧୯୪୧ ମସିହା ଅକ୍ଟୋବର ମାସରେ ଜେଲ୍‌ରୁ ମୁକ୍ତ କରାଗଲା । ଭାରତ ଛାଡ଼ ଆନ୍ଦୋଳନରେ ସକ୍ରିୟ ଯୋଗଦାନ ହେତୁ ୧୯୪୨ ମସିହାରେ ବନ୍ଦୀହୋଇ ୧୯୪୫ ମସିହାରେ ମୁକ୍ତ ହୋଇଥିଲେ ।

୧୯୪୬ ମସିହା ରାଜ୍ୟ ବିଧାନସଭା ନିର୍ବାଚନରେ ଜୟଲାଭକରି ସେ ତତ୍କାଳୀନ ବମ୍ବେ ପ୍ରଦେଶର ଗୃହ ଓ ରାଜସ୍ୱ ମନ୍ତ୍ରୀ ହେଲେ । ପରେ ୧୯୫୨ ମସିହାରେ ସେ ବମ୍ବେ ପ୍ରଦେଶର ମୁଖ୍ୟମନ୍ତ୍ରୀ ଭାବେ କାର୍ଯ୍ୟଭାର ଗ୍ରହଣ କଲେ । ୧୯୫୬ ମସିହାରେ ସେ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଶିଳ୍ପ ଓ ବାଣିଜ୍ୟ ମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ କଲେ ଏବଂ ୧୯୫୮ ମସିହାରେ ଅର୍ଥ ମନ୍ତ୍ରୀ ହେଲେ । ପଣ୍ଡିତ ଜବାହାରଲାଲ୍‌ଙ୍କ ପରେ ମୋରାରଜୀ ହିଁ ଭାରତର ପ୍ରଧାନମନ୍ତ୍ରୀ ପଦରେ ଅଭିସିକ୍ତ ହେବେ ବୋଲି ସାଧାରଣରେ ଚର୍ଚ୍ଚା ହେଉଥିଲା । କିନ୍ତୁ ପଣ୍ଡିତ ନେହେରୁଙ୍କ ଦେହାବସାନ ପରେ ପ୍ରଧାନମନ୍ତ୍ରୀ ପଦପାଇଁ ମୋରାରଜୀ ପ୍ରତିଦ୍ୱନ୍ଦ୍ୱିତା କରି ଲାଲ୍‌ବାହାଦୁର ଶାସ୍ତ୍ରୀଙ୍କଠାରୁ ପରାଜିତ ହେଲେ । ଶାସ୍ତ୍ରୀଜୀଙ୍କ ଅକାଳ ବିୟୋଗ ପରେ ପୁଣିଥରେ ସେ ଇନ୍ଦିରା

ଗାନ୍ଧୀଙ୍କଠାରୁ ୩୫୧-୧୬୯ ଭୋଟ୍‌ରେ ପରାଜିତ ହେଲେ ।



ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ମନ୍ତ୍ରିମଣ୍ଡଳରେ ୧୯୬୭ ମସିହାରେ ମୋରାରଜୀ ଭାଇଙ୍କୁ ଉପ-ପ୍ରଧାନମନ୍ତ୍ରୀ ଭାବେ ଦାୟିତ୍ୱ ଦିଆଯାଇଥିଲା । କିନ୍ତୁ ତାଙ୍କୁ ଅର୍ଥମନ୍ତ୍ରୀ ଦାୟିତ୍ୱରୁ କାଢ଼ି ଏହି ପଦ ଦିଆଯାଇଥିବାରୁ ପ୍ରତିବାଦ ସ୍ୱରୂପ ୧୯୬୯ ମସିହାରେ ସେ ଏହି ପଦ ତ୍ୟାଗ କରିଥିଲେ । ସେହିବର୍ଷ କଂଗ୍ରେସ ଦଳ ବିଭାଜିତ ହେବାରୁ, ମୋରାରଜୀ ଭାଇ କଂଗ୍ରେସ (ଓ)ରେ ଯୋଗ ଦେଇ ବିରୋଧୀ ଦଳ ନେତା ହେଲେ । ୧୯୭୫ ମସିହାରେ କେନ୍ଦ୍ର ସରକାରଙ୍କ ପରାମର୍ଶ କ୍ରମେ ଗୁଜୁରାଟ ବିଧାନସଭା ଭଙ୍ଗ କରାଯାଇ ରାଜ୍ୟପାଳଙ୍କ ଶାସନ ଚାଲିଥିଲା । ଏହାର ପ୍ରତିବାଦକରି ମୋରାରଜୀ ଭାଇ ଗୁଜୁରାଟରେ ବିଧାନସଭା ନିର୍ବାଚନ କରାଇବା ପାଇଁ ଆମରଣ ଅନଶନ କଲେ । ତାଙ୍କ ଦାବି ଅନୁସାରେ ପୁନର୍ବାର ହୋଇଥିବା ନିର୍ବାଚନରେ ମିଳିତ ଜନତା ଦଳ ନିରଙ୍କୁଶ ସଂଖ୍ୟା ଗରିଷ୍ଠତା ହାସଲ କଲା । ଆଲ୍ଲାହାବାଦ ହାଇକୋର୍ଟଙ୍କ ଐତିହାସିକ ରାୟ ପ୍ରକାଶିତ ହେବା ପରେ ଇନ୍ଦିରା ଗାନ୍ଧୀ ଇସ୍ତଫା ଦେବା ପାଇଁ ମୋରାରଜୀ ଭାଇ ଦାବି କଲେ । କିନ୍ତୁ ତାହାକୁ ଭ୍ରୁକ୍ଷେପ ନକରି ଇନ୍ଦିରା ଗାନ୍ଧୀ ଦେଶରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କଲେ । ଏହାର ପ୍ରତିବାଦ କରିବା ଯୋଗୁଁ ମୋରାରଜୀଙ୍କୁ ଦେଶର ଅନ୍ୟାନ୍ୟ ଅସଂଖ୍ୟ ତୁଙ୍ଗ ନେତାମାନଙ୍କ ସହିତ ୧୯୭୫ ମସିହା ଜୁନ୍ ୨୬ ତାରିଖ ଦିନ ବନ୍ଦୀ କରାଗଲା । ୧୯୭୭ ମସିହା ଜାନୁଆରୀ ୧୮ ତାରିଖ ଦିନ ତାଙ୍କୁ ମୁକ୍ତି ମିଳିଲା ।

ଜରୁରୀକାଳୀନ ପରିସ୍ଥିତି ହଟିବା ପରେ ତାଙ୍କ 'ଜନତା ଦଳ' ଦେଶର ପ୍ରତ୍ୟେକ କୋଣରୁ ସମର୍ଥନ ପାଇ ୧୯୭୭ ମସିହାରେ ନିର୍ବାଚନ ଲଢ଼ିଲା । ଗୁଜୁରାଟର ସୁରଟରୁ ଶ୍ରୀ ଦେଶାଇ ନିର୍ବାଚନ ଜିତିଲେ । ଜନତା ଦଳ ସାଂସଦରେ ସଂଖ୍ୟା ଗରିଷ୍ଠତା ହାସଲ କଲା । ଜନତା ଦଳର ନେତା ଭାବେ ସେ ନିର୍ବିବାଦରେ ନିର୍ବାଚିତ ହୋଇ ପ୍ରଥମ ଅଣକଂଗ୍ରେସ ତଥା ପୃଥିବୀର ସର୍ବାଧିକ ବୟୋଜ୍ୟେଷ୍ଠ ପ୍ରଧାନମନ୍ତ୍ରୀ ଭାବେ ୧୯୭୭ ମସିହା ମାର୍ଚ୍ଚ



୨୪ ତାରିଖ ଦିନ ଶପଥ ଗ୍ରହଣ କଲେ । ଦାୟିତ୍ୱ ଗ୍ରହଣ କରିବା ପରେ ତାଙ୍କର ପ୍ରଥମ କର୍ତ୍ତବ୍ୟ ଭାବେ ପୂର୍ବତନ ସରକାର ପରି ପରବର୍ତ୍ତୀ ଅନ୍ୟ କୌଣସି ସରକାର ଯେପରି ଜରୁରୀକାଳୀନ ପରିସ୍ଥିତି ଘୋଷଣା କରିବା କଷ୍ଟକର ହେବ ସେଥିପାଇଁ ଆଇନ୍ ପ୍ରଣୟନ କଲେ । ଭାରତ-ପାକିସ୍ଥାନ ସଂପର୍କ ସୁଧାରିବା ପାଇଁ ଅନେକ ପ୍ରଚେଷ୍ଟା କଲେ । ତେବେ ଦୁଃର୍ଭାଗ୍ୟବଶତଃ ଚୌଧୁରୀ ଚରଣ ସିଂ ଓ ରାଜନାରାୟଣ ଜନତା ଦଳରୁ ସମର୍ଥନ ପ୍ରତ୍ୟାହାର କରିବା ଯୋଗୁଁ ୧୯୭୯ ମସିହାରେ ୮୩ ବର୍ଷ ବୟସରେ ସେ ପ୍ରଧାନମନ୍ତ୍ରିତ୍ୱରୁ ତ୍ୟାଗପତ୍ର ନେବାକୁ ବାଧ୍ୟ ହେଲେ ଏବଂ ରାଜନୈତିକ ଜୀବନରୁ ସନ୍ୟାସ ଘୋଷଣା କଲେ ।

ମୋରାରଜୀ ଦେଶାଇ ଜଣେ ସତ୍ୟନିଷ୍ଠ ଗାନ୍ଧୀବାଦୀ ନେତା ଥିଲେ । ନୀତି ନିୟମ ଓ ଅନୁଶାସନ ତାଙ୍କ ଜୀବନର ମୁଖ୍ୟ ଆଧାର ଥିଲା । ସମାଜସେବା ଓ ସମାଜ ସଂସ୍କାର ପାଇଁ ତାଙ୍କ ଜୀବନ ଉତ୍ସର୍ଗୀକୃତ ହୋଇଥିଲା । ମହାତ୍ମା ଗାନ୍ଧୀଙ୍କ ପ୍ରତିଷ୍ଠିତ 'ଗୁଜୁରାଟ ବିଦ୍ୟା ପୀଠ' ବିଶ୍ୱବିଦ୍ୟାଳୟର କୁଳପତି ଭାବେ ସେ ଅନେକ ବର୍ଷ କାର୍ଯ୍ୟ କରିଛନ୍ତି । ପ୍ରଧାନମନ୍ତ୍ରୀ ଥିଲାବେଳେ ବି ସେ ଅନେକବାର ଯାଇ ଗୁଜୁରାଟ ବିଦ୍ୟାଳୟରେ ଅବସ୍ଥାପନ କରିଥିଲେ । ସର୍ଦ୍ଦାର ପଟେଲ୍‌ଙ୍କ ଅନୁରୋଧ କ୍ରମେ କଇରା ଜିଲ୍ଲାର କୃଷି ଶ୍ରମିକମାନଙ୍କ ସଭା ଡକାଇ ତା'ର ପରିଚାଳନା କରିଥିଲେ । ଫଳସ୍ୱରୂପ ପରବର୍ତ୍ତୀ ସମୟରେ ସେଠାରେ ଅମୁଲ୍ ସମବାୟ ଆନ୍ଦୋଳନ ବିଶ୍ୱପ୍ରସିଦ୍ଧ ହୋଇପାରିଥିଲା ।

ମୋରାରଜୀ ଭାଇଙ୍କ ପରି ବ୍ୟକ୍ତିତ୍ୱ ଭାରତ ଇତିହାସରେ ବିରଳ । ୧୯୯୦ ମସିହାରେ ତାଙ୍କୁ ପାକିସ୍ଥାନ ସରକାର ତାଙ୍କ ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ 'ନିଶାନ୍-ଏ-ପାକିସ୍ଥାନ'ରେ ଭୂଷିତ କରିଥିଲେ । ୧୯୯୧ ମସିହାରେ ଭାରତର ସର୍ବୋଚ୍ଚ 'ଭାରତ ରତ୍ନ' ସମ୍ମାନ ତାଙ୍କୁ ପ୍ରଦାନ କରାଯାଇଥିଲା । ଉଭୟ ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ ପାଇବାରେ ସେ ହେଉଛନ୍ତି ପ୍ରଥମ ଭାରତୀୟ ।

ଏହି ଶତାୟୁ ଯୁଗପୁରୁଷଙ୍କ ଦେହାନ୍ତ ମୁମ୍ବାଇଠାରେ ୧୯୯୫ ମସିହା ଏପ୍ରିଲ ମାସ ୧୦ ତାରିଖରେ ହୋଇଥିଲା ।

***

# ମୌଲାନା ଅବୁଲ୍ କାଲାମ୍ ଆଜାଦ୍



୧୮୮୮-୧୯୫୮

ଭାରତରତ୍ନ - ୧୯୯୨

**ଅ**ହିଂସା ମାର୍ଗରେ ପରିଚାଳିତ ଭାରତର ସ୍ୱାଧୀନତା ସଂଗ୍ରାମରେ ଅନେକ ମହାପ୍ରତାପୀ ଯୋଦ୍ଧା ନେତୃତ୍ୱ ନେଇଥିଲେ । ତନ୍ମଧ୍ୟରେ ମୌଲାନା ଅବୁଲ୍ କାଲାମ୍ ଆଜାଦ୍ ଏକ ଶ୍ରଦ୍ଧାଶୀଳ ନାମ । ତେବେ ଏହି ମୌଲାନାଙ୍କର ପ୍ରକୃତ ନାମ ଥିଲା ମହିଉଦ୍ଦିନ୍ ଅହମ୍ମଦ । କିନ୍ତୁ ପରବର୍ତ୍ତୀ କାଳରେ ସେ ମୌଲାନା ଅବୁଲ୍ କାଲାମ୍ ଆଜାଦ୍ ନାମରେ ଜନପ୍ରିୟ ହୋଇଯାଇଥିଲେ । ମୌଲାନା ଆଜାଦଙ୍କର ଜନ୍ମ ଏକ ଧାର୍ମିକ ପରିବାରରେ ହୋଇଥିଲା । ମୁସଲମାନ୍‌ମାନଙ୍କର ସର୍ବୋତ୍ତମ ଧର୍ମପୀଠ ମକ୍କାରେ ୧୮୮୮ ମସିହାରେ ସେ ତାଙ୍କର ଜଣେ ଭାରତୀୟ ପିତା ଏବଂ ଆରବର ମା ଙ୍କଠାରୁ ଜନ୍ମ ଗ୍ରହଣ କରିଥିଲେ । ପରବର୍ତ୍ତୀ ସମୟରେ ତାଙ୍କ ପରିବାର ମକ୍କାରୁ ଭାରତ ବର୍ଷକୁ ଆସିଯାଇଥିଲେ । ସେତେବେଳକୁ

ଭାରତୀୟ ସ୍ୱାଧୀନତା ସଂଗ୍ରାମ ସାରାଦେଶରେ ବ୍ୟାପକ ଭାବରେ ଚାଲିଥାଏ । ସେହି ସଂଗ୍ରାମର ମହାସ୍ରୋତରେ ମୌଲାନା ଆଜାଦ୍ ମଧ୍ୟ ନିଜକୁ ହଜାଇ ଦେଲେ । ମୌଲାନା ଆଜାଦ୍ ଏକାଧାରାରେ ଜଣେ ସୁବକ୍ତା, କବି, ଲେଖକ, ସାମ୍ବାଦିକ ଏବଂ ଜଣେ ବିଶିଷ୍ଟ ଦାର୍ଶନିକ ଥିଲେ । ତା ସହିତ ସେ ଜଣେ ଧର୍ମ ପରାୟଣ ଏବଂ ଧର୍ମ ଗ୍ରନ୍ଥର ଉଚ୍ଚକୋଟୀର ଗବେଷକ ତଥା ବିପ୍ଳବୀ ଥିଲେ । ବାଲ୍ୟକାଳରେ ସେ ଅନ୍ୟପିଲାମାନଙ୍କ ସାଙ୍ଗରେ ଖେଳିବାକୁ ପସନ୍ଦ କରୁନଥିଲେ । ତାଙ୍କର ବାପା ମୌଲାନାଙ୍କୁ ଧର୍ମଗ୍ରନ୍ଥ ପଢ଼ିବାରେ ଅଧିକ ମନୋନିବେଶ କରିବା ପାଇଁ ପ୍ରବର୍ତ୍ତାଇ ଥିଲେ । ତାଙ୍କର ସମୟ ମୁଖ୍ୟତଃ ଲେଖା ଏବଂ ପଢ଼ାରେ ଅତିବାହିତ ହେଉଥିଲା । ଫଳରେ ସେ ସମାସ୍କନ୍ଧ ବ୍ୟକ୍ତିମାନଙ୍କଠାରୁ ଦୂରେଇ ରହିବାକୁ ବାଧ୍ୟ ହେଉଥିଲେ । ବାଲ୍ୟକାଳରେ ତାଙ୍କର ସ୍ମରଣ ଶକ୍ତି ଅଦ୍ଭୁତ ଥିଲା । ତା ସାଙ୍ଗକୁ ବିଭିନ୍ନ ଭାଷା ସାହିତ୍ୟ ପଢ଼ିବା, ଲେଖିବା ଏବଂ କହିବାରେ ତାଙ୍କର ଅତି ଆଗ୍ରହ ଥିଲା । ଧର୍ମଗ୍ରନ୍ଥ ଗୁଡ଼ିକ ପଢ଼ିବା ସହିତ ସେ ଆରବିକ୍, ପାର୍ସିଆନ୍, ଉର୍ଦ୍ଦୁ ଭାଷା ସାହିତ୍ୟ ଶିକ୍ଷା କରିବା ତଥା ଗଣିତ ଶାସ୍ତ୍ର ଏବଂ ୟୁନାନୀ ଚିକିତ୍ସା ବିଦ୍ୟା ଅଧ୍ୟୟନରେ ମନୋନିବେଶ କରିଥିଲେ । ପକେଟ୍‌କୁ ଯାହାବି ପଇସା ଆସୁଥିଲା ସେ ବହି କିଣାରେ ବ୍ୟୟ କରୁଥିଲେ । ପ୍ରଥମତଃ ଇଂରାଜୀ ଭାଷାକୁ ସେ ଘୃଣା କରୁଥିଲେ । କିନ୍ତୁ ଅତି ଅଳ୍ପ ସମୟ ମଧ୍ୟରେ ସେ ଇଂରାଜୀ ଭାଷା ମଧ୍ୟ ଶିକ୍ଷା କରିନେଲେ । ତାଙ୍କର ଅଦ୍ଭୁତ ଧୀଶକ୍ତି ଯୋଗୁଁ ଖୁବ୍ କମ୍ ସମୟ ମଧ୍ୟରେ ସେ ଇଂରାଜୀ ସମ୍ବାଦ ପତ୍ର ପଢ଼ିବାକୁ ସକ୍ଷମ ହେଲେ ଏବଂ ଇଂରାଜୀ ଭାଷାର ବାଇବେଲ୍ ମଧ୍ୟ ପଢ଼ିବାକୁ ଲାଗିଲେ । ଅନେକ କ୍ଷେତ୍ରରେ ସେ ତାଙ୍କର ସମବୟସ୍କ ମାନଙ୍କଠାରୁ ବହୁ ଆଗରେ ରହୁଥିଲେ । ଖୁବ୍ କମ୍ ବୟସରୁ ସେ ବକ୍ତୃତା ଦେବା ଆରମ୍ଭ କଲେ । ବିଭିନ୍ନ ଭାଷାର ତର୍କ ପ୍ରତିଯୋଗିତାରେ ସେ ଭାଗ ନେଲେ ଏବଂ ଅନେକ ଆଶ୍ରମରେ ସେ ଶିକ୍ଷାଦାନ କରିବାରେ ମନୋନିବେଶ କରିଥିଲେ । ଅନେକ ସମୟରେ ତାଙ୍କର ଶ୍ରୋତାମଣ୍ଡଳୀରେ ତାଙ୍କଠାରୁ ବୟସ୍କ ବ୍ୟକ୍ତି ମାନେ ମନ୍ତ୍ରମୁଗ୍ଧହୋଇ ତାଙ୍କ କଥା ଶୁଣୁଥିଲେ । ସାହିତ୍ୟ କ୍ଷେତ୍ରରେ ସେ ଯେ କୌଣସି ବାଧା ବିଘ୍ନକୁ ଅତିକ୍ରମକରି ଅନେକ କଷ୍ଟ ସ୍ୱୀକାର କରି ଆଗକୁ ଅଗ୍ରସର ହେବାପାଇଁ ପ୍ରସ୍ତୁତ ହେଲେ । ତାଙ୍କୁ ମାତ୍ର ୧୫ ବର୍ଷ ବୟସରେ ସେ ଅନେକ ପତ୍ରପତ୍ରିକାର ସମ୍ପାଦନା କରିବା ଆରମ୍ଭ କରିଥିଲେ ଏବଂ ପରବର୍ତ୍ତୀ ସମୟରେ ସେ ତାଙ୍କର ନିଜର ଏକ ପତ୍ରିକା ପ୍ରକାଶ କଲେ । ୧୯୦୪ ମସିହାରେ ସେ ଉର୍ଦ୍ଦୁ ଭାଷାର ସ୍କଲାର ମାନଙ୍କୁ ଭାଷଣ ଦେବାପାଇଁ ଏକ ଜାତୀୟ ଅଧିବେଶନକୁ ନିମନ୍ତ୍ରିତ ହେଲେ । ଏହି ଜାତୀୟ ଅଧିବେଶନ ଲାହୋରଠାରେ ୧୯୦୪ ମସିହାରେ ସଂଗଠିତ ହୋଇଥିଲା । ସେଠାରେ ସମବେତ ଜନତା

ଜଣେ ମାତ୍ର ୧୬ ବର୍ଷ ବୟସ୍କ ଗୌର ରଙ୍ଗର ଖର୍ବକାୟ କିଶୋରଙ୍କୁ ମଞ୍ଚ ଉପରେ ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ ଏବଂ ସେମାନଙ୍କର ସନ୍ଦେହ ହେଲା ଯେ ତାଙ୍କ ନିମନ୍ତ୍ରଣ ସଠିକ୍ ବ୍ୟକ୍ତି ପାଖରେ ପହଞ୍ଚିଥିଲା ତ ? ତେବେ ଓଜସ୍ୱିନୀ ଭାଷଣ ଆରମ୍ଭ କରିବା ପରେ ଜନତା ସ୍ତବ୍ଧ ହୋଇ ପ୍ରାୟ ୨ ଘଣ୍ଟା କାଳ ତାଙ୍କର ଭାଷଣ ଶୁଣିଲେ । ଏହି ଉର୍ଦ୍ଦୁଭାଷାର ଜାତୀୟ କମିଟିର ସଭାପତିଙ୍କ ସମେତ ସମସ୍ତ ସଭ୍ୟଙ୍କ ବୟସ ୫୦ ବର୍ଷରୁ ଉର୍ଦ୍ଧ୍ୱ ହୋଇଥିଲେ ହେଁ ପ୍ରତ୍ୟେକ ବ୍ୟକ୍ତି ଆଜାଦ୍‌ଙ୍କର ଭୂୟସୀ ପ୍ରଶଂସାରେ ଶତମୁଖ ହୋଇଥିଲେ । ମୌଲାନା ବିଶ୍ୱାସ କରୁଥିଲେ ଯେ ମୁସଲ୍‌ମାନ୍ ସଂପ୍ରଦାୟ ଶିକ୍ଷିତ ହେବା ଆବଶ୍ୟକ । ସେ ପରାମର୍ଶ ଦେଉଥିଲେ ଯେ ହିନ୍ଦୁମାନଙ୍କ ସହିତ କାନ୍ଧ ମିଳାଇ ମୁସଲ୍‌ମାନ ସଂପ୍ରଦାୟ ମଧ୍ୟ ବ୍ରିଟିଶ୍‌ର ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଏବଂ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ଆବଶ୍ୟକ । ଏହି ସମୟରେ ମହାତ୍ମାଗାନ୍ଧୀ ଦକ୍ଷିଣ ଆଫ୍ରିକାରେ ଥିଲେ । ସେଠାରେ ବସବାସ କରୁଥିବା ଭାରତୀୟ ମାନଙ୍କର ଅଧିକାର ସାବ୍ୟସ୍ତ କରିବା ପାଇଁ ମହାତ୍ମା ଗାନ୍ଧି ସଂଗ୍ରାମ କରୁଥିଲେ । ପଣ୍ଡିତ ଜବାହାର୍‌ଲାଲ୍ ନେହେରୁ ଇଂଲଣ୍ଡରୁ ଫେରିଥିଲେ । ପଣ୍ଡିତ ନେହେରୁ ଭାରତର ରାଜନୈତିକ ପରିସ୍ଥିତି ଏବଂ ବ୍ରିଟିଶ୍ ସରକାରଙ୍କର କୂଟନୀତିକୁ ପୁଙ୍ଖାନୁପୁଙ୍ଖ ଅଧ୍ୟୟନ କରୁଥିଲେ । ଶ୍ରୀ ଶ୍ୟାମସୁନ୍ଦର ଚକ୍ରବର୍ତ୍ତୀଙ୍କ ସବଳ ନେତୃତ୍ୱରେ ମୌଲାନା ଆଜାଦ୍ ସେତେବେଳେକୁ ତାଙ୍କର ବଳିଷ୍ଠ ଲେଖନୀ ଏବଂ ଓଜସ୍ୱିନୀ ଭାଷଣ ମାଧ୍ୟମରେ ବ୍ରିଟିଶ୍ ସରକାରଙ୍କର ଅତ୍ୟାଚାର ବିରୁଦ୍ଧରେ ବିପ୍ଳବର ଧାରା ସୃଷ୍ଟି କରିବା ପାଇଁ ଜନସାଧାରଣଙ୍କୁ ପ୍ରବର୍ତ୍ତାଇବା ଆରମ୍ଭ କରିସାରିଥିଲେ । ୧୯୦୫ ମସିହାରେ ସେ ଆଉଜଣେ ବିପ୍ଳବୀ ଶ୍ରୀ ଅରବିନ୍ଦ ଘୋଷଙ୍କୁ ସାକ୍ଷାତ କରିବାର ସୁଯୋଗ ପାଇଲେ । ପ୍ରାୟ ୧୯୧୦ ମସିହା ବେଳକୁ ଯେଉଁ ଭାରତୀୟ ସୈନିକ ମାନେ ଦେଶକୁ ସ୍ୱାଧୀନତା ଆଡ଼କୁ ଟାଣିନେବାପାଇଁ ସ୍ୱପ୍ନ ଦେଖିଥିଲେ ସେହି ଦଳରେ ମୌଲାନା ଆଜାଦ୍ ଯୋଗଦାନ କଲେ ।

ମୌଲାନା ଆଜାଦ୍‌ଙ୍କର ନିଜ ସଂପାଦିତ ପତ୍ରିକା ''ଅଲ୍ ହିଲାଲ୍'' ମାଧ୍ୟମରେ ୧୯୧୨ ମସିହାରେ ସେ ପ୍ରଥମେ ତାଙ୍କର ମତାମତ ପ୍ରକାଶ କରିବା ଆରମ୍ଭ କରିଥିଲେ । ଭାରତ ଏବଂ ଭାରତ ବାହାରେ ଉର୍ଦ୍ଦୁ ଭାଷାଭାଷୀ ଲୋକଙ୍କ ପ୍ରାଣରେ ଏହା କମ୍ପନ ସୃଷ୍ଟି କଲା । ଏହି ପତ୍ରିକା ଖୁବ୍ କମ୍ ସମୟ ଭିତରେ ବେଶ୍ ଜନପ୍ରିୟତା ହାସଲ କଲା । ବ୍ରିଟିଶ୍‌ଶାସକମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ନୀତି ହିନ୍ଦୁ ଏବଂ ମୁସଲ୍‌ମାନଙ୍କ ମଧ୍ୟରେ ବିଦ୍ୱେଷ ସୃଷ୍ଟିକରି ବିଭାଜନ କରିବା ଉଦ୍ଦେଶ୍ୟରେ ପ୍ରଣୋଦିତ ଥିଲା । ବ୍ରିଟିଶ୍‌ମାନଙ୍କର ଏହି କୂଟନୀତିକୁ ସେ ତୀବ୍ର ନିନ୍ଦା ଓ ସମାଲୋଚନା କରୁଥିଲେ । ବନାଗ୍ନି ପରି ଅଲ୍‌ହିଲାଲ୍‌ର

ଜନପ୍ରିୟତା ପ୍ରସାରିତ ହେବାରେ ଲାଗିଲା । ଏହା ବ୍ରିଟିଶ୍ ସରକାରଙ୍କୁ ଏତେ ବିବ୍ରତ କଲା ଯେ ସେମାନେ ଏହି ପତ୍ରିକାର ପ୍ରକାଶନକୁ ରଦ୍ଦ କରିଥିଲେ ଏବଂ ସେ ଦେଇଥିବା ଅମାନତ ରାଶିକୁ ଜବତ କଲେ । ବ୍ରିଟିଶ୍ ସରକାରଙ୍କର ଏହି ଦମନ କାର୍ଯ୍ୟ ମୌଲାନା ଆଜାଦ୍‌ଙ୍କୁ ବିଚଳିତ କରିପାରିଲା ନାହିଁ । ଏବଂ ୧୯୧୫ ମସିହାରେ ସେ ପୁନର୍ବାର 'ଅଲ୍‌ବଲାଲ୍' ନାମକ ପତ୍ରିକା ପ୍ରକାଶ କରିଥିଲେ । ମୌଲାନା ଆଜାଦ୍‌ଙ୍କର ରାଜନୈତିକ କାର୍ଯ୍ୟକଳାପ ଅବ୍ୟାହତ ରହିବାରୁ ୧୯୧୬ ମସିହାରେ ତାଙ୍କୁ ପଶ୍ଚିମବଙ୍ଗରୁ ନେଇ ବନ୍ଦୀ କରାଗଲା ଏବଂ ରାଞ୍ଚିରେ ଥିବା ବିହାର ଜେଲ୍‌ରେ ୪ ବର୍ଷ ପାଇଁ ରଖାଗଲା ।

ମହାତ୍ମା ଗାନ୍ଧି ଦକ୍ଷିଣ ଆଫ୍ରିକାରୁ ଆସି ଭାରତରେ ପହଞ୍ଚିଲେ ଏବଂ ଭାରତର ରାଜନୈତିକ ଅବସ୍ଥାକୁ ଅନୁଧ୍ୟାନ କଲେ । ସେ ଅନେକ ନେତାଙ୍କୁ ସାକ୍ଷାତ କରି ତାଙ୍କ ସହିତ ଆଲୋଚନା କଲେ । ତାଙ୍କର ଡ଼ାହାଣ ହାତ ଭାବେ ପଣ୍ଡିତ ନେହେରୁ ଥିଲେ । ମହାତ୍ମା ଗାନ୍ଧି ମୌଲାନା ଅବୁଲ୍ କାଲାମ୍ ଆଜାଦ୍‌ଙ୍କ ବିଷୟରେ ଶୁଣିଥିଲେ । ବ୍ରିଟିଶ୍ ସରକାରଙ୍କ ବିରୁଦ୍ଧରେ ସେ କିପରି ଲଢ଼ିବା ଆରମ୍ଭ କରିଦେଇଥିଲେ ସେକଥା ମହାତ୍ମାଗାନ୍ଧି ଅବଗତ ହେଲେ । ତେଣୁ ମୌଲାନା ଆଜାଦ୍‌ଙ୍କୁ ସାକ୍ଷାତ କରିବା ପାଇଁ ମହାତ୍ମା ଗାନ୍ଧି ଇଚ୍ଛା ପ୍ରକାଶ କଲେ । କିନ୍ତୁ ବ୍ରିଟିଶ୍ ସରକାର ତାଙ୍କୁ ରାଞ୍ଚି ଜେଲ୍‌କୁ ଯାଇ ଆଜାଦଙ୍କୁ ସାକ୍ଷାତ କରିବାକୁ ଅନୁମତି ଦେଲେନାହିଁ । ଯେତେବେଳେ ୧୯୨୦ ମସିହା ଜାନୁୟାରୀ ମାସରେ ଆଜାଦ୍ ବନ୍ଦୀଶାଳାରୁ ମୁକ୍ତି ପାଇଲେ ସେ ନିଜେ ଆସି ଗାନ୍ଧିଜୀଙ୍କୁ ଦେଖାକଲେ । ହାକିମ୍ ଆଜ୍‌ମଲ ଖାଁଙ୍କ ଦିଲ୍ଲୀସ୍ଥିତ ବାସଭବନରେ ଏହି ସାକ୍ଷାତକାର ହୋଇଥିଲା । ମହାତ୍ମାଗାନ୍ଧି ମୌଲାନା ଆଜାଦ୍‌ଙ୍କୁ ଭେଟି ଖୁବ୍ ପ୍ରଭାବିତ ହୋଇଥିଲେ । ସେମାନେ ଭାରତର ସ୍ୱାଧୀନତା ସଂଗ୍ରାମ ବିଷୟରେ ଆଲୋଚନା କଲେ ଏବଂ ଉଭୟେ ପରସ୍ପର ପ୍ରତି ଆକୃଷ୍ଟ ହେବା ସହିତ ପରସ୍ପରର ଚରିତ୍ରରେ ପ୍ରଭାବିତ ହେଲେ ।

ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ୧୯୨୦-୧୯୪୭ ମସିହାରେ ଭାରତରେ ପ୍ରବଳ ସଂଘର୍ଷ ଚାଲିଥିଲା । ସେହିକାଳ ମଧ୍ୟରେ ମୌଲାନା ଆଜାଦ୍ ସ୍ୱାଧୀନତା ସଂଗ୍ରାମର ଆଗଧାଡ଼ିର ନେତାମାନଙ୍କ ମଧ୍ୟରେ ଥିଲେ । ଏବଂ ସେଥିପାଇଁ ସେ ବାରମ୍ବାର ଦୀର୍ଘ କାଳ କାରାବରଣ କରିଥିଲେ । ମାତ୍ର ୩୫ ବର୍ଷ ବୟସରେ ୧୯୨୩ ମସିହାରେ ସେ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ପଦପାଇଁ ନିର୍ବାଚିତ ହେଲେ । ତାଙ୍କର ପ୍ରଥମ ସଭାପତିଙ୍କ ଅଭିଭାଷଣରେ ଉର୍ଦ୍ଦୁରେ ବକ୍ତୃତା ଦେଇ ହିନ୍ଦୁ ମୁସ୍‌ଲିମ୍ ଏକତା ପାଇଁ ନିବେଦନ କରିଥିଲେ । ତାଙ୍କର ଅବିଶ୍ରାନ୍ତ ସାରଗର୍ଭକ ଓଜସ୍ୱିନୀ ଭାଷଣରେ

ସମଗ୍ର ଜନତା ମନରେ ଜାଗରଣ ସୃଷ୍ଟି ହୋଇଥିଲା । ମହାତ୍ମାଗାନ୍ଧୀଙ୍କୁ କିଛି ଲୋକ ସମାଲୋଚନା କଲା ପରି ମୌଲାନାଙ୍କର ମଧ୍ୟ ସମାଲୋଚକ ଅନେକ ଥିଲେ । ତେବେ ସେ କେବେବି ତାଙ୍କ ନୀତି ଏବଂ ସିଦ୍ଧାନ୍ତରୁ ଓହରି ଯାଇନଥିଲେ ।

୧୯୨୪ ମସିହାରେ କେତେକ ଧର୍ମଭିତ୍ତିକ ମନୋମାଳିନ୍ୟ ଯୋଗୁଁ ମହାତ୍ମାଗାନ୍ଧୀ ୨୧ ଦିନ ପର୍ଯ୍ୟନ୍ତ ଅନଶନ କରି ହିନ୍ଦୁ ମୁସ୍‌ଲିମ୍ ଏକତା ପାଇଁ ସାରା ଦେଶକୁ ନିବେଦନ କଲେ । ମୌଲାନା ଆଜାଦ୍ ମଧ୍ୟ ଖୁବ୍ ବିଚଳିତ ହୋଇପଡ଼ିଲେ । ସେ ଉଭୟ ସଂପ୍ରଦାୟର ବ୍ୟକ୍ତିମାନଙ୍କୁ ଜାତିଗତ ହିଂସା ପରିତ୍ୟାଗ କରି ଏକତା ସୂତ୍ରରେ ବାନ୍ଧି ହୋଇ ସ୍ୱାଧୀନତା ସଂଗ୍ରାମରେ ମନୋନିବେଶ କରିବା ପାଇଁ ନିବେଦନ କଲେ । ସେ ଲୋକମାନଙ୍କୁ ସ୍ମରଣ କରାଇଦେଲେ ଯେ ଏହା ବ୍ରିଟିଶ୍ ସରକାରଙ୍କର କୂଟନୀତି । ବିଭାଜନ ମୂଳକ ଶାସନ ବ୍ରିଟିଶ୍ ରାଜ୍‌ର ନୀତି । ତେଣୁ ଦେଶବାସୀ ବ୍ରିଟିଶ୍ ରାଜ୍‌ର ଷଡ଼ଯନ୍ତ୍ରର ଶୀକାର ନ ହୋଇ ଏକଜୁଟ୍ ହୋଇ ସେମାନଙ୍କ ଅତ୍ୟାଚାରର ପ୍ରତିବାଦ କରିବା ଆବଶ୍ୟକ । ତାଙ୍କର ଦେଶପ୍ରେମର ଏହା ଏକ ଜ୍ୱଳନ୍ତ ନମୁନା ମାତ୍ର ।

୧୯୪୨ ଅଗଷ୍ଟ ୮ ତାରିଖ ରାତ୍ରିରେ ଏ.ଆଇ.ସି.ସି ବା ସର୍ବଭାରତୀୟ କଂଗ୍ରେସ କମିଟିର ସଭାରେ ମୌଲାନା ଆଜାଦ୍ ସଭାପତିତ୍ୱ କରିଥିଲେ । ଏହିଠାରେ ବ୍ରିଟିଶ୍ ସରକାରଙ୍କୁ ଭାରତଛାଡ଼ ଡାକରା ଦିଆଯାଇଥିଲା । ତାର ପରଦିନ ଅଧିକାଂଶ ତୁଙ୍ଗନେତାଙ୍କୁ ବନ୍ଦୀ କରାଗଲା । ସେମାନଙ୍କୁ ବିଭିନ୍ନ ବନ୍ଦୀଶାଳାକୁ ପ୍ରେରଣ କରାଗଲା । ଗାନ୍ଧିଜୀ ଏବଂ ସରୋଜିନୀ ନାଇଡୁଙ୍କୁ ପୁନା ଜେଲ୍ ଏବଂ ମୌଲାନା ଆଜାଦ୍ ଏବଂ ଅନ୍ୟମାନଙ୍କୁ ଅହମ୍ମଦାନଗରର ଐତିହାସିକ ଦୁର୍ଗରେ ବନ୍ଦୀ କରି ରଖାଗଲା ।

ମୌଲାନା ଆଜାଦଙ୍କୁ ସେଠାରେ ଜେଲ୍‌ରେ ଏକାକୀ ରଖାଯାଇଥିଲା । କୌଣସି ସଭା ବା ଆଲୋଚନା ବାରଣ କରାଯାଇଥିଲା । କୌଣସି ପୁସ୍ତକ ମଧ୍ୟ ପଢ଼ିବାକୁ ଦିଆଯାଇନଥିଲା । ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ଅରୁଣା ଆସଫ୍ ଅଲ୍ଲୀ, ପଣ୍ଡିତ ଗୋବିନ୍ଦ ବଲ୍ଲଭ, ଆଚାର୍ଯ୍ୟ କୃପାଳିନୀ, ଡ଼କ୍ଟର ସୟିଦ୍ ମହମ୍ମଦ ଏବଂ ଜବାହାର୍‌ଲାଲ୍ ନେହେରୁ ତାଙ୍କୁ କେବଳ ବଗିଚା କାମ କଲାବେଳକୁ ଦେଖା କରିପାରୁଥିଲେ । ଏହିଭଳି ଏକ ସାକ୍ଷାତକାରରେ ମୌଲାନା ଆଜାଦ୍‌ଙ୍କୁ ଜବାହାର୍‌ଲାଲ୍ ନେହେରୁ ଦେଖାକରି ଧୀର କଣ୍ଠରେ ତାଙ୍କର ସ୍ତ୍ରୀଙ୍କର ଅକାଳ ବିୟୋଗ କଥା କହିଥିଲେ । ସେ ଦୁଃଖଦ ସମ୍ବାଦଟି ଶୁଣିବା ପରେ ମୌଲାନା ଆଜାଦ୍ ବିଚଳିତ ହୋଇ ପଡ଼ିଥିଲେ । ଚକ୍ଷୁମୁଦ୍ରିତ ଅବସ୍ଥାରେ ଗୋଟିଏ ଚୌକିରେ ମୌନ ହୋଇ ବସି ରହିଲେ । ସେତେବେଳେ ପଣ୍ଡିତ

ନେହେରୁ ପରାମର୍ଶ ଦେଲେ ଯେ ସେ ବ୍ରିଟିଶ୍ ସରକାରଙ୍କୁ ଅନୁରୋଧ କରି କିଛିଦିନ ପାଇଁ ଜେଲ୍ ବାହାରକୁ ଯାଇ ନିଜ ସ୍ତ୍ରୀଙ୍କର ଶେଷ ଦର୍ଶନ କରି ଆସନ୍ତୁ । କିନ୍ତୁ ଏହି ପରାମର୍ଶକୁ ମୌଲାନା ଆଜାଦ୍ ଗ୍ରହଣ କରିନଥିଲେ । ସେ କହିଥିଲେ ''ସରକାର ଯେତେବେଳେ ଆମର ପ୍ରକୃତ ସ୍ୱାଧୀନତା କଥା ବିଚାର କରୁନାହାନ୍ତି ଏଇ କିଛିଦିନ ପାଇଁ ମୁଁ ଜେଲ୍‌ରୁ ମୁକ୍ତି ପାଇବାର କିଛି ଅର୍ଥ ନାହିଁ । ଆପଣ ଚିନ୍ତା କରନ୍ତୁ ନାହିଁ ଆମେ ପୁଣି ଥରେ ସ୍ୱର୍ଗରେ ଉଭୟେ ମିଶିବୁ ।'' ସମୁଦାୟ ସେ ୧୯୪୫ ମସିହା ଜୁଲାଇ ମାସ ଶେଷ ପର୍ଯ୍ୟନ୍ତ ସମୁଦାୟ ଦଶବର୍ଷ ୫ ମାସ ଜେଲ୍ ଦଣ୍ଡ ଭୋଗିଛନ୍ତି ।

କଂଗ୍ରେସ କମିଟି ସ୍ୱାଧୀନତା ସଂଗ୍ରାମ ବାବଦୀୟ ଯେତେ ସବୁ ଦାୟିତ୍ୱ ତାଙ୍କୁ ଦେଇଥିଲା ସେ ସମସ୍ତ ମୌଲାନା ଆଜାଦ୍ ସହାସ୍ୟ ବଦନରେ ସଂପାଦନ କରିଛନ୍ତି । କଂଗ୍ରେସର ସଭାପତି ପଦରେ ସେ ତିନି ଥର ନିର୍ବାଚିତ ହୋଇଛନ୍ତି । ୧୯୪୦ ମସିହାରୁ ୧୯୪୬ ମସିହା ପର୍ଯ୍ୟନ୍ତ ଏକ ସଂଘର୍ଷପୂର୍ଣ୍ଣ ସମୟରେ ସେ କଂଗ୍ରେସ କମିଟିର କାର୍ଯ୍ୟକଳାପକୁ ସମୁଚିତ ମାର୍ଗଦର୍ଶନ ଦେଇଥିଲେ । ଏହି ସମୟରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଥିଲା । ସମସ୍ତେ ଭାବୁଥିଲେ ଯେ ଦେଶ ସ୍ୱାଧୀନତା ପ୍ରାପ୍ତିର ନିକଟବର୍ତ୍ତୀ ହେଉଛି । କ୍ରିପ୍ସ୍ ମିଶନ୍‌ରେ ମୌଲାନା ଆଜାଦ୍ ଏକ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ଏହି ମିଶନ୍ ୧୯୪୨ ମସିହାରେ ଭାରତର ସ୍ୱାଧୀନତା ବିଷୟରେ ଆଲୋଚନା କରିବା ପାଇଁ ଭାରତ ଆସିଥିଲା । ପୁଣିଥରେ ୧୯୪୬ ମାର୍ଚ୍ଚ ମାସରେ ବ୍ରିଟିଶ୍ ସରକାରଙ୍କ ମନ୍ତ୍ରୀମଣ୍ଡଳର ଏକ ଦଳ ଭାରତ ଆସିଥିଲେ । ତାଙ୍କରି ପ୍ରସ୍ତାବ ଅନୁସାରେ କଂଗ୍ରେସ ପାର୍ଟି ସାଧାରଣ ନିର୍ବାଚନ ଲଢ଼ି କେନ୍ଦ୍ର ଏବଂ ରାଜ୍ୟ ବିଧାନସଭା ମାନଙ୍କରେ ବିଜୟୀ ହୋଇଥିଲା ।

ଅନେକ ସଙ୍କଟମୟ ପରିସ୍ଥିତିରେ କଂଗ୍ରେସର ସଭାପତି ତଥା ଜଣେ ପ୍ରସିଦ୍ଧ ନେତା ଭାବେ ସେ ମାର୍ଗ ପ୍ରଦର୍ଶନ କରିଥିଲେ । ଅଧିକାଂଶ ନେତା ସେ କଂଗ୍ରେସର ସଭାପତି ଭାବେ ରହିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ ହେଁ ମୌଲାନା ଆଜାଦ୍ ସ୍ୱୟଂ ସେଥିରୁ ଓହରି ଆସିଥିଲେ । ପଣ୍ଡିତ ନେହେରୁ ଏହି ଦାୟିତ୍ୱ ନେବା ପାଇଁ ଅନୁରୋଧ କରିଥିଲେ । ଏହି ସମୟରେ ଏକ ମଧ୍ୟବର୍ତ୍ତୀ କାଳୀନ ସରକାର ଗଢ଼ାଯାଇଥିଲା । ମୌଲାନା ଆଜାଦ୍ ଏବଂ ପଣ୍ଡିତ ନେହେରୁ ଭାରତର ସ୍ୱାଧୀନତା ବାବଦରେ ହେଉଥିବା ସିମ୍ଲା କନ୍‌ଫରେନ୍‌ସରେ ଯୋଗଦେଲେ । ବହୁକାଳ ଧରି ଜେଲ୍‌କଷ୍ଟ ଭୋଗ କରିବା ଫଳରେ ମୌଲାନା ଆଜାଦ୍‌ଙ୍କର ସ୍ୱାସ୍ଥ୍ୟର ଅବସ୍ଥାରେ ଅବନତି ଘଟି ଖୁବ୍ ଦୁର୍ବଳ ହୋଇଯାଇଥିଲେ । ତଥାପି ସେ କୌଣସି ସଭା, ଆଲୋଚନା, କନ୍‌ଫରେନ୍‌ସ ଆଦିରେ ଯୋଗ ଦେବାପାଇଁ କୁଣ୍ଠାବୋଧ କରୁନଥିଲେ ।

ସେଥିପାଇଁ ପଣ୍ଡିତ ନେହେରୁଙ୍କ ସହିତ ସିମ୍‌ଲା କନ୍‌ଫରେନ୍‌ସରେ ଭାଗନେଲେ । ତାଙ୍କର ନୀତିଥିଲା: ନିଜକଥା ପରେ । ଦେଶ କଥା ଆଗେ । ମୌଲାନାଙ୍କର ସ୍ୱାସ୍ଥ୍ୟ ଅବସ୍ଥା ଦେଖି ଲର୍ଡ ୱାଭେଲ୍ ତାଙ୍କୁ ଲିଗାଲ୍ ଇନ୍‌ଷ୍ଟେଟ୍‌ରେ ରଖିଥିଲେ । ୧୯୪୭ ଅଗଷ୍ଟ ୧୫ ତାରିଖ ଦିନ ଭାରତ ସ୍ୱାଧୀନତା ହାସଲ କଲେ ମଧ୍ୟ ଅନେକ ତୁଙ୍ଗ ନେତାଙ୍କର ହୃଦୟରେ କୋହ ଭରି ରହିଥିଲା । କାରଣ ତା ପୂର୍ବରୁ ଭାରତ ପାକିସ୍ତାନ ମଧ୍ୟରେ ବିଭାଜନ ହୋଇ ସାରିଥିଲା । ସେମାନଙ୍କର ଅଖଣ୍ଡ ଭାରତ ସ୍ୱାଧୀନ ସ୍ୱପ୍ନ ଆଉ ସତ୍ୟ ହେଲା ନାହିଁ । ତାଙ୍କର ଅସୁସ୍ଥତା ସତ୍ତ୍ୱେ ମୌଲାନା ଆଜାଦ୍ ସ୍ୱାଧୀନ ଭାରତର ପ୍ରଥମ ଶିକ୍ଷା, ସଂସ୍କୃତି ଏବଂ ସୂକ୍ଷ୍ମକଳାର ମନ୍ତ୍ରୀପଦରେ ଅଧିଷ୍ଠିତ ହେଲେ । ଶାରୀରିକ ଅସୁସ୍ଥତା ମଧ୍ୟରେ ବି ଶିକ୍ଷାର ବିକାଶ ତଥା କଳା ମାଧ୍ୟମର ପ୍ରସାର କରି ଭାରତୀୟଙ୍କ ମନରେ ଏକ ନୂତନ ଭାବଧାରାର ପ୍ରବାହ ପାଇଁ ଚେଷ୍ଟା କରୁଥିଲେ ।

ଅନେକ ବିଦ୍ୟାଳୟ ଓ ମହାବିଦ୍ୟାଳୟ ପ୍ରତିଷ୍ଠା କରିବାରେ ମୌଲାନା ଆଜାଦ୍‌ଙ୍କର ଚେଷ୍ଟା ନିହିତ ଥିଲା । ପଣ୍ଡିତ ଜବାହାର୍‌ଲାଲ୍ ନେହେରୁଙ୍କର ସେ ଜଣେ ଘନିଷ୍ଠ ସହଯୋଗୀ, ବନ୍ଧୁ ଏବଂ ସମର୍ଥକ ଥିଲେ । ଅଧିକାଂଶ ସମୟରେ ପଣ୍ଡିତ ନେହେରୁ ମୌଲାନା ଆଜାଦ୍‌ଙ୍କର ଉପଦେଶ ଗ୍ରହଣ କରୁଥିଲେ ।

ଉର୍ଦ୍ଦୁ ସାହିତ୍ୟର ଜଣେ ଗବେଷକ ତଥା ଲେଖକ ଭାବେ ତାଙ୍କର କେତେକ ମହାନ୍ କୃତି ରହିଛି । ସେଗୁଡ଼ିକ ମଧ୍ୟରେ 'ଗୁବାରିଖାତି' ଏବଂ 'ତଧିକିରା' ଆଦି ଗ୍ରନ୍ଥ ଉର୍ଦ୍ଦୁ ସାହିତ୍ୟରେ ଅମୂଲ୍ୟ ରତ୍ନ ଭାବେ ପରିଗଣିତ ହୁଏ । ପବିତ୍ର କୋରାନ୍‌ର ସାରାଂଶ ସେ ଲେଖିଛନ୍ତି ଏବଂ କୋରାନ୍ ସାହିତ୍ୟରେ ତାଙ୍କ ରଚିତ ସାରାଂଶ ଏ ପର୍ଯ୍ୟନ୍ତ ସର୍ବଶ୍ରେଷ୍ଠ ବୋଲି ଅନେକ କୁହନ୍ତି । ଏହି ତୁଙ୍ଗ ନେତା, ବିପ୍ଳବୀ, ଗବେଷକ, ଲେଖକ, ବାଗ୍ମୀ ୧୯୫୮ ମସିହା ଫେବ୍ରୁଆରୀ ୨୨ ତାରିଖ ଦିନ ଇହଲୀଳା ତ୍ୟାଗ କଲେ । ମୌଲାନା ଆଜାଦ୍ ଜଣେ ଧର୍ମାତ୍ମା ଥିଲେ ଏବଂ ବାସ୍ତବରେ ସର୍ବଶ୍ରେଷ୍ଠ ଧର୍ମ ନିରପେକ୍ଷ ନେତା ଭାବେ ସେ ପ୍ରସିଦ୍ଧି ଲାଭ କରିଥିଲେ । ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଅବିସ୍ମରଣୀୟ ଦାନ ତଥା ଏ ଦେଶ ଓ ଜାତିର ଗଠନ ଏବଂ ଉତ୍‌ଥାନ ପାଇଁ ତାଙ୍କର ଅବଦାନ ନିମନ୍ତେ ତାଙ୍କୁ ୧୯୯୨ ମସିହାରେ ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତ ରତ୍ନରେ ସମ୍ମାନିତ କରାଯାଇଥିଲା ।

* * *

# ଜେ.ଆର.ଡ଼ି ଟାଟା



୧୯୦୪-୧୯୯୩

ଭାରତରତ୍ନ-୧୯୯୨

**ଜା**ହାଙ୍ଗୀ ରତନଜୀ ଦାଦାଭାଇ ଟାଟା ୧୯୦୪ ମସିହା ଜୁଲାଇ ୨୯ ତାରିଖ ଦିନ ଫ୍ରାନ୍ସର ରାଜଧାନୀ ପ୍ୟାରିସ୍ ନଗରୀରେ ଜନ୍ମ ଗ୍ରହଣ କରିଥିଲେ । ରତନଜି ଟାଟା ଏବଂ ତାଙ୍କର ଫରାସୀ ସ୍ତ୍ରୀ ସୁନିଙ୍କ ଦ୍ୱିତୀୟ ଗର୍ଭରୁ ଜାତ ହୋଇଥିଲେ ଜେ.ଆର୍.ଡ଼ି ଟାଟା । ଏହି ଦମ୍ପତିଙ୍କର ୫ଟି ସନ୍ତାନ ଥିଲେ । ସେମାନେ ବେଶ୍ ବିଳାସପୂର୍ଣ୍ଣ ପରିବେଶରେ ବଢ଼ିଥିଲେ । ସେମାନଙ୍କର ବାଲ୍ୟ ଜୀବନ ପ୍ୟାରିସ୍‌ରେ ବିତିଥିଲା । ପାଠପଢ଼ା ପ୍ୟାରିସ୍ ଏବଂ ବମ୍ବେରେ ହୋଇଥିଲା । ରତନଜୀ ଦାଦା ଭାଇ ଟାଟାଙ୍କୁ ସମସ୍ତେ ଜେ.ଆର୍.ଡ଼ି ନାମରେ ଜାଣନ୍ତି । ସେମାନେ ଫ୍ରାନ୍ସରେ ରହୁଥିଲା ବେଳେ ଜେ.ଆର୍.ଡ଼ି ଉଡ଼ାଜାହାଜ ଚଳାଇବା ପ୍ରତି ଆଗ୍ରହୀ ହେଲେ । ତାଙ୍କର ପଡ଼ୋଶୀ ଲୁଇ ବ୍ଲେରିଏଟ୍ ଜଣେ ବିଖ୍ୟାତ

ପାଇଲଟ୍ ଥିଲେ । ସେ ପ୍ରଥମ ଥର ପାଇଁ ଇଂଲିଶ୍ ଚ୍ୟାନେଲ୍‌କୁ ଉଡ଼ାଜାହାଜ ଦ୍ୱାରା ପାର୍ କରିବା ପରେ ପୃଥିବୀ ପ୍ରସିଦ୍ଧ ହୋଇଯାଇଥିଲେ । ଅନେକ ସମୟରେ ସେ ଉଡ଼ାଜାହାଜକୁ ସମୁଦ୍ର ଉପକୂଳରେ ଥିବା ରାସ୍ତା ଉପରେ ବି ଓହ୍ଲାଇ ଦିଅନ୍ତି । ଏବଂ ଜେ.ଆର୍.ଡି ଆଶ୍ଚର୍ଯ୍ୟ ଚକିତ ନୟନରେ ଉଡ଼ାଜାହାଜ ପାଖରେ ଘୁରି ବୁଲନ୍ତି ।

ଶେଷରେ ଜେ.ଆର୍.ଡି ନିଶ୍ଚିତ କଲେ ଯେ ସେ ପାଇଲଟ୍ ହିଁ ହେବେ । ୧୯୧୯ ମସିହାରେ ଜେଆରଡ଼ିଙ୍କ ପିତା ତାଙ୍କୁ ଇଂରାଜୀ ଭାଷାରେ ଅଭିଜ୍ଞ ହେବା ପାଇଁ ଇଂଲଣ୍ଡ ପଠାଇଲେ । ରତନ୍‌ଜୀଙ୍କର ଇଚ୍ଛା ଥିଲା ଯେ ତାଙ୍କ ପୁତ୍ର ବଡ଼ ହେଲେ ଲଣ୍ଡନର କୌଣସି ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିବେ । ୧୯୨୨ ମସିହାରେ ଦୁର୍ଭାଗ୍ୟକ୍ରମେ ଜେଆରଡ଼ିଙ୍କ ମାତା ସିମି ଟିବି ଆକ୍ରାନ୍ତ ହୋଇ ଦେହତ୍ୟାଗ କଲେ । ଠିକ୍ ସେହି ସମୟରେ ଫରାସୀ ସରକାର ପ୍ରତ୍ୟେକ ୨୦ ବର୍ଷରୁ ଉର୍ଦ୍ଧ୍ୱ ଯୁବକମାନଙ୍କୁ ସେନାବାହିନୀରେ ଯୋଗଦେବା ବାଧ୍ୟତା ମୂଳକ କଲେ । ତେଣୁ ସ୍କୁଲ୍ ପାଠ ପଢ଼ା ସାରିବା ପରେ ପରେ ଜେଆର୍‌ଡ଼ି ଫରାସୀ ସୈନ୍ୟବାହିନୀରେ କିଛିଦିନ ଯୋଗ ଦାନ କରି ପରବର୍ତ୍ତୀ ସମୟରେ ୧୯୨୯ ମସିହା ବେଳକୁ ଜଣେ ପାଇଲଟ ହେଲେ ।

ଜେଆରଡ଼ିଙ୍କ ପିତା ଭାବୁଥିଲେ ଯେ ଉଚ୍ଚଶିକ୍ଷା ଅପେକ୍ଷା ପରିବାରର ବ୍ୟବସାୟ, ଶିଳ୍ପ, କାରଖାନା ଆଦି ସମ୍ଭାଳିବା ଅଧିକ ଗୁରୁତ୍ୱପୂର୍ଣ୍ଣ । ତେଣୁ ତାଙ୍କ ଟାଟା ସାମ୍ରାଜ୍ୟକୁ ସମ୍ଭାଳିବା ପାଇଁ ସେ ଜେଆର୍‌ଡ଼ିଙ୍କୁ ଭାରତ ଆସିବା ପାଇଁ ନିର୍ଦ୍ଦେଶ ଦେଲେ । ପିତାଙ୍କର ଏଇ ନିର୍ଦ୍ଦେଶ ତାଙ୍କପାଇଁ ଏକ ଦୁଃଖଦାୟକ ପରିସ୍ଥିତି ସୃଷ୍ଟି କଲା ବୋଲି ଜେଆର୍‌ଡ଼ି ତାଙ୍କ ଜୀବନସାରା କହିଛନ୍ତି । ତଥାପି ପିତାଙ୍କ ଆଦେଶ ମାନି ସେ ଭାରତ ଆସି ଟାଟା ଷ୍ଟିଲ୍ କମ୍ପାନୀରେ ଯୋଗଦେଲେ । ଏହି କମ୍ପାନୀରେ ଜଣେ ଶିକ୍ଷାନବିସ ଭାବରେ ସେ ପ୍ରଥମେ ରହିଲେ । ୧୯୨୬ ମସିହାରେ ତାଙ୍କର ପିତାଙ୍କର ଅକାଳ ମୃତ୍ୟୁ ହେବାରେ ଟାଟା ପରିବାରର ସମସ୍ତ ଶିଳ୍ପ ସାମ୍ରାଜ୍ୟର ଦାୟିତ୍ୱ ତାଙ୍କ କାନ୍ଧ ଉପରେ ନ୍ୟସ୍ତହେଲା । ଟାଟା ଷ୍ଟିଲ୍ ଲିମିଟେଡ୍‌ର ଦାୟିତ୍ୱ ନେଇ ନିର୍ଦ୍ଦେଶକ ଭାବେ ପ୍ରତିଷ୍ଠିତ ହେଲେ । ଏବଂ ୧୯୩୮ ମସିହାରେ ସେ କଂପାନୀରେ ଚେୟାରମ୍ୟାନ ପଦରେ ଅଧିଷ୍ଠିତ ହେଲେ ।

୧୯୩୦ ମସିହାରେ ଜେଆରଡ଼ିଙ୍କର ବିବାହ ଥେଲ୍‌ମା ଗିତାଜୀ ନାମକ ଏକ ସୁନ୍ଦରୀ ରମଣୀଙ୍କ ସହିତ ସଂଗଠିତ ହେଲା । ଥେଲ୍‌ମା ମୁମ୍ବାଇର ଜଣେ ପ୍ରସିଦ୍ଧ ଓକିଲଙ୍କ ଝିଆରୀ । ସେମାନେ ବ୍ୟାଙ୍କିଙ୍ଗ୍ କ୍ଷେତ୍ରରେ ଭାରତ ବର୍ଷରେ ଅଗ୍ରଗଣ୍ୟ ଥିଲେ । ୧୯୩୧ ମସିହାରେ ଜେଆରଡ଼ିଙ୍କୁ ପାଇଲଟ୍ ଲାଇସେନ୍ସ ମିଳିଗଲା । ତା ପରେ ସେ 'ଆଗା

ଖାନ୍' ପୁରସ୍କାର ପାଇବା ଦୌଡ଼ରେ ଯୋଗଦେଲେ । ଭାରତ ଏବଂ ଇଂଲଣ୍ଡ ମଧ୍ୟରେ ଉଡ଼ାଜାହାଜ ଚଳାଇ ସେ ଏହି ପୁରସ୍କାର ଜିତି ଥିଲେ ।

ଜେଆରଡ଼ି ଟାଟା ଟାଟାଗ୍ରୁପ୍‌ର ୧୬ଟି କମ୍ପାନୀର ପ୍ରେସିଡ଼େଣ୍ଟ ହେଲେ ବି ପ୍ରତ୍ୟେକ କମ୍ପାନୀରେ ସୁଚାରୁ ଭାବେ ସମ୍ପାଦନ କରିବାରେ ଅତ୍ୟନ୍ତ ଆଗ୍ରହ ପ୍ରକାଶ କରିଥିଲେ । ଦୀର୍ଘ ୫୦ ବର୍ଷରୁ ଉର୍ଦ୍ଧ୍ୱକାଳ ସେ ଟାଟା ଗ୍ରୁପ୍ କମ୍ପାନୀର ଚେୟାରମ୍ୟାନ ଥିଲେ । ତାଙ୍କ ଅଧ୍ୟକ୍ଷତା କାଳରେ ଟାଟା କମ୍ପାନୀର ପ୍ରତି ବର୍ଷର ଆୟ ଦଶ ହଜାର କୋଟି ଟଙ୍କାରୁ ଅଧିକ ହୋଇଥିଲା । ତାଙ୍କ ସାଫଲ୍ୟର କାରଣ ସେ ତାଙ୍କ ସହଯୋଗୀ ଏବଂ ତାଙ୍କ ଶ୍ରମିକ ମାନଙ୍କ କର୍ମନିପୁଣତା ବୋଲି ସୂଚାଇଛନ୍ତି । ତାଙ୍କର ସମସ୍ତ କର୍ମୀ ଏବଂ ଅଧିକାରୀ ମାନଙ୍କର ଶ୍ରଦ୍ଧା, ଭକ୍ତି ଏବଂ ସମ୍ମାନ ସେ ପାଇଛନ୍ତି । ଆଶ୍ଚର୍ଯ୍ୟର କଥା ତାଙ୍କର ୫୦ ବର୍ଷ ଅଧ୍ୟକ୍ଷତା ମଧ୍ୟରେ ସମଗ୍ର ଟାଟା କମ୍ପାନୀର କୌଣସିଟି କଳକାରଖାନା ମଧ୍ୟରେ ଥରେ ହେଲେ ଧର୍ମଘଟ ହୋଇନଥିଲା । ସେ କର୍ମୀମାନଙ୍କର ମଙ୍ଗଳ ପାଇଁ ସବୁବେଳେ ଧ୍ୟାନ ଦେଉଥିଲେ ।

ଜେଆରଡ଼ିଙ୍କର ଉଡ଼ାଜାହାଜ ଚଳାଇବା ପାଇଁ ଅଧିକ ଅନୁରକ୍ତି ଥିଲା । ତାଙ୍କୁ ଯେତେବେଳେ ୨୮ ବର୍ଷ ହୋଇଥିଲା, ୧୯୩୨ ମସିହା ଅକ୍ଟୋବର ୧୫ ତାରିଖ ଦିନ ସେ ଏକାକୀ ଗୋଟିଏ ଲିଓପାର୍ଡ ମାଷ୍କ ଉଡ଼ାଜାହାଜ ମଧ୍ୟରେ ବମ୍ବେରୁ କରାଚୀକୁ ଉଡ଼ିଥିଲେ । ସେତେବେଳେ ଏହା ଏକ ବିରଳ କୃତିତ୍ୱ ବୋଲି ପରିଗଣିତ ହୋଇଥିଲା । ପରବର୍ତ୍ତୀ ସମୟରେ ୧୯୬୨ ମସିହା ଏବଂ ୧୯୮୨ ମସିହାର ସେହି ଏକା ମାସ ଏକା ତାରିଖ ଦିନ ସେ ସେହି ଉଡ଼ାଜାହାଜରେ ବମ୍ବେରୁ କରାଚି ଉଡ଼ିଥିଲେ । ଶେଷ ଥର ୧୯୮୨ ମସିହାରେ ଉଡ଼ିଲା ବେଳକୁ ତାଙ୍କର ବୟସ ହୋଇଥିଲା ୭୮ ବର୍ଷ ।

ଜେଆରଡ଼ିଙ୍କର କୃତିତ୍ୱ ମଧ୍ୟରେ ଅନ୍ୟ ଏକ ମାଇଲ୍ ଖୁଣ୍ଟି ହେଉଛି ଭାରତ ବର୍ଷରେ ଉଡ଼ାଜାହାଜରେ ପରିବହନ ସେବା ଆରମ୍ଭ କରିବା । ୧୯୩୨ ମସିହାରେ ସେ ପ୍ରଥମେ ଟାଟା ଏୟାରଲାଇନ୍ ଆରମ୍ଭ କରିଥିଲେ । ଏହା ଭାରତର ପ୍ରଥମ ଏୟାରଲାଇନ୍ କମ୍ପାନୀ । ପରେ ଏହାର ନାମ ଏୟାର ଇଣ୍ଡିଆ ହେଲା । ଏହା ଅନ୍ତଃରାଷ୍ଟ୍ରୀୟ ଉଡ଼ାଜାହାଜ ସେବା ପ୍ରବର୍ତ୍ତନ କଲା । ଏୟାର ଇଣ୍ଡିଆ ହିଁ ପ୍ରଥମ ଉଡ଼ାଜାହାଜ ସେବା ଭାବେ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟକୁ ସଂଯୋଗ କରିଥିଲା । ଏହି ସେବା ନିୟମିତ ଚାଲୁଥିଲା ।

୧୯୫୩ ମସିହାରେ ଆକାଶ ପରିବହନର ଜାତୀୟ କରଣ ହେଲା । ଏହା ସହିତ ଅନ୍ୟାନ୍ୟ କେତେକ ଶିଳ୍ପର ବି ଜାତୀୟ କରଣ କରାଗଲା । ସେତେବେଳେ ଏୟାର ଇଣ୍ଡିଆର ଅଧକ୍ଷ ପଦ ଜେଆରଡ଼ିଙ୍କୁ ଅର୍ପଣ କରାଯାଇଥିଲା । ସେହି ପଦରେ ସେ ୧୯୭୮ ମସିହା ପର୍ଯ୍ୟନ୍ତ ରହିଲେ । ଅର୍ନ୍ତଃରାଷ୍ଟ୍ରୀୟ ବିମାନ ପରିବହନ ସଂଘ (ଆଇଏବିଏ)ର ସଭାପତି ରୂପେ ସେ ନିର୍ବାଚିତ ହେଲେ । ପ୍ରଥମ ଥର ପାଇଁ ଏହାର କନ୍‌ଫରେନ୍‌ସ ୟୁରୋପ୍ ବା ଆମେରିକା ପରିବର୍ତ୍ତେ ଆମ ଦେଶର ରାଜଧାନୀ ଦିଲ୍ଲୀ ସହରରେ ଅନୁଷ୍ଠିତ ହେଲା । ସେହି ଅଧିବେଶନକୁ ପଣ୍ଡିତ ଜବାହାର୍‌ଲାଲ୍ ନେହେରୁ ଉଦ୍‌ଘାଟନ କରିଥିଲେ । ୧୯୭୮ ମସିହାରେ ତାଙ୍କର ବିମାନ ସେବା ପ୍ରତି ଥିବା ପ୍ରଗାଢ଼ ମମତା ଏବଂ ତାଙ୍କ ଦ୍ୱାରା ପ୍ରବର୍ତ୍ତିତ ଏୟାର ଇଣ୍ଡିଆର ସଫଳତା ଆଦି ପାଇଁ ତାଙ୍କୁ 'ବନି ଜାନନ୍' ଆୱାର୍ଡ ଫ୍ଲୋରିଡ଼ାରୁ ମିଳିଥିଲା । ଏହି ବନିଜାନନ୍ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯେ କି ୧୯୧୪ ମସିହାରେ ପୃଥିବୀରେ ବିମାନ ସେବା ଆରମ୍ଭ କରିଥିଲେ । ତାଙ୍କରି ସମ୍ମାନରେ ଏହି ପୁରସ୍କାର ପ୍ରତିବର୍ଷ ଦିଆଯାଇଥାଏ । ପୂର୍ବରୁ ଏହି ପୁରସ୍କାର ଯେଉଁମାନେ ପାଇଥିଲେ ସେମାନେ ହେଲେ ଡାନ୍ ଆମ୍ ବିମାନ ସେବାର ପ୍ରତିଷ୍ଠାତା । ଇଷ୍ଟର୍ଣ୍ଣ ଏୟାରଲାଇନ୍‌ସର ପ୍ରତିଷ୍ଠାତା । ଡଗ୍‌ଲସ୍ ଏୟାରଲାଇନ୍‌ସର ନିର୍ମାତା ଏବଂ ଗେଟ୍ ଉଇଦିନ୍‌ର ଉଦ୍ଭାବକ ସାର ଫ୍ରାଙ୍କ୍ ଉଇଟିନ୍ । ଏତଦ୍ ବ୍ୟତୀତ ୧୯୮୫ ମସିହାରେ ଜେଆରଡ଼ିଙ୍କୁ ଫେଡ଼େରେସନ୍ ଏରୋନଟିକ୍ ଇଣ୍ଟରନେସନାଲ୍‌ର ସ୍ୱର୍ଣ୍ଣ ପଦକ ଏବଂ ୧୯୮୬ ମସିହାରେ ଇଣ୍ଟରନେସନାଲ ସିଭିଲାଇଜେସନ୍‌ର ପୁରସ୍କାର ମିଳିଥିଲା । ଉଡ଼ାଜାହାଜ ସେବାରେ ତାଙ୍କର ପରାକାଷ୍ଠା ପାଇଁ ତାଙ୍କୁ ଡ଼େନିଏଲ୍ ଗଗନ୍‌ହେମ୍ ମେଡ଼ାଲ୍‌ରେ ମଧ୍ୟ ଘୋଷିତ କରାଯାଇଥିଲା ।

୧୯୯୧ ମସିହାରେ ସ୍ୱଇଚ୍ଛାରେ ସେ ଟାଟା ସନ୍ସର ଅଧ୍ୟକ୍ଷ ପଦରୁ ଓହରି ଗଲେ । ସେତେବେଳକୁ ତାଙ୍କୁ ୮୭ ବର୍ଷ ବୟସ । ତେବେ ତାଙ୍କ ଅଧକ୍ଷତାରେ ଟାଟା ସନ୍ସର ଶିଳ୍ପ ସାମ୍ରାଜ୍ୟ ସାରା ଭାରତ ବର୍ଷକୁ ଆଚ୍ଛାଦିତ କରିଦେଇଥାଏ । ଜେଆରଡ଼ି ଟାଟା ଅନେକ ସାମାଜିକ ସମସ୍ୟାର ସମାଧାନ ପାଇଁ ଚେଷ୍ଟା କରିଥିଲେ । ତାଙ୍କର ପ୍ରଣିଧାନ ଯୋଗ୍ୟ କାର୍ଯ୍ୟକଳାପ ମଧ୍ୟରେ ଫ୍ୟାମିଲି ପ୍ଲାନିଂ ବା ପରିବାର ନିୟନ୍ତ୍ରଣ ଯୋଜନା ଅବଶ୍ୟ ସ୍ୱୀକାର୍ଯ୍ୟ । ସେ ୧୯୭୧ ମସିହାରେ ପରିବାର ନିୟନ୍ତ୍ରଣ ଫେଡ଼େରେସନ୍ ଗଠନ କରିଥିଲେ । ସେ ସବୁବେଳେ କହୁଥିଲେ ଯେ କୌଣସି ସଫଳତା ବା କୃତୀ ଯେତେ ବିରାଟ ହେଉ ପଛେ ତାହା ଯଦି ସାଧାରଣ ଲୋକଙ୍କ ଆବଶ୍ୟକତାକୁ

ପୂରଣ କରିବାରେ ସାହାଯ୍ୟ ନ କରେ ଏବଂ ଦେଶର ମୌଳିକ ଆବଶ୍ୟକତା ପାଇଁ ତାର ଭୂମିକା ନ ଥାଏ ତେବେ ତାହାର କୌଣସି ମୂଲ୍ୟ ନାହିଁ । ତା ଛଡ଼ା ସଫଳତା ପାଇବା ପାଇଁ ସଚ୍ଚୋଟତା ଏବଂ ସାଧୁତା ଅବଲମ୍ବନ କରିବା ଅପରିହାର୍ଯ୍ୟ ।

ଜେଆରଡ଼ି ଜଣେ ଅତି ସରଳ ଆମାୟିକ ବ୍ୟକ୍ତି ଥିଲେ ଏବଂ ସବୁବେଳେ ସେ ରାଜନୀତିଠାରୁ ସଂପୂର୍ଣ୍ଣ ଭାବେ ଅଲଗା ରହୁଥିଲେ । ସେ ପଣ୍ଡିତ ଜବାହାରଲାଲ ନେହେରୁଙ୍କର ଅତି ଘନିଷ୍ଠ ବନ୍ଧୁ ଥିଲେ ମଧ୍ୟ ପଣ୍ଡିତ୍‌ଜୀଙ୍କର ଅର୍ଥନୈତିକ ଚିନ୍ତନ ପ୍ରତି ସେ ସହମତ ହେଉନଥିଲେ । ତାଙ୍କର ଅସମ୍ମତିକୁ ସେ ଜନସମାଜରେ ପ୍ରକାଶ କରିବା ପାଇଁ ମଧ୍ୟ କୁଣ୍ଠାବୋଧ କରୁନଥିଲେ । ସ୍ପଷ୍ଟ ଭାବରେ ପ୍ରକାଶ କରୁଥିଲେ । ସେ ବ୍ୟକ୍ତିଗତ ଭାବରେ ହେଉ ବା ସାମାଜିକ ଜୀବନରେ ହେଉ ମୂଲ୍ୟବୋଧ ଉପରେ କୌଣସି ପ୍ରକାରର ସାଲିଶ କରୁନଥିଲେ । ଟାଟା ସାମ୍ରାଜ୍ୟର ଜଣେ ରକ୍ଷଣକାରୀଭାବେ ସେ ଗୁରୁତର କାର୍ଯ୍ୟ କରିବା ସହିତ ହଜାର ହଜାର ବ୍ୟକ୍ତିଙ୍କୁ ସାହାଯ୍ୟ କରି ତାଙ୍କର ଜୀବନକୁ ସୁଖମୟ କରିପାରିଛନ୍ତି ।

ଜେଆରଡ଼ି କୌଣସି ବିଶ୍ୱବିଦ୍ୟାଳୟରୁ ସ୍ନାତକ ଡ଼ିଗ୍ରୀ ହାସଲ କରିନଥିଲେ । ତେବେ ଅନେକ ବିଶ୍ୱବିଦ୍ୟାଳୟ ଜେଆରଡ଼ିଙ୍କୁ ଡ଼ିଗ୍ରୀ ଦେଇଛନ୍ତି । ବମ୍ବେ ବିଶ୍ୱବିଦ୍ୟାଳୟ ତାଙ୍କୁ ଏଲଏଲବି ଡ଼ିଗ୍ରୀରେ ଘୋଷିତ କରିଛନ୍ତି । ଫ୍ରାନ୍ସ ତାଙ୍କୁ 'କମାଣ୍ଡର ଅଫ୍ ଲିଭିଏନ୍ ଅଫ୍ ଅନର' ପଦବୀରେ ଅଧିଷ୍ଠିତ କରିଛନ୍ତି । ଭାରତ ବର୍ଷରେ ତାଙ୍କୁ ପ୍ରଥମେ 'ପଦ୍ମ ବିଭୂଷଣ' ଏବଂ ପରେ ୧୯୯୨ ମସିହାରେ ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ 'ଭାରତରତ୍ନ'ରେ ସମ୍ମାନିତ କରାଯାଇଛି । ସେହି ବର୍ଷ ସେ ଜାତିସଂଘଠାରୁ ଜନସଂଖ୍ୟା ସୁରକ୍ଷାର ପୁରସ୍କାର (ପପୁଲେସନ୍ ଆୱାଡ଼୍) ପାଇଥିଲେ । ଆମେରିକାର ଏସ୍‌କ୍ୱାୟାଡ଼୍ ପତ୍ରିକାରେ ତାଙ୍କୁ ପୃଥିବୀର ଶହେ ଜଣ ପ୍ରସିଦ୍ଧ ବ୍ୟକ୍ତିତ୍ୱଙ୍କ ମଧ୍ୟରେ ସ୍ଥାନିତ କରାଯାଇଛି । ତା ସହିତ ଆମେରିକାରୁ ତାଙ୍କୁ ଅନ୍ତଃରାଷ୍ଟ୍ରୀୟ ପରିଚାଳକ ଭାବେ ସମ୍ମାନିତ କରାଯାଇଛି ।

ଜେଆରଡ଼ି ଶାରୀରିକ ସ୍ୱାସ୍ଥ୍ୟ ପ୍ରତି ଯତ୍ନବାନ୍ ଥିଲେ । ତାଙ୍କୁ ୭୮ ବର୍ଷ ହେବା ଯାଏଁ ସେ ନିୟମିତ ଟେନିସ୍ ଏବଂ ଗଲ୍‌ଫ ଖେଳୁଥିଲେ । ୪୦ ବର୍ଷ ବୟସରେ ଗ୍ଲିଡ୍ ପରି ଅତି ଲୋମହର୍ଷଣକାରୀ କ୍ରୀଡ଼ାରେ ସେ ଭାଗ ନେଇଥିଲେ । ଦକ୍ଷିଣ ମୁମ୍ବାଇରେ ଜେଆରଡ଼ି ତାଙ୍କର ସ୍ତ୍ରୀ ଥେଲ୍‌ମାଙ୍କ ସହିତ ଏକ ଭଡ଼ାଘରେ ରହୁଥିଲେ । ସେମାନଙ୍କର ସନ୍ତାନ ସନ୍ତତି ନ ଥିବାରୁ ସେମାନେ ରତନ ଟାଟାଙ୍କୁ ପୋଷ୍ୟପୁତ୍ର ଭାବେ ଗ୍ରହଣ କରିଥିଲେ ।

ଜେଆରଡ଼ି ଜେନେଭାରେ ୧୯୯୩ ମସିହା ନଭେମ୍ବର ୨୭ ତାରିଖ ଦିନ ପ୍ରାଣତ୍ୟାଗ କଲେ । ସେତେବେଳେକୁ ତାଙ୍କୁ ୮୯ ବର୍ଷ ହୋଇଥିଲା । ବିବିସିର ଟିଭି ସେଦିନ ଘୋଷଣା କଲା ଯେ ଭାରତୀୟ ଶିଳ୍ପ ଜଗତର ଜଣେ କିମ୍ବଦନ୍ତୀ ପୁରୁଷ ଜେଆରଡ଼ି ଆଉ ନାହାନ୍ତି । ସାରା ଜୀବନ ସେ ଏକ ବିରାଟ ଶିଳ୍ପ ସାମ୍ରାଜ୍ୟର ଅଧିକାରୀ ହୋଇଥିଲେ ବି ବେଶ୍ ଜନପ୍ରିୟ ଥିଲେ । ତାଙ୍କ ବାରିପାଖର ଲୋକଙ୍କୁ ଏବଂ ଦେଶବାସୀଙ୍କୁ ସେ ଖୁବ୍ ସ୍ନେହ, ଶ୍ରଦ୍ଧା କରୁଥିଲେ । ସଂକ୍ଷେପରେ କହିଲେ ସେ ଜଣେ ଅତି ଆମାୟିକ ସ୍ନେହୀ ମଣିଷ ଥିଲେ । ଥରେ ଜେଆରଡ଼ି କହିଥିଲେ ''ମୁଁ ବାହେଁ ଲୋକମାନେ ମୋତେ ମୋର ସାଧୁତା ପାଇଁ ସ୍ମରଣ କରନ୍ତୁ ଏବଂ ସେମାନେ ସ୍ମରଣ କରନ୍ତୁ ଯେ ଜେଆରଡ଼ି ସାରା ଜୀବନ ତାର କର୍ତ୍ତବ୍ୟ କରିଛି ।'' ଅତୀତରେ କୁହାଯାଉଥିଲା ଯଦି ଚାକିରୀ କରିବ ସର୍ବଶ୍ରେଷ୍ଠ ଚାକିରୀ ହେଉଛି ଟାଟା, ବାବା, ରେଲୱେ । ସର୍ବାଗ୍ରେ ଥିଲା ଟାଟାର ନାମ । କାରଣ ଟାଟାରେ ଚାକିରୀ କରୁଥିବା ଲୋକଙ୍କୁ ଉଚ୍ଚ ଦରମା ତ ମିଳେ, ଜୀବନର ସମସ୍ତ ସୁବିଧା ସୁଯୋଗ ତାଙ୍କୁ ଏବଂ ତାଙ୍କର ପରିବାରବର୍ଗଙ୍କୁ ଯୋଗାଇ ଦିଆଯାଇଥାଏ । ଟାଟା ପରିବାର ସବୁଠାରୁ ଅଧିକ ଜନହିତକର କାର୍ଯ୍ୟ, ଦେଶର ଅର୍ଥନୈତିକ ବିକାଶ ଏବଂ ଅଭ୍ୟୁଦୟ ପାଇଁ କାର୍ଯ୍ୟ କରିଛି । ଜେଆରଡ଼ିଙ୍କୁ ଦେଶବାସୀ କେବଳ ଜଣେ ଶିଳ୍ପପତି ଭାବେ ନୁହେଁ ବରଂ ଜଣେ ବିରାଟ ଦୂରଦୃଷ୍ଟି ସଂପନ୍ନ ବ୍ୟକ୍ତି ଏବଂ ଆଧୁନିକ ଭାରତର ଅନ୍ୟତମ ନିର୍ମାତା ଭାବେ ସ୍ମରଣ କରନ୍ତି ।

* * *

# ସତ୍ୟଜିତ୍ ରାୟ



୧୯୨୧ - ୧୯୯୨

ଭାରତରତ୍ନ - ୧୯୯୨

**ଭା**ରତୀୟ ଚଳଚ୍ଚିତ୍ର ଜଗତର ସତ୍ୟଜିତ୍ ରାୟଙ୍କ ନାମ ଦେଶବାସୀ ଶ୍ରଦ୍ଧା ଏବଂ ସମ୍ମାନ ସହିତ ସ୍ମରଣ କରନ୍ତି । ତାଙ୍କର ଚଳଚ୍ଚିତ୍ରରେ ଥିବା ସାରଗର୍ଭକ ବିଷୟବସ୍ତୁ, ସ୍ୱାଭାବିକ ଦୃଷ୍ଟିଭଙ୍ଗୀ, ଦର୍ଶନ ଆଦି କ୍ୱଚିତ୍ ଅନ୍ୟାନ୍ୟ ଚଳଚ୍ଚିତ୍ରରେ ଦେଖିବାକୁ ମିଳିଥାଏ । ଯେ କୌଣସି ଅଭିନେତା, ଅଭିନେତ୍ରୀ କିମ୍ବା ବୈଷୟିକ ଶିଳ୍ପୀମାନେ ସତ୍ୟଜିତ୍ ରାୟଙ୍କ ବଳିଷ୍ଠ ନେତୃତ୍ୱ ଏବଂ ଦିଗ୍‌ଦର୍ଶନରେ କାର୍ଯ୍ୟ କରିବା ପାଇଁ ଏକ ସୁଯୋଗ ଏବଂ ସମ୍ମାନ ବୋଲି ମନେ କରନ୍ତି । ଏହି ପୃଥିବୀ ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ମାତା, ନିର୍ଦ୍ଦେଶକଙ୍କର ପୁରାନାମ ସତ୍ୟଜିତ୍ ସୁକୁମାର ରାୟ । ସେ କଲିକତା, ବର୍ତ୍ତମାନର କୋଲକାତା ନଗରୀରେ ୧୯୨୧ ମସିହା ମେ ୨ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ସୁକୁମାର

ରାୟ ଜଣେ ବିଖ୍ୟାତ କବି ଏବଂ ଲେଖକ ଥିଲେ । ତାଙ୍କର ଜେଜେବାପା ଉପେନ୍ଦ୍ର କିଶୋର ରାୟ ଚୌଧୁରୀ କେବଳ ଜଣେ ବିଖ୍ୟାତ ଲେଖକ ନ ଥିଲେ, ଜଣେ ଦକ୍ଷ ଅଭିନେତା ବି ଥିଲେ । ସତ୍ୟଜିତ୍ ରାୟଙ୍କ ଜେଜେବାପା ଶିଶୁମାନଙ୍କ ପାଇଁ ଗଳ୍ପ ଲେଖୁଥିଲେ ଏବଂ ସେ ଗଳ୍ପପାଇଁ ଚିତ୍ର ଗୁଡ଼ିକୁ ମଧ ସ୍ୱୟଂ ଅଙ୍କନ କରୁଥିଲେ । ଶିଶୁମାନଙ୍କ ପାଇଁ ସୁକୁମାର ରାୟ ମଧ ଗଳ୍ପ ଲେଖୁଥିଲେ । ସେ 'ସନ୍ଦେଶନ' ନାମକ ଗୋଟିଏ ମାସିକ ପତ୍ରିକାର ବି ସଂପାଦନା ଆରମ୍ଭ କରିଥିଲେ । ଅର୍ଥାଭାବ ଜନିତ କାରଣରୁ ଏହା କିଛି ବର୍ଷ ପରେ ବନ୍ଦ ହୋଇଯାଇଥିଲା । କିନ୍ତୁ ସତ୍ୟଜିତ୍ ରାୟ ୧୯୬୧ ମସିହାରୁ ଏହାର ପୁନଃପ୍ରକାଶ ଆରମ୍ଭ କରିଥିଲେ । ସତ୍ୟଜିତ୍‌ଙ୍କୁ ଯେତେବେଳେ ମାତ୍ର ୩ ବର୍ଷ ବୟସ ସେତେବେଳେ ତାଙ୍କର ପିତା ସୁକୁମାର ରାୟଙ୍କର ଦେହାନ୍ତ ହୋଇଥିଲା । ପିତାଙ୍କ ମୃତ୍ୟୁ ପରେ ମା ତାଙ୍କର ସଂପୂର୍ଣ୍ଣ ଦାୟିତ୍ୱ ନେଇ ସତ୍ୟଜିତ୍ ରାୟଙ୍କ ଶିକ୍ଷାଦିକ୍ଷାର ଯତ୍ନ ନେଲେ । କଲିକତାର ପ୍ରେସିଡ଼େନ୍ସି କଲେଜରେ ସେ ତାଙ୍କର ଶିକ୍ଷା ସମାପ୍ତ କଲେ ।

ରବୀନ୍ଦ୍ର ନାଥ ଠାକୁର ସତ୍ୟଜିତ୍ ରାୟଙ୍କ ପରିବାରର ପାରିବାରିକ ବନ୍ଧୁ ଥିଲେ । ସେ ସତ୍ୟଜିତ୍ ରାୟଙ୍କୁ ଶାନ୍ତି ନିକେତନ ନେଇ ଆସିଲେ । ସେହିଠାରେ ସତ୍ୟଜିତ୍ ଡ୍ରଇଁ ଏବଂ ପେଣ୍ଟିଂ ଶିକ୍ଷାଲାଭ କଲେ । ପ୍ରସିଦ୍ଧ ଚିତ୍ରକାର ଶ୍ରୀ ନନ୍ଦଲାଲ ବୋଷ ତାଙ୍କର ଗୁରୁ ଥିଲେ ।

ଚିତ୍ର ଅଙ୍କନକୁ ପେଷା ରୂପେ ବାଛି ନେଇ ସେ ଗୋଟିଏ ବ୍ରିଟିଶ୍ ଆଡ୍‌ଭଟାଇଜିଂ କମ୍ପାନୀରେ କାମ କରିବା ଆରମ୍ଭ କଲେ ଏବଂ ୧୯୪୫ ମସିହା ବେଳକୁ ତାର କଳା ନିର୍ଦ୍ଦେଶକ ଭାବେ ଅବସ୍ଥାପିତ ହେଲେ । ସେହି କମ୍ପାନୀ ସତ୍ୟଜିତ୍ ରାୟଙ୍କୁ ୬ ମାସ ପାଇଁ ଲଣ୍ଡନ ପଠାଇଲା । ସେଠାରେ ସତ୍ୟଜିତ୍ ଅନେକ ଚଳଚ୍ଚିତ୍ର ଦେଖିବାକୁ ପାଇବା ଫଳରେ ଚଳଚ୍ଚିତ୍ର ନିର୍ମାଣ କରିବା ପାଇଁ ତାଙ୍କର ଗଭୀର ଇଚ୍ଛା ଜାଗ୍ରତ ହେଲା । ଭାରତକୁ ଫେରିଆସିବା ପରେ ତାଙ୍କର ଏହି ଇଚ୍ଛା ଧୀରେ ଧୀରେ ବୃଦ୍ଧି ପାଇଲା । ସେହି ସମୟରେ ଜଣେ ଫରାସୀ ନିର୍ଦ୍ଦେଶକ ଡ଼ି. ଟିକାଙ୍କ ସଂସ୍ପର୍ଶରେ ଆସିଲେ । ସେ ଭାରତକୁ 'ଦ ରିଭର୍' ଚଳଚ୍ଚିତ୍ର ନିର୍ମାଣ କରିବା ଉଦ୍ଦେଶ୍ୟରେ ଆସିଥାନ୍ତି । ସତ୍ୟଜିତ୍ ଏହି ଚିତ୍ର ନିର୍ମାଣରେ ଡ଼ି. ଟିକାଙ୍କ ସହକାରୀ ଭାବେ କାର୍ଯ୍ୟ କଲେ ଏବଂ ତା ପରଠାରୁ ଚିତ୍ର ନିର୍ମାଣର ଆକାଂକ୍ଷା ତାଙ୍କର ଦ୍ୱିଗୁଣିତ ହେଲା ।

ବଙ୍ଗଳା ଲେଖକ ବିଭୂତି ଭୂଷଣ ବନ୍ଦୋପଧ୍ୟାୟଙ୍କ ଏକ ପୁସ୍ତକ ପାଇଁ ଚିତ୍ର ଅଙ୍କନ କରୁଥିବା ସମୟରେ 'ପାଥେର୍ ପାଞ୍ଚାଲୀ' ଚଳଚ୍ଚିତ୍ର ନିର୍ମାଣ କରିବା ପାଇଁ ସେ ମନସ୍ଥ କଲେ । ତେବେ 'ପାଥେର୍ ପାଞ୍ଚାଲୀ' ଭଳି ଚିତ୍ର ନିର୍ମାଣ ଏତେ ସହଜ ନ ଥିଲା । ସେ

ଅନେକ ବାଧା ବିଘ୍ନର ସମ୍ମୁଖୀନ ହେଲେ । ତେବେ ସେ ସମସ୍ତ ବାଧାବିଘ୍ନକୁ ଅତିକ୍ରମ କରି ୧୯୫୫ ମସିହାରେ ଏହି ଚଳଚ୍ଚିତ୍ର ନିର୍ମାଣ ସଂପୂର୍ଣ୍ଣ କଲେ । କୌଣସି ପ୍ରଯୋଜକ ଜଣେ ନୂତନ ନିର୍ଦ୍ଦେଶକଙ୍କ ପାଇଁ ଧନ ବିନିଯୋଗ କରିବାକୁ ନିରାପଦ ମନେ କରିନଥିଲେ । କିନ୍ତୁ ସତ୍ୟଜିତ୍ ଦୃଢ଼ ନିର୍ଣ୍ଣୟ କରିଥିଲେ । ସେ ଋଣ ନେଲେ । ତାଙ୍କ ପାଖରେ ଥିବା ସମସ୍ତ ସ୍ୱର୍ଣ୍ଣ ଅଳଙ୍କାରକୁ ବିକ୍ରି କରି କିଛି ଧନ ଯୋଗାଡ଼ କଲେ । ତେବେ ଚିତ୍ର ନିର୍ମାଣ ସରିବାର ବହୁ ପୂର୍ବରୁ ତାଙ୍କର କଷ୍ଟ ଲବ୍ଧ ଧନ ଶେଷ ହେବାକୁ ବସିଲା । ଶେଷରେ ୧୯୫୫ ମସିହାରେ ପଶ୍ଚିମବଙ୍ଗ ସରକାର ତାଙ୍କୁ ସାହାଯ୍ୟ କଲେ ଏବଂ ଆବଶ୍ୟକୀୟ ଅର୍ଥ ପ୍ରଦାନ ପାଇଁ ସମ୍ମତି ପ୍ରଦାନ କଲେ ।

'ପାଥେର୍ ପାଞ୍ଚାଲୀ' ୧୯୫୫ ମସିହାରେ ମୁକ୍ତିଲାଭ କଲା ପରେ ତାହା ବିରାଟ ସଫଳତା ସତ୍ୟଜିତଙ୍କୁ ଆଣିଦେଲା । ୧୯୫୬ ମସିହାରେ କାନିସ୍ ଫେଷ୍ଟିଭାଲ୍‌ରେ ତାଙ୍କୁ ପୁରସ୍କୃତ କରାଗଲା । ୧୯୫୫ ମସିହାରେ ରାଷ୍ଟ୍ରପତିଙ୍କ ସ୍ୱର୍ଣ୍ଣ ଓ ରୌପ୍ୟ ପୁରସ୍କାର ମିଳିଲା । ଏହାଛଡ଼ା ତାଙ୍କୁ ଦଶଟି ଅନ୍ତଃରାଷ୍ଟ୍ରୀୟ ସମ୍ମାନରେ ସମ୍ମାନିତ କରାଗଲା । ସତ୍ୟଜିତ୍ ରାୟ ତାଙ୍କ ଜୀବନର ପ୍ରାୟ ୪୦ ବର୍ଷ ଚଳଚ୍ଚିତ୍ର ନିର୍ମାଣରେ ବ୍ୟୟ କରିଛନ୍ତି । ତାଙ୍କ ଦ୍ୱାରା ନିର୍ମିତ ନିର୍ଦ୍ଦେଶିତ ୨୮ଟି ସଂପୂର୍ଣ୍ଣ ଚଳଚ୍ଚିତ୍ର ଏବଂ ଅନେକ ପ୍ରାମାଣିକ ଚଳଚ୍ଚିତ୍ର ଭାରତ ଏବଂ ବିଦେଶରେ ସୁନାମ ଅର୍ଜନ କରିଛି । ତାଙ୍କ ନିର୍ମିତ ପ୍ରାମାଣିକ ଚଳଚ୍ଚିତ୍ର ମଧ୍ୟରେ ବିଶ୍ୱକବି ରବୀନ୍ଦ୍ର ନାଥ ଠାକୁରଙ୍କ ଉପରେ ହୋଇଥିବା ଚିତ୍ରଟି ଅନନ୍ୟ । ସେ ତାଙ୍କର ଚଳଚ୍ଚିତ୍ରର କେବଳ ନିର୍ଦ୍ଦେଶନା ଦେଉନଥିଲେ ଜଣେ ଉଚ୍ଚକୋଟୀର ସଂଳାପ ଲେଖକ ଏବଂ ସଂଗୀତ ନିର୍ଦ୍ଦେଶକ ଭାବରେ ମଧ୍ୟ ତାଙ୍କର ଖ୍ୟାତି ଥିଲା । ତାଙ୍କର ଅଧିକାଂଶ ଚଳଚ୍ଚିତ୍ରର ସଂଗୀତ ନିର୍ଦ୍ଦେଶନା ସେ ସ୍ୱୟଂ କରିଛନ୍ତି । ପ୍ରସିଦ୍ଧ ଚିତ୍ର ମାନଙ୍କ ମଧ୍ୟରେ 'ପାଥେର୍ ପାଞ୍ଚାଲୀ', 'ଅପରାଜିତ', 'ଅପୁରସଂସାର', 'ଚାରୁଲତା', 'ଗୋପୀ ଗାଇନ୍ ବାଘା ବାଇନ୍', 'ସତରଞ୍ଜ କି ଖିଲାଡ଼ି' ଏବଂ 'ସଦ୍‌ଗତି' ଅନ୍ୟତମ ।

୧୯୫୭ ମସିହାରେ ଭେନିସ୍ ଚଳଚ୍ଚିତ୍ର ଉତ୍ସବରେ ତାଙ୍କ ନିର୍ମିତ ନିର୍ଦ୍ଦେଶିତ ଅପରାଜିତ ଚଳଚ୍ଚିତ୍ରକୁ ଗୋଲ୍‌ଡେନ୍ ଲାୟନ ପୁରସ୍କାର ଏବଂ ଅନ୍ୟ ଚାରୋଟି ଅନ୍ତଃରାଷ୍ଟ୍ରୀୟ ପୁରସ୍କାର ମିଳିଥିଲା । 'ଅପୁରସଂସାର'କୁ ୫ଟି ଅନ୍ତଃରାଷ୍ଟ୍ରୀୟ ପୁରସ୍କାରରେ ସମ୍ମାନିତ କରାଯାଇଥିଲା । ଯଦିଓ ସତ୍ୟଜିତ୍ ରାୟଙ୍କ ଚଳଚ୍ଚିତ୍ରରେ ପାଶ୍ଚାତ୍ୟ ଜଗତ (ହଲିଉଡ୍)ର ନିର୍ମାଣ ଶୈଳୀ, ଫରାସୀ ଚଳଚ୍ଚିତ୍ର ଏବଂ ଇଟାଲିୟାନ୍ ନିୟୋରିଜିମ୍‌ର ପ୍ରତିଫଳନ ହୋଇଛି ତଥାପି ସେ ଭାରତୀୟ ସଂସ୍କୃତି ଏବଂ ଭାରତର ବିଭିନ୍ନ କଳା ରୂପକୁ ତାଙ୍କ ଚଳଚ୍ଚିତ୍ରରେ ପ୍ରାଧାନ୍ୟ ପ୍ରଦାନ କରିଛନ୍ତି ।



ଚଳଚ୍ଚିତ୍ର ପରଦାରେ ଭାରତୀୟ ଜୀବନର ପ୍ରକୃତ ପ୍ରତିଫଳନ ପାଇଁ ସତ୍ୟଜିତ୍ ରାୟ ଉଦ୍ୟମରତ ଥିଲେ । 'ଅପରାଜିତ' ଏବଂ 'ଅପୁରସଂସାର'ରେ ଭାରତୀୟ ଗ୍ରାମ୍ୟ ଜୀବନରେ ବ୍ୟକ୍ତି କିପରି ଦାରିଦ୍ର୍ୟ ଏବଂ ଦୁଃଖ ଦୁର୍ଦ୍ଦଶାର ଜର୍ଜରିତ ତାହା ପ୍ରତିଫଳିତ ହୋଇଛି । ତାଙ୍କ ଜୀବନ ଯନ୍ତ୍ରଣାକୁ କିପରି ସେମାନେ ଦୂର କରିପାରିବେ ସେଥିପାଇଁ ଆବଶ୍ୟକୀୟ ପ୍ରଚେଷ୍ଟା ଏଥିରେ ଦର୍ଶିତ ହୋଇଛି । ବିଦେଶରେ ଏହି ଦୁଇଟିଯାକ ଚଳଚ୍ଚିତ୍ର ଅତ୍ୟନ୍ତ ପ୍ରଶଂସିତ ହୋଇଛି ।

ଅନେକ ସମାଲୋଚକଙ୍କ ମତରେ ସତ୍ୟଜିତ୍ ରାୟ ଅଯଥାରେ ଭାରତର ଦାରିଦ୍ର୍ୟକୁ ଚଳଚ୍ଚିତ୍ରରେ ରୂପାୟନ କରି ବିଦେଶରେ ବାହା ବାହା ସାଉଁଟିଛନ୍ତି । ସେଥିପାଇଁ ତାଙ୍କର ଚଳଚ୍ଚିତ୍ରକୁ ବିଦେଶରେ ପ୍ରଦର୍ଶନ ପାଇଁ ଅନୁମତି ନ ଦେବାପାଇଁ ସେମାନେ ଭାରତ ସରକାରଙ୍କୁ ଅନୁରୋଧ କରିଥିଲେ । ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁ ଚଳଚ୍ଚିତ୍ର ଦୁଇଟିକୁ ନିଜେ ଦେଖିସାରିବା ପରେ ସେ ତହିଁରେ ମୁଗ୍ଧ ହୋଇ ଏହାକୁ ବିଦେଶରେ ପ୍ରଦର୍ଶନ କରିବାକୁ ଅନୁମତି ପ୍ରଦାନ କରିଥିଲେ । ସେହି ଦୁଇ ଚଳଚ୍ଚିତ୍ର ବିଦେଶ ରାଷ୍ଟ୍ରମାନଙ୍କରେ ପ୍ରଦର୍ଶିତ ହେବା ପରେ ଭାରତୀୟ ଚଳଚ୍ଚିତ୍ର ଅନ୍ତଃରାଷ୍ଟ୍ରୀୟ ମାନଚିତ୍ରରେ ସ୍ଥାନ ପାଇଲା ।

ସତ୍ୟଜିତ୍ ରାୟଙ୍କର ପ୍ରାୟ ପ୍ରତ୍ୟେକ ଚଳଚ୍ଚିତ୍ରରେ ଜୀବନର ଦୁଃଖ, ଯନ୍ତ୍ରଣା ଏବଂ ବଞ୍ଚିରହିବା ପାଇଁ ମଣିଷର ଅହରହ ଯୁଦ୍ଧ ହିଁ ବିଷୟବସ୍ତୁ । ତଥାପି ପ୍ରତ୍ୟେକଟି କଥାବସ୍ତୁ

ସ୍ୱତନ୍ତ୍ରତା ବଜାୟ ରଖେ ଏବଂ ଶେଷ ପର୍ଯ୍ୟନ୍ତ ଦର୍ଶକର ଆଗ୍ରହକୁ ଚୁପେଇ ପରଦାରେ ବାନ୍ଧି ରଖେ । ୧୯୬୦ରୁ ୧୯୮୫ ମଧ୍ୟରେ ତାଙ୍କ ନିର୍ମିତ ଚିତ୍ର ଗୁଡ଼ିକରେ ସେ ନାରୀକୁ ପ୍ରାଧାନ୍ୟ ଦେଇଛନ୍ତି । ୧୯୬୦ରେ ନିର୍ମିତ ଦେବୀ, ୧୯୬୪ରେ ନିର୍ମିତ 'ଚାରୁଲତା' ଏବଂ ୧୯୮୪ରେ ନିର୍ମିତ 'ଘରେବାଇରେ' ସେ ତତ୍କାଳୀନ ନାରୀ ସମାଜରେ ଥିବା ବିଭିନ୍ନ ଯନ୍ତ୍ରଣାର ସ୍ୱର ଅନୁରଣିତ ହୋଇଛି । ତା ପରେ ଅଶି ଦଶକରେ ଭାରତୀୟ ପୁରୁଷମାନଙ୍କର ଦୁଃଖ ଦୁର୍ଦ୍ଦଶାର ଚିତ୍ର ସେ ପରିସ୍ଫୁଟନ କରିବାର ଚେଷ୍ଟା କରିଛନ୍ତି । ସତ୍ୟଜିତ୍ ରାୟଙ୍କ ଚଳଚ୍ଚିତ୍ରରେ ଅଯଥା କୌଣସି ନୃତ୍ୟ ଗୀତର ସମାବେଶ ନ ଥିଲା । ସେ ଜୀବନର ବାସ୍ତବିକ ଚିତ୍ର ଅଙ୍କନ କରିବାରେ ବିଶ୍ୱାସ କରୁଥିଲେ । କୌଣସି ପାଣ୍ଡୁଲିପିକୁ ସେ ବାଛି ସାରିବା ପରେ ତହିଁରେ ଥିବା ପ୍ରତ୍ୟେକଟି ଚରିତ୍ରକୁ ପୁଙ୍ଖାନୁପୁଙ୍ଖ ଭାବେ ଅନୁଧ୍ୟାନ କରୁଥିଲେ । ପ୍ରତ୍ୟେକଟି ଘଟଣାବଳୀର ଗବେଷଣାତ୍ମକ ନିରୀକ୍ଷଣ କରୁଥିଲେ । କେଉଁ ଚରିତ୍ର କିପରି ପୋଷାକ ପରିଧାନ କରିବ ତାହା ସେ ନିଜେ ଅଙ୍କନ ମାଧ୍ୟମରେ ନିର୍ଣ୍ଣୟ କରୁଥିଲେ । ତାହା ଫଳରେ ତାଙ୍କର ଚଳଚ୍ଚିତ୍ର ନିଖୁଣ ହେଉଥିଲା ।

ଆମେରିକା ଏବଂ ଫ୍ରାନ୍ସରେ ସତ୍ୟଜିତ୍ ରାୟଙ୍କ ଚଳଚ୍ଚିତ୍ର ବେଶ୍ ଜନପ୍ରିୟ ହୋଇଥିଲା । ଫ୍ରାନ୍ସ ସରକାର ତାଙ୍କୁ ଦ ଲିଜିୟନ୍ ଅଫ୍ ଅନର ପୁରସ୍କାର ଦେଇଥିଲେ । ଏହା ଫ୍ରାନ୍ସର ପ୍ରେସିଡେଣ୍ଟ ଫ୍ରାନସିସ୍ ମିଟରଲ୍ୟାଣ୍ଡଙ୍କ ଦ୍ୱାରା କଲିକତାରେ ତାଙ୍କୁ ପ୍ରଦାନ କରାଯାଇଥିଲା । ଏହି ପୁରସ୍କାର ଫ୍ରାନ୍ସର ସର୍ବୋଚ୍ଚ ପୁରସ୍କାର ଭାବେ ମାନ୍ୟତା ପାଇଥାଏ । ସେ ପାଇଥିବା ଅନ୍ୟାନ୍ୟ ପୁରସ୍କାର ମାନଙ୍କ ମଧ୍ୟରେ ମାଗାସେସେ ପୁରସ୍କାର ୧୯୬୭ ମସିହାରେ ଏବଂ ୧୯୮୪ ମସିହାରେ ଦାଦା ସାହେବ ଫାଲ୍‌କେ ପୁରସ୍କାର ଅନ୍ୟତମ । ତାଙ୍କ ଜୀବନର ସବୁଠାରୁ ସୁଖଦ ସମ୍ବାଦ ତାଙ୍କ ମୃତ୍ୟୁ ଶଯ୍ୟାରେ ହିଁ ତାଙ୍କ ପାଖରେ ପହଞ୍ଚିଥିଲା । ସେ ଶୁଣିଲେ ଯେ, ଜୀବନବ୍ୟାପୀ ସେ କରିଥିବା କାର୍ଯ୍ୟପାଇଁ ତାଙ୍କୁ ଚଳଚ୍ଚିତ୍ର ଜଗତର ସର୍ବଶ୍ରେଷ୍ଠ ସମ୍ମାନ ଓସ୍‌କାର ମିଳିଛି । ଭାରତ ସରକାର ମଧ୍ୟ ସେ ଜୀବିତ ଥିଲାବେଳେ ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତ ରତ୍ନରେ ଭୂଷିତ କରିଥିଲେ । କିନ୍ତୁ ଏହି ସମ୍ମାନ ତାଙ୍କୁ ତାଙ୍କର ମୃତ୍ୟୁପରେ ହିଁ ମିଳିଥିଲା ।

୧୯୯୧ ମସିହାରେ ଦକ୍ଷିଣ ଏସିଆର ଐତିହାସିକ ପ୍ରଫେସର ଦିଲ୍ଲୀପ ବସୁ ସତ୍ୟଜିତ୍ ରାୟ 'ଫିଲ୍ମ ଆଣ୍ଡ ଷ୍ଟଡି କଲେକ୍‌ସନ୍' ନାମକ ଏକ ଅନୁଷ୍ଠାନ ଗଠନ କଲେ । ତହିଁରେ ସତ୍ୟଜିତ୍ ରାୟଙ୍କ ଦ୍ୱାରା ନିର୍ମିତ ପ୍ରତ୍ୟେକ ଚଳଚ୍ଚିତ୍ର, ତାଙ୍କ ଲିଖିତ ସମସ୍ତ ପୁସ୍ତକ ଏବଂ ଅନ୍ୟାନ୍ୟ ତାଙ୍କର ଲେଖାମାନ ସ୍ଥାନ ଦେଇ ପରବର୍ତ୍ତୀ ପିଢ଼ିର ବ୍ୟକ୍ତିମାନଙ୍କ ପାଇଁ ଏକ ସଂଗ୍ରହାଳୟ ଗଠନ କଲେ ।

ପ୍ରଫେସର ଦିଲ୍ଲୀପ ବସୁଙ୍କ ଦ୍ୱାରା ପ୍ରାରମ୍ଭ ହୋଇଥିବା ଏହି ଅନୁଷ୍ଠାନ ସହିତ ଅନ୍ୟାନ୍ୟ କେତେକ ସଂଗଠନ ମଧ୍ୟ ଏହି କାର୍ଯ୍ୟରେ ନିୟୋଜିତ ଅଛନ୍ତି । ଏହା ସହିତ ଜାତିସଂଘର ବିକାଶ କାର୍ଯ୍ୟକ୍ରମ ତଥା ୟୁନେସ୍କୋ ଏବଂ ଫୋର୍ଡ ଫାଉଣ୍ଡେସନ୍ ମଧ୍ୟ ସତ୍ୟଜିତ୍ ରାୟଙ୍କର ସମସ୍ତ କାର୍ଯ୍ୟକୁ ସଂଗ୍ରହ କରି ତାକୁ ଏକ ଅନ୍ତଃରାଷ୍ଟ୍ରୀୟ ସଂଗ୍ରହାଗାରରେ ପରିଣତ କରିବାର ଚେଷ୍ଟା କରୁଛନ୍ତି । ଏହାଛଡ଼ା ଏହିସବୁ ସଂସ୍ଥା ସତ୍ୟଜିତ୍ ରାୟଙ୍କ ଚଳଚ୍ଚିତ୍ର ତଥା ତାଙ୍କ ଲିଖିତ ପୁସ୍ତକର ଅନୁବାଦ ଏବଂ ପ୍ରକାଶନ ଦାୟିତ୍ୱ ମଧ୍ୟ ଗ୍ରହଣ କରିଛନ୍ତି ।

ସତ୍ୟଜିତ୍ ରାୟ ଜଣେ ନିଷ୍ଠାପର ଲେଖକ ହୋଇଥିଲେ ମଧ୍ୟ ତାଙ୍କର ଅଧିକାଂଶ ପୁସ୍ତକ ବଂଗଳାରୁ ଅନ୍ୟଭାଷାକୁ ଅନୁଦିତ ହୋଇପାରିନାହିଁ । ଆଜି ପର୍ଯ୍ୟନ୍ତ ତାଙ୍କର କେବଳ ଆପୁତ୍ରାଓଲୋଜି, ସତରଞ୍ଜ କୀ ଖିଲାଡ଼ି (ଦ ଚେସ୍ ପ୍ଲେୟାର), ଡ଼େଲିଭରାନ୍ସ ଆଦି ଇଂରାଜୀ ଭାଷାରେ ଚିତ୍ରକଥା ରୂପରେ ପ୍ରକାଶିତ ହୋଇଛି । ତାଙ୍କର ସମସ୍ତ ଚଳଚ୍ଚିତ୍ର ବା ପଟ୍ଟକଥାର ଅନୁବାଦ ହେଲେ ଭବିଷ୍ୟତ ଚିତ୍ରନିର୍ମାତା, ଚିତ୍ରନିର୍ଦ୍ଦେଶକ ଆଦିଙ୍କ ପାଇଁ ଏହା ଅନେକ ଦିଗ୍‌ଦର୍ଶନ ଦେଇପାରିବ ।

ଅସୁସ୍ଥତା ସତ୍ତ୍ୱେ ସତ୍ୟଜିତ୍ ରାୟ ତାଙ୍କର ଶେଷ ଦିନ ଯାଏଁ ଚଳଚ୍ଚିତ୍ର ନିର୍ମାଣରେ ବ୍ରତୀ ଥିଲେ । ତାଙ୍କର ବୟସ୍କ ଜୀବନର କେତୋଟି ଚଳଚ୍ଚିତ୍ର କେବଳ ଷ୍ଟୁଡ଼ିଓ ଭିତରେ ପ୍ରସ୍ତୁତ କରାଯାଇଥିଲା । କାରଣ ଚିକିତ୍ସକ ମାନେ ଲୋକେସନ୍‌ରେ ସୁଟିଂ କରିବା ପାଇଁ ବାରଣ କରିଥିଲେ ।

ଚିତ୍ର ନିର୍ମାଣ ଏବଂ ଚିତ୍ର ନିର୍ଦ୍ଦେଶନାରେ ସେ ଜଣେ କାଳଜୟୀ କିମ୍ବଦନ୍ତୀ ପୁରୁଷ । ଜାତୀୟ ଏବଂ ଅନ୍ତଃରାଷ୍ଟ୍ରୀୟ ପୁରସ୍କାର ତାଙ୍କ ପାଇଁ ଏକ ଦୈନନ୍ଦିନ ଘଟଣାରେ ପରିଣତ ହୋଇଥିଲା । ସତ୍ୟଜିତ୍‌ଙ୍କ ଉଚ୍ଚତା ଥିଲା ୬ ଫୁଟ ୪ ଇଞ୍ଚ । ସବୁ ମଣିଷଙ୍କ ଭିତରେ ବାରି ହେଲା ପରି ଜଣେ ବ୍ୟକ୍ତି । ତେବେ ତାଙ୍କର ବହୁମୁଖୀ ପ୍ରତିଭା ହିଁ ତାଙ୍କୁ ଚିର ଭାସ୍ୱର କରି ରଖିବ । ଚଳଚ୍ଚିତ୍ର, ସାହିତ୍ୟ, ଚିତ୍ରାଙ୍କନ, ଆଦି ଅନେକ କ୍ଷେତ୍ରରେ ତାଙ୍କର ଅବଦାନ ଅତୁଳନୀୟ ଏବଂ ଅନତିକ୍ରମ୍ୟ ହୋଇ ରହିଛି । କାନିସ୍‌ଠାରୁ ଆରମ୍ଭ କରି ଅସ୍କାର ପୁରସ୍କାର ଯାଏଁ ପ୍ରତ୍ୟେକ ଅନ୍ତଃରାଷ୍ଟ୍ରୀୟ ପୁରସ୍କାରରେ ସେ ସମ୍ମାନିତ । ୧୯୯୨ ମସିହାରେ ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତ ରତ୍ନରେ ତାଙ୍କୁ ବିଭୂଷିତ କରାଯାଇଥିଲା । ବିଶ୍ୱପ୍ରସିଦ୍ଧ ଚିତ୍ର ନିର୍ମାତା, ନିର୍ଦ୍ଦେଶକ, ପ୍ରଯୋଜକ ଶ୍ରୀ ସତ୍ୟଜିତ୍ ରାୟ ୧୯୯୨ ମସିହାରେ ଇହଧାମ ତ୍ୟାଗ କରିଥିଲେ ।

* * *

# ଡ଼କ୍ଟର ଅବ୍‌ଦୁଲ କାଲାମ୍



୧୯୩୧

ଭାରତରତ୍ନ ୧୯୯୭

**୧**୯୩୧ ମସିହା ଅକ୍ଟୋବର ୧୫ ତାରିଖ ଦିନ ତାମିଲନାଡୁର ରାମେଶ୍ୱରଠାରେ ଏକ ଦରିଦ୍ର ମୁସଲମାନ ପରିବାରରେ ଜନ୍ମ ନେଇଥିଲେ- ଅମିଲ୍ ଫତି ଜଲ୍ଲାଲୁଦିନ୍ ଅବ୍‌ଦୁଲ୍ କାଲାମ ବା ଏ.ପି.ଜେ. ଅବ୍‌ଦୁଲ୍ କାଲାମ । ତାଙ୍କ ବାପା ସମୁଦ୍ରକୂଳରୁ ଶାମୁକା ଗୋଟେଇ ଏବଂ ଛୋଟ ଛୋଟ ଡ଼ଙ୍ଗା ତିଆରି କରି ତାକୁ ସ୍ଥାନୀୟ ମତ୍ସ୍ୟଜୀବୀମାନଙ୍କୁ ବିକ୍ରି କରୁଥିଲେ । ତହିଁରୁ ଉପାର୍ଜିତ ଧନ ରାଶିରେ ପିଲାମାନଙ୍କୁ ପାଠପଢ଼ାଉଥିଲେ । ସେତେବେଳେ ରାମେଶ୍ୱରମ୍ ଏକ ଛୋଟ ସହର ଥିଲା । ଅବ୍‌ଦୁଲ୍‌କାଲାମଙ୍କର ପିତାଙ୍କ ଆୟ ଘରସଂସାର ଚଳାଇବା ପାଇଁ ଯଥେଷ୍ଟ ନ ଥିଲା ।

ଡକ୍ଟର କାଲାମ୍ ତାଙ୍କ ପ୍ରାଥମିକ ଏବଂ ମାଧ୍ୟମିକ ଶିକ୍ଷା ଗୋଟିଏ ମିଶନାରୀ ସ୍କୁଲ୍‌ରେ କରିବା ପରେ ଦିଲ୍ଲୀର ଜୋସେଫ୍ କଲେଜରେ ଯୋଗଦାନ କଲେ । ପିଲାଦିନରୁ ସେ ଉଡ଼ାଜାହାଜର ଯନ୍ତ୍ରପାତି ଏବଂ ବୈଷୟିକ ଜ୍ଞାନରେ ଆଗ୍ରହୀ ଥିଲେ । ସେହି ସମୟରେ

ଏମ୍.ଆଇ.ଟି ନାମକ ଏକ ନୂତନ ଅନୁଷ୍ଠାନ ଖୋଲିଥିଲା । ସେଠାରେ ଉଡ଼ାଜାହାଜର ଜ୍ଞାନ କୌଶଳ ଶିକ୍ଷା ଦିଆଯାଉଥିଲା । ଏହି ମହାବିଦ୍ୟାଳୟ ମାଡ୍ରାସ, (ବର୍ତ୍ତମାନର ଚେନ୍ନାଇ)ଠାରେ ଥିବାରୁ ଅବ୍‌ଦୁଲ୍ କାଲାମ ତାଙ୍କ ଜନ୍ମସ୍ଥାନ ଛାଡ଼ି ଚେନ୍ନାଇରେ ଆସି ଇଂଜିନିୟରିଂ ପାଇଁ ଏହି ଏମ୍.ଆଇ.ଟି. କଲେଜରେ ଅଧ୍ୟୟନ କଲେ । ଅଧିକ ପାଠପଢ଼ା ଏବଂ ଗବେଷଣା ପାଇଁ ବିଦେଶକୁ ଯିବା ତାଙ୍କ ପକ୍ଷେ ସମ୍ଭବପର ନ ଥିଲା ।

୧୯୫୮ ମସିହାରେ ଡ଼କ୍ଟର କାଲାମ୍ କ୍ଷେପଣାସ୍ତ୍ର ବିଷୟରେ ତାଙ୍କର ଗବେଷଣା ଆରମ୍ଭ କଲେ । ଡ଼ି.ଆର୍.ଡ଼ି.ଓରେ ସମ୍ପାଦକ ଭାବେ ତାଙ୍କୁ ନିଯୁକ୍ତି ଦିଆଗଲା । ଡ଼ି.ଆର୍.ଡ଼ି.ଓ (ଡ଼ିଫେନ୍ସ ରିସର୍ଚ୍ଚ ଡ଼େଭଲପମେଣ୍ଟ ଅର୍ଗାନାଇଜେସନ୍)– ପରବର୍ତ୍ତୀ ସମୟରେ ଏହି ବିଭାଗର ସେ ମୁଖ୍ୟ ଭାବେ ଅବସ୍ଥାପିତ ହୋଇଥିଲେ ! ସେ ଡ଼ିଆରଡ଼ିଓରେ କାର୍ଯ୍ୟରତ ଥିଲାବେଳେ ଇସ୍ରୋ (ଇଣ୍ଡିଆନ୍ ସ୍ପେଶ୍ ରିସର୍ଚ୍ଚ ଅରଗାନାଇଜେସନ୍)ର ସଂସ୍ପର୍ଶରେ ଆସିଲେ ଏବଂ ପରେ ଏହି ସଂସ୍ଥାରେ ଯୋଗଦେଲେ । ଏହିଠାରେ ଥିଲାବେଳେ କ୍ଷେପଣାସ୍ତ୍ରକୁ ଉପଗ୍ରହରୁ ମହାଶୂନ୍ୟକୁ ପ୍ରେରଣ କରିବା ପାଇଁ ଯେଉଁ ଯାନ ଆବଶ୍ୟକ ହୋଇଥାଏ ତାହା ପ୍ରସ୍ତୁତ କରିବାରେ ସକ୍ଷମ ହେଲେ । ଏହାର ନାମ ଦିଆଗଲା ରୋହିଣୀ । ଡ଼କ୍ଟର କାଲାମ୍‌ଙ୍କ ପାଇଁ ଏହା ଏକ ବିରାଟ ସାଫଲ୍ୟ ଥିଲା । ୧୯୬୦ ମସିହାରେ ଖୁବ୍ ଅଳ୍ପ ସମୟ ପାଇଁ ସେ ଆମେରିକା ଯାଇଥିଲେ ।

ଡକ୍ଟର ରମଣ୍ଣାଙ୍କ ପରାମର୍ଶ କ୍ରମେ ୧୯୮୨ ମସିହାରେ ସେ ପୁନର୍ବାର ଡ଼ିଆରଡ଼ିଓରେ ନିର୍ଦ୍ଦେଶକ ଭାବେ ଯୋଗଦେଇ ହାଇଦ୍ରାବାଦରେ ଅବସ୍ଥାପିତ ହେଲେ । ସେହିଠାରେ ସେ ଏକ ଇଣ୍ଟିଗ୍ରେଟେଡ୍ ଡ଼େଭେଲପମେଣ୍ଟ ମିଶାଇଲ୍ ପ୍ରୋଗ୍ରାମ୍ (ସମନ୍ୱିତ କ୍ଷେପଣାସ୍ତ୍ର ବିକାଶ ଯୋଜନା) ପ୍ରସ୍ତୁତି କରି ଭାରତର ନିଜସ୍ୱ ଜ୍ଞାନ କୌଶଳରେ ପ୍ରସ୍ତୁତ କ୍ଷେପଣାସ୍ତ୍ର ତିଆରି କରିବା ପାଇଁ ମନସ୍ଥ କଲେ । ସେ ମନସ୍ଥ କଲେ ଯେ କ୍ଷେପଣାସ୍ତ୍ର ପ୍ରସ୍ତୁତି ତଥା ତତ୍ ସମ୍ବନ୍ଧୀୟ ସମସ୍ତ ଜ୍ଞାନ କୌଶଳ ଭାରତ ପାଖରେ ଥିଲେ ତାର ସାମରିକ ଶକ୍ତି ବୃଦ୍ଧି ପାଇବ ଏବଂ ଭାରତ ଏ ଦିଗରେ ଆତ୍ମନିର୍ଭରଶୀଳ ହେବାକୁ ସକ୍ଷମ ହେବ । ତା ପରେ ପୃଥିବୀ, ନାଗ୍, ଆକାଶ, ତ୍ରିଶୂଳ, ଅଗ୍ନି ପରି ଶକ୍ତିଶାଳୀ କ୍ଷେପଣାସ୍ତ୍ରମାନ ତାଙ୍କର ଦକ୍ଷ ନେତୃତ୍ୱ ଏବଂ ମାର୍ଗଦର୍ଶନରେ ପ୍ରସ୍ତୁତ ହୋଇପାରିଲା । ପୃଥିବୀ କ୍ଷେପଣାସ୍ତ୍ରକୁ ଭୂପୃଷ୍ଠରୁ ଭୂପୃଷ୍ଠକୁ କ୍ଷେପଣ କରାଯାଇପାରିବ । ନାଗ୍ କ୍ଷେପଣାସ୍ତ୍ର ଟ୍ୟାଙ୍କ ଗୁଡ଼ିକ ପାଇଁ ଓ ତ୍ରିଶୂଳ ଏବଂ ଅଗ୍ନି ବାୟୁସେନା ପାଇଁ ପ୍ରସ୍ତୁତ କରାଯାଇଥିଲା ।

ଡିଆରଡ଼ିଓର ପରିବର୍ତ୍ତନ କରି ସେ ଏକ ଛାମୁଆ ବୈଷୟିକ ଗବେଷଣା କେନ୍ଦ୍ର (ରିସର୍ଚ୍ଚ ସେଣ୍ଟର ଇମାରତ୍) ପ୍ରତିଷ୍ଠା କଲେ । ଭବିଷ୍ୟତ ପାଇଁ ବିଭିନ୍ନ ପ୍ରକାରର ଅତି ଉନ୍ନତ ଶ୍ରେଣୀର କ୍ଷେପଣାସ୍ତ୍ର ପ୍ରସ୍ତୁତି ପାଇଁ ଜ୍ଞାନ କୌଶଳର ଉଦ୍ଭାବନ କରିବା ଏହି କେନ୍ଦ୍ରର କାର୍ଯ୍ୟ । ସେ ଏକ ଅନନ୍ୟ ପରିଚାଳନା ଶୈଳୀ ଉଦ୍ଭାବନକରି ବିଭିନ୍ନ ବୈଧାନିକ ପରାମର୍ଶ ଦାତା, ଶିକ୍ଷା ଅନୁଷ୍ଠାନ

ଏବଂ ଶିକ୍ଷ ସଂସ୍ଥାନ ମାନଙ୍କ ମଧ୍ୟରେ ସମନ୍ୱୟ ସୃଷ୍ଟି କରିପାରିଛନ୍ତି ।



ଡକ୍ଟର କାଲାମ ତାମିଲନାଡୁରେ ଜନ୍ମ ଲାଭ କରିଥିବା ଯୋଗୁଁ ତାମିଲ୍ ସାହିତ୍ୟ ପ୍ରତି ଅନୁରକ୍ତି ରହିବା ସ୍ୱାଭାବିକ । ତାମିଲ ଭାଷାରେ ସେ ଅନେକ କବିତା ପ୍ରସ୍ତୁତ କରିଛନ୍ତି । ସେ ସବୁ ତାମିଲଭାଷାର ପ୍ରଖ୍ୟାତ କବି ମନିନ୍ଦର ସିଂଙ୍କ ଦ୍ୱାରା ଇଂରାଜୀରେ ଅନୁଦିତ ହୋଇଛି । 'ମୋ ଯାତ୍ରା' ନାମକ ପୁସ୍ତିକାରେ ସେସବୁ ସ୍ଥାନ ପାଇଥିଲା । ଜଣେ ଉଚ୍ଚକୋଟୀର ବୈଜ୍ଞାନିକ ହେଲେ ବି ତାଙ୍କର ପ୍ରାଣ କବିତା ଏବଂ ସଂଗୀତ ପ୍ରତି ଉନ୍ମୁକ୍ତ । ସେ ନିଜେ ଜଣେ ଉଚ୍ଚ କୋଟୀର ବୀଣାବାଦକ ବି । ଡ଼କ୍ଟର କାଲାମ୍ ଅତି ସରଳ ଜୀବନ ଯାପନ କରିବା ସହିତ ସବୁବେଳେ ଉଚ୍ଚାଭିଳାଷୀ । ଆଜି ପରିଣତ ବୟସରେ ମଧ୍ୟ ସେ ସର୍ବଦା ଚଞ୍ଚଳ ଜୀବନ ଯାପନ କରନ୍ତି । ସେ ନିରାମିଷ ଭୋଜନ କରନ୍ତି, ଧୂମପାନ ଏବଂ ମଦ୍ୟପାନ କରନ୍ତି ନାହିଁ । ସେ ଅବିବାହିତ । ଅନେକ ସମୟରେ ସେ କୁହନ୍ତି ମୁଁ ବିଜ୍ଞାନକୁ ବିବାହ କରିଛି । ଅତି ନମ୍ର, ଧୀର ଏବଂ ଶାନ୍ତ ସ୍ୱଭାବର ଡ଼କ୍ଟର କାଲାମ । ତାଙ୍କ ସାଫଲ୍ୟ ପଛରେ ତାଙ୍କ ସହଯୋଗୀଙ୍କର ହାତ ରହିଛି ବୋଲି ବିନମ୍ରତାର ସହିତ ସେ ସ୍ୱୀକାର କରନ୍ତି । ସେମାନଙ୍କ ସହଯୋଗ ବିନା ତାଙ୍କର କୌଣସି କାର୍ଯ୍ୟ ସଂପୂର୍ଣ୍ଣ ହେବା ସଂଭବ ନ ଥିଲା । ସହଯୋଗୀମାନଙ୍କ ପ୍ରତି ସେ ସଦା କୃତଜ୍ଞ ବୋଲି ଅନେକ ସମୟରେ କହିଛନ୍ତି । ଏଭଳି ଜଣେ ବିଶ୍ୱପ୍ରସିଦ୍ଧ ବୈଜ୍ଞାନିକଙ୍କୁ ଭାରତ ବର୍ଷରେ ଯେତେବେଳେ ସର୍ବୋଚ୍ଚ ନାଗରିକ ବୋଲି ଘୋଷିତ କରାଗଲା ତହିଁରେ ସେ ଆନନ୍ଦ ପ୍ରକାଶ କଲେ । ସେ ସରକାରଙ୍କ ପ୍ରତି କୃତଜ୍ଞତା ପ୍ରଦର୍ଶନ କରି ପ୍ରଫେସର ସିଭି ସୁବ୍ରମନିୟମ୍, ବିକ୍ରମ ସରାଭାଇ, ପ୍ରଫେସର ସତୀଶ ଗାବନ୍ ଏବଂ ପ୍ରଫେସର ଓମ୍‌ପ୍ରକାଶ- ଯେଉଁମାନେ ତାଙ୍କୁ ବହୁମାତ୍ରାରେ ପ୍ରଭାବିତ କରିଥିଲେ ସେମାନଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିବା ସହିତ ତାଙ୍କର ଏହି ପୁରସ୍କାରକୁ ସେମାନଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ । ସାଧାରଣତଃ ଏହି ସମ୍ମାନ ଜାନୁୟାରୀ ୨୬ ସାଧାରଣତନ୍ତ୍ର ଦିବସ ଦିନ ପ୍ରଦାନ କରାଯାଇଥାଏ । କିନ୍ତୁ ତାଙ୍କ କ୍ଷେତ୍ରରେ ଏହା ବ୍ୟତିକ୍ରମ ଘଟାଇ ତାର ଯଥେଷ୍ଟ ପୂର୍ବରୁ ନଭେମ୍ବର ୨୬, ୧୯୯୭ରେ ପ୍ରଦାନ କରାଗଲା । ସେତେବେଳେ କଲାମ ଦେଶର ପ୍ରତିରକ୍ଷା ବିଭାଗର ଉପଦେଷ୍ଟା ଭାବେ କାର୍ଯ୍ୟରତ ଥିଲେ । ୧୯୯୨–୯୭ ମସିହା ପର୍ଯ୍ୟନ୍ତ ସେ ପ୍ରତିରକ୍ଷା ମନ୍ତ୍ରୀଙ୍କ ବିଜ୍ଞାନ ପରାମର୍ଶଦାତା ଭାବେ କାର୍ଯ୍ୟ କରିଥିଲେ । ତାଙ୍କରି ନେତୃତ୍ୱରେ ଭାରତ ୧୯୯୮ରେ ଆଣବିକ ପରୀକ୍ଷା କରିଥିଲା । ତା'ପରେ ସେ ଦେଶବାସୀଙ୍କ

ଅପାର ସ୍ନେହ ଓ ସମ୍ମାନର ଅଧିକାରୀ ହେଲେ । ୨୦୦୨ ମସିହାରେ ଏନ୍‌ଡିଏ ତରଫରୁ ତାଙ୍କୁ ରାଷ୍ଟ୍ରପତି ପ୍ରାର୍ଥୀ କରାଗଲା । ବିପୁଳ ଭୋଟ ପାଇ ସେ ଦେଶର ଏକାଦଶ ରାଷ୍ଟ୍ରପତି ହେଲେ । ଦେଶକୁ କିପରି ପ୍ରଗତିଶୀଳ କରିହେବ ସେଥିପାଇଁ ଅନେକ ଖସଡ଼ା ପ୍ରସ୍ତୁତ କରିଛନ୍ତି । ତାଙ୍କରି ଭିଜନ-୨୦୨୦ରେ ଦେଶର କୃଷିଭିତ୍ତିକ ଉତ୍ପାଦନ ବୃଦ୍ଧି, ଆର୍ଥିକ ବିକାଶ ପାଇଁ ଯାନ୍ତ୍ରିକ କୌଶଳକୁ ମାଧମ କରିବା ଉପରେ ଗୁରୁତ୍ୱ ଏବଂ ଶିକ୍ଷା ଓ ସ୍ୱାସ୍ଥ୍ୟ ସର୍ବାଧିକ ନାଗରିକଙ୍କ ପହଞ୍ଚ ମଧରେ ରଖିବାର ଆବଶ୍ୟକତା ଅଛି ବୋଲି ବର୍ଣ୍ଣିତ ହୋଇଛି ।

ତାଙ୍କ ରଚିତ ବିଭିନ୍ନ ପୁସ୍ତକ ଦେଶ ତଥା ବିଦେଶରେ ଖୁବ୍ ଜନପ୍ରିୟ ହୋଇଛି । ଦ ଉଇଙ୍ଗ୍ସ ଅଫ୍ ଫାୟାର (ଆତ୍ମ ଜୀବନୀ), ଟର୍ଣ୍ଣିଂ ପଏଣ୍ଟସ (ଆତ୍ମ ଜୀବନୀ), ଗାଇଡିଙ୍ଗ୍ ସୋଲ୍, ଥବସ୍ ଫର ଚେଞ୍ଜ, ଏ ଭିଜନ ଫର ଦ ନ୍ୟୁ ମିଲେନିୟମ୍ ଏବଂ ଏନ୍‌ଭିଜନିଙ୍ଗ୍ ଆନ୍ ଏମ୍ପାୱାର୍ଡ୍ ନେସନ୍ ଆଦି ଅନ୍ୟତମ । ପ୍ରତ୍ୟେକଟି ପୁସ୍ତକରେ ତାଙ୍କର ଦେଶର ବିକାଶ ପାଇଁ ଚିନ୍ତା ପ୍ରତିଫଳିତ ହୋଇଛି । ଭାରତବର୍ଷ କିପରି ବିଶ୍ୱରେ ଉନ୍ନତ ଦେଶମାନଙ୍କ ମଧରେ ପରିଗଣିତ ହେବ ତାହା ହିଁ ଡକ୍ଟର କଲାମଙ୍କ ସ୍ୱପ୍ନ । ଡକ୍ଟର କାଲାମ କୌଣସି ବିଶ୍ୱବିଦ୍ୟାଳୟରେ ପିଏଚ୍‌ଡ଼ି ବା ଡ଼କ୍ଟେରେଟ୍ ଅଧୟନ କରିନଥିଲେ । ତଥାପି ଅନେକ ଡ଼ିଗ୍ରୀ ଏବଂ ପୁରସ୍କାର ବିଭିନ୍ନ ବିଶ୍ୱବିଦ୍ୟାଳୟରୁ ତାଙ୍କୁ ପ୍ରଦାନ କରାଯାଇଛି । ତାଙ୍କ କାର୍ଯ୍ୟକାଳ ମଧରେ ଆର୍ଯ୍ୟଭଟ୍ଟ ପୁରସ୍କାର, ବି.ଏନ୍ ମୋଦୀ ପୁରସ୍କାର, ନେହେରୁ ପୁରସ୍କାର, ଓମ୍ ପ୍ରକାଶ ଭଚିନ୍ ପୁରସ୍କାର ଆଦି ପ୍ରାୟ ସମସ୍ତ ପ୍ରମୁଖ ପୁରସ୍କାରର ଅଧିକାରୀ ହୋଇଛନ୍ତି । ତାଙ୍କୁ ଭାରତବର୍ଷର ଆୟୁର୍ବିଜ୍ଞାନ ସମାଜର ଉପସଭାପତି ଏବଂ ନ୍ୟାସନାଲ ଇଣ୍ଡିଆନ ଏକାଡ଼େମୀର ଫେଲୋ ଭାବେ ସମ୍ମାନିତ କରାଯାଇଛି । ଭାରତ ବର୍ଷର ଚଳଚଞ୍ଚଳ ଯୁବ ସମାଜକୁ ସମ୍ବୋଧିତ କରି ଡ଼କ୍ଟର କାଲାମ କହନ୍ତି, ''ସ୍ୱପ୍ନ ଦେଖ, ସ୍ୱପ୍ନଦେଖ ଏବଂ ସ୍ୱପ୍ନ ଦେଖ । ସେହି ସ୍ୱପ୍ନକୁ ବିଭିନ୍ନ ଚିନ୍ତାରେ ପରିଣତ କର ଏବଂ ଚିନ୍ତାକୁ କାର୍ଯ୍ୟରେ ରୂପ ଦିଅ । ବଡ଼ ବିଷୟ ଚିନ୍ତା କରିବା ପାଇଁ ପରାମର୍ଶ ଦିଅ । ଆମ ଦେଶ ୧୧୦ କୋଟି ଜନତାର ଦେଶ । ତେଣୁ ଆମ ଦେଶର ଲୋକେ ବଡ଼ ବଡ଼ କଥା ଚିନ୍ତା କରିବା ଆବଶ୍ୟକ । ତେବେ ଆମେ ବଡ଼ ହୋଇପାରିବା ।''

୧୯୮୧ ମସିହାରେ ଡ଼କ୍ଟର ଅବ୍ଦୁଲ୍ କାଲାମଙ୍କୁ ପଦ୍ମଭୂଷଣ ଏବଂ ୧୯୯୦ ମସିହାରେ ପଦ୍ମବିଭୂଷଣ ସମ୍ମାନ ମିଳିଥିଲା ଏବଂ ଶେଷରେ ୧୯୯୭ ମସିହାରେ ତାଙ୍କୁ ଭାରତରତ୍ନ ସମ୍ମାନରେ ଭୂଷିତ କରାଗଲା । ଏଭଳି ଜଣେ ଯୋଗଜନ୍ମା ବୈଜ୍ଞାନିକ ଭାରତ ଭୂମିରେ ଜନ୍ମ ହୋଇଥିବାରୁ ଦେଶ ଗର୍ବିତ । ଏକ ଗରିବ ପରିବାରରେ ଜନ୍ମ ନେଇ ସେ ଦେଶର ପ୍ରତିରକ୍ଷାକୁ ଉନ୍ନତ ରାଷ୍ଟ୍ରମାନଙ୍କ ସହିତ ସମକକ୍ଷ କରିପାରିଛନ୍ତି ମିଶାଇଲ୍ ଏବଂ ଆଣବିକ ଶସ୍ତ୍ରର ଉଦ୍ଭାବନ ଦ୍ୱାରା । ସେଥିପାଇଁ ସେ ଚିରଦିନ ଦେଶବାସୀଙ୍କର ଶ୍ରଦ୍ଧା ଓ ସମ୍ମାନ ଲାଭ କରିବେ ।

***

# ଗୁଲ୍‌ଜାରୀ ଲାଲ୍ ନନ୍ଦା



୧୮୯୮-୧୯୯୮

ଭାରତରତ୍ନ - ୧୯୯୭

**ସ**ତ୍ୟ, ନ୍ୟାୟ, ଧର୍ମପରାୟଣତା, କର୍ତ୍ତବ୍ୟନିଷ୍ଠା ଆଦି ସଦ୍‌ଗୁଣର ସମାହାର ଘଟିଥିବା ବ୍ୟକ୍ତିତ୍ୱ ମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ଗୁଲ୍‌ଜାରୀ ଲାଲ୍ ନନ୍ଦାଙ୍କ ନାମ ଅନ୍ୟତମ । ଭାରତ ବର୍ଷର ପ୍ରଧାନମନ୍ତ୍ରୀ ଭାବେ ସେ ତିନିଥର ଅବସ୍ଥାପିତ ହୋଇଥିଲେ ହେଁ ସେ ଆସନର ମୋହ ତାଙ୍କର ସରଳ ମନକୁ କେବେ ହେଁ ବାନ୍ଧି ରଖିପାରିନାହିଁ । ମର ଜଗତରେ ସେ ଅମର ହୋଇଛନ୍ତି ତାଙ୍କର ସ୍ଥିତପ୍ରଜ୍ଞ ଚରିତ୍ରର ପରିପ୍ରକାଶ ନିମନ୍ତେ ।

୧୮୯୮ ମସିହା ଜୁଲାଇ ୪ ତାରିଖ ଦିନ ଗୁଲ୍‌ଜାରୀ ଲାଲ୍ ନନ୍ଦା ଅବିଭକ୍ତ ପଞ୍ଜାବର ସିଆଲ୍ କୋଟ୍ ଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଜଣେ ସ୍କୁଲ୍

ଶିକ୍ଷକ ଥିଲେ । ଆଲ୍ଲାହାବାଦ୍ ବିଶ୍ୱବିଦ୍ୟାଳୟରୁ ଅର୍ଥଶାସ୍ତ୍ରରେ ସ୍ନାତୋକତ୍ତୋର ଡ଼ିଗ୍ରୀ ପାଇବା ପରେ ସେ ଏଲ୍‌ଏଲ୍‌ବି ଡ଼ିଗ୍ରୀ ମଧ ହାସଲ କରିଥିଲେ । ୧୯୨୧ ମସିହାରେ ସେ ଜଣେ ଶ୍ରମିକ ସଂଗଠକ ଭାବେ ନିଜକୁ ପ୍ରତିଷ୍ଠିତ କଲେ । ତେବେ ସେହି ସମୟରେ ସେ ମହାତ୍ମାଗାନ୍ଧିଙ୍କ ସଂସ୍ପର୍ଶରେ ଆସି ତାଙ୍କ ଦ୍ୱାରା ପ୍ରବର୍ତ୍ତିତ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ । ତେବେ ସେ ଆନ୍ଦୋଳନ ପ୍ରତ୍ୟାହୃତ ହେଲା ପରେ ସେ ବମ୍ବେ ନଗରୀର ନ୍ୟାସନାଲ୍ କଲେଜରେ ଅର୍ଥଶାସ୍ତ୍ରର ଅଧ୍ୟାପକ ଭାବେ ଯୋଗଦାନ କଲେ ।

କେବଳ ଅଧାପନା ତାଙ୍କୁ ବାନ୍ଧି ରଖି ପାରିଲା ନାହିଁ । ସେତେବେଳେ କଳକାରଖାନାରେ କାର୍ଯ୍ୟରତ ଶ୍ରମିକ ମାନଙ୍କର ଦୁଃଖ ଦୁର୍ଦ୍ଦଶାରେ ମର୍ମାହତ ହୋଇ ସେ ଶ୍ରମିକ ସଂଗଠନ କରି ଶ୍ରମିକ ମାନଙ୍କର ଉନ୍ନତି ନିମନ୍ତେ ବିଭିନ୍ନ କାର୍ଯ୍ୟକ୍ରମ ଯଥା ବିପ୍ଳବ ଆଦିରେ ମନୋନିବେଶ କଲେ । ୧୯୨୨ ମସିହାରେ ସେ ଅହମ୍ମଦାବାଦ ଟେକ୍ସଟାଇଲ ଶ୍ରମିକ ସଂଘର ସେକ୍ରେଟାରୀ ଭାବେ ନିର୍ବାଚିତ ହେଲେ ଏବଂ ୧୯୨୨ ମସିହାରୁ ୧୯୪୬ ମସିହା ଯାଏଁ ଜାତୀୟ ଟେକ୍ସଟାଇଲ୍ ଶ୍ରମିକ ସଂଘର ସେକ୍ରେଟାରୀ ଭାବେ କାର୍ଯ୍ୟ ସଂପାଦନ କରିଥିଲେ ।

୧୯୩୦ ମସିହାରେ ଗାନ୍ଧିଜୀଙ୍କ ଦ୍ୱାରା ଆହୂତ ଆଇନ ଅମାନ୍ୟ ଆନ୍ଦୋଳନରେ ସେ ଯୋଗଦାନ କରି ୧୯୩୨ ମସିହାରେ କାରାବରଣ କଲେ । ଭାରତଛାଡ଼ ଆନ୍ଦୋଳନରେ ଯୋଗଦାନ କରିବା ଫଳରେ ତାଙ୍କୁ ୨ ବର୍ଷ ପାଇଁ ଜେଲ୍ ଦଣ୍ଡ ଭୋଗିବାକୁ ପଡ଼ିଥିଲା ।

୧୯୪୬ ମସିହାରେ ବିଭିନ୍ନ ରାଜ୍ୟ ସରକାର ଗଠନ ହେଲାବେଳେ ସେ ପାର୍ଲାମେଣ୍ଟରୀ ସେକ୍ରେଟେରୀ ଭାବେ ନିଯୁକ୍ତ ହେଲେ ଏବଂ ବମ୍ବେ ହାଉସିଂବୋର୍ଡ଼ର ସଭାପତି ଭାବେ ମଧ ନିଯୁକ୍ତ ହେଲେ । ତା ପରେ ନେହେରୁଙ୍କ ଦ୍ୱାରା ଗଠିତ ପ୍ଲାନିଂ କମିଶନ ବା ଯୋଜନା କମିଶନ୍‌ରେ ତାଙ୍କୁ ଚେୟାରମ୍ୟାନ ପଦ ମିଳିଲା । ପଣ୍ଡିତ ନେହେରୁ ତାଙ୍କୁ ଦିଲ୍ଲୀ ଡକାଇ ଯୋଜନା ବୋର୍ଡ଼ର ସଭାପତି ପଦରେ ଅବସ୍ଥାପିତ କଲେ । ତତ୍ପରେ ସେ ନେହେରୁଙ୍କ ମନ୍ତ୍ରୀମଣ୍ଡଳରେ ଯୋଗଦେଲେ । ପରବର୍ତ୍ତୀ ୧୧ ବର୍ଷ କାଳ ସେ ଯୋଜନା, ଶ୍ରମ, ନିଯୁକ୍ତି, ଜଳସେଚନ ଏବଂ ଶକ୍ତି ଆଦି ବିଭାଗରେ ମନ୍ତ୍ରୀପଦ ଅଳଙ୍କୃତ କଲେ । ୧୯୬୦ ମସିହାରେ ପଣ୍ଡିତ ନେହେରୁ ତାଙ୍କୁ ପୁନର୍ବାର ଡ଼କାଇ ଯୋଜନା ବୋର୍ଡ଼ର ଉପାଧ୍ୟକ୍ଷ ଭାବେ ପ୍ରତିଷ୍ଠିତ କଲେ । ୧୯୬୩ ମସିହା ପର୍ଯ୍ୟନ୍ତ ସେ ଏହି ପଦରେ ରହିଲେ ।

ପଣ୍ଡିତ ନେହେରୁଙ୍କ ମୃତ୍ୟୁ ପରେ ୧୯୬୪ ମସିହାରେ ଗୁଲ୍‌ଜାରୀ ଲାଲ୍ ନନ୍ଦା ଅସ୍ଥାୟୀ ଭାବେ ପ୍ରଧାନମନ୍ତ୍ରୀ ଭାବେ ଅବସ୍ଥାପିତ ହେଲେ । ଏହି ପଦରେ ସେ ମାତ୍ର ୧୬ ଦିନ କାର୍ଯ୍ୟ କଲେ । ତା ପରେ ଲାଲ୍ ବାହାଦୂର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ହୋଇଥିଲେ । ତେବେ ଲାଲ୍ ବାହାଦୂର ଶାସ୍ତ୍ରୀଙ୍କର ଅକାଳ ମୃତ୍ୟୁ ହେବା ପରେ ୧୯୬୬ ମସିହାରେ ଶ୍ରୀ ନନ୍ଦା ପୁନର୍ବାର ପ୍ରଧାନମନ୍ତ୍ରୀ ହେଲେ । ଏଥର ମଧ୍ୟ ସେ ମାତ୍ର ୧୪ ଦିନ କାଳ ପ୍ରଧାନମନ୍ତ୍ରୀ ଭାବେ ରହିଥିଲେ । ତା ପରେ ଶ୍ରୀମତୀ ଇନ୍ଦିରାଗାନ୍ଧୀ ପ୍ରଧାନମନ୍ତ୍ରୀ ହେଲେ ।

ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ମନ୍ତ୍ରିମଣ୍ଡଳରେ ନନ୍ଦାଜୀ ଗୃହମନ୍ତ୍ରୀ ରହିଲେ କିନ୍ତୁ ମନ୍ତ୍ରିମଣ୍ଡଳରେ କେତେକ ବିବାଦ ଦେଖାଦେବା ଫଳରେ ସେ ସ୍ୱତଃ ଇସ୍ତଫା ପ୍ରଦାନ କରିଥିଲେ । ୧୯୭୦ ମସିହାରେ ସେ ଏକ ସ୍ୱଳ୍ପ କାଳ ପାଇଁ ରେଲ୍‌ୱେ ମନ୍ତ୍ରୀ ଭାବେ ଅଧିଷ୍ଠିତ ହୋଇଥିଲେ । ତାଙ୍କ ମନ୍ତ୍ରୀତ୍ୱ ସମୟରେ ରେଳଯାତ୍ରୀମାନଙ୍କର ସୁବିଧା ସୁଯୋଗ ପାଇଁ ସେ ଅନେକ ଚେଷ୍ଟା କରିଛନ୍ତି । ରେଳଯାତ୍ରା କିପରି ସୁଖମୟ ହୋଇପାରିବ ସେଥିପାଇଁ ସେ ଧ୍ୟାନ ଦେଇଥିଲେ । ରେଳ ବିଭାଗର ପ୍ରଶାସନରେ ଅନେକ ସଂସ୍କାର ଆଣି ରେଳଗାଡ଼ି କିପରି ସୁରୁଖୁରୁରେ ଚାଲିପାରିବ ଏବଂ ସମୟାନୁବର୍ତ୍ତିତା ରକ୍ଷା କରିହେବ ସେଥିପାଇଁ ଧ୍ୟାନ ଦେଇଥିଲେ । ସେ ରେଳ ବିଭାଗର ଉପାର୍ଜନ ବୃଦ୍ଧି ତଥା ଖର୍ଚ୍ଚକାଟ ଏବଂ ବଳକା କର୍ମୀ ନିଯୁକ୍ତି ଉପରେ ଅଧିକ ଦୃଷ୍ଟି ଦେଇଥିଲେ । ତା ଛଡ଼ା ତାଙ୍କ ସମୟରେ ଯାତ୍ରୀମାନଙ୍କ ସୁବିଧା ପାଇଁ ଜଳଯୋଗାଣ ଏବଂ ପରିଷ୍କାର ପରିଚ୍ଛନ୍ନତାର ସୁବିଧା ଇତ୍ୟାଦି ବୃଦ୍ଧି କରାଯାଇଥିଲା ।

ନିଜେ ଜଣେ ସଚ୍ଚୋଟ ବ୍ୟକ୍ତି ହୋଇଥିବାରୁ ସେ ସମାଜର ପ୍ରତି ବର୍ଗରେ ଦୁର୍ନୀତିର ଦୂରୀକରଣ ପାଇଁ ଚେଷ୍ଟାରତ ଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ ସମାଜରେ ଥିବା ବିଭିନ୍ନ ଦାବି, ଦାମୀ ଅଭ୍ୟାସ ତଥା ବିଳାସ ବ୍ୟସନ ପାଇଁ କୃତ୍ରିମ ଆସକ୍ତି ଆଦି ଯୋଗୁଁ ଦୁର୍ନୀତିର ଅଙ୍କୁରୋଦ୍‌ଗମ ହୁଏ । ସେ ବିଶ୍ୱାସ କରୁଥିଲେ ଯେ ଲାଞ୍ଚ ନେବା ଲୋକ ଯେତିକି ଦୁଷ୍କର୍ମ କରେ ସେହି ମାତ୍ରାର ଦୁଷ୍କର୍ମ ଲାଞ୍ଚ ଦେବା ଲୋକ ମଧ୍ୟ କରିଥାଏ । ସେ ଅନୁଭବ କରୁଥିଲେ ଯେ ପ୍ରଶାସନ ତଥା ବିକାଶମୂଳକ କାର୍ଯ୍ୟକ୍ରମ ଆଦିରେ ଥିବା ବ୍ୟକ୍ତିମାନେ ଯଦି ସଚ୍ଚୋଟ ହୁଅନ୍ତି ତଥା ଦେଶର ବିକାଶ ପ୍ରତି ଧ୍ୟାନ ଦିଅନ୍ତି ତେବେ ଦୁର୍ନୀତିର ମୂଳୋତ୍ପାଟନ ହୋଇପାରିବ । ସେ ଗୃହମନ୍ତ୍ରୀ ଥିଲାବେଳେ ଭାରତ ସରକାରଙ୍କ ଅଧୀନରେ ଏକ ନୂତନ ବିଭାଗ ସୃଷ୍ଟି କରିଥିଲେ । ତାହା ପ୍ରଶାସନିକ ସଂସ୍କାର ଉଦ୍ଦେଶ୍ୟରେ ଗଠିତ ହୋଇଥିଲା । ସମାଜରୁ ଅସାମାଜିକ କାର୍ଯ୍ୟକଳାପକୁ

ଦୂର କରିବା ପାଇଁ ତଥା ସାଧାରଣ ଜନତାଙ୍କୁ ନ୍ୟାୟ ପ୍ରଦାନ ପାଇଁ ସେ ପ୍ରଶାସନିକ ସଂସ୍କାର ଆଣିବାର ଚେଷ୍ଟା କରିଥିଲେ ।



୧୯୭୨ ମସିହାରେ ସେ ସକ୍ରିୟ ରାଜନୀତିରୁ ଅବ୍ୟାହତି ନେଲେ । ତାଙ୍କ ଜୀବନକାଳ ଭିତରେ କୌଣସି ସଂପତ୍ତିର ଅଧିକାରୀ ନ ଥିଲେ । ନୂଆଦିଲ୍ଲୀର ଡ଼ିଫେନ୍ସ କଲୋନୀରେ ସେ ଏକ ଭଡ଼ାଘରେ ରହୁଥିଲେ । ଘର ଭଡ଼ା ଦେଇ ନ ପାରିବା ଯୋଗୁଁ ତାଙ୍କୁ ସେ ଘର ଛାଡ଼ିବାକୁ ପଡ଼ିଥିଲା । ସେ ବସ୍ତୁବାଦୀ ନ ଥିଲେ । ଭାରତର ଅନ୍ୟାନ୍ୟ ସ୍ୱାଧୀନତା ସଂଗ୍ରାମୀ ତଥା ସ୍ୱାଧୀନ ଭାରତର ଉଚ୍ଚପଦାଧିକାରୀମାନଙ୍କଠାରୁ ଗୁଲ୍‌ଜାରୀ ଲାଲ୍ ସଂପୂର୍ଣ୍ଣ ଭିନ୍ନ ଥିଲେ । ରାଜନୀତିରୁ ଅବ୍ୟାହତି ନେବା ପରେ ସେ କୁରୁକ୍ଷେତ୍ର ଗଲେ ଏବଂ ସେଠାରେ କୁରୁକ୍ଷେତ୍ର ବିକାଶ ବୋର୍ଡର ଅଧ୍ୟକ୍ଷ ହୋଇଥିଲେ । ପର୍ଯ୍ୟଟକମାନଙ୍କ ପାଇଁ ସେ କୁରୁକ୍ଷେତ୍ରରେ ଅନେକ ସୁବିଧା ସୁଯୋଗ ସୃଷ୍ଟି କରିଥିଲେ । ତାଙ୍କୁ ୯୧ ବର୍ଷ ହେବା ପର୍ଯ୍ୟନ୍ତ ସେହିଠାରେ କାର୍ଯ୍ୟରତ ଥିଲେ ।

ନିଜର ଯଥେଷ୍ଟ ଆୟ ନ ଥିଲେ ମଧ୍ୟ ସେ ତାଙ୍କର ବନ୍ଧୁ କିମ୍ୱା ତାଙ୍କ ସନ୍ତାନ ମାନଙ୍କଠାରୁ କୌଣସି ଅର୍ଥ ବା ସାହାଯ୍ୟ ନେଉ ନ ଥିଲେ । ତେବେ ତାଙ୍କର ଜଣେ ବନ୍ଧୁ ସିଲ୍ ଭଦ୍ରେୟାଜୀ ସ୍ୱାଧୀନତା ସଂଗ୍ରାମୀ ମାନଙ୍କ ପାଇଁ ମିଳୁଥିବା ଭତ୍ତା ପାଇଁ ଉଦ୍ଦିଷ୍ଟ ଦରଖାସ୍ତରେ ଦସ୍ତଖତ ଦେବାପାଇଁ ବାଧ୍ୟ କରିବାରୁ ମାସକୁ ୫୦୦ ଟଙ୍କା ହିସାବରେ ସେ ଭତ୍ତା ପାଉଥିଲେ । ୧୯୮୯ ମସିହାରେ ସେ ଦିଲ୍ଲୀ ସ୍ଥିତ ହରିୟାନା ଭବନରେ ରହିଥିଲା ବେଳେ ଗୋଡ଼ ଖସି ପଡ଼ିଯିବା ଫଳରେ ତାଙ୍କର ମେରୁଦଣ୍ଡରେ ଆଘାତ ହୋଇଥିଲା । ଚଳପ୍ରଚଳ ପାଇଁ ଅକ୍ଷମ ହେବାରୁ ସେ ବାଧ୍ୟହୋଇ ଅହମଦାବାଦ୍‌ରେ ଥିବା ତାଙ୍କର କନ୍ୟାଙ୍କ ପାଖକୁ ଚାଲିଗଲେ । ଡ଼କ୍ଟର ପୁଷ୍ପା ନାୟକ

ଏବଂ ତାଙ୍କ ପୁଅ ଡ଼କ୍ଟର ତେଜେସ୍ ନାୟକ ଶ୍ରୀ ନନ୍ଦାଙ୍କର ଯତ୍ନ ନେଲେ । ୧୯୯୭ ମସିହା ଜୁଲାଇ ୨୪ ତାରିଖ ଦିନ ଡ଼କ୍ଟର ପୁଷ୍ପା ନାୟକ ଏବଂ ସଂପୂର୍ଣ୍ଣ ପରିବାର ତଥା ଅହମଦାବାଦର ସମସ୍ତ ନାଗରିକ ମାନଙ୍କ ପାଇଁ ଏକ ଗର୍ବ ଓ ଗୌରବର ଦିବସ ସାବ୍ୟସ୍ତ ହେଲା । ସେହି ଦିନ ଗୁଲ୍‌ଜାରୀଲାଲ୍ ନନ୍ଦାଙ୍କୁ ଭାରତ ବର୍ଷର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତ ରତ୍ନରେ ଭୂଷିତ କରାଗଲା । ଅସୁସ୍ଥତା କାରଣରୁ ଗୁଲ୍‌ଜାରୀଲାଲ୍ ନନ୍ଦା ସ୍ୱୟଂ ଯାଇ ଏହି ସମ୍ମାନ ଗ୍ରହଣ କରି ପାରିନଥିଲେ । କିନ୍ତୁ ତାଙ୍କର ଅନେକ ବନ୍ଧୁ ଶୁଭେଚ୍ଛୁ ଏବଂ ଶ୍ରମିକ ସଂଗଠନର ନେତୃବୃନ୍ଦ ଆସି ତାଙ୍କୁ ଅଭିବାଦନ ଜଣାଇଥିଲେ ।

ଜଣେ ସ୍ପଷ୍ଟବାଦୀ ନୀତିନିଷ୍ଠ ଗାନ୍ଧୀବାଦୀ, ସ୍ୱାଧୀନତା ସଂଗ୍ରାମୀ ଏବଂ ଶ୍ରମିକ ସଂଗଠକ ଭାବେ ସେ ସୁବିଖ୍ୟାତ । ଶ୍ରୀ ନନ୍ଦା ସରଳ ଜୀବନଯାପନ ସାଙ୍ଗକୁ ଉଚ୍ଚ ଚିନ୍ତନରେ ବିଶ୍ୱାସ କରୁଥିଲେ । ଏଇ ସାଧାସିଧା ମହାମାନବ ତାଙ୍କର ଶହେ ତମ ଜନ୍ମଦିବସ ପାଳନର ଅଳ୍ପ କିଛିଦିନ ପୂର୍ବରୁ ଜାନୁୟାରୀ ୧୫, ୧୯୯୮ ମସିହାରେ ଦେହତ୍ୟାଗ କଲେ । ତାଙ୍କ ଦେହାବସାନ ପରେ ମଧ୍ୟ ତାଙ୍କର ଚିନ୍ତାଧାରା ସମସ୍ତଙ୍କ ପାଇଁ ଆଦର୍ଶ ହୋଇ ରହିଛି ।

***

# ଅରୁଣା ଆସଫ୍ ଅଲ୍ଲୀ



୧୯୦୯-୧୯୯୬

ଭାରତରତ୍ନ- ୧୯୯୭

**ପ**ଶ୍ଚିମ ବଙ୍ଗଳାର କାଲ୍କା ସହରରେ ୧୯୦୯ ମସିହା ଜୁଲାଇ ୧୬ ତାରିଖ ଦିନ ଅରୁଣା ଆସଫ୍ ଅଲ୍ଲୀ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପରିବାର ବ୍ରାହ୍ମଧର୍ମାବଲମ୍ବୀ ଥିଲେ । ତାଙ୍କର ଜନ୍ମ ଏକ ବ୍ରାହ୍ମଣ ପରିବାରରେ ହେଲେ ହେଁ ତାଙ୍କ ପରିବାର ବ୍ରାହ୍ମ ସମାଜ ସହିତ ସଂପୃକ୍ତ ଥିଲା । ତାଙ୍କର ପିତା ତିନି ପୁଅ ଏବଂ ଆଉ ଦୁଇ କନ୍ୟାଙ୍କ ଜନକ ଶ୍ରୀ ଗାଙ୍ଗୁଲି ଜଣେ ହୋଟେଲ୍ ମାଲିକ ଥିଲେ । ଅରୁଣାଙ୍କ ଚିନ୍ତାଧାରା ଥିଲା ବିପ୍ଲବାତ୍ମକ । ବାପାଙ୍କ ଇଚ୍ଛା ବିରୁଦ୍ଧରେ ଲାହୋରସ୍ଥିତ ଏକ ଖ୍ରୀଷ୍ଟିୟାନ୍ ମିଶନାରୀ ସ୍କୁଲ ଏବଂ ପରେ ନୈନିତାଲ୍‌ରେ ଖ୍ରୀଷ୍ଟିୟାନ୍ କଲେଜରେ ସେ ଅଧ୍ୟୟନ କରିଥିଲେ । କଲେଜରେ ପାଠ ପଢ଼ିଲା ବେଳେ ମହାତ୍ମାଗାନ୍ଧୀଙ୍କ ଭାବଧାରାରେ ସେ ବହୁଳ ଭାବେ

ପ୍ରଭାବିତ ହୋଇଥିଲେ । ଅସହଯୋଗ ଏବଂ ଅହିଂସା ଆନ୍ଦୋଳନର ଚିନ୍ତାଧାରା ତାଙ୍କୁ ଭାରତର ସ୍ୱାଧୀନତା ସଂଗ୍ରାମର ମହାସ୍ରୋତ ଭିତରକୁ ଟାଣି ଆଣିଥିଲା ।

ଭାରତ ବର୍ଷକୁ ବିଦେଶୀ ଶାସନ ଶୃଙ୍ଖଳରୁ ମୁକ୍ତ କରିବାର ଦୁର୍ବାର ଇଚ୍ଛା ତାଙ୍କୁ ଏକ କ୍ରାନ୍ତିକାରୀ ପଥରେ ପରିଚାଳିତ କରିଥିଲା । ବିଂଶ ଶତାବ୍ଦୀର ୩୦ ଦଶକରେ ସେ ଅସହଯୋଗ ଆନ୍ଦୋଳନରେ ଭାଗ ନେଇ କାରାବରଣ କରିଥିଲେ ।

ଅରୁଣାଙ୍କୁ ମାତ୍ର ୧୮ ବର୍ଷ ହୋଇଥିଲା ଯେତେବେଳେ ସେ ଦିଲ୍ଲୀର ପ୍ରଖ୍ୟାତ ଓକିଲ ଆସଫ୍ ଅଲ୍ଲୀଙ୍କୁ ବିବାହ କରିଥିଲେ । ଆସଫ୍ ଅଲ୍ଲୀ ତାଙ୍କଠାରୁ ବୟସରେ ୨୦ ବର୍ଷ ଅଧିକ, କିନ୍ତୁ ଉଭୟେ ଦେଶପ୍ରେମୀ, ଉଭୟେ ବିଦ୍ରୋହୀ । ସେଥିପାଇଁ ସେମାନେ ବାରମ୍ବାର କାରାବରଣ କରିଛନ୍ତି । ୧୯୩୦ରୁ ୧୯୪୧ ମସିହା ମଧ୍ୟରେ ଏହି ଦମ୍ପତିଙ୍କୁ ଅନେକ ବାର କାରାବରଣ କରିବାକୁ ପଡ଼ିଛି । ସର୍ବଭାରତୀୟ କଂଗ୍ରେସ କମିଟି ଭାରତଛାଡ଼ ଆନ୍ଦୋଳନର ଶୁଭାରମ୍ଭ ସମୟରେ ଭାରତର ତ୍ରିରଙ୍ଗା ପତାକାକୁ ବମ୍ବେ, (ବର୍ତ୍ତମାନର ମୁମ୍ବାଇ)ର ଗୋଆଲିଆଣ୍ଡ ଟ୍ୟାଙ୍କ ମଇଦାନରେ ପୋତିବାର ଯୋଜନା କରିଥାଏ । ଏହି ଯୋଜନାକୁ କାର୍ଯ୍ୟକାରୀ କରି ଅରୁଣା ଆସଫ୍ ଅଲ୍ଲୀ ଉଚ୍ଚ କଣ୍ଠରେ ଭାରତର ଜୟଗାନ ପୂର୍ବକ ପୋଲିସ୍ ଲାଠି ମାଡ଼କୁ ବେଖାତିର କରି ତ୍ରିରଙ୍ଗା ପତାକାକୁ ପୂର୍ବ ନିର୍ଦ୍ଧାରିତ ସ୍ଥାନରେ ଉଡ଼ାଇଥିଲେ ।

ବ୍ରିଟିଶ୍ ସରକାର ସେମାନଙ୍କର ଯୋଜନାର ଖବର ପାଇ ସେଠାକୁ ଆସି ସମସ୍ତ ପ୍ରବୀଣ କଂଗ୍ରେସୀ ନେତାଙ୍କୁ ବନ୍ଦୀ କଲା । ସେହିଁରେ ମହାତ୍ମାଗାନ୍ଧୀ ମଧ୍ୟ ସାମିଲ୍ ଥିଲେ । ପତାକା ଉଡ଼ିବାର କିଛି କ୍ଷଣ ପୂର୍ବରୁ ସେମାନଙ୍କୁ ବନ୍ଦୀ କରାଯାଇଥିଲା । ସେତେବେଳେ ଅନ୍ୟ କେହି ଜାତୀୟ ନେତା ସେଠାରେ ନ ଥିବା ଯୋଗୁଁ ସମବେତ ଜନତା ଅସ୍ଥିର ହୋଇ ଉଠୁଥାଏ । ଏହା ଦେଖି ଅରୁଣା ଆଗେଇଗଲେ ଏବଂ ତ୍ରିରଙ୍ଗା ସେଠାରେ ଉଡ଼ାଇଲେ । ଏହି ଦୃଶ୍ୟ ଅଗଣିତ ଜନତାକୁ ବିମୋହିତ କଲା ଏବଂ ଅରୁଣାଙ୍କୁ ଜଣେ ଜାତୀୟ ନେତାର ସମ୍ମାନ ସ୍ୱତଃ ଦିଆଯାଇଥିଲା । ବ୍ରିଟିଶ୍ ସରକାର ଅରୁଣା ଆସଫ୍ ଅଲ୍ଲୀଙ୍କୁ ବନ୍ଦୀ କରିବା ପାଇଁ ଶତ ଚେଷ୍ଟା କରି ବିଫଳ ହେବା ପରେ ତାଙ୍କୁ ଯିଏ ବନ୍ଦୀ କରି ଆଣିଦେବ ତାଙ୍କ ପାଇଁ ପୁରସ୍କାର ଘୋଷଣା କରାଗଲା । ତେବେ ସେ ପ୍ରାୟ ୩ ବର୍ଷ ପର୍ଯ୍ୟନ୍ତ ମୁକ୍ତ ରହିଲେ । ସେ ଆତ୍ମଗୋପନ କରି ବିଦ୍ରୋହର ପରିଚାଳନା କରୁଥିଲେ । ଗାନ୍ଧିଜୀ ତାଙ୍କୁ ଏକ ପତ୍ର ଲେଖି ଆତ୍ମ ସମର୍ପଣ କରିବାପାଇଁ ପ୍ରବର୍ତ୍ତାଇଲେ । ଗାନ୍ଧିଜୀଙ୍କ ପ୍ରତି ଅରୁଣାଙ୍କର ଗଭୀର ସମ୍ମାନ ଥିଲା । ତଥାପି ସେ ଗାନ୍ଧିଜୀଙ୍କ ଉପଦେଶକୁ ଅସ୍ୱୀକାର କରି ଆତ୍ମ ସମର୍ପଣ କରି ନ ଥିଲେ ।



୧୯୪୬ ମସିହାରେ ବ୍ରିଟିଶ୍ ସରକାର ତାଙ୍କ ଉପରେ ଥିବା ଗିରଫ ପରୱାନାକୁ ପ୍ରତ୍ୟାହାର କରିନେବା ପରେ ଅରୁଣା ଆତ୍ମପ୍ରକାଶ କଲେ । ଅରୁଣା ଆସଫ୍ ଅଲ୍ଲୀ ମୁମ୍ବାଇରେ ପ୍ରଥମେ ତ୍ରିରଙ୍ଗା ଉଡ଼ାଇଥିବା ମହିଳା । ସେତେବେଳେ ସେ କହିଥିଲେ, ''ମୁଁ ଭାରତ ବର୍ଷରେ ବ୍ରିଟିଶ୍ ଶାସନକୁ ଟିକ୍ ଟିକ୍ କରି ଚିରି ଦେବି ।'' ମହାତ୍ମାଗାନ୍ଧୀଙ୍କୁ ହତ୍ୟା କରାଯିବା ସମ୍ବାଦ ଶୁଣିବା ପରେ ଅରୁଣାଙ୍କ ମନରେ ଗଭୀର ବ୍ୟଥା ହେଲା । ଭାରତ ପାକିସ୍ଥାନ ଦୁଇଭାଗ ହେବା ଫଳରେ ଅରୁଣାଙ୍କ ହୃଦୟରେ କଠୋର ଆଘାତ ହୋଇଥିଲା ।

୧୯୪୭ ମସିହାରେ ଦିଲ୍ଲୀର ପ୍ରଦେଶ କଂଗ୍ରେସ କମିଟିର ସଭାନେତ୍ରୀ ଭାବେ ଅରୁଣା ଆସଫ୍ ଅଲ୍ଲୀ ନିର୍ବାଚିତ ହୋଇଥିଲେ । କିନ୍ତୁ ୧୯୪୮ ମସିହାରେ ସେ ସୋସାଲିଷ୍ଟ ଦଳରେ ଯୋଗଦେଇ ଶ୍ରମିକ ଆନ୍ଦୋଳନରେ ଭାଗ ନେଲେ । ୟୁନେସ୍କୋର ମେକ୍ସିକୋଠାରେ ହେଉଥିବା ଅଧିବେଶନରେ ସେ ଡ଼କ୍ଟର ରାଧାକ୍ରିଷ୍ଣନ୍‌ଙ୍କ ସାଙ୍ଗରେ ଭାରତର ପ୍ରତିନିଧିତ୍ୱ କରିଥିଲେ । ୧୯୫୦ରେ ସେ ଋଷିଆ ଯାଇଥିଲେ । ୧୯୫୫ ମସିହାରେ ତାଙ୍କର ସୋସାଲିଷ୍ଟ ଦଳ ସିପିଆଇ ବା କମ୍ୟୁନିଷ୍ଟ ପାର୍ଟି ସହିତ ମିଶିଗଲା ଏବଂ ଅରୁଣା ଆସଫ୍ ଅଲ୍ଲୀ କେନ୍ଦ୍ରୀୟ କମିଟିର ଜଣେ ସଭ୍ୟା ହେଲେ ଏବଂ ଅଲ୍ ଇଣ୍ଡିଆ ଟ୍ରେଡ୍ ୟୁନିୟନ କଂଗ୍ରେସ୍‌ର ଉପସଭାପତି ଭାବେ ନିର୍ବାଚିତ ହେଲେ ।

ଅରୁଣା ଆସଫ ଅଲ୍ଲୀ ୧୯୫୮ ମସିହାରେ ସିପିଆଇ ଦଳ ପରିତ୍ୟାଗ କଲେ ଏବଂ ଦିଲ୍ଲୀର ପ୍ରଥମ ମହିଳା ମେୟର ଭାବେ ନିର୍ବାଚିତ ହେଲେ । ପ୍ରୌଢ଼ ଶିକ୍ଷା, ନିଯୁକ୍ତି ଏବଂ ଚିକିତ୍ସା ସୁବିଧା ଯେପରି ଗରିବ ଶ୍ରେଣୀ ମାନଙ୍କୁ ମିଳିପାରିବ ସେଥିପାଇଁ ସେ ଅନେକ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ମହିଳାମାନଙ୍କର କଲ୍ୟାଣ ପାଇଁ ସେ ଜାତୀୟ ସ୍ତରରେ ''ନ୍ୟାସନାଲ ଫେଡ଼େରେସନ୍ ଇଣ୍ଡିଆନ୍ ଓମ୍ୟାନ୍'' ନାମକ ଏକ ସଂସ୍ଥା ଗଠନ କରିଥିଲେ । ଏହା ପରବର୍ତ୍ତୀ ସମୟରେ ଆନ୍ତର୍ଜାତୀୟ କ୍ଷେତ୍ରରେ ଅନ୍ୟ ଏକ ଅନୁଷ୍ଠାନ ସହିତ ମିଶିଯାଇଥିଲା । ଫଳରେ ଭାରତୀୟ ନାରୀମାନଙ୍କର ପ୍ରଗତି ପାଇଁ ଏକ ପ୍ରସାରିତ ମଞ୍ଚ ଉପଲବ୍ଧ ହୋଇଥିଲା । ଏହି ଆନ୍ତର୍ଜାତୀୟ ଅନୁଷ୍ଠାନର ଉପସଭାନେତ୍ରୀ ଥିଲା ବେଳେ ସେ ଆଫ୍ରିକାରେ ମହିଳାମାନଙ୍କର ନିର୍ଯ୍ୟାତନା ବିରୁଦ୍ଧରେ ସଂଘର୍ଷ କରିଥିଲେ । ସେ ଲିଙ୍କ୍ ଏବଂ ପ୍ୟାଟ୍ରିଅଟ୍ ନାମକ ଦୁଇଟି ଖବରକାଗଜ ସଂପାଦନା କରୁଥିଲେ । ୧୯୬୪ ମସିହାରେ ସେ ପୁନର୍ବାର କଂଗ୍ରେସ୍ ଦଳକୁ ଫେରି ଆସିଥିଲେ । କିନ୍ତୁ ଆଉ ରାଜନୀତିରେ କୌଣସି ସକ୍ରିୟ ଅଂଶ ଗ୍ରହଣ କରୁନଥିଲେ । ସ୍ୱାଧୀନ ଭାରତରେ ରାଜନୀତିର ଗତି ଓ ପ୍ରକୃତି ତାଙ୍କୁ ବିଚଳିତ କରୁଥିଲା ।

ଅରୁଣା ଆସଫ୍ ଅଲ୍ଲୀ ଜଣେ ନିସ୍ୱାର୍ଥପର, ସମ୍ବେଦନଶୀଳ ଏବଂ ସୁନ୍ଦରୀ ମହିଳା ଥିଲେ । ୧୯୮୭ ମସିହାରେ ସେ ଜାତୀୟ ବୁଝାମଣା ପାଇଁ ଉଦ୍ଦିଷ୍ଟ 'ଇନ୍ଦିରାଗାନ୍ଧୀ' ପୁରସ୍କାର ପାଇଥିଲେ । ୧୯୭୫ ମସିହାରେ ସେ 'ଲେଲିନ୍ ଶାନ୍ତି' ପୁରସ୍କାର ଏବଂ ୧୯୯୧ ମସିହାରେ ଆନ୍ତର୍ଜାତିକ ବୁଝାମଣା ପାଇଁ ସେ ଜବାହାରଲାଲ ନେହେରୁ ପୁରସ୍କାର ପାଇଥିଲେ । ଶେଷରେ ସେ ସକ୍ରିୟ ରାଜନୀତିରୁ ଅବସର ନେବା ପରେ ତାଙ୍କର ଶେଷ ଜୀବନ ନୂଆଦିଲ୍ଲୀରେ କଟାଉଥିଲେ । ୧୯୯୬ ମସିହା ଜୁଲାଇ ୨୯ ତାରିଖ ଦିନ ଏହି ମହୀୟସୀ ମହିଳାଙ୍କର ଦେହାବସାନ ହେଲା । ମୃତ୍ୟୁ ପରେ ତାଙ୍କୁ 'ଭାରତ ରତ୍ନ' ସମ୍ମାନରେ ଭୂଷିତ କରାଗଲା । ସେ ଇନ୍ଦିରାଗାନ୍ଧୀ-୧୯୭୧, ଏବଂ ମଦରଟେରେସା-୧୯୮୦ଙ୍କ ପରେ ତୃତୀୟ ମହିଳାଭାବେ 'ଭାରତ ରତ୍ନ' ପୁରସ୍କାର ପାଇଲେ । ଅରୁଣା ଆସଫ ଅଲ୍ଲୀ ତାଙ୍କର ଗଭୀର ଦେଶପ୍ରେମ, ବ୍ରିଟିଶ୍ ସରକାରଙ୍କ ବିରୁଦ୍ଧରେ ଦୁଃସାହସିକ ବିଦ୍ରୋହାତ୍ମକ ପଦକ୍ଷେପ ତଥା ଦୁଃଖୀ ଗରିବ ଜନତାଙ୍କ ପାଇଁ ତାଙ୍କର ସଦାବ୍ୟାକୁଳ ମନ ତାଙ୍କୁ ଚିର ସ୍ମରଣୀୟ କରି ରଖିବ ।

* * *

# ଏମ୍.ଏସ୍ ଶୁବ୍ଧୁଲକ୍ଷ୍ମୀ



୧୯୧୬-୨୦୦୪

ଭାରତରତ୍ନ- ୧୯୯୮

**ମ**ଦୁରାଇ ସହରର ଜଣେ ବିଖ୍ୟାତ ବୀଣାବାଦକ ଶ୍ରୀ ଆନନ୍ମୁଖା ଭାଜିରୁଙ୍କ ଔରସରୁ ୧୯୧୬ ମସିହା ସେପ୍ଟେମ୍ବର ୧୬ ତାରିଖ ଦିନ ଏମ୍.ଏସ୍.ଶୁବ୍ଧୁଲକ୍ଷ୍ମୀଙ୍କ ଜନ୍ମ । ବାଲ୍ୟକାଳରେ ସେ କୁଞ୍ଜାମ୍ମା ନାମରେ ପରିଚିତା ଥିଲେ । ତାଙ୍କର ଜେଜେମା ଅର୍କମଲ୍ ଜଣେ ଭାଓଲିନ୍ ବାଦକ ଥିଲେ । ତେଣୁ କୁଞ୍ଜାମ୍ମା ତାଙ୍କ ଭାଇ ଶକ୍ତିଭେଲ୍ ଏବଂ ଭଉଣୀ ଭାଦିଧୟଲ୍‌ଙ୍କ ଗହଣରେ ଏକ ସଂଗୀତମୟ ପରିବେଶରେ ବଢ଼ିଥିଲେ । ତାଙ୍କ ଘର ମଦୁରାଇସ୍ଥିତ ମିନାକ୍ଷୀ ଦେବୀଙ୍କ ମନ୍ଦିର ନିକଟରେ ଅବସ୍ଥିତ । ଯଦିଓ ତାଙ୍କର ଶାସ୍ତ୍ରୀୟ ସଂଗୀତରେ କୌଣସି ଶିକ୍ଷାଗତ ଯୋଗ୍ୟତା ନ ଥିଲା ତେବେ ପିଲାଦିନରୁ ସେ ମନ୍ଦିରରୁ ଭାସି ଆସୁଥିବା ବିଭିନ୍ନ ଭକ୍ତି ସଂଗୀତ ତଥା ନାଦସ୍ୱରକୁ ଅନୁସରଣ କରି ସେହି ତାଳ

ମାନ ଲୟ ରକ୍ଷାକରି ମଧୁର ସ୍ୱରରେ ଗୀତ ଆବୃତ୍ତି କରୁଥିଲେ । ତା ସାଙ୍ଗକୁ ତାଙ୍କ ମା ବଜାଉଥିବା ବୀଣା ସହିତ ବି ସେ ନିଜର ସ୍ୱର ମିଶେଇବାର ଚେଷ୍ଟା କରୁଥିଲେ । ବାଲ୍ୟକାଳରେ କୁଞ୍ଜାମ୍ମା ବିଭିନ୍ନ ସଭା ସମିତି ବା ନୃତ୍ୟଛନ୍ଦିତ ସଂସ୍ଥାମାନଙ୍କରେ ମାଇକ୍ ବାଜୁଥିବା ଦେଖି କାଗଜରେ କାହାଳୀ ତିଆରି କରି ତା ଭିତରେ ଗୀତ ଗାଉଥିଲେ । ତାଙ୍କର ମା ଯେତେବେଳେ ବୀଣା ବଜାଉଥିଲେ ତାଙ୍କସହିତ ସେ କଣ୍ଠ ସଂଗୀତ ମାଧ୍ୟମରେ ପରିପୂରଣ କରିବା ପାଇଁ ଚେଷ୍ଟା କରୁଥିଲେ । ପିଲାଦିନୁ ଶୁବୁଲକ୍ଷ୍ମୀ ପାଠପଢ଼ା ଅପେକ୍ଷା ସଂଗୀତ ପ୍ରତି ଅଧିକ ଅନୁରକ୍ତି ପ୍ରକାଶ କରୁଥିଲେ । ଷଷ୍ଠ ଶ୍ରେଣୀରେ ପଢ଼ିଲା ବେଳେ ଥରେ ତାଙ୍କର ଶିକ୍ଷକ ତାଙ୍କୁ ବାଡ଼େଇଥିଲେ । ତାର ପ୍ରତିକ୍ରିୟାରେ ତାଙ୍କୁ ଅନେକ ଦିନ ଧରି ଜ୍ୱର ଓ କଫ ଲାଗି ରହିଲା । ଏହାପରେ ଶୁବୁଲକ୍ଷ୍ମୀ ପାଠପଢ଼ା ଛାଡ଼ିଦେଲେ କିନ୍ତୁ ସଂଗୀତ ଶିଖିବାରେ ଅଧିକ ମନୋନିବେଶ କଲେ । ପାଠପଢ଼ାରୁ ଦୂରେଇଯିବା ପରେ ଶୁବୁଲକ୍ଷ୍ମୀ ଅନେକ ପ୍ରସିଦ୍ଧ ସଂଗୀତଜ୍ଞଙ୍କ ପାଖରେ ସଂଗୀତ ଶିକ୍ଷା କଲେ । ସେମାନଙ୍କ ମଧ୍ୟରେ ବୟୋଜ୍ୟେଷ୍ଠ ଶ୍ରୀନିବାସ ଆୟନ୍‌ଗାର, ମୁରଲୀ ସୁବ୍ରମନିଆୟାର ଏବଂ ସେମାଙ୍ଗୁଡ଼ି ଶ୍ରୀନିବାସ ଆୟାର ଆଦି କର୍ଣ୍ଣାଟକ ସଂଗୀତର କର୍ଣ୍ଣଧାରମାନଙ୍କ ନାମ ପ୍ରଣିଧାନ ଯୋଗ୍ୟ । ଏମାନଙ୍କ ଠାରୁ ସଂଗୀତ ଶିକ୍ଷା ହାସଲ କରିବା ପରେ ଶୁବୁଲକ୍ଷ୍ମୀ ଏକକ ସଂଗୀତ ସନ୍ଧ୍ୟା ମାନଙ୍କରେ ମନୋନିବେଶ କଲେ । ସେ ଦେନ୍ ମେଟ୍ ନାମରେ ଲୋକପ୍ରିୟ ହୋଇଉଠିଲେ । ମାତ୍ର ୧୦ ବର୍ଷ ବୟସ ବେଳେ ତାଙ୍କର ପ୍ରଥମ ସଂଗୀତ ରେକର୍ଡ ପ୍ରସ୍ତୁତ ହୋଇଥିଲା । ସେତେବେଳେ ତାଙ୍କର ଆନନ୍ଦ କହିଲେ ନ ସରେ । ତା ପରେ ତାଙ୍କର ଖ୍ୟାତି ମଦୁରାଇରେ ବୃଦ୍ଧି ପାଇବାରେ ଲାଗିଲା । ୧୯୩୨ ମସିହା ବେଳକୁ ଏମ୍.ଏସ୍. ବେଶ୍ ସୁଖ୍ୟାତି ଅର୍ଜନ କରିଥିଲେ । ତା ପରେ ତାଙ୍କ ମା ଶୁବୁଲକ୍ଷ୍ମୀଙ୍କୁ ନେଇ ମାଡ୍ରାସ, (ବର୍ତ୍ତମାନର ଚେନ୍ନାଇ ସହର)କୁ ଆସି ସେହିଠାରେ ସ୍ଥାୟୀ ଭାବେ ବାସ କରିବା ପାଇଁ ମନସ୍ଥ କଲେ । ସେତେବେଳକୁ ସଂଗୀତ ସଭା ମାନଙ୍କରେ କେବଳ ପୁରୁଷ ମାନଙ୍କର ଆଧିପତ୍ୟ ଥାଏ । ମହିଳାମାନେ ପ୍ରାୟତଃ କୌଣସି ସଂଗୀତ ପ୍ରସ୍ତୁତି ଓ ସଂପାଦନ କରୁନଥିଲେ । ସେହି ସମୟରେ ଶୁବୁଲକ୍ଷ୍ମୀଙ୍କର ସଂଗୀତ କ୍ଷେତ୍ରରେ ଆବିର୍ଭାବ ଶ୍ରୋତାମାନଙ୍କ ମନରେ ଅନେକ ଆବେଗ ସୃଷ୍ଟି କଲା ଏବଂ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ତାଙ୍କର ସଂଗୀତ ଶ୍ରବଣ କଲେ । ଶାନ୍ତ ଏବଂ ସୁନ୍ଦର ଅଙ୍ଗ ସୌଷ୍ଟବର ସେ ଏକ ଭାବମୂର୍ତ୍ତି ଥିଲେ । ମଞ୍ଚଉପରେ ଅତ୍ୟଧିକ ଭାବଭଙ୍ଗୀ ନ କରି ସେ କେବଳ ସଂଗୀତର ମାଧୁର୍ଯ୍ୟରେ ନିଜର ସତ୍ତା ହଜେଇ ଦେଉଥିଲେ । ଫଳରେ ଶ୍ରୋତାମାନେ ମଧ୍ୟ ତାଙ୍କ

ସଂଗୀତର ମୂର୍ଚ୍ଛନାରେ ମନ୍ତ୍ରମୁଗ୍ଧ ହେଉଥିଲେ । ତାଙ୍କର ପରାକାଷ୍ଠା ଯୋଗୁଁ ମହିଳାମାନଙ୍କର ସ୍ଥାନ ସଂଗୀତ କ୍ଷେତ୍ରରେ ପ୍ରତିଷ୍ଠିତ ହେବା ସହିତ ସମ୍ମାନିତ ବି ହେଲା ।



ସୁନ୍ଦର ଅଙ୍ଗସୌଷ୍ଠବ ସାଙ୍ଗକୁ ସୁମଧୁର କଣ୍ଠ ଯୋଗୁଁ ସେ ଚଳଚ୍ଚିତ୍ର ଜଗତର ବି ଦୃଷ୍ଟି ଆକର୍ଷଣ କଲେ । ଅନେକ ଚଳଚ୍ଚିତ୍ରରେ ତାଙ୍କୁ ଭୂମିକା ମିଳିଲା । 'ଶିବ ସଦନମ୍' ଚଳଚ୍ଚିତ୍ରରେ ସେ ପ୍ରଥମେ ଅବତୀର୍ଣ୍ଣ ହେଲେ ଏବଂ ତା ପରେ 'ସକୁନ୍ତଳାଇ' ଚଳଚ୍ଚିତ୍ରରେ ମଧ୍ୟ ସେ ଅଭିନୟ କଲେ । ତା ସାଙ୍ଗକୁ ତାଙ୍କର ଅନେକ ଗୀତ ସେ ଚଳଚ୍ଚିତ୍ରରେ ସ୍ଥାନ ପାଇଲା । ଏହା ପରେ ପରେ 'ସାବିତ୍ରୀ' ଏବଂ ତା ପରେ 'ମୀରା' ଚଳଚ୍ଚିତ୍ର, ତାମିଲ୍ ଏବଂ ହିନ୍ଦୀ ଉଭୟ ଭାଷାରେ ମୁକ୍ତି ପାଇଲା । ମେୱାରର ରାଣୀ ମୀରାବାଈଙ୍କ ଚରିତ୍ରରେ ତାଙ୍କର ବ୍ୟକ୍ତିତ୍ୱ ଏବଂ କଣ୍ଠସ୍ୱର ଖୁବ୍ ଜୀବନ୍ତ ହୋଇଥିଲା । ଶ୍ରୀକୃଷ୍ଣଙ୍କର ଜଣେ ଭକ୍ତଭାବେ ମୀରାବାଈ ଚରିତ୍ରରେ ସେ ଅଭିନୟ କଲାବେଳେ ଦର୍ଶକମାନଙ୍କୁ ଯେପରି ଅତୀତର ମୀରାବାଈ ହିଁ ପରଦାରେ ଆର୍ବିଭୂତ ହେଲା ପରି ମନେହେଲା । ଅତି ଅଳ୍ପ ସମୟ ମଧ୍ୟରେ ସେ ଗାନ କରିଥିବା ମୀରାଭଜନ ଗୁଡ଼ିକ ଲୋକପ୍ରିୟ ହୋଇଉଠିଲା ।

ଏମ୍.ଏସ୍‌ଙ୍କ ସ୍ୱାମୀ ତ୍ୟାଗରାଜନ୍ ସଦାଶିବମ୍ ମୀରାବାଈଙ୍କୁ ସଦାବେଳେ ତାଙ୍କର ସଙ୍ଗୀତ ସାଧନା ଏବଂ ଅଭିନୟ କ୍ଷେତ୍ରରେ ଉତ୍ସାହିତ କରୁଥିଲେ । ତେଣୁ ଏମ୍.ଏସ୍ ସବୁବେଳେ ତାଙ୍କର କୃତକାର୍ଯ୍ୟତା ପାଇଁ ତାଙ୍କ ସ୍ୱାମୀ ସଦାଶିବମ୍‌ଙ୍କୁ ପ୍ରଶଂସା କରିଛନ୍ତି । ସଦାଶିବମ୍ ସେତେବେଳର ଜନନାୟକ ଶ୍ରୀରାଜ୍‌ଗୋପାଲାଚାରୀଙ୍କର ଶିଷ୍ୟ ଏବଂ ତାମିଲ୍ ଭାଷାର ଏକ ସାପ୍ତାହିକ ପତ୍ରିକାର ପରିଚାଳକ ଥିଲେ । ତେଣୁ ସେ ନିଜେ ଶୁବୁଲକ୍ଷ୍ମୀ କିପରି ତାଙ୍କ ସଂଗୀତ ଏବଂ ଚଳଚ୍ଚିତ୍ର ଜଗତରେ ପ୍ରତିବନ୍ଧହୀନ ଜୀବନ ପାଇବେ ସେଥିପାଇଁ ଚେଷ୍ଟା କରୁଥିଲେ । ସେଥିପାଇଁ ୧୯୪୦ ମସିହାରେ ଯେତେବେଳେ ସଦାଶିବମ୍ ତାଙ୍କୁ ବିବାହର ପ୍ରସ୍ତାବ ଦେଲେ ଶୁବୁଲକ୍ଷ୍ମୀ ତହିଁରେ ତତ୍‌କ୍ଷଣାତ୍ ସ୍ୱୀକାର କରିଥିଲେ ।

'ମୀରା' ଚଳଚ୍ଚିତ୍ର ପରେ ଏମ୍.ଏସ୍ ଅଭିନୟ ଜଗତରୁ ଅବ୍ୟାହତି ନେଇ କେବଳ ସଂଗୀତ ଶିକ୍ଷା ଏବଂ ସଂଗୀତ ଗବେଷଣାରେ ମନୋନିବେଶ କରିଥିଲେ । ସେ ଅନେକ ଭକ୍ତି ରସାପ୍ଲୁତ ସଂଗୀତ ପ୍ରସ୍ତୁତ କରିଛନ୍ତି । ତନ୍ମଧ୍ୟରେ ତିରୁପତି ଅଧିଷ୍ଠିତ ଶ୍ରୀ ଭେଙ୍କଟେଶ୍ୱରଙ୍କ ଜଣାଣ, ସୁପ୍ରଭାତମ୍, ବିଷ୍ଣୁ ସହସ୍ର ନାମ, ପୁଟ୍ଟପର୍ତ୍ତିର ଭଗବାନ ଶ୍ରୀ ସତ୍ୟସାଇବାବା, ଆଦି ଶଙ୍କରାଚାର୍ଯ୍ୟ ଦେବଙ୍କର ଭଜଗୋବିନ୍ଦମ୍ ଆଦି ସଂଗୀତ ସେ ପ୍ରସ୍ତୁତ କରି ଖ୍ୟାତି ଲାଭ କରିଛନ୍ତି । ତାଙ୍କର ପ୍ରାଣ ପ୍ରାଚୁର୍ଯ୍ୟ ଭରିଥିବା ଏଇ ଭକ୍ତି ସଂଗୀତଗୁଡ଼ିକ ଦ୍ୱାରା ଜନମାନସରେ ଆଧ୍ୟାତ୍ମିକ ଚେତନା ଜାଗ୍ରତ କରାଇବାରେ ସକ୍ଷମ ହୋଇଥିଲେ ।

୧୯୪୪ ମସିହାରେ ଶୁବ୍ବୁଲକ୍ଷ୍ମୀ କସ୍ତୁରିବା ମାରାତି ପାଇଁ ଦାନ ସଂଗ୍ରହ କରିବା ଉଦ୍ଦେଶ୍ୟରେ ଅନେକ ଗୁଡ଼ିଏ ସଂଗୀତ କନ୍‌ସର୍ଟ ଆୟୋଜନ କରି ତହିଁରେ କଣ୍ଠସ୍ୱର ପରିବେଷଣ କଲେ । ଏହା ପରେ ସେ ଏବଂ ତାଙ୍କର ସ୍ୱାମୀ ସଦାଶିବମ୍ ଅନେକ ଦାତବ୍ୟ ଅନୁଷ୍ଠାନ ପାଇଁ ସଂଗୀତ କାର୍ଯ୍ୟକ୍ରମ ପରିବେଷଣ କରିଛନ୍ତି । ତାଙ୍କ ରେକର୍ଡରୁ ମିଳୁଥିବା ରୟାଲ୍‌ଟିର ଏକ ମୁଖ୍ୟ ଅଂଶ ସେ ଜନକଲ୍ୟାଣ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ଅନେକ ଅନୁଷ୍ଠାନକୁ ଦାନ କରିଛନ୍ତି । ତାଙ୍କୁ ମିଳିଥିବା ରାମମୋହନ ମାଗାସେସେ ପୁରସ୍କାର ସଂଗୀତ ପାଇଁ ନୁହେଁ ବରଂ ତାଙ୍କର ସମାଜ ସେବା ପାଇଁ ଉଦ୍ଦିଷ୍ଟ ଥିଲା । ସେଇ ପୁରସ୍କାର ରାଶି ଦଶହଜାର ଡ଼ଲାରକୁ ସେ ଭାରତ ବର୍ଷରେ କେତେକ ଦାତବ୍ୟ ଅନୁଷ୍ଠାନକୁ ଦାନ କରିଥିଲେ ।

ଏମ୍.ଏସ୍ ଶୁବ୍ବୁଲକ୍ଷ୍ମୀଙ୍କ ସଂଗୀତକୁ ସମ୍ମାନ ଦେଉଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ମହାତ୍ମାଗାନ୍ଧୀ, ପଣ୍ଡିତ ଜବାହାରଲାଲ୍ ନେହେରୁ, ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ, ଶ୍ରୀମତୀ ସରୋଜିନୀ ନାଇଡୁ, ହରିପ୍ରସାଦ ଚୌରାସିଆ ଏବଂ ଅମ୍‌ଜାଦ୍ ଅଲି ଖାନ୍ ଆଦି ପ୍ରଧାନ । କୋକିଳ କଣ୍ଠୀ, ମେଲୋଡି କୁଇନ୍, ସଂଗୀତ ରାଣୀ ଲତା ମଙ୍ଗେସ୍‌କର ମଧ୍ୟ ଏମ୍.ଏସ୍. ଶୁବ୍ବୁଲକ୍ଷ୍ମୀଙ୍କର ଜଣେ ବଡ଼ ପ୍ରଶଂସିକା । ଥରେ 'ଶୁବ୍ବୁଲକ୍ଷ୍ମୀ ବୈଷ୍ଣବ ଜନତୋ ତେନେ କହି' ଭକ୍ତି ସଂଗୀତ ପରିବେଷଣ କଲାବେଳେ ମହାତ୍ମା ଗାନ୍ଧୀଙ୍କ ଆଖିରୁ ଲୁହ ଝରି ଆସିଥିଲା । ପଣ୍ଡିତ ଜବାହାର୍‌ଲାଲ୍ ନେହେରୁ ତାଙ୍କର ସଂଗୀତ ଶୁଣିବା ପରେ ଥରେ କହିଥିଲେ, ''ମୁଁ ତ ନିଜକୁ ଜଣେ ସାମାନ୍ୟ ପ୍ରଧାନମନ୍ତ୍ରୀ ବୋଲି ଭାବୁଛି । ଯେହେତୁ ମୋ ସାମ୍ନାରେ ସଂଗୀତ ଜଗତର ସାମ୍ରାଜ୍ଞୀ ଶ୍ରୀମତୀ ଶୁବ୍ବୁଲକ୍ଷ୍ମୀ ଅଛନ୍ତି'' ।

ଶୁବ୍ବୁଲକ୍ଷ୍ମୀ ଭାରତ ବର୍ଷ ତଥା ବିଦେଶର ବିଭିନ୍ନ ମଞ୍ଚରେ ସଂଗୀତ ପରିବେଷଣ କରି ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରିଛନ୍ତି । ଅନେକ ବିଶ୍ୱବିଦ୍ୟାଳୟ ତାଙ୍କୁ ଡ଼କ୍ଟରେଟ୍ ଉପାଧି ଦେଇଛନ୍ତି । ସେ ଯେଉଁ ଅନ୍ୟାନ୍ୟ ପୁରସ୍କାର ଏବଂ ସମ୍ମାନ ପାଇଛନ୍ତି ତନ୍ମଧ୍ୟରେ ୧୯୫୪ ମସିହାରେ 'ପଦ୍ମଭୂଷଣ', ୧୯୬୮ରେ ସଂଗୀତ 'କଳାମେଘି', 'ରମଣ ମାଗାସେସେ' ପୁରସ୍କାର ଏବଂ 'ପଦ୍ମବିଭୂଷଣ' ପୁରସ୍କାର ଅନ୍ୟତମ । ତେବେ ୧୯୯୮ ମସିହାରେ ତାଙ୍କୁ ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନରେ ଭୂଷିତ କରାଯାଇଥିଲା । ପୁରସ୍କାର ନେଲାବେଳେ ଶୁବ୍ବୁଲକ୍ଷ୍ମୀଙ୍କର ଦୁଇ ଆଖିରୁ ଅବିରତ ଲୁହର ଧାର ଛୁଟିଥିଲା । ସେ କହିଥିଲେ ଏଇ ସୁଖଦ ବେଳାରେ ତାଙ୍କର ପଥପ୍ରଦର୍ଶନକାରୀ ତାଙ୍କର ମାର୍ଗଦର୍ଶକ, ତାଙ୍କ ଉପଦେଷ୍ଟା ସ୍ୱାମୀ ପି. ସଦାଶିବମ୍ ଆଉ ନାହାନ୍ତି । ଏଇ ଶୁଭ ମୁହୂର୍ତ୍ତକୁ ଦେଖିଥିଲେ ସେ ହୁଏତ ଦୁନିଆର ସବୁଠାରୁ ସୁଖୀ ହୋଇଥାନ୍ତେ । ୧୯୯୭ ମସିହାରେ ସଦାଶିବମ୍ ଇହଲୀଳା ସମ୍ବରଣ କରିଥିଲେ । ତା ପରଠାରୁ ଏମ୍.ଏସ୍. ମଞ୍ଚ ଉପରେ ସଂଗୀତ ପରିବେଷଣ କରିବାରୁ ଅବ୍ୟାହତି ନେଇଥିଲେ ।

ଦକ୍ଷିଣ ଭାରତର ପ୍ରଥମ ସଂଗୀତଜ୍ଞ ଭାବେ ଶୁବ୍ବୁଲକ୍ଷ୍ମୀଙ୍କୁ 'ଭାରତ ରତ୍ନ' ସମ୍ମାନ ମିଳିଥିଲା । ଶୁବ୍ବୁଲକ୍ଷ୍ମୀଙ୍କର ସଂଗୀତ ଏବେବି ମୂର୍ଚ୍ଛନା ତୋଳୁଛି ଭାରତର କୋଣ ଅନୁକୋଣରେ । ତାଙ୍କର କାଳଜୟୀ ଭକ୍ତି ସଂଗୀତ ଏବେ ମଧ୍ୟ ମନରେ ଆଧ୍ୟାତ୍ମିକ ଚେତନାର ଭାବାବେଶ ସୃଷ୍ଟି କରୁଛି ।

* * *

# ଚିଦାମ୍ବରମ୍ ସୁବ୍ରମନିୟମ୍ (ସିଏସ୍)



୧୯୧୦

ଭାରତରତ୍ନ - ୧୯୯୮

୧୯୬୪ ମସିହାରେ ଭାରତ ବର୍ଷର ରାଜନୈତିକ, ଅର୍ଥନୈତିକ ଓ ସାମରିକ ଦୃଷ୍ଟିରୁ ଏକ ସଂକଟମୟ ପରିସ୍ଥିତିର ସମ୍ମୁଖୀନ ହୋଇଥିଲା । ରାଜନୈତିକ କ୍ଷେତ୍ରରେ ଭାରତର ପ୍ରଥମ ଏବଂ ଜନପ୍ରିୟ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ୍ ନେହେରୁଙ୍କ ମୃତ୍ୟୁ ଘଟିଲା । ସାମରିକ କ୍ଷେତ୍ରରେ ୧୯୬୨ ମସିହାରେ ଚୀନ୍ ଭାରତ ଆକ୍ରମଣ କରିବା ଫଳରେ କେତେକ ଅସ୍ଥିରତା ଦେଖାଦେଇଥିଲା । ଅର୍ଥନୈତିକ କ୍ଷେତ୍ରରେ ଭାରତର ଶତକଡ଼ା ୮୦ ଭାଗ ଜନତା କୃଷି ଉପରେ ନିର୍ଭରଶୀଳ ହୋଇଥିବାରୁ, କୃଷି କ୍ଷେତ୍ରରେ ଉତ୍ପାଦନ ହ୍ରାସ ପାଇଥିବାରୁ, ଭାରତର ବର୍ଦ୍ଧିତ ଜନସଂଖ୍ୟାକୁ ଖାଦ୍ୟଯୋଗାଣ ଏକ ସଙ୍କଟମୟ ପରିସ୍ଥିତିରେ ପହଞ୍ଚି ଥିଲା । ସେହି ସମୟରେ ଲାଲ୍ ବାହାଦୁର ଶାସ୍ତ୍ରୀ ଆମ

ଦେଶର ପ୍ରଧାନମନ୍ତ୍ରୀ ପଦରେ ଅଧିଷ୍ଠିତ ହେଲେ । ତତ୍କାଳୀନ ଦୁଃଖଦ ପରିସ୍ଥିତିକୁ ଲକ୍ଷ୍ୟ କରି ସେ ତାଙ୍କର କାର୍ଯ୍ୟ ପଦ୍ଧତିରେ ଏକ ବୈପ୍ଲବିକ ପରିବର୍ତ୍ତନ ଆଣି ଦେଶରେ ଜୟ ଜବାନ, ଜୟ କିଶାନ୍ ସ୍ଲୋଗାନ୍‌ର ପ୍ରଚାର କଲେ । ରାଜନୈତିକ ଇଚ୍ଛାଶକ୍ତି, ସାମରିକ ଶକ୍ତିକୁ ପରିମାର୍ଜିତ ଏବଂ ସଂଗଠିତ କରିବା ଏବଂ କୃଷି କ୍ଷେତ୍ରରେ ବୈପ୍ଲବିକ ପରିବର୍ତ୍ତନ ଆଣିବାରେ ଅଙ୍ଗୀକାର ବଦ୍ଧ ହେଲା । ତତ୍କାଳୀନ ଇସ୍ପାତ ଖଣି ଏବଂ ଶିଳ୍ପ ମନ୍ତ୍ରୀ ସି ସୁବ୍ରମନିୟମ୍‌ଙ୍କୁ ତାଙ୍କର ପୂର୍ବତନ ବିଭାଗରୁ ଆଣି ଶ୍ରୀଯୁକ୍ତ ଶାସ୍ତ୍ରୀ କୃଷିମନ୍ତ୍ରୀ ଭାବରେ ଅବସ୍ଥାପିତ କଲେ । ଅନେକ ଭାବିଥିଲେ ଯେ ଏହା ସି ସୁବ୍ରମନିୟମ୍‌ଙ୍କର ପଦମର୍ଯ୍ୟାଦାକୁ କ୍ଷୁର୍ଣ୍ଣ କରିଛି କିନ୍ତୁ ପ୍ରକୃତ ପକ୍ଷେ ଘଟଣାଟି ଅନ୍ୟ ପ୍ରକାର ଥିଲା ।

ପାଶ୍ଚାତ୍ୟ ଜଗତରେ ଅତୀତରେ ଶିଳ୍ପ ବିପ୍ଲବ ଦେଖାଦେଇ ଯେପରି ତାଙ୍କର ଅର୍ଥନୀତି ଏବଂ ସାମାଜିକ ସ୍ଥିତିରେ ଉନ୍ନତି ଆଣିଥିଲା ସେହି ଢ଼ାଞ୍ଚାରେ ଶ୍ରୀ ସୁବ୍ରମନିୟମ୍ ଭାରତବର୍ଷରେ ସବୁଜ ବିପ୍ଳବ ଆରମ୍ଭ କଲେ । କୃଷି କ୍ଷେତ୍ରରେ ସଂପୂର୍ଣ୍ଣ କ୍ରାନ୍ତି ଆଣିବା ଉଦ୍ଦେଶ୍ୟ କଲେ । ସେ ପ୍ରଥମେ ସଂପୂର୍ଣ୍ଣ କ୍ରାନ୍ତି ଆଣି ଭାରତ ବର୍ଷକୁ ଖାଦ୍ୟଶସ୍ୟରେ ଆତ୍ମନିର୍ଭରଶୀଳ କରିବା ଉଦ୍ଦେଶ୍ୟରେ ଅନେକ ନୂତନ ପଦ୍ଧତି ଗ୍ରହଣ କଲେ । ପୂର୍ବରୁ ଆମ ଦେଶରେ ଯେଉଁଭଳି ଭାବେ ଖାଦ୍ୟଶସ୍ୟ ଉତ୍ପାଦନ ଏବଂ ବିକ୍ରୟ କରାଯାଉଥିଲା ତାକୁ ପର୍ଯ୍ୟାୟ କ୍ରମେ ସେ ପରିବର୍ତ୍ତନ କରିବାକୁ ଚେଷ୍ଟା କଲେ । ଗରିବ ଚାଷୀମାନଙ୍କୁ ଯେପରି ତାଙ୍କର ଶ୍ରମର ଉଚିତ ମୂଲ୍ୟ ମିଳିବ ସେଥିପାଇଁ ସେ ନୀତି ପ୍ରଣୟନ କରିବା ସହିତ ଗୋଟିଏ ଏଗ୍ରିକଲ୍‌ଚରାଲ୍ ପ୍ରାଇସେସ୍ କମିଶନ ଏବଂ ଫୁଡ୍ କର୍ପୋରେସନ୍ ଅଫ୍ ଇଣ୍ଡିଆ ୧୯୬୫ ମସିହାରେ ଗଠନ କଲେ । କୃଷିଭିତ୍ତିକ ପ୍ରବୀଣ ଡ଼କ୍ଟର ଭିପି ପାଲ୍ ନାମକ ପ୍ରଖ୍ୟାତ ବୈଜ୍ଞାନିକଙ୍କୁ ଇଣ୍ଡିଆନ କାଉନ୍‌ସିଲ୍ ଅଫ୍ ଏଗ୍ରିକଲଚରାଲ ରିସର୍ଚ୍ଚର ଡ଼ାଇରେକ୍ଟର ଜେନେରାଲ ଭାବେ ନିଯୁକ୍ତ କଲେ । ପ୍ରତ୍ୟେକଟି ଗବେଷଣାର ସମୟ ନିର୍ଦ୍ଧାରଣ କରାଗଲା ଏବଂ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ଗବେଷଣା କରାଗଲା । ତା ପରେ ସୁବ୍ରମନିୟମ ଚାହିଁଲେ ମେକ୍‌ସିକୋରେ ହେଉଥିବା ଏବ୍‌ୱାଇର ଗହମ ମଞ୍ଜି ଆମଦାନୀ କରିବା ପାଇଁ । କିନ୍ତୁ ଆମର ପାର୍ଲାମେଣ୍ଟ ଏବଂ ବିଭିନ୍ନ ସାମାଜିକ ତଥା ପ୍ରଶାସନିକ ଅଧିକାରୀ ମାନେ ଏହାର ବିରୋଧ କରିଥିଲେ । ତେବେ ଏ ସବୁ ବାଧାବିଘ୍ନକୁ ଅତିକ୍ରମ କରି ସେ ନିର୍ଭୟରେ ମେକ୍‌ସିକୋରୁ ଗହମ ମଞ୍ଜି ମଗାଇଲେ । ଏ କ୍ଷେତ୍ରରେ ପ୍ରଥମେ ଶ୍ରୀ ଲାଲ୍ ବାହାଦୂର ଶାସ୍ତ୍ରୀ ଏବଂ ପରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ପୂର୍ଣ୍ଣ ସହଯୋଗ ଏବଂ ସ୍ୱୀକୃତି ସେ ପାଇଥିଲେ । ଦେଖାଗଲା ଆମ ଦେଶରେ ଏହି ମଞ୍ଜିରୁ ଯେଉଁ

ଖାଦ୍ୟଶସ୍ୟ ଉତ୍ପାଦିତ ହେଲା ତାହା ଆଶ୍ଚର୍ଯ୍ୟଜନକ ଭାବେ ଆମର ଖାଦ୍ୟ ସମସ୍ୟା ସମାଧାନରେ ସାହାଯ୍ୟ କରିଥିଲା । ଦେଶର ଖାଦ୍ୟଶସ୍ୟ ଉତ୍ପାଦନ ହଠାତ୍ ୨ ଗୁଣରୁ ଅଧିକ ହୋଇପାରିଲା । ୬୭-୬୮ କୃଷି ବର୍ଷରେ ଆମର ଚାଷୀମାନେ ୧୭ ମିଲିୟନ ଅର୍ଥାତ୍ ୧.୭ କୋଟି ଟନ୍‌ର ଗହମ ଉତ୍ପାଦନ କରିବାକୁ ସକ୍ଷମ ହେଲେ । ଅବସ୍ଥା ଏପରି ହେଲା ଯେ ଉତ୍ପାଦିତ ଗହମକୁ ରଖିବା ପାଇଁ ସ୍ଥାନାଭାବ ଘଟିଲା । ଫଳରେ ପଞ୍ଜାବରେ ବିଭିନ୍ନ ପ୍ରାଇମେରୀ ସ୍କୁଲ୍ ଆଦିକୁ ବନ୍ଦ କରି ସେହି ଗହମର ଭଣ୍ଡାରୀକରଣ କରାଯାଇଥିଲା । ସାରା ଦେଶ ସେଥିପାଇଁ ସି ସୁବ୍ରମନିୟମ୍‌ଙ୍କର କୃତିତ୍ୱର ପ୍ରଶଂସା କଲେ ବି ସେ ନିଜେ ନମ୍ରତାର ସହିତ ଏହି ସଫଳତା ଚାଷୀଭାଇମାନଙ୍କ ଯୋଗୁଁ ହିଁ ସମ୍ଭବ ବୋଲି କହିଥିଲେ । ସେମାନଙ୍କର ନିଷ୍ଠା ଏବଂ ପୂର୍ବ ଅଭିଜ୍ଞତା ତଥା କର୍ମତତ୍ପରତା ଯୋଗୁଁ ଏହି ପ୍ରଚେଷ୍ଟା ସଫଳ ହେଲା ବୋଲି ସିଏସ୍ ବୟାନ ଦେଲେ ।

ସିଏସ୍ ଜଣେ ସଫଳ ସାଂସଦ, ଜଣେ ସୁନାମଧନ୍ୟ ଲେଖକ ତଥା ଅସାଧାରଣ ବକ୍ତା ଭାବେ ସର୍ବଜନ ସ୍ୱୀକୃତ । ଏହି ମହାନ୍ ବ୍ୟକ୍ତିଙ୍କର ଜନ୍ମ ୧୯୧୦ ମସିହା ଜାନୁୟାରୀ ୩୦ ତାରିଖ ଦିନ । ସେଙ୍ଗକୁରା ପକାୟମ୍ ତାମିଲ୍‌ନାଡୁ ରାଜ୍ୟର ଏକ ପଲ୍ଲୀ ଗ୍ରାମରେ କୃଷକ ପରିବାରରେ ହୋଇଥିଲା । ଏହି ପରିବାରର ତୁଳା ଏବଂ ଚିନାବାଦାମର ଦୁଇଟି ମିଲ୍ ଥାଏ । ତାଙ୍କ ଗାଁରେ କୌଣସି ଶିକ୍ଷାନୁଷ୍ଠାନ ନ ଥାଏ । ତେଣୁ ଗାଁର ଝିଅମାନେ ସ୍କୁଲ୍‌କୁ ଯାଇପାରନ୍ତି ନାହିଁ । ଗାଁରେ ଥିବା ଏକମାତ୍ର ଶିକ୍ଷକ କେବଳ ବାଳକ ମାନଙ୍କୁ ପଢ଼େଇଥାନ୍ତି । ଏହି ଅବସ୍ଥାରେ ସିଏସ୍ ତାଙ୍କର ପ୍ରାଥମିକ ଶିକ୍ଷା ଶେଷ କରିଥିଲେ । ପରେ ସେ କୋଲାବିରେ ଥିବା ଏକ ସେକେଣ୍ଡାରୀ ସ୍କୁଲ୍‌ରେ ଯୋଗ ଦେଇଥିଲେ । ତାଙ୍କର କକା ଏକମାତ୍ର ବ୍ୟକ୍ତି ଯେ କି କୌଣସି ସ୍କୁଲ୍‌ରେ ଶିକ୍ଷାଗ୍ରହଣ କରିଥିଲେ । ଏହି କକା ପରବର୍ତ୍ତୀ ସମୟରେ ବେଲୁଡ଼ସ୍ଥିତ ରାମକ୍ରିଷ୍ଣମିଶନ୍‌ରେ ଯୋଗଦେଇ ସାଂସାରିକ ଜୀବନରୁ ଅବ୍ୟାହତି ନେଇଥିଲେ । ପରବର୍ତ୍ତୀ ସମୟରେ ସେ ସ୍ୱାମୀ ଶିବ୍ ଭାବାନନ୍ଦ ନାମରେ ପରିଚିତ ହେଲେ । ତାଙ୍କର କକାଙ୍କ ଦ୍ୱାରା ସିଏସ୍ ବହୁଳଭାବେ ପ୍ରଭାବିତ ହୋଇଥିଲେ । ମାଡ୍ରାସ୍ (ଚେନ୍ନାଇ)ର ପ୍ରେସିଡ଼େନ୍‌ସି କଲେଜ୍‌ରେ ସିଏସ୍ ପାଠ ପଢୁଥିଲାବେଳେ ସାଇମନ କମିଶନ୍ ତାଙ୍କ କଲେଜ ପରିଦର୍ଶନରେ ଆସିଥିଲେ । କଲେଜର ସମସ୍ତ ଛାତ୍ରଛାତ୍ରୀ ସାଇମନ କମିଶନ୍ ବିରୁଦ୍ଧରେ ସ୍ଲୋଗାନ୍ ଦେଇ କଳାଟୋପି ପିନ୍ଧିଥିଲେ । ପାଠପଢ଼ିଲାବେଳରୁ ସିଏ ଗାନ୍ଧିଜୀଙ୍କର ଅହିଂସା ନୀତି ଏବଂ ତାଙ୍କର ଅହିଂସା ଆନ୍ଦୋଳନ ଦ୍ୱାରା ପ୍ରଭାବିତ ହୋଇଥିଲେ ଏବଂ ସୁବ୍ରମନିୟା ଭାରତୀ ଲିଖିତ

ଦେଶାତ୍ମବୋଧ ସଂଗୀତ ଗାଉଥିଲେ । ସିଏସ୍ ଲ' ପାଠ୍ୟକ୍ରମ ସାରିବା ପରେ କୋଏମ୍ବାଟୁରରେ କେତେକ ପ୍ରସିଦ୍ଧ ଓକିଲଙ୍କ ସହିତ କାମ କଲେ ଏବଂ ପରବର୍ତ୍ତୀ ସମୟରେ କଂଗ୍ରେସ୍‌ର ଜଣେ ସ୍ୱେଚ୍ଛାସେବୀ ଭାବେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ । ସମସ୍ତ ଆନ୍ଦୋଳନ ଯଥା ଅସହଯୋଗ ଆନ୍ଦୋଳନ, ୧୯୪୧ ମସିହାରେ ବ୍ୟକ୍ତିଗତ ସତ୍ୟାଗ୍ରହ ଏବଂ ୧୯୪୨ରେ ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦେଇଥିବାରୁ ତାଙ୍କୁ କାରାବରଣ କରିବାକୁ ପଡ଼ିଥିଲା ।

ଦେଶ ସ୍ୱାଧୀନ ହେବା ପରେ ସିଏସ୍ ମାଡ୍ରାସ ବିଧାନସଭାରେ ୧୯୫୨ରୁ ୧୯୬୨ ପର୍ଯ୍ୟନ୍ତ ସଭ୍ୟ ଭାବେ ନିର୍ବାଚିତ ହୋଇ ଯୋଗ ଦେଲେ । ରାଜ୍ୟ ମନ୍ତ୍ରୀଭାବେ ସେ ବିଭିନ୍ନ ବିଭାଗର ଦାୟିତ୍ୱ ସମ୍ଭାଳିଥିଲେ । ଶ୍ରୀଯୁକ୍ତ ରାଜଗୋପାଳାଚାରୀ ଏବଂ ଶ୍ରୀ କେ କାମରାଜ୍ ଯେତେବେଳେ ମାଡ୍ରାସ (ବର୍ତ୍ତମାନର ଚେନ୍ନାଇ)ର ମୁଖ୍ୟମନ୍ତ୍ରୀ ଥିଲେ ସେମାନଙ୍କୁ ସେ ସହଯୋଗ କରି ତାମିଲ୍‌ନାଡୁରେ ଅନେକ ପ୍ରଶାସନିକ ପରିବର୍ତ୍ତନ କରିବାରେ ସକ୍ଷମ ହୋଇଥିଲେ । ରାଜାଜୀଙ୍କ ମନ୍ତ୍ରୀମଣ୍ଡଳରେ ୧୯୫୨ ମସିହାରେ ସିଏସ୍‌ଙ୍କୁ କ୍ୟାବିନେଟ୍ ମନ୍ତ୍ରୀପଦ ପାହ୍ୟା ମିଳୁଥିଲା । ରାଜାଜୀଙ୍କ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଏବଂ ଭକ୍ତି ରହିଥିଲା । ସିଏସ୍ ନିର୍ବାଚନ ଲଢ଼ିବା ପାଇଁ ରାଜାଜୀ ଚାହୁଁଥିଲେ । କିନ୍ତୁ କାମ୍‌ରାଜ୍ ଇଲେକ୍‌ସନ ଜିତିଲେ । ତେବେ କାମ୍‌ରାଜ୍ ସିଏସ୍‌ଙ୍କର ମୂଲ୍ୟକୁ ହୃଦୟଙ୍ଗମ କରୁଥିଲେ । ତେଣୁ ତାଙ୍କୁ ସେ ଅର୍ଥ, ଶିକ୍ଷା ଏବଂ ଆଇନ୍ ମନ୍ତ୍ରୀ ଭାବେ ତାଙ୍କ ମନ୍ତ୍ରୀମଣ୍ଡଳରେ ନିଯୁକ୍ତ କଲେ । ସିଏସ୍ ମଧ୍ୟ କାମ୍‌ରାଜ୍‌ଙ୍କୁ ସମ୍ପୂର୍ଣ୍ଣ ସହଯୋଗ କରିଥିଲେ । ୧୯୫୪ରୁ ୧୯୬୩ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀଥିବା ସମୟରେ କାମ୍‌ରାଜ୍ ତାମିଲ୍‌ନାଡୁରେ ଅନେକ ସଂସ୍କାର ଆଣିଥିଲେ । ଶିକ୍ଷାକୁ ସେ ପ୍ରାଥମିକତା ଦେଇଥିଲେ । ନୂଆ ସ୍କୁଲ୍ ଖୋଲିବା ସାଙ୍ଗେ ସାଙ୍ଗେ ପ୍ରତ୍ୟେକ ସ୍କୁଲ ପାଇଁ ଘର, ଲାଇବ୍ରେରୀ ଏବଂ ପରୀକ୍ଷାଗାର ଇତ୍ୟାଦି ପାଇଁ ସେ ଗୁରୁତ୍ୱ ଦେଇଥିଲେ । ଗ୍ରାମାଞ୍ଚଳର ବିଦ୍ୟୁତିକରଣ ପାଇଁ ସେ ସ୍ୱତନ୍ତ୍ରଭାବେ ଧ୍ୟାନ ଦେଇଥିଲେ । କୃଷି କ୍ଷେତ୍ରରେ ଅତି ଅଳ୍ପ ସମୟରେ ସେ ଅନେକ ଜଳସେଚନ ଯୋଜନା ମାନ କାର୍ଯ୍ୟକାରୀ କରାଇଥିଲେ । ସରକାରଙ୍କୁ ବିଭିନ୍ନ ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ଉତ୍ସାହିତ କରିବା ଫଳରେ ଅତି କମ୍ ସମୟ ମଧ୍ୟରେ ତାମିଲ୍‌ନାଡୁ ରାଜ୍ୟ ଅର୍ଥନୈତିକ ଦୃଷ୍ଟିରୁ ଏକ ବିକଶିତ ରାଜ୍ୟଭାବେ ପ୍ରତିଷ୍ଠିତ ହୋଇପାରିଥିଲା ।

ଦେଶର ଜାତୀୟ ବିକାଶ ପରିଷଦରେ ଯୋଗଦାନ କରିବା ପାଇଁ ସିଏସ୍ ବାରମ୍ବାର ଦିଲ୍ଲୀ ଆସିଥିଲେ । ଜବାହାର୍‌ଲାଲ୍ ନେହେରୁ ଶ୍ରୀ ସୁବ୍ରମନିୟମ୍‌ଙ୍କର ଭାଷଣ

ଶୈଳୀ ଏବଂ ପ୍ରଶାସନିକ ବିଜ୍ଞତାରେ ମୁଗ୍ଧ ହୋଇ ତାଙ୍କୁ କେନ୍ଦ୍ରୀୟ ମନ୍ତ୍ରୀମଣ୍ଡଳରେ ଯୋଗଦେବାପାଇଁ ନିମନ୍ତ୍ରଣ କଲେ । ସିଏସ୍ ପ୍ରଥମେ ଇସ୍ପାତ, ଖଣି ଏବଂ ହେଭି ଇଞ୍ଜିନିୟରିଂ ଏବଂ ପରେ କୃଷିମନ୍ତ୍ରୀଭାବେ ନିଯୁକ୍ତି ପାଇଲେ । ୧୯୭୧ ମସିହାରେ ଶ୍ରୀ ଚରଣସିଂଙ୍କ ମନ୍ତ୍ରୀମଣ୍ଡଳରେ ଦେଶର ପ୍ରତିରକ୍ଷା ମନ୍ତ୍ରୀ ଭାବେ ସେ ଅଧିଷ୍ଠିତ ହେଲେ । ଶ୍ରୀ ସୁବ୍ରମନିୟମ ଜଣେ ବିବେକୀ ଏବଂ ଧର୍ମପରାୟଣ ବ୍ୟକ୍ତି ଥିଲେ । କୌଣସି ସମୟରେ ମନ୍ତ୍ରୀମଣ୍ଡଳର ମତାମତ ଉପରେ ସେ ଅସମ୍ମତ ହେଲେ ତତ୍‌କ୍ଷଣାତ୍ ଇସ୍ତଫା ପତ୍ର ଦେବାପାଇଁ କୁଣ୍ଠିତ ହେଉନଥିଲେ । ୧୯୬୫ ମସିହାରେ ଯେତେବେଳେ କେନ୍ଦ୍ରୀୟ ସରକାର ହିନ୍ଦୀକୁ ତାମିଲ୍‌ନାଡୁରେ ବାଧତାମୂଳକ ଭାବେ ଶିକ୍ଷା ପ୍ରସାର କଲେ ସେତେବେଳେ ସିଏସ୍ ଇସ୍ତଫା ଦେଲେ । ୧୯୬୯ ମସିହାରେ କଂଗ୍ରେସର ବିଭାଜନ ଘଟିଲା ବେଳେ ସିଏସ୍ କାମରାଜ୍‌ଙ୍କ ପାର୍ଟିରୁ ଚାଲିଯାଇ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ଦଳରେ ଯୋଗଦେଲେ । କିନ୍ତୁ ୧୯୭୫ ମସିହାରେ ଶ୍ରୀମତୀ ଇନ୍ଦିରାଗାନ୍ଧୀ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରିବା ପରେ ସେ ଶ୍ରୀମତୀ ଗାନ୍ଧୀଙ୍କଠାରୁ ବିଚ୍ଛିନ୍ନ ହୋଇଥିଲେ । ସିଏସ୍ ୧୯୯୦ରୁ ୧୯୯୩ ମସିହା ପର୍ଯ୍ୟନ୍ତ ମହାରାଷ୍ଟ୍ରର ରାଜ୍ୟପାଳ ଭାବେ ନିଯୁକ୍ତି ପାଇଥିଲେ । ତେବେ ସେତେବେଳର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ପି.ଭି. ନରସିଂହାରାଓଙ୍କ ବିଷୟରେ ଦେଇଥିବା ମନ୍ତବ୍ୟ ଯୋଗୁଁ ତାଙ୍କୁ ରାଜ୍ୟପାଳ ପଦରୁ ଇସ୍ତଫା ଦେବାକୁ ପଡ଼ିଥିଲା । ସେ ଅନେକ ଦେଶ ଗସ୍ତ କରିଛନ୍ତି । ଇଂଲଣ୍ଡ, ଆମେରିକା, ଋଷିଆ, ଜାପାନ୍, ହଙ୍ଗ୍‌କଙ୍ଗ ଗସ୍ତ କରି ଅତି ସୁନ୍ଦର ଲେଖାମାନ ପ୍ରକାଶ କରିଛନ୍ତି । ରାଜ୍ୟପାଳ ପଦରୁ ଇସ୍ତଫା ଦେବାପରେ ସିଏସ୍ ଚେନ୍ନାଇ ଫେରିଆସିଲେ । ବୟସାଧିକ୍ୟ ହେଲେ ବି ତାଙ୍କର କର୍ମତତ୍ପରତା ଏବେବି ରହିଛି । ବିଭିନ୍ନ ସାମାଜିକ ସଂଗଠନ ସହିତ ସେ ଜଡ଼ିତ ରହି ସାମାଜିକ ସଂସ୍କାରରେ ବ୍ରତୀ ଅଛନ୍ତି । ତେବେ ତାଙ୍କ ଦ୍ୱାରା ପ୍ରଚାରିତ, ପ୍ରୋତ୍ସାହିତ ଏବଂ ସଂଗଠିତ ସବୁଜ ବିପ୍ଳବ ଭାରତରେ ଶସ୍ୟ ଉତ୍ପାଦନରେ ଏକ ଧାରା ସୃଷ୍ଟି କରିବା ସହିତ ଭାରତକୁ ଖାଦ୍ୟଶସ୍ୟରେ ଆତ୍ମନିର୍ଭରଶୀଳ କରିବାରେ ସହାୟକ ହୋଇପାରିଛି । ସେଥିପାଇଁ ତାଙ୍କୁ ୧୯୯୮ ମସିହାରେ ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନରେ ଘୋଷିତ କରାଯାଇଛି ।

***

# ଜୟପ୍ରକାଶ ନାରାୟଣ



୧୯୦୨ - ୧୯୭୯

ଭାରତରତ୍ନ - ୧୯୯୮

ଜୟପ୍ରକାଶ ନାରାୟଣ ୧୯୦୬ ମସିହା ଅକ୍ଟୋବର ୧୧ ତାରିଖ ବିହାରର ସୀତାବଦିଆରା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ହର୍ଷୁ ଦୟାଲ୍ କେନାଲ୍ ବିଭାଗର କର୍ମଚାରୀ ଥିବାରୁ ଅଧିକାଂଶ ସମୟ ଗସ୍ତରେ ବିଭିନ୍ନ ସ୍ଥାନକୁ ଯାଉଥିଲେ । ତେଣୁ ଜୟପ୍ରକାଶ ତାଙ୍କ ଜେଜେମାଙ୍କ ପାଖରେ ରହି ଗାଁରେ ପାଠ ପଢ଼ିଲେ । ପରେ ପାଟନା ଯାଇ ତାଙ୍କର କଲେଜିଏଟ୍ ଶିକ୍ଷା ସମାପ୍ତ କଲେ ।

ବିଦ୍ୟାଳୟ ଶିକ୍ଷା ମଧ୍ୟରେ ସେ ଅନେକ ପୁସ୍ତକ ଓ ପତ୍ରପତ୍ରିକା ଅଧ୍ୟୟନ କରୁଥିଲେ । ସରସ୍ୱତୀ, ପ୍ରଭା ଏବଂ ପ୍ରତାପ ପରି ପତ୍ରିକା, ଭାରତ-ଭାରତୀ ପୁସ୍ତକ

ଏବଂ ମୈଥିଳୀ ଶରଣ ଗୁପ୍ତା ଏବଂ ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କ କବିତା ତାଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ରାଜପୁତ ଯୋଦ୍ଧାମାନଙ୍କ ବୀରତ୍ୱ, ବଳୀଦାନ ଏବଂ ଦେଶପ୍ରେମ ତାଙ୍କ ମନରେ ଗଭୀର ରେଖାପାତ କରିଥିଲା । ପରେ ସେ ଭାଗବତ ଗୀତା ପାଠ କଲେ । ତାଙ୍କ ରଚିତ ପ୍ରବନ୍ଧ 'ବର୍ତ୍ତମାନ ବିହାରରେ ହିନ୍ଦୀର ଅବସ୍ଥା' ରାଜ୍ୟସ୍ତରୀୟ ପ୍ରଥମ ପୁରସ୍କାର ପାଇବା ଫଳରେ ପାଟନା ମହାବିଦ୍ୟାଳୟରେ ସରକାରୀ ବୃତ୍ତି ଲାଭକରି ନାମ ଲେଖାଇଲେ ।

ମାତ୍ର ୧୮ ବର୍ଷ ବୟସରେ ପ୍ରଭାବତୀଙ୍କ ସହିତ ୧୯୨୦ ମସିହାରେ ସେ ବିବାହ ସୂତ୍ରରେ ଆବଦ୍ଧ ହେଲେ । ପ୍ରଭାବତୀ ଜଣେ ସ୍ୱାଧୀନ ଚେତା ଥିବାରୁ ମହାତ୍ମା ଗାନ୍ଧିଙ୍କ ଆମନ୍ତ୍ରଣ ପାଇ ସେ ସାବରମତି ଆଶ୍ରମରେ ଯୋଗଦାନ କଲେ । ସେ ସମୟରେ ଜୟପ୍ରକାଶ କିନ୍ତୁ ଅଧ୍ୟୟନ ଚାଲୁ ରଖିଲେ ।

୧୯୧୯ ମସିହାରେ ଇଂରେଜ ସରକାର ରାଓଲାଟ୍ ଆକ୍ଟ ଚାଲୁ କରିବା ଯୋଗୁଁ ମହାତ୍ମା ଗାନ୍ଧିଙ୍କ ଆହ୍ୱାନକ୍ରମେ ଦେଶରେ ଅସହଯୋଗ ଆନ୍ଦୋଳନର ସୂତ୍ରପାତ ହେଲା । ଏହି ଆନ୍ଦୋଳନ ବିଷୟରେ ମୌଲାନା ଆବୁଲ କଲାମ ଆଜାଦ୍ ଦେଉଥିବା ଭାଷଣ ଶୁଣିବା ପାଇଁ ଜୟପ୍ରକାଶ ତାଙ୍କର କେତେକ ସହପାଠୀଙ୍କ ସହିତ ଯାଇଥିଲେ । ମୌଲାନା ଜଣେ ବିଚକ୍ଷଣ ବକ୍ତା ଥିଲେ । ଇଂରେଜୀ ଶିକ୍ଷା ବର୍ଜନ କରିବା ପାଇଁ ଯୁବ ସଂପ୍ରଦାୟକୁ ଦେଇଥିବା ଆହ୍ୱାନରେ ଜୟପ୍ରକାଶଙ୍କ ମନ ଓ ପ୍ରାଣ ଓତଃପ୍ରୋତ ଭାବେ ଜଡ଼ିତ ହୋଇଗଲା । ପାଟନା ବିଶ୍ୱବିଦ୍ୟାଳୟର ଶେଷ ପରୀକ୍ଷା ଆଉ ମାତ୍ର ୨୦ ଦିନ ପରେ ହେବାକୁ ଥିଲା । ସେହିଦିନ ସେ ପାଟନା ବିଶ୍ୱବିଦ୍ୟାଳୟ ତ୍ୟାଗକରି କଂଗ୍ରେସ ଦ୍ୱାରା ପରିଚାଳିତ ବିହାର ବିଦ୍ୟାପୀଠରେ ନାମ ଲେଖାଇଲେ ।

ତେବେ ଉଚ୍ଚତର ଶିକ୍ଷା ପାଇବା ଆଶାରେ ସେ ମାତ୍ର ୨୦ ବର୍ଷ ବୟସରେ ଆମେରିକା ଗଲେ । ପ୍ରଭାବତୀ ସାବରମତିରେ ଅବସ୍ଥାନ କଲେ । ୧୯୨୩ ମସିହାରେ କାଲିଫର୍ଣ୍ଣିଆର ବର୍କଲୀରେ ତାଙ୍କର ନାମ ଲେଖା ହେଲା । କିନ୍ତୁ କଲେଜ୍‌ରେ ଫିସ୍ ଦେବା ପାଇଁ ପାଖରେ ଅର୍ଥ ନଥିଲା । ତେଣୁ ସେ ବିଭିନ୍ନ ଫଳ ବଗିଚାରେ ଫଳ ତୋଳିବା, ପ୍ୟାକିଙ୍ଗ୍ କରିବା, ରେସ୍ତୋରାଁମାନଙ୍କରେ ପ୍ଲେଟ୍ ଧୋଇବା, ଗରାଜ୍‌ରେ ମେକାନିକ କାମ କରିବା, ବିଭିନ୍ନ ଲୋସନ୍ ଆଦି ବୁଲିବୁଲି ବିକିବା ଏପରିକି କଁସେଇଖାନାରେ କାମ କରି ଅର୍ଥ ଯୋଗଡ଼ କରିଥିଲେ । ତେବେ ଏହି ସବୁ କାର୍ଯ୍ୟ କରିବା ଫଳରେ ଶ୍ରମଜୀବୀମାନେ ଯେତେକ ଅସୁବିଧାର ସମ୍ମୁଖୀନ ହୁଅନ୍ତି, ସେ ବିଷୟରେ ତାଙ୍କୁ ପ୍ରତ୍ୟକ୍ଷ ଜ୍ଞାନ ମିଳିପାରିଥିଲା ।



ଶିକ୍ଷାଲାଭ କଲାବେଳେ ବ୍ୟୟଭାର ଅଧିକ ହେବାରୁ ତାଙ୍କୁ ଅନେକ ବିଶ୍ୱବିଦ୍ୟାଳୟକୁ ସ୍ଥାନାନ୍ତରିତ ହେବାକୁ ପଡ଼ିଥିଲା । ତେବେ ସମାଜ ବିଜ୍ଞାନର ଜନକ ପ୍ରଫେସର ଏଡ୍‌ୱାଡ୍ ରସ୍‌ଙ୍କ ସାହାଯ୍ୟ ପାଇ ସେ ତାଙ୍କ ପ୍ରିୟ ବିଷୟ ଶିକ୍ଷା ଓ ଗବେଷଣା କରିବାରେ ସକ୍ଷମ ହୋଇଥିଲେ ।

ପରବର୍ତ୍ତୀ ସମୟରେ ସେ କାର୍ଲମାକ୍ସଙ୍କ 'ଦାସ କ୍ୟାପିଟାଲ୍' ଏବଂ ଭାରତୀୟ ସାମ୍ୟବାଦୀ ଏମ୍‌ଏନ୍ ରାୟଙ୍କ ଲିଖିତ ପୁସ୍ତକ ପାଠକଲେ । ଋଷିଆରେ ୧୯୧୭ର ଆନ୍ଦୋଳନର ସଫଳତା ଖବର ପାଇବା ପରେ ଜୟପ୍ରକାଶ ସିଦ୍ଧାନ୍ତ ଗ୍ରହଣ କଲେ ଯେ, ଅବହେଳିତ ନିସ୍ପେଷିତ ଜନତାର ଦୁର୍ଦ୍ଦଶା ଦୂର କରିବା ପାଇଁ ମାର୍କ୍ସବାଦ ହିଁ ଉପଯୁକ୍ତ ପନ୍ଥା ।

ବିଧିର ବିଧାନ ହୁଏତ ଭିନ୍ନ ଥିଲା । ୧୯୨୯ ମସିହାରେ ଜୟପ୍ରକାଶ ଖବର ପାଇଲେ ଯେ, ତାଙ୍କ ସ୍ନେହମୟୀ ମା' ଅନ୍ତିମ ଶଯ୍ୟାରେ । ତେଣୁ ତାଙ୍କର ଡକ୍ଟରେଟ୍ ଉପାଧିକୁ ପରିତ୍ୟାଗକରି ସେ ଭାରତ ଫେରି ଆସିଲେ । ସେତେବେଳକୁ ସେ ଯୁବକ ଥିଲେ ହେଁ ଚିନ୍ତନରେ ପରିପକ୍ୱତା ହାସଲ କରିଥିଲେ । ସମାଜର ସେବା କରିବା ପାଇଁ ତାଙ୍କ ମାନସରେ ଅନେକ କ୍ରାନ୍ତିକାରୀ ମୌଳିକ ତଥା ନୀତିସମ୍ମତ ପ୍ରସ୍ତାବ ଗଚ୍ଛିତ ହୋଇଥିଲା । କେବଳ ରାଜନୈତିକ ସ୍ୱାଧୀନତା ତାଙ୍କ ପାଇଁ ଯଥେଷ୍ଟ ନଥିଲା । ବରଂ କ୍ଷୁଧା, ଦାରିଦ୍ର୍ୟ ଏବଂ ଶିକ୍ଷାହୀନତାରୁ ରକ୍ଷାପାଇବା ହିଁ ସ୍ୱାଧୀନତାର ପ୍ରକୃତ ସଂଜ୍ଞା ବୋଲି ସେ ମନେ କରୁଥିଲେ ।

ଜୟପ୍ରକାଶ ସାମ୍ୟବାଦ ଚିନ୍ତାଧାରାରେ ମଗ୍ନ ଥିଲାବେଳେ ତାଙ୍କ ସ୍ତ୍ରୀ ପ୍ରଭାବତୀ ଜଣେ ନିଚ୍ଛକ ଗାନ୍ଧିବାଦୀ ଥିଲେ । ତଥାପି ସେ କେବେ ତାଙ୍କ ସ୍ତ୍ରୀଙ୍କ ଚିନ୍ତାଧାରାକୁ ପରିବର୍ତ୍ତନ କରିବା ପାଇଁ ଚେଷ୍ଟା କରିନଥିଲେ । ବରଂ ତାଙ୍କ ଚିନ୍ତାଧାରାକୁ ବି ସେ ସମ୍ମାନ ଜଣାଉଥିଲେ । ୧୯୨୯ ମସିହାରେ ସେ ଓ ପ୍ରଭାବତୀ ଏକା ସାଙ୍ଗେ ଲାହୋରଠାରେ ପଣ୍ଡିତ ଜବାହାରଲାଲ୍ ନେହେରୁଙ୍କ ସଭାପତିତ୍ୱରେ ହେଉଥିବା କଂଗ୍ରେସ ଅଧିବେଶନରେ ଯୋଗଦେଲେ । ସେଠାରେ ନେହେରୁ ଜୟପ୍ରକାଶଙ୍କୁ କଂଗ୍ରେସ ପାର୍ଟିରେ ଯୋଗଦେବା ପାଇଁ ଆମନ୍ତ୍ରଣ କଲେ । ଜୟପ୍ରକାଶ ଏହାକୁ ସାଦରେ ଗ୍ରହଣ କରିବା ପରେ କଂଗ୍ରେସର ଲେବର ରିସର୍ଚ୍ଚ ସେଲ୍‌ରେ ଆଲ୍‌ହାବାଦରେ କାମ କରିବାର ସୁଯୋଗ ପାଇଲେ ।

୧୯୩୦ ମସିହାରେ ଦାଣ୍ଡି ମାର୍ଚ୍ଚ ପରେ କଂଗ୍ରେସର ଅଧିକାଂଶ ତୁଙ୍ଗ ନେତାଙ୍କୁ ବ୍ରିଟିଶ୍ ସରକାର ବନ୍ଦୀ କଲେ । ଫଳରେ କଂଗ୍ରେସ କାର୍ଯ୍ୟକ୍ରମ ବାଜୁ ରଖିବା ଉଦ୍ଦେଶ୍ୟରେ ଜୟପ୍ରକାଶ (ସେତେବେଳର) ବମ୍ବେଠାରେ ଏକ ଗୁପ୍ତ କାର୍ଯ୍ୟାଳୟ ଆରମ୍ଭ କଲେ । ସାରା ଦେଶ ଭ୍ରମଣକରି ବିଭିନ୍ନ ସ୍ଥାନରେ ସେ ମିଟିଂ କରାଇବା ସହିତ କାର୍ଯ୍ୟକ୍ରମ ସମ୍ବନ୍ଧୀୟ ପ୍ରଚାରପତ୍ର ଛାପି ବିତରଣ କଲେ । ବନାରସରେ ଏକ ଗୁପ୍ତ ମିଟିଂ ସାରି ସେ ମାଡ୍ରାସ (ବର୍ତ୍ତମାନର ଚେନ୍ନାଇ) ଯିବା ରାସ୍ତାରେ ଧରାପଡ଼ି ବନ୍ଦୀ ହେଲେ । ତା' ପରଦିନ ଖବରକାଗଜର ଶିରୋ ନାମାରେ ଥିଲା । କଂଗ୍ରେସର ମସ୍ତିଷ୍କ ବନ୍ଦୀ ହେଲା ।

ନାସିକସ୍ଥିତ ଜେଲ୍‌ରେ ତାଙ୍କର ରାମ ମନୋହର ଲୋହିଆ, ଅଶୋକ ମେହେଟା, ମିନୁ ସାସାନୀ, ପି.ଦନ୍ତେୱାଲା ଏବଂ ଅଚ୍ୟୁତ ପଟ୍ଟବର୍ଦ୍ଧନଙ୍କ ପରି ତୁଙ୍ଗ ଚିନ୍ତା ନାୟକ ମାନଙ୍କ ସହିତ ସାକ୍ଷାତ ହେଲା । ଜୟପ୍ରକାଶଙ୍କ ପରି ସେମାନେ ବି ଦେଶର ସ୍ୱାଧୀନତା ପାଇଁ ସତତ ବ୍ୟାକୁଳ ଥିଲେ ଏବଂ କଂଗ୍ରେସକୁ ସମାଜବାଦୀ କାର୍ଯ୍ୟକ୍ରମ ଗ୍ରହଣ କରାଇବା ପାଇଁ ଯତ୍ନଶୀଳ ହୋଇଥିଲେ । ୧୯୩୩ ମସିହାରେ ଜୟପ୍ରକାଶ ଜେଲ୍‌ରୁ ମୁକ୍ତୁଳିଲେ ।

୧୯୩୪ ମସିହାରେ ଆଚାର୍ଯ୍ୟ ନରେନ୍ଦ୍ର ଦେବ ଅଧକ୍ଷତାରେ ଜୟପ୍ରକାଶ କଂଗ୍ରେସ ସୋସିଆଲ୍‌ଷ୍ଟି ପାର୍ଟି ଗଠନ କରି ତା'ର ସମ୍ପାଦକ ପଦରେ ରହିଲେ । କଂଗ୍ରେସ ଭିତରେ ରହି କଂଗ୍ରେସକୁ ସମାଜବାଦୀ କାର୍ଯ୍ୟକ୍ରମ ପ୍ରତି ଆକୃଷ୍ଟ କରାଇବା ଏହି ପାର୍ଟିର ଲକ୍ଷ୍ୟ ଥିଲା । ତାଙ୍କ ରଚିତ ପୁସ୍ତକ 'ସମାଜବାଦ କାହିଁକି ?'ର ଆଦର୍ଶ ଯୁଗ ସଂପ୍ରଦାୟ ଦ୍ୱାରା ଖୁବ୍ ଆଦୃତ ହୋଇଥିଲା ।

୨ୟ ବିଶ୍ୱଯୁଦ୍ଧରେ ଭାରତ ଯୋଗଦେବା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଜୟପ୍ରକାଶ ୧୯୪୦ରେ ପୁଣିଥରେ ଗିରଫ ହେଲେ । ତାଙ୍କୁ ରାଜସ୍ଥାନର ଦେଉଲି ଜେଲ୍‌କୁ ପଠାଇ ଦିଆଗଲା । ଦେଉଲିର ଦୟନୀୟ ଅବସ୍ଥା ଦେଖି ଜୟପ୍ରକାଶ ମର୍ମାହତ ହେଲେ ଏବଂ ଏହା ବିରୋଧ କରି ଅନଶନ କଲେ । ସରକାର ତାଙ୍କୁ ତତ୍‌କ୍ଷଣାତ୍ ଜେଲ୍‌ରୁ ମୁକ୍ତ କଲେ । ତେବେ ୧୯୪୨ରେ ଭାରତଛାଡ଼ ଆନ୍ଦୋଳନ କରି ସେ ପୁଣିଥରେ ଗିରଫ ହେଲେ । ସେହି ବର୍ଷ ଦୀପାବଳୀ ରାତିରେ ଜୟପ୍ରକାଶ ଓ ତାଙ୍କର ୫ ଜଣ ସାଥୀ ଜେଲ୍‌ର ୧୭ ଫୁଟ ଉଚ୍ଚତା ବିଶିଷ୍ଟ ପାଚେରୀକୁ ଡେଇଁ ଜେଲ୍‌ରୁ ଖସି ଆସିଲେ । ଇଂରେଜ ସରକାର ତାଙ୍କୁ ଏତେ ଭୟ କରୁଥିଲେ ଯେ, ତାଙ୍କୁ ଜୀବିତ ବା ମୃତ ଧରାଇ ଆଣିବା ବ୍ୟକ୍ତିପାଇଁ ଦଶ ହଜାର ଟଙ୍କା ପୁରସ୍କାର ଘୋଷଣା କରିଥିଲେ । ଜୟପ୍ରକାଶ କୌଶଳରେ ନେପାଳ ଆସି ସେଠାରେ ଗରିଲା ଯୁଦ୍ଧ ପାଇଁ 'ଆଜାଦ ଦାସ୍ତା' ନାମକ ସେନାଦଳ ସଂଗଠିତ କଲେ । ଏହା ପରଠାରୁ ବ୍ରିଟିଶ୍ ସରକାରକୁ ଦେଶରୁ ହଟାଇ ଦେଶରେ ସମାଜବାଦୀ ଗଣତନ୍ତ୍ର ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ଅନେକାଂଶରେ ସନ୍ତ୍ରାସବାଦର ଆଶ୍ରୟ ନେବାକୁ ବାଧ ହେଲେ । ଅଶୋକ ମେହେଟ୍ଟା, ରାମ ମନୋହର ଲୋହିଆଙ୍କ ପରି ତୁଙ୍ଗ ନେତାମାନଙ୍କ ସହିତ ଏହି କାର୍ଯ୍ୟକ୍ରମ ଚାଲୁ ରହିଲା । ଆଜାଦ୍ ଦାସ୍ତା ଦଳ ତାଙ୍କୁ ଅନେକ ବାର ବ୍ରିଟିଶ୍ ଆକ୍ରମଣ ଓ ଗିରଫଦାରୀରୁ ରକ୍ଷା କଲେ । ଓଡ଼ିଶାର ବରପୁତ୍ର ବିଜୁ ପଟ୍ଟନାୟକ ସେତେବେଳେ ବ୍ରିଟିଶ୍ ଏୟାର୍ ଫୋର୍ସରେ ପାଇଲଟ୍ ଭାବେ କାର୍ଯ୍ୟ କରୁଥିଲେ । ସେ ଜୟପ୍ରକାଶଙ୍କ ନିଜ ଜୀବନକୁ ବିପନ୍ନ କରି ଅନେକ ସମୟରେ ଜୟପ୍ରକାଶଙ୍କୁ ତାଙ୍କ ବିମାନରେ ନେଉଥିଲେ । ଅରୁଣା ଆସଫ୍ ଅଲ୍ଲୀ ମଧ୍ୟ ଜୟପ୍ରକାଶଙ୍କର ସହଯୋଗୀ ଥିଲେ ଏବଂ ବିଜୁବାବୁ ତାଙ୍କୁ ବି ଅନେକ ଗନ୍ତବ୍ୟ ସ୍ଥଳରେ ପହଞ୍ଚାଇବାରେ ସାହାଯ୍ୟ କରିଥିଲେ । ଜୟପ୍ରକାଶ ୧୯୪୩ ମସିହାରେ ଖାଁ ଅବଦୁଲ୍ ଗଫର ଖାଁଙ୍କୁ ରାଉଲପିଣ୍ଡିଠାରେ ସାକ୍ଷାତ କରିବା ପାଇଁ ବାହାରିଥିବା ବେଳେ ଅମୃତସରଠାରେ ବ୍ରିଟିଶ୍ ହାତରେ ଧରାପଡ଼ିଲେ । ତାଙ୍କୁ ଏଥର ଲାହୋର ଜେଲ୍‌କୁ ପଠାଗଲା । ସେଠାରେ ତାଙ୍କୁ ଏକକ କୋଠରୀ ରଖାଯାଇ ଅନେକ ଶାରୀରିକ ନିର୍ଯାତନା ଦିଆଗଲା । ଶେଷରେ ୧୯୪୬ ମସିହା ଏପ୍ରିଲ୍ ୧୨ ତାରିଖଦିନ ସେ ଜେଲ୍‌ରୁ ମୁକ୍ତ ହେଲେ ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଦେଶ ସ୍ୱାଧୀନ ହେଲା । କିନ୍ତୁ ସେତେବେଳେ ଆମ ଦେଶ ଭାରତ ଓ ପାକିସ୍ଥାନରେ ବିଭାଜିତ ହେଲା । ପରେ ପରେ

ମହାତ୍ମା ଗାନ୍ଧୀ ଆତତାୟୀଙ୍କ ଗୁଳିର ଶିକାର ହେଲେ । ସମଗ୍ର ଦେଶରେ ଦୁଃଖର ଲହରି ଖେଳିଲା । ପ୍ରଭାବତୀ ନିଜର ଦୁଃଖ ଓ କଷ୍ଟକୁ ଚରଖାର ଚକ ପଛରେ ଲୁଚାଇ ରଖିବାକୁ ପ୍ରଯତ୍ନ କଲେ । ଜୟପ୍ରକାଶଙ୍କ ମାନସରେ କିନ୍ତୁ ବିଷାଦ ଓ ଭୟର ଭଉଁରୀ ଖେଳିଲା । ଗାନ୍ଧିଜୀଙ୍କ ପ୍ରଦର୍ଶିତ ସତ୍ୟ ଓ ଅହିଂସାର ମାର୍ଗରେ ଥିବା ଜ୍ଞାନ-ଦର୍ଶନ ହିଁ ପ୍ରକୃଷ୍ଟ ମାର୍ଗ ବୋଲି ସେ ପ୍ରାଣେ ପ୍ରାଣେ ଅନୁଭବ କଲେ ।

୧୯୫୨ ମସିହାର ନିର୍ବାଚନରେ ଜୟପ୍ରକାଶଙ୍କ ନେତୃତ୍ୱରେ ପରିଚାଳିତ ସୋସିଆଲିଷ୍ଟ ଦଳ କଂଗ୍ରେସଠାରୁ ପରାଜିତ ହେଲା । ପଣ୍ଡିତ ନେହେରୁ ଜୟପ୍ରକାଶଙ୍କୁ କେନ୍ଦ୍ରୀୟ ମନ୍ତ୍ରିମଣ୍ଡଳରେ ଯୋଗ ଦେବା ପାଇଁ ଆମନ୍ତ୍ରଣ କଲେ । ତେବେ ଜୟପ୍ରକାଶ ନେହେରୁଙ୍କ ସମ୍ମୁଖରେ ୧୪ ଦଫା ଦାବି ସମ୍ବଳିତ କେତେକ ସର୍ତ୍ତ ରଖିଲେ । ସମ୍ବିଧାନର ସଂଶୋଧନ, ବିଚାର ବିଭାଗ ତଥା ପ୍ରଶାସନିକ କ୍ଷେତ୍ରରେ ସଂସ୍କାର, ବ୍ୟାଙ୍କମାନଙ୍କର ଜାତୀୟକରଣ, ଭୂମିହୀନମାନଙ୍କୁ ଭୂମିର ପୁନଃ ଆବଣ୍ଟନ, ସ୍ୱଦେଶୀ ଜାଗରଣ ଏବଂ ସମବାୟ ସମିତି ଗଠନ ଆଦି କେତେକ ବିଷୟରେ ନେହେରୁଙ୍କଠାରୁ ସନ୍ତୋଷଜନକ ପ୍ରତିଶ୍ରୁତି ନମିଳିବାରୁ ସେ ଆମନ୍ତ୍ରଣକୁ ଗ୍ରହଣ କରିନଥିଲେ ।

ସ୍ୱାଧୀନତାର ପରବର୍ତ୍ତୀ ସମୟରେ ଜୟପ୍ରକାଶ ଅଧ୍ୟକ୍ଷ ଥିବା ବିଭିନ୍ନ ଟ୍ରେଡ୍‌ୟୁନିଅନ୍‌ମାନଙ୍କ ପ୍ରତି ଦୃଷ୍ଟି ଦେଲେ । ଫଳରେ ଶ୍ରମିକମାନଙ୍କୁ ଉଚିତ୍ ସର୍ବନିମ୍ନ ମଜୁରୀ, ପେନ୍‌ସନ୍ ଭତ୍ତା, ଚିକିତ୍ସା ଭତ୍ତା ଏବଂ ଘରଭଡ଼ା ପାଇଁ ଭତ୍ତା ଆଦି ମିଳିବା ଦିଗରେ ତାଙ୍କ ଉଦ୍ୟମ ସଫଳ ହୋଇଛି । ସେହି ସମୟରେ ଋଷିଆରେ ହେଉଥିବା ରକ୍ତପାତ ଏବଂ ଗଣ ଗିରଫଦାରୀ ଖବର ସାମ୍ୟବାଦ ପ୍ରତି ଜୟପ୍ରକାଶଙ୍କ ଧାରଣାରେ ପରିବର୍ତ୍ତନ ଆଣିଲା । ସେ ସିଦ୍ଧାନ୍ତରେ ଉପନୀତ ହେଲେ ଯେ, ସାମ୍ୟବାଦ ଚିନ୍ତାଧାରା ଭାରତ ପାଇଁ ଉପଯୁକ୍ତ ନୁହେଁ । ସେ ଅନୁଭବ କଲେ ଯେ ଗାନ୍ଧିଜୀଙ୍କ ସ୍ୱାଧୀନତା ଆନ୍ଦୋଳନର ସଫଳତା ସାବ୍ୟସ୍ତ କରେ ଯେ, ନିଜର ମୂଲ୍ୟବୋଧର ବଳୀଦାନ ନକରି ପରିବର୍ତ୍ତନ ଆଣିବା ସମ୍ଭବପର ।

୧୯୫୪ ମସିହା ଏପ୍ରିଲ୍ ୧୯ ତାରିଖ ଦିନ ଗୟାଠାରେ ବିନୋବାଜୀଙ୍କ ଭୂଦାନ ଆନ୍ଦୋଳନ ପାଇଁ ଜୟପ୍ରକାଶ ନିଜର ଜୀବନ ଦାନ କରିବା ଘୋଷଣା କଲେ । ସୀତାବଦିଆରାରେ ଥିବା ସମସ୍ତ ସମ୍ପତ୍ତି ଭୂଦାନକୁ ସମର୍ପଣ କରି ହଜାରିବାଗ ଜିଲ୍ଲାର ଏକ ଦରିଦ୍ର ଅନୁନ୍ନତ ଗ୍ରାମରେ ଏକ ଆଶ୍ରମ ପ୍ରତିଷ୍ଠା କଲେ । ଗାନ୍ଧିଜୀଙ୍କ ନୀତି ଅନୁସରଣ ପୂର୍ବକ ଗ୍ରାମ-ବିକାଶରେ ସମ୍ପୂର୍ଣ୍ଣ ମନୋନିବେଶ କଲେ ।

ପ୍ରତ୍ୟେକ ଗ୍ରାମ ଏକ ଛୋଟ ସ୍ୱାଧୀନ ରାଷ୍ଟ୍ରପରି ହେବା ଆବଶ୍ୟକ ବୋଲି ଜୟପ୍ରକାଶ ଚିନ୍ତା କରୁଥିଲେ । ରାଜନୈତିକ ସ୍ୱାଧୀନତା ଏବଂ ନିଜ ପାଇଁ ନିଜେ ନିଷ୍ପତ୍ତି ନେବାର ଶକ୍ତି ଗ୍ରାମମାନଙ୍କରେ ରହିବା ଆବଶ୍ୟକ । ଏହି ଚିନ୍ତାଧାରା ଗାନ୍ଧିଜୀଙ୍କର ଭାରତୀୟ ଚିନ୍ତା ଏବଂ ପାଶ୍ଚାତ୍ୟ ଗଣତାନ୍ତ୍ରିକ ନୀତିର ସଙ୍ଗମରୁ ଜାତ ହୋଇଥିଲା । ଏହା ଉପରେ ଆଧାରିତ ଜୟପ୍ରକାଶଙ୍କ ଗବେଷଣା ସମ୍ଭୂତ ପୁସ୍ତକ 'ଭାରତୀୟ ରାଜନୈତିକ ଚିନ୍ତାଧାରାର ପୁନର୍ଗଠନ' ଆନ୍ତର୍ଜାତିକ ସ୍ତରରେ ଆଦୃତ ଓ ସମ୍ମାନିତ ହୋଇ ରାମନ ମାଗାସେସେ ପୁରସ୍କାର ପାଇଲା ।

୧୯୭୧ ମସିହାରେ ମୁଜାଫରପୁରର ସର୍ବୋଦୟ କର୍ମୀମାନଙ୍କୁ ହତ୍ୟା କରାଯିବ ଉଲ୍ଲେଖ ଥାଇ ଏକ ଧମକପୂର୍ଣ୍ଣ ଚିଠି ମିଳିଲା । ସେଠାରେ କେବଳ ଯୁବ ସଂପ୍ରଦାୟ ଦ୍ୱାରା ସଂଗଠିତ ଏକ ନକ୍ସାଲାଇଟ୍ ଦଳଠାରୁ ଏହି ଚିଠି ଆସିଥିଲା । କେବଳ ସ୍ନେହ ଓ ସମବେଦନାର ଅସ୍ତ୍ରରେ ସଜ୍ଜିତ ହୋଇ ଜୟପ୍ରକାଶ ନକ୍ସଲ ପ୍ରଭାବିତ ଅଞ୍ଚଳ ଭିତରକୁ ଚାଲିଲେ । ସେ ହୃଦୟଙ୍ଗମ କଲେ ଯେ, ଦାରିଦ୍ର୍ୟ ଏବଂ ବେରୋଜଗାରୀ ଯୋଗୁଁ ହିଁ ଯୁବ ସଂପ୍ରଦାୟ ପ୍ରାଣ ବିଦ୍ରୋହ କରି ନକ୍ସାଲାଇଟ୍ ହୋଇଥିଲା । ତେଣୁ ସେହିଠାରେ ସେ ଅନେକ ମାସ ବିତାଇ ନକ୍ସାଲ୍ ମାନଙ୍କ ସମସ୍ୟା ସମାଧାନ କରି ଅଧିକାଂଶଙ୍କୁ ସମାଜର ମୁଖ୍ୟସ୍ରୋତକୁ ଫେରାଇ ଆଣିଲେ । ଚମ୍ବଲ ଉପତ୍ୟକା ଗସ୍ତକରି ଡକାୟତମାନଙ୍କ ଆତ୍ମସମର୍ପଣରେ ସଫଳ ହେବା ଦିଗରେ ବିନୋବାଜୀଙ୍କୁ ଜୟପ୍ରକାଶ ମୁଖ୍ୟତଃ ସାହାଯ୍ୟ କରିଥିଲେ । ୧୯୭୩ ମସିହା ଏପ୍ରିଲ୍ ୧୫ ତାରିଖରେ ପ୍ରଭାବତୀଙ୍କର ଦେହାବସାନ ହେଲା ।

ଇତି ମଧ୍ୟରେ ଦେଶରେ ଦରଦାମ ବୃଦ୍ଧି, ବେରୋଜଗାରୀ, ଆବଶ୍ୟକୀୟ ସାମଗ୍ରୀର ଯୋଗାଣ ଓ ଆବଣ୍ଟନ ବ୍ୟବସ୍ଥାରେ ବିଭ୍ରାଟ ଏବଂ ଦୁର୍ନୀତି ଇତ୍ୟାଦି ବ୍ୟାପକ ହେବାରୁ ଜନ ଅସନ୍ତୋଷ ଦେଖା ଦେଇଥାଏ । ପ୍ରଥମେ ବିଜୁ ପଟ୍ଟନାୟକ ଜୟପ୍ରକାଶଙ୍କ ଦ୍ୱାରସ୍ଥ ହୋଇ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ କରିବା ଦିଗରେ ନେତୃତ୍ୱ ନେବା ପାଇଁ ଅନୁରୋଧ କଲେ । ପରେ ଅନେକ ନେତା ସେହିପରି ଅନୁରୋଧ କରିବା ଫଳରେ ଗୁଜୁରାଟରୁ ନବନିର୍ମାଣ ଆନ୍ଦୋଳନ ଆରମ୍ଭ ହେଲା । ତେବେ ୧୯୭୪ ମସିହା ଏପ୍ରିଲ୍ ୮ ତାରିଖ ଦିନ ପାଟନାରେ ସେ ଏକ ନୀରବ ଶୋଭାଯାତ୍ରାର ନେତୃତ୍ୱ ନେଲେ । ଏହି ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରା ଉପରେ ବି ପୋଲିସ୍‌ର ଲାଠିଚାଳନାରେ ସେ ଦୁଃଖିତ ହେଲେ । ସେହିବର୍ଷ ଜୁନ୍ ୫ ତାରିଖ ଦିନ ପାଟନାର ଗାନ୍ଧୀ ମଇଦାନରୁ ଏକ ବିରାଟ ଜନସମାବେଶକୁ

ଉଦ୍‌ବୋଧନ ଦେଇ ଦେଶରେ ଏକ ସମ୍ପୂର୍ଣ୍ଣ ବିପ୍ଳବ ଆବଶ୍ୟକ ବୋଲି ଘୋଷଣା କଲେ । କଂଗ୍ରେସ ଦଳକୁ ଛାଡ଼ି ସମସ୍ତ ବିରୋଧୀ ଦଳର ନେତୃବର୍ଗ ଜୟପ୍ରକାଶଙ୍କ ନେତୃତ୍ୱରେ ପରିଚାଳିତ ହୋଇ ଜନତା ଦଳ ଗଠନ କଲେ ।

୧୯୭୫ ମସିହା ଜୁନ୍ ୧୨ ତାରିଖ ଦିନ ଆଲହାବାଦ ହାଇକୋର୍ଟ ଇନ୍ଦିରାଗାନ୍ଧୀଙ୍କ ନିର୍ବାଚନରେ ଅସାଧୁ ଉପାୟ ଅବଲମ୍ବନ କରାଯାଇଥିବା ଦର୍ଶାଇ ତାଙ୍କର ଐତିହାସିକ ରାୟ ପ୍ରକାଶ କଲେ । ତହିଁରେ ଇନ୍ଦିରାଗାନ୍ଧିଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇଥିଲା । ଫଳରେ ଜୟପ୍ରକାଶ ଇନ୍ଦିରା ଗାନ୍ଧିଙ୍କୁ ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ଦେବାପାଇଁ ପରାମର୍ଶ ଦେଲେ । କିନ୍ତୁ ଇନ୍ଦିରାଗାନ୍ଧି ତାହା ସ୍ୱୀକାର ନକରି ଦେଶରେ ଜୁନ୍ ୨୬ ତାରିଖରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କଲେ । ଜୟପ୍ରକାଶଙ୍କ ସମେତ ସମସ୍ତ ଭିନ୍ନ ମତାବଲମ୍ବୀ ନେତୃବର୍ଗଙ୍କୁ ଜେଲ୍‌ରେ ରଖାଗଲା । ଜୟପ୍ରକାଶଙ୍କୁ ଚିକିତ୍ସା ପାଇଁ ଚଣ୍ଡୀଗଡ଼ର ଏକ ହସ୍ପିଟାଲ୍‌ରେ ହିଁ ବନ୍ଦୀ ଭାବେ ରଖାଗଲା । ସ୍ୱାସ୍ଥ୍ୟାବସ୍ଥାରେ ଅବନତି ହେବା ଯୋଗୁଁ ତାଙ୍କୁ ମୁମ୍ବାଇର ଅନ୍ୟ ଏକ ହସ୍ପିଟାଲ୍‌କୁ ସ୍ଥାନାନ୍ତର କରାଗଲା ।

ଶେଷରେ ୧୯୭୭ ମସିହା ଜାନୁଆରୀ ମାସରେ ଜରୁରୀକାଳୀନ ପରିସ୍ଥିତି ଉଠାଇ ନିଆଗଲା । ନିର୍ବାଚନ ହେଲା । ତାଙ୍କ ନେତୃତ୍ୱରେ ପରିଚାଳିତ ହୋଇ ଅନେକ ଦଳ ମିଶି ଜନତାଦଳ ଗଠନ କରି ନିର୍ବାଚନ ଲଢ଼ିଲେ । ଜୟପ୍ରକାଶଙ୍କ ଲକ୍ଷ୍ୟ ସମ୍ପୂର୍ଣ୍ଣ ଭାବେ ଜନତା ଦଳ ନିର୍ବାଚନ ଇସ୍ତାହାରରେ ରଖାଗଲା । ନିର୍ବାଚନରେ ଇନ୍ଦିରାଗାନ୍ଧୀ ତଥା କଂଗ୍ରେସର ଶୋଚନୀୟ ପରାଜୟ ହେଲା । ଦେଶବାସୀ ବିପୁଳ ସଂଖ୍ୟାରେ ଜନତା ଦଳକୁ ଜିତାଇଲେ ।

ଧୀରେଧୀରେ ଜୟପ୍ରକାଶଙ୍କ ସ୍ୱାସ୍ଥ୍ୟାବସ୍ଥା ଖରାପ ହେଲା । ୧୯୭୯ ମସିହା ଅକ୍ଟୋବର ୮ ତାରିଖ ଦିନ ତାଙ୍କର ମହାପ୍ରୟାଣ ହେଲା । ଦରିଦ୍ର, ଅସହାୟ ଓ ଅବହେଳିତ ଜନତାର ବିକାଶ ପାଇଁ ତାଙ୍କ ପ୍ରାଣ ସତେ ବ୍ୟାକୁଳ ଥିଲା । ସେଥିପାଇଁ ଦେଶବାସୀ ଶ୍ରଦ୍ଧା ଓ ସମ୍ମାନ ସହିତ ତାଙ୍କୁ ଲୋକନାୟକ ବୋଲି ସମ୍ବୋଧନ କରୁଥିଲେ ।

୧୯୯୮ ମସିହାରେ ଜୟପ୍ରକାଶ ନାରାୟଣଙ୍କୁ ମରଣୋତ୍ତର ଭାବେ ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନ ପ୍ରଦାନ କରାଗଲା ।

***

# ପଣ୍ଡିତ ରବିଶଙ୍କର



୧୯୨୦-୨୦୧୨

ଭାରତରତ୍ନ- ୧୯୯୯

**ପ**ଣ୍ଡିତ ରବିଶଙ୍କର ଜଣେ ଏଭଳି ବିରଳ ବ୍ୟକ୍ତିତ୍ୱ ଯାହାଙ୍କୁ କେବଳ ଭାରତବର୍ଷ ନୁହେଁ ସାରା ପୃଥିବୀ ସମ୍ମାନିତ କରିଛି । ପୃଥିବୀର ବିଭିନ୍ନ ଦେଶରୁ ସେ ଚଉଦଟି ପି.ଏଚ୍.ଡ଼ି ଡ଼ିଗ୍ରୀ ପାଇଛନ୍ତି । ତା ଛଡ଼ା ଭାରତବର୍ଷରେ 'ପଦ୍ମ ବିଭୂଷଣ', 'ଦେଶୀକୋଟାମ୍' ପୁରସ୍କାର, 'ମାନିଲାରୁ ମାଗାସେସେ' ପୁରସ୍କାର, ଦୁଇଟି 'ଗ୍ରାମୀ' ପୁରସ୍କାର, ଜାପାନ୍‌ରୁ 'ଫୁକୋଓ୍ୱା ଗ୍ରାଣ୍ଡ ପୁରସ୍କାର', ଡ଼ାଭୋସ୍‌ରୁ କ୍ରିଷ୍ଟାଲ୍ ପୁରସ୍କାର ତାଙ୍କର ମୁକୁଟ ମଣ୍ଡନ କରିଥିଲା । ୧୯୮୬ ମସିହାରେ ସେ ଭାରତର ରାଜ୍ୟସଭାକୁ ମନୋନୀତ ହୋଇଛନ୍ତି । ତାଙ୍କର ତନମନ ସଂଗୀତ ୧୯୮୭ ମସିହାରେ ପ୍ରଚାରିତ ହେବା ପରେ ସଂଗୀତ ରାଜ୍ୟରେ ଏକ ନୂତନ

ଲହରି ଖେଳିଯାଇଥିଲା । ଆମ ଦେଶର ପାରମ୍ପାରିକ ବାଦ୍ୟଯନ୍ତ୍ର ସହିତ ଇଲେକ୍ଟ୍ରୋନିକ ବାଦ୍ୟଯନ୍ତ୍ରର ସମିଶ୍ରଣ କରାଇ ତାଳ, ମାନ, ଲୟର ନୂତନ ଧାରା ପ୍ରବର୍ତ୍ତନ କରାଇବାରେ ପଣ୍ଡିତ ରବିଶଙ୍କରଙ୍କର ଉଦ୍ୟମକୁ ସାରାବିଶ୍ୱ ସମ୍ମାନ ଦେବା ସହିତ ତାଙ୍କୁ ସର୍ବଶ୍ରେଷ୍ଠ ଏବଂ ଅନନ୍ୟ ବୋଲି ସ୍ୱୀକାର କରିଛି ।

ପଣ୍ଡିତ ରବିଶଙ୍କର ଯେଉଁ ପରିବାରରେ ଜନ୍ମ ନେଇଥିଲେ ତାହା କଳା, ସଂଗୀତ ଏବଂ ନୃତ୍ୟରେ ଧୁରୀଣ ବ୍ୟକ୍ତିତ୍ୱ ମାନଙ୍କର ଏକ ସମାବେଶ ବା ସଂଗମ ସ୍ଥଳ । ସେ ୧୯୨୦ ମସିହା ଏପ୍ରିଲ୍ ୭ ତାରିଖ ଦିନ ଡ଼କ୍ଟର ଶ୍ୟାମଶଙ୍କର ଚୌଧୁରୀ ନାମକ ଜଣେ ବଙ୍ଗାଳୀ ବ୍ରାହ୍ମଣଙ୍କ ଔରସରୁ ଜେସୋର ଜିଲ୍ଲା (ବର୍ତ୍ତମାନ ବାଂଲାଦେଶ)ର କାଲିଆ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଝାଲ୍‌ଓ୍ୱାର ରାଜାଙ୍କ ପ୍ରାସାଦରେ ଦେଓ୍ୱାନ୍ ବା ମନ୍ତ୍ରୀପଦରେ ଅଧିଷ୍ଠିତ ଥିଲେ । ସେ ସଂସ୍କୃତ ଏବଂ ଦର୍ଶନ ଶାସ୍ତ୍ରରେ ମହାନ୍ ପଣ୍ଡିତ ଥିଲେ । ବେଦ ଏବଂ ବୈଦିକ ମନ୍ତ୍ର ଉଚ୍ଚାରଣ ସହିତ ସେ ଧ୍ରୁପଦରାଗ ଗାୟନରେ ଧୁରନ୍ଧର ଥିଲେ । ସେ ପାଞ୍ଚ ଭାଇ ଥିଲେ । ଉଦୟ, ରାଜେନ୍ଦ୍ର, ଦେବେନ୍ଦ୍ର, ଉପେନ୍ଦ୍ର ଏବଂ ରବି । ରବିଶଙ୍କର ସର୍ବକନିଷ୍ଠ ହୋଇଥିବାରୁ ସେ ତାଙ୍କର ମା ଙ୍କ ସହିତ ଅଧିକ ଜଡ଼ିତ ଥିଲେ । ତାଙ୍କର ପିତା ଜଲେଶ୍ୱର ରାଜାଙ୍କଠାରୁ ବାକିରୀରୁ ଅବ୍ୟାହତି ନେଇ ଆଇନ୍ ଶାସ୍ତ୍ର ପଢ଼ିବା ପାଇଁ ଲଣ୍ଡନ ଚାଲିଗଲେ । ତାଙ୍କ ଘର ପାଇଁ କିଛି ପେନ୍‌ସନ୍ ରାଶିର ବ୍ୟବସ୍ଥା କରାଯାଉଥିଲା । ତାଙ୍କର ଜ୍ୟେଷ୍ଠ ପୁତ୍ର ଉଦୟ ଶଙ୍କର ତାଙ୍କ ସହିତ ଲଣ୍ଡନ ଯାଇ ସେଠାରେ ରୟାଲ୍ କଲେଜ ଅଫ୍ ଆର୍ଟରେ କଳା ଅଧ୍ୟୟନ କଲେ । କିଛିଦିନ ପରିବାର ସୁରୁଖୁରୁରେ ଚାଲିଲା । କିନ୍ତୁ ପୁଅମାନେ ବଡ଼ହୋଇ ସ୍କୁଲ୍‌କୁ ଯିବାକୁ ଆରମ୍ଭ କରିବା ପରେ ତାଙ୍କର ମା ଘର ଚଳାଇବାରେ ଅସୁବିଧାର ସମ୍ମୁଖୀନ ହେଲେ । ବେଳେବେଳେ ଘର ଚଳାଇବା ପାଇଁ ଆବଶ୍ୟକ ହେଲେ ପାଖରେ ଥିବା ଅଳଙ୍କାର ଏବଂ ସ୍ୱର୍ଣ୍ଣଜରି ଖଚିତ ଶାଢ଼ୀ ଆଦିକୁ ବିକି ସେ ଘର ଖର୍ଚ୍ଚ ତୁଲାଉଥିଲେ । ତାଙ୍କର ମା ଜଲେଶ୍ୱର ରାଣୀଙ୍କର ବାନ୍ଧବୀ ହୋଇଥିବା ଯୋଗୁଁ ଅନେକ ସମୟରେ ରାଣୀଙ୍କଠାରୁ ପାଇଥିବା ବିଭିନ୍ନ ଉପହାରକୁ ଘରର ଆବଶ୍ୟକତା ଦୃଷ୍ଟିରୁ ସେ ବିକ୍ରୟ କରିବାକୁ ବାଧ ହେଉଥିଲେ । ସେହି ଦୃଶ୍ୟ ରବିଶଙ୍କରଙ୍କ ମନରେ ଗଭୀର କଷ୍ଟ ଦେଉଥିଲା ଏବଂ ନୀରବରେ ସେ ଘରର କୌଣସି କୋଣରେ ବସି ଅଶ୍ରୁ ବିସର୍ଜନ କରୁଥିଲେ ।

ଏକଥା ନିଶ୍ଚିତ ଯେ ରବିଶଙ୍କରଙ୍କ ପରିବାରରେ ସବୁ ପ୍ରକାରର କଳା ପ୍ରତି ପ୍ରଗାଢ଼ ଉତ୍ସୁକତା ରହିଥିଲା । ରବିଶଙ୍କରଙ୍କର ପିତା ପ୍ରସିଦ୍ଧ ବିନ୍ ବାଦକ ମିଥାଇଲାଲ୍‌ଙ୍କ

ଠାରୁ ଧ୍ରୁପଦ ରାଗରେ ଗାୟନ ଶିକ୍ଷା କରିଥିଲେ । ତାଙ୍କର ମାତାଙ୍କୁ ମହାରାଣୀଙ୍କ ଦରବାରରେ ଗାୟିକା ମାନଙ୍କ ଦ୍ୱାରା ଯେଉଁ କାର୍ଯ୍ୟକ୍ରମ ଅନୁଷ୍ଠିତ ହୁଏ ତହିଁରେ ଯୋଗଦେବା ପାଇଁ ସୁଯୋଗ ମିଳୁଥିଲା । ତାଙ୍କର ଭାଇ ରାଜେନ୍ଦ୍ର କେତେକ ସାଂସ୍କୃତିକ କ୍ଲବ୍‌ର ସଭ୍ୟ ଥିବାରୁ ସେ ମଧ୍ୟ ଅନେକ ନୃତ୍ୟ ଗୀତ ସମାରୋହରେ ଅଂଶ ଗ୍ରହଣ କରୁଥିଲେ । ଏହିସବୁ ସଂଗୀତମୟ ପରିସର ଭିତରେ ରହି ରବିଙ୍କର ସଂଗୀତ ପ୍ରତି ଆଗ୍ରହ ସୃଷ୍ଟି ହୋଇଥିଲା । ଫଳରେ ପରବର୍ତ୍ତୀ ସମୟରେ ସେ ଗାୟନ ତଥା ବାଦ୍ୟଯନ୍ତ୍ରରେ ଗଭୀର ରୁଚି ଦେଖାଇଥିଲେ । ୧୯୨୯ ମସିହାରେ ରବିଙ୍କର ଜ୍ୟେଷ୍ଠଭ୍ରାତା ଉଦୟ ଲଣ୍ଡନରୁ ଚିତ୍ର ଅଙ୍କନରେ ସ୍ନାତକ ଡ଼ିଗ୍ରୀ ହାସଲକରି ଘରକୁ ଫେରି ଆସିଲେ । କିନ୍ତୁ ଇତିମଧ୍ୟରେ ସେ ଚିତ୍ରାଙ୍କନରୁ ଦୂରେଇ ଯାଇ ନୃତ୍ୟପ୍ରତି ଅଧିକ ନିଷ୍ଠାବାନ ହେଲେ । ବିଂଶ ଶତାବ୍ଦୀର ୨୦ ଦଶକରେ ତାଙ୍କର ପିତା ଡ଼କ୍ଟର ଚୌଧୁରୀ ଭାରତୀୟ ନୃତ୍ୟ ଶୈଳୀ ଉପରେ ଆଧାରିତ ମଞ୍ଚରେ କେତେକ ପରୀକ୍ଷା ନିରୀକ୍ଷା ଆରମ୍ଭ କରିଥିଲେ । ୧୯୨୪ ମସିହାରେ ତାଙ୍କ ପିତାଙ୍କ ଦ୍ୱାରା ପ୍ରବର୍ତ୍ତିତ ଏହି ନୃତ୍ୟ ସଂଗୀତ ସମାହାରରେ ପ୍ରସ୍ତୁତ ମଞ୍ଚରେ ହିଁ ଉଦୟଶଙ୍କରଙ୍କର ପ୍ରଥମ ମଞ୍ଚାଭିନୟ । ଧୀରେ ଧୀରେ ଉଦୟ ଶଙ୍କର ଅଭିଜ୍ଞତା ହାସଲ କରିବା ପରେ ସେ ଏକ ନୃତ୍ୟ ଦଳ ନେଇ ୟୁରୋପ ଗ୍ରସ୍ତ କରିବା ଆରମ୍ଭ କଲେ । ସେ ଭାରତକୁ ଫେରି ଆସିବା ପରେ କଥକଲି ଏବଂ ଭାରତନାଟ୍ୟମ୍‌ରେ ଗଭୀର ଅଧ୍ୟୟନ ଏବଂ ଗବେଷଣା ଜାରି ରଖିଲେ । ଭାରତର ବିଭିନ୍ନ ମନ୍ଦିର ଏବଂ ପୌରାଣିକ ତଥ୍ୟ ଦ୍ୱାରା ସେ ପ୍ରୋତ୍ସାହିତ ହୋଇ ତାଙ୍କର ନୃତ୍ୟର ସଂରଚନା କଲେ । ତେବେ ତାଙ୍କର ମୌଳିକ ଚିନ୍ତନ ଏବଂ ସୃଜନଶୀଳତା ଦ୍ୱାରା ଏହିସବୁ ନୃତ୍ୟ ମଞ୍ଚରେ ପରିପୁଷ୍ଟ ହୋଇଥିଲା । ଜଣେ ନୃତ୍ୟଶିଳ୍ପୀ ଭାବେ ତାଙ୍କର ମୌଳିକତା ଅବଶ୍ୟ ସ୍ୱୀକାର୍ଯ୍ୟ, ତା ଛଡ଼ା ନୃତ୍ୟ ଶିକ୍ଷକ ବା ନୃତ୍ୟ ନିର୍ଦ୍ଦେଶକ ଭାବେ ସେ ଅନନ୍ୟ ଥିଲେ । ତାଙ୍କର ନୃତ୍ୟପ୍ରତି ପାଶ୍ଚାତ୍ୟ ଜଗତର ଆଗ୍ରହ ବଢ଼ିବାରେ ଶେଷରେ ତାଙ୍କର ସଂପୂର୍ଣ୍ଣ ପରିବାରସହ ଫ୍ରାନ୍ସର ପ୍ୟାରିସ୍ ନଗରୀରେ ଯାଇ ରହିବାକୁ ଆରମ୍ଭ କଲେ ।

ଜଣେ ଶିଶୁ କଳାକାରଭାବେ ନିଜ ଭାଇଙ୍କ ନୃତ୍ୟଦଳରେ ରବିଶଙ୍କର ଯୋଗ ଦେଇଥିଲେ । ରବିଶଙ୍କର ଜଣେ ଭଲ ନୃତ୍ୟଶିଳ୍ପୀ ହେଲେ ବି ସଂଗୀତ ପ୍ରତି ସେ ଅଧିକ ଆକୃଷ୍ଟ ହେଲେ । ଅନେକ କାଳ ଧରି ସେ ସଂଗୀତ ଏବଂ ନୃତ୍ୟ ମଧ୍ୟରେ ତାଙ୍କ ଜୀବନ ଦୁଇଧାରାରେ ପ୍ରବାହିତ ହେଲା । ତେବେ ତାଙ୍କୁ ୧୮ ବର୍ଷ ହେବା ବେଳକୁ ସେ ଉଦୟଶଙ୍କରଙ୍କର ଦଳ ଛାଡ଼ି ଭାରତୀୟ ସଂଗୀତଜ୍ଞ ଉସ୍ତାଦ ଆଲ୍ଲାଉଦ୍ଦିନ ଖାଁଙ୍କ ଠାରୁ

ସୀତାର୍ ବାଦନ ଶିକ୍ଷା କଲେ । ଉସ୍ତାଦ ଆଲ୍ଲାଉଦିନ୍ ଖାଁ ଖୁବ୍ କଡ଼ା ଅନୁଶାସନରେ ତାଙ୍କ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷା ଦିଅନ୍ତି । ଫଳରେ ତାଙ୍କ ପଚ୍ଛଶିଷ୍ୟମାନେ ଗୁରୁଙ୍କ ପରି ଖୁବ୍ ପ୍ରସିଦ୍ଧ ହୋଇଥାନ୍ତି । ଏଭଳି ଗୁରୁଙ୍କଠାରୁ ଶିକ୍ଷା ଗ୍ରହଣ କରିବା ପରେ ପଣ୍ଡିତ ରବିଶଙ୍କର ପାଞ୍ଚ ଛଅ ବର୍ଷ ମଧ୍ୟରେ ଜଣେ ଓସ୍ତାଦଙ୍କ ପରି ସୀତାର୍ ବାଦନ କରିବାକୁ ସକ୍ଷମ ହୋଇଥିଲେ । ନୂଆଦିଲ୍ଲୀର ଅଲ୍ ଇଣ୍ଡିଆ ରେଡ଼ିଓରେ ସଂଗୀତ ନିର୍ଦ୍ଦେଶକ ଭାବେ ୧୯୪୮-୧୯୫୬ ମସିହା ପର୍ଯ୍ୟନ୍ତ ସେ କାର୍ଯ୍ୟ କରିଥିଲେ । ତା ପରଠାରୁ ସେ ୟୁରୋପ ଏବଂ ଆମେରିକାର ବିଭିନ୍ନ ଦେଶ ଗ୍ରସ୍ତ କରିବା ଆରମ୍ଭ କରିଥିଲେ । ରେଡ଼ିଓରେ ବିଭିନ୍ନ କାର୍ଯ୍ୟକ୍ରମ ପାଇଁ ତଥା ଭାରତୀୟ ଏବଂ ବିଦେଶର ବଳଚିତ୍ର ଜଗତ ପାଇଁ ମଧ୍ୟ ସେ ସଂଗୀତ ନିର୍ଦ୍ଦେଶନା ଦେଇଛନ୍ତି । ତାଙ୍କ ଦ୍ବାରା ରବିତ ସଂଗୀତ ମଧ୍ୟରେ ଚଳଚ୍ଚିତ୍ର ଗାନ୍ଧୀ ଏବଂ ସତ୍ୟଜିତ୍ ରାୟଙ୍କ ଦ୍ବାରା ନିର୍ଦ୍ଦେଶିତ ବିଶ୍ୱପ୍ରସିଦ୍ଧ ଚଳଚ୍ଚିତ୍ର 'ପଥେର ପାଞ୍ଚାଲୀ' ଅନ୍ୟତମ । ରବିନ୍ଦ୍ରନାଥ ଠାକୁରଙ୍କ ଦ୍ବାରା ରଚିତ ଅନେକ ନୃତ୍ୟନାଟିକା ରବି ଶଙ୍କରଙ୍କ ସଂଗୀତର ଯାଦୁସ୍ପର୍ଶରେ ଅତ୍ୟନ୍ତ ଗବି ସଂପନ୍ନ ହୃଦୟଗ୍ରାହୀ ଏବଂ ଅପାଶୋରା ହୋଇଛି । ଜଣେ ସଂଗୀତ ନିର୍ଦ୍ଦେଶକ, ସଂଗୀତ ସଂଗଠକ, ସଂଗୀତ ଶିକ୍ଷକ ଏବଂ ସଂଗୀତ ଶିଳ୍ପୀ ଭାବେ ରବିଶଙ୍କର ଭାରତୀୟ ସଂଗୀତର ଯେଉଁ ସେବା କରିଛନ୍ତି ତାହା ନିଶ୍ଚିତ ଭାବେ ଅନନ୍ୟ ସାଧାରଣ । ଭାରତୀୟ ସଂଗୀତକୁ ପାଶ୍ଚାତ୍ୟ ଜଗତରେ ପ୍ରସିଦ୍ଧି ଲାଭ କରାଇବାରେ ତାଙ୍କର ଭୂମିକା ସର୍ବାଗ୍ରେ ବିଦ୍ୟମାନ ।

୧୯୬୦ ଦଶକରେ ପାଶ୍ଚାତ୍ୟ ଜଗତରେ ବହଳ ପକାଇଥିବା ବିଟିଲ୍ସ୍ ଦଳକୁ ପଣ୍ଡିତ ରବିଶଙ୍କର ସଂଗୀତ ଶିକ୍ଷା ଦେଇଥିଲେ । ତେବେ ବ୍ରିଟିଶ୍ ମାନଙ୍କ ସହିତ ତଥା ୟେହୁଦୀ ମେନୁଇନ୍‌ଙ୍କ ସହିତ ରବିଶଙ୍କରଙ୍କର ସଂପୃକ୍ତି ଯୋଗୁଁ ଭାରତୀୟ ସଂଗୀତ ବିଶ୍ୱସ୍ତରରେ ଆଦୃତ ହେବା ସଂଗେ ସଂଗେ ସ୍ୱୀକୃତି ଏବଂ ସମ୍ମାନ ଲାଭ କଲା । ସେ ଏବଂ ପ୍ରସିଦ୍ଧ ଭାଓଲିନ୍ ବାଦକ ୟେହୁଦୀ ମେନୁଇନ୍ ଉଭୟ ମିଶି ଅନେକ ବାଦ୍ୟଯନ୍ତ୍ରର ସମ୍ମୋହକ ଅର୍କେଷ୍ଟ୍ରା ସୃଷ୍ଟି କରିଛନ୍ତି ।

ତାଙ୍କ ଦ୍ବାରା ରଚିତ ଓ ସମ୍ପାଦିତ ସ୍ମରଣୀୟ ଅର୍କେଷ୍ଟ୍ରାମାନଙ୍କ ମଧ୍ୟରେ ୟେହୁଦୀ ମେନୁଇନ୍ ଓ ତାଙ୍କ ମଧ୍ୟରେ ହୋଇଥିବା ଭାଓଲିନ୍ ଓ ସିତାର ସଂଗୀତ, ବଂଶୀ (ଫ୍ଲୁଟ୍) ବାଦକ ଜିନ୍ ପେରୀ ରାମପାଲ ଓ ହୋସାନ୍ ୟାମା ମୋଟୋ ଇତ୍ୟାଦି ଆହୁରି ଅନେକ ବିଶ୍ୱ ପ୍ରସିଦ୍ଧ ସଂଗୀତଜ୍ଞଙ୍କ ପାଇଁ ସେ ସଂଗୀତ ସଂଯୋଜନା କରିଛନ୍ତି ।



ବିଟିଲ୍‌ସ୍ ଦଳର ଜର୍ଜ ହାରିସନ୍‌ଙ୍କ  ପାଇଁ ଦୁଇଟି ଆଲ୍‌ବମ୍‌ରେ ସଂଗୀତ ନିର୍ଦ୍ଦେଶନା ସାଙ୍ଗକୁ ସୀତାର ବାଦନ କରିଛନ୍ତି । ସେହି ଆଲ୍‌ବମ୍‌ର ନାମ 'ଶଙ୍କର ପରିବାର ଏବଂ ବନ୍ଧୁବର୍ଗ' ଏବଂ 'ଭାରତର ପର୍ବପର୍ବାଣୀ' । ବିଦେଶରେ ସେ ଯେଉଁଠାରେ ସୀତାର ବାଦନ କରିଛନ୍ତି ତାହା ପ୍ରତ୍ୟେକ ଶ୍ରୋତାଙ୍କୁ ମନ୍ତ୍ରମୁଗ୍ଧ କରିଦେଇଛି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂଗୀତର ମହାମିଳନ କରି ସେ ଯେଉଁସବୁ ସ୍ୱର ଓ ତାଳ ସୃଷ୍ଟି କରିଛନ୍ତି, ତାହା ସଦା ନୂତନପରି  ଶ୍ରୋତାଙ୍କ ପ୍ରାଣରେ ସଂଚାରରେ ଅଫୁରନ୍ତ ଆନନ୍ଦର ଅସରନ୍ତି ଢେଉ ।

ତାଙ୍କ ସଂଗୀତରେ ମୁଗ୍ଧ ପୃଥିବୀରୁ ତାଙ୍କ ପାଇଁ ସମ୍ମାନର ସୁଅ ଛୁଟିଛି । ୟୁନେସ୍କୋର ମ୍ୟୁଜିକ୍ କାଉନ୍‌ସିଲ ପୁରସ୍କାର (୧୯୭୫) ମାନିଲାରୁ ମାଗାସେସେ ପୁରସ୍କାର (୧୯୭୫) ଦୁଇଟି ଗ୍ରାମୀ ପୁରସ୍କାର, ଜାପାନ୍‌ରୁ ଫୁକୁଓକା ଗ୍ରାଣ୍ଡ ପାଇଜ୍, ପୋଲାର ମ୍ୟୁଜିକ୍ ପ୍ରାଇଜ୍ (୧୯୯୮) ଏବଂ ଡାଭୋସ୍‌ର କ୍ରିଷ୍ଟାଲ୍ ପୁରସ୍କାର ଇତ୍ୟାଦି ପ୍ରଣିଧାନଯୋଗ୍ୟ । ୧୯୮୬ ମସିହାରେ ଭାରତର ସଂସଦ ଭବନ (ରାଜ୍ୟସଭା)ରେ ସେ ମନୋନିତ ସଭ୍ୟଭାବେ ଯୋଗ ଦେଇଥିଲେ ।

ପାରମ୍ପରିକ ବାଦ୍ୟଯନ୍ତ୍ର ସହିତ ଇଲେକ୍ଟ୍ରୋନିକ୍ ଯନ୍ତ୍ରାଂଶର ଅପୂର୍ବ ମିଶ୍ରଣ ପୂର୍ବକ ସେ 'ତନମନ' ସଂଗୀତ ସୃଷ୍ଟିକରି ସାରା ପୃଥିବୀର ସଂଗୀତ ଜଗତରେ ଏକ ନୂତନ ଯୁଗ ସୃଷ୍ଟି କରିଥିଲେ ।

ରବିଶଙ୍କରଙ୍କର ଶିଷ୍ୟ ଅନେକ । ସେମାନଙ୍କ ମଧ୍ୟରୁ ଅନେକ ପରବର୍ତ୍ତୀ ସମୟରେ ମହାନ୍ ସଙ୍ଗୀତଜ୍ଞ ଭାବେ ଖ୍ୟାତି ଲାଭ କରିଛନ୍ତି । ସେଥିପାଇଁ ହାରିସନ୍‌ଙ୍କ ଭାଷାରେ ରବିଶଙ୍କର କେବଳ ଜଣେ ଖ୍ୟାତନାମା ସଂଗୀତଜ୍ଞ ନୁହନ୍ତି ବରଂ ସେ ହେଉଛନ୍ତି ସଂଗୀତ ଜଗତର ଗଡ୍ ଫାଦର୍ ।

ଭାରତର ଏହି ବରପୁତ୍ର କେବଳ ଦେଶ ଭିତରେ ନୁହେଁ ବରଂ ସମଗ୍ର ବିଶ୍ୱରେ ତାଙ୍କର ସଂଗୀତର ଯାଦୁ ବଳରେ ମାନବ ଜାତିର ଶ୍ରଦ୍ଧା ଓ ସମ୍ମାନର ପାତ୍ର ହୋଇଛନ୍ତି । ମାନବ କଲ୍ୟାଣ ପାଇଁ ତାଙ୍କର କଳାକାର ପ୍ରାଣ ସତତ ବ୍ୟାକୁଳ ହୋଇଛି । ପାକିସ୍ଥାନଠାରୁ ମୁକ୍ତି ପାଇବା ପାଇଁ ବାଂଲାଦେଶର ସ୍ୱାଧୀନତା ସଂଗ୍ରାମ ପରେ ବାଂଲାଦେଶରୁ ୮୦ ଲକ୍ଷରୁ ଅଧିକ ଶରଣାର୍ଥୀ ଭାରତବର୍ଷକୁ ଆସିଥିଲେ । ସେମାନଙ୍କ ଦୁର୍ଦ୍ଦଶାରେ ମର୍ମାହତ ହୋଇ ରବିଶଙ୍କର ଶରଣାର୍ଥୀଙ୍କ ସାହାଯ୍ୟାର୍ଥେ ତାଙ୍କର ଶିଷ୍ୟ ଏବଂ ସଂଗୀତଜ୍ଞ ବନ୍ଧୁମାନଙ୍କ ସହଯୋଗରେ ଯେଉଁ ବିରାଟ ସଂଗୀତ ଅର୍କେଷ୍ଟ୍ରାର ଆୟୋଜନ କରିଥିଲେ ତାହା ଚିର ଅଭୁଲା ହୋଇ ରହିବ ।

ଭାରତବର୍ଷର ନାଗରିକ ସମ୍ମାନ ଭାବେ ପ୍ରଥମେ ପଦ୍ମଭୂଷଣ, ପରେ ପଦ୍ମବିଭୂଷଣ ଏବଂ ଶେଷରେ ୧୯୯୯ ମସିହାରେ ଭାରତରତ୍ନ ଉପାଧିରେ ଭୂଷିତ ହେଲେ ରବିଶଙ୍କର । ତାଙ୍କର କାଳଜୟୀ ସଂଗୀତ ଯୋଗୁଁ ରବିଶଙ୍କର ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ଜଗତରେ ଖ୍ୟାତି ଓ ସମ୍ମାନର ଅଧିକାରୀ ହୋଇଛନ୍ତି । ଦେହାବସାନର ଠିକ୍ ୨ ମାସ ପରେ ସଂଗୀତ ଜଗତର ସର୍ବଶ୍ରେଷ୍ଠ ଆନ୍ତର୍ଜାତୀୟ ପୁରସ୍କାର ଗ୍ରାମୀ ଆୱାର୍ଡ଼ (୨ଟି) ତାଙ୍କୁ ମିଳିଥିଲା ।

ଏହି ମହାନ୍ ସଂଗୀତଜ୍ଞ ଶେଷରେ ୧୨.୧୨.୨୦୧୨ ତାରିଖ ଦିନ ଇହଲୀଳା ସମ୍ବରଣ କଲେ । ତାଙ୍କ ମୃତ୍ୟୁରେ ପ୍ରାଚ୍ୟ ଓ ପ୍ରାଶ୍ଚାତ୍ୟ ସଂଗୀତାକାଶରୁ ଏକ ମହାନ ଜ୍ୟୋତିଷ୍କ ଅପସରି ଗଲା । ଆମ ଦେଶର ପ୍ରଧାନମନ୍ତ୍ରୀ ଓ ରାଷ୍ଟ୍ରପତିଙ୍କ ସମେତ ଅଧିକାଂଶ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରୁ ଶୋକବାର୍ତ୍ତାମାନ ପହଞ୍ଚିଲା । ତାଙ୍କ ମୃତ୍ୟୁରେ ମ୍ରିୟମାଣ ବିଶ୍ୱରେ ଏକ କରୁଣ ମୂର୍ଚ୍ଛନା ଖେଳିଗଲା ।

***

# ପ୍ରଫେସର ଅମର୍ତ୍ତ୍ୟ ସେନ



୧୯୩୩

ଭାରତରତ୍ନ - ୧୯୯୯

ଅମର୍ତ୍ତ୍ୟ ସେନ୍‌ଙ୍କ ଦ୍ୱାରା ପ୍ରବର୍ତ୍ତିତ କଲ୍ୟାଣକାରୀ ଅର୍ଥଶାସ୍ତ୍ର ବିଭିନ୍ନ ସରକାରଙ୍କର ଅର୍ଥନୀତି ସମାଜ ଓ ଗୋଷ୍ଠୀର କେତେ କଲ୍ୟାଣ ସାଧନ କରିପାରୁଛି ତାହା ନିର୍ଣ୍ଣୟ କରିବାରେ ସହାୟକ ହୋଇଥାଏ । ପ୍ରଫେସର ସେନ୍ ତାଙ୍କର ବିଭିନ୍ନ ତଥ୍ୟକୁ ବ୍ୟବସାୟର ବିବେକ ନାମରେ ଅବିହିତ କରିଛନ୍ତି । ମୋଟାମୋଟି ଭାବେ କହିବାକୁ ଗଲେ ତାଙ୍କ ଦ୍ୱାରା ରଚିତ ସମସ୍ତ ପ୍ରବନ୍ଧ ଏବଂ ଅର୍ଥଶାସ୍ତ୍ରୀୟ ଧାରା ବିଶ୍ୱର ମାନବସମାଜର କଲ୍ୟାଣ ଉଦ୍ଦେଶ୍ୟରେ ପ୍ରଣୀତ ହୋଇଛି । ଗରିବ ଓ ଉପେକ୍ଷିତ ଜନତାର ସେବା ପାଇଁ ସେ ଦାରିଦ୍ର୍ୟର ଅନେକ ପରିମାପକ ସୃଷ୍ଟି କରିଛନ୍ତି ।

ଯେଉଁ ସରକାର ଏବଂ ଅନ୍ତଃରାଷ୍ଟ୍ରୀୟ ସଂଗଠନ ଗୁଡ଼ିକ ଖାଦ୍ୟ ସଂଗ୍ରହ ଉଦ୍ଦେଶ୍ୟରେ କାର୍ଯ୍ୟ କରନ୍ତି ସେମାନେ ପ୍ରଫେସର ଅମର୍ତ୍ତ୍ୟ ସେନ୍‌ଙ୍କ ପ୍ରବର୍ତ୍ତିତ ଧାରାରେ ବହୁଳ ଭାବେ ପ୍ରଭାବିତ ହୋଇଛନ୍ତି । ପ୍ରଫେସର ସେନ୍ ଦେଇଥିବା ମତାମତ ନୀତି ନିର୍ଦ୍ଧାରଣକାରୀ ମାନଙ୍କୁ ପଥପ୍ରଦର୍ଶକ ଭାବେ କାର୍ଯ୍ୟ କରୁଛି । କେବଳ ବର୍ତ୍ତମାନର ସଂକଟ ଜନକ ପରିସ୍ଥିତିରୁ ସାମୟିକ ରକ୍ଷା କରିବା ଉଦ୍ଦେଶ୍ୟ ନ ରଖି ଭବିଷ୍ୟତରେ କିପରି ଏଭଳି ଅବସ୍ଥା ସୃଷ୍ଟି ନ ହେବ ସେଥିପାଇଁ ଦରିଦ୍ର ଜନତା ହରାଇ ଥିବା ତାର ଉପାର୍ଜନକୁ ପୁନଃପ୍ରତିଷ୍ଠିତ କରାଯିବା ଆବଶ୍ୟକ ବୋଲି ସେ ମତ ଦେଇଛନ୍ତି । ଅର୍ଥନୈତିକ ବୃଦ୍ଧିହାର ପ୍ରତିଷ୍ଠିତ କରିବା ପାଇଁ ସେ କହିଛନ୍ତି ଶିକ୍ଷା ଏବଂ ଗୋଷ୍ଠୀ ସ୍ୱାସ୍ଥ୍ୟର ବିକାଶ କରିବା ଫଳରେ ହିଁ ଏହା ସମ୍ଭବ ହୋଇପାରିବ ।

ତାଙ୍କର ନୀତିଗତ ଆଦର୍ଶ ତଥା ଅର୍ଥଶାସ୍ତ୍ରର ବ୍ୟାଖ୍ୟା ତଥା ବିଶ୍ୱରେ ଦାରିଦ୍ର୍ୟ ଦୂରୀକରଣ, ଅର୍ଥନୀତିର ବିକାଶ ଏବଂ କଲ୍ୟାଣ ଧର୍ମୀ ଉଦାରପନ୍ଥୀ ଅର୍ଥନୀତିର ପ୍ରବର୍ତ୍ତନ ପାଇଁ ତାଙ୍କୁ ବିଶ୍ୱସ୍ତରୀୟ ଅନେକ ସମ୍ମାନ ଓ ପୁରସ୍କାର ମିଳିଛି । ୧୯୯୮ ମସିହାରେ ସେ ଅର୍ଥନୀତି ବିଜ୍ଞାନରେ ତାଙ୍କର ଥିଓରୀ ପାଇଁ ନୋବେଲ୍ ପୁରସ୍କାର ବିମଣ୍ଡିତ ହୋଇଛନ୍ତି । ତା ପରେ ୧୯୯୯ ମସିହାରେ ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନ ଉପାଧିରେ ତାଙ୍କୁ ଭୂଷିତ କରାଯାଇଛି । ଏହାଛଡ଼ା ୧୯୯୯ ମସିହାରେ ବାଲାଂଦେଶର ମୁଖ୍ୟମନ୍ତ୍ରୀ ସେଖ୍ ହସିନାଙ୍କ ଦ୍ୱାରା ତାଙ୍କୁ ସେ ଦେଶର ଅବୈତନିକ ନାଗରିକତ୍ୱ ମିଳିଛି । ୨୦୦୦ ମସିହାରେ ଅର୍ଥନୀତି ବିଜ୍ଞାନର ବିଭିନ୍ନ ଥିଓରୀରେ ତାଙ୍କର ଅବିନଶ୍ୱର ଅବଦାନ ପାଇଁ ତାଙ୍କୁ ପୁରସ୍କାର ମିଳିଛି । ଇଣ୍ଟରନ୍ୟାସନାଲ ହ୍ୟୁମାନିଟି ଆଣ୍ଡ ଏଥିକାଲ୍ ୟୁନିୟନ୍ ତରଫରୁ ତାଙ୍କୁ ୨୦୦୨ ମସିହାରେ ବିଶ୍ୱ ମାନବିୟତା ପୁରସ୍କାରରେ ସମ୍ମାନିତ କରାଯାଇଛି । ଏହାଛଡ଼ା ସେ ଆମେରିକାରୁ ନେତୃତ୍ୱ ଏବଂ ସେବା ପାଇଁ ୨୦୦୨ ମସିହାରେ ଆଇଜେନ୍ ହାୱାର ମେଡ଼ାଲ୍ ପାଇଛନ୍ତି । ଇଂଲଣ୍ଡରୁ କମ୍ପାନିୟନ୍ ଅଫ୍ ଅନର ପୁରସ୍କାର ତାଙ୍କୁ ୨୦୦୦ ମସିହାରେ ମିଳିଛି । ୨୦୦୩ରେ ଭାରତୀୟ ବାମ୍ବର ଅଫ୍ କମର୍ସ ତାଙ୍କୁ ଲାଇଫ୍ ଟାଇମ୍ ଆଚିଭ୍‌ମେଣ୍ଟ ପୁରସ୍କାରରେ ସମ୍ମାନିତ କରିଛନ୍ତି ।

ରାଜନୀତି ବିଜ୍ଞାନରେ ଧୂରିଣ ବ୍ୟକ୍ତିତ୍ୱ ଭାବେ ସେ ସାରା ବିଶ୍ୱରେ ସମ୍ମାନିତ ହୋଇଥିବା ଜଣେ ଅଗ୍ରଣୀ ଭାରତୀୟ । ପୃଥିବୀରେ ଦରିଦ୍ର ଜନତାର ଉତ୍‌ଥାନ ପାଇଁ ଅର୍ଥନୀତିର ରୂପରେଖରେ ପରିବର୍ତ୍ତନ ଉଦ୍ଦେଶ୍ୟରେ ସେ ଯେଉଁ ନୀତିର ପ୍ରଚାର ଏବଂ

ପ୍ରସାର କରିଛନ୍ତି ସେଥିପାଇଁ ସର୍ବଦା ଅବିସ୍ମରଣୀୟ ହୋଇ ରହିବେ ।



ଭାରତର ଏହି କୃତୀ ସନ୍ତାନଙ୍କର ଜନ୍ମ ପଶ୍ଚିମ ବଙ୍ଗର ଶାନ୍ତିନିକେତନରେ ୧୯୩୩ ମସିହା ନଭେମ୍ବର ୩ ତାରିଖ ଦିନ ହୋଇଥିଲା । ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ସ୍ୱୟଂ ତାଙ୍କର ନାମକରଣ କରିଥିଲେ । ତାଙ୍କ ପିତା ରସାୟନ ଶାସ୍ତ୍ର ଅଧ୍ୟାପକ ଆଶୁତୋଷ ସେନ୍ ଓ ମା' ଅମିତା ସେନ୍ ଏବଂ ଜେଜେବାପା କ୍ଷୀତିଶ ମୋହନ ସେନ୍ ବିଶ୍ୱ କବିଙ୍କର ଅନ୍ତରଙ୍ଗ ଥିଲେ । ତାଙ୍କ ପରିବାର ଢାକାର ଅଧିବାସୀ ଥିଲେ । କିନ୍ତୁ ୧୯୪୭ ମସିହାରେ ଭାରତ ବିଭାଜିତ ହେବା ପରେ ସେମାନେ ପଶ୍ଚିମବଙ୍ଗକୁ ଆସିଯାଇଥିଲେ । ଅମର୍ତ୍ତ୍ୟଙ୍କ ବାଲ୍ୟଶିକ୍ଷା ବିଶ୍ୱଭାରତୀରେ ହୋଇଥିଲା । ପରେ କଲିକତାର ପ୍ରେସିଡ଼େନ୍ସି କଲେଜରେ ଅର୍ଥଶାସ୍ତ୍ରରେ ସ୍ନାତକ ଡିଗ୍ରୀ ହାସଲକରି ସେ ଉଚ୍ଚ ଶିକ୍ଷା ପାଇଁ ଲଣ୍ଡନ ଯାଇ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଟ୍ରିନିଟି କଲେଜରେ ନାମ ଲେଖାଇଲେ । ସେହି ଅନୁଷ୍ଠାନରୁ ଅର୍ଥ ଶାସ୍ତ୍ରରେ ଅମର୍ତ୍ତ୍ୟ ପିଏଚ୍‌ଡି ଉପାଧି ପ୍ରାପ୍ତ ହେଲେ ।

ଅର୍ଥ ଶାସ୍ତ୍ରରେ ତାଙ୍କର ଗବେଷଣା ଶେଷ କରିବା ପୂର୍ବରୁ ସେ ଯାଦବପୁର ବିଶ୍ୱବିଦ୍ୟାଳୟରେ ଅର୍ଥଶାସ୍ତ୍ର ଅଧ୍ୟାପକ ଭାବେ ନିଯୁକ୍ତି ପାଇଲେ । ଦୁଇବର୍ଷ ଶିକ୍ଷାଦାନ କରିବା ପରେ ପୁଣି ଲଣ୍ଡନ ଫେରିଯାଇ ତାଙ୍କର ପିଏଚ୍‌ଡି ଶିକ୍ଷା ସମାପ୍ତ କଲେ । ତା'ପରେ ସେ ଅନେକ ସମୟ ଦର୍ଶନଶାସ୍ତ୍ର ଅଧ୍ୟୟନ କଲେ । ପରବର୍ତ୍ତୀ କାଳରେ ତାଙ୍କର ଅର୍ଥଶାସ୍ତ୍ରରେ ଗବେଷଣା ପାଇଁ ଏହି ଜ୍ଞାନ ଯଥେଷ୍ଟ ସାହାଯ୍ୟ କଲା । ଅଧିକାଂଶ ସମୟ ଲଣ୍ଡନ ଓ କୋଲକତା ଉଭୟ ସ୍ଥାନରେ ତାଙ୍କର ଯାତାୟତ, ଶିକ୍ଷାଦାନ, ଅଧ୍ୟାପନା ଓ ଗବେଷଣା ଚାଲିଲା । ୧୯୫୯ ମସିହାରେ ତାଙ୍କର ପିଏଚ୍‌ଡି ସମାପ୍ତ ହେବାପରେ ସେ ପରିଦର୍ଶକ ଅଧ୍ୟାପକ ଭାବେ ବର୍କଲୀ, ଷ୍ଟାନ୍‌ଫୋର୍ଡ଼ ଏବଂ ମାସାଚୁସେଟ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍‌ନୋଲଜି ପରି ବିଖ୍ୟାତ ବିଶ୍ୱବିଦ୍ୟାଳୟ ମାନଙ୍କରେ କାର୍ଯ୍ୟରତ ହେଲେ । ୧୯୭୨ ମସିହାରେ ଭାରତକୁ ଆସି କୋଲକତା ବିଶ୍ୱବିଦ୍ୟାଳୟ ଏବଂ ଦିଲ୍ଲୀ ସ୍କୁଲ୍ ଅଫ୍ ଇକନମିକ୍ସ୍‌ରେ ଅଧ୍ୟାପକ ଭାବେ କାର୍ଯ୍ୟଭାର ସମ୍ଭାଳିଲେ । ଏହି ସମୟରେ ସେ

'କଲେକ୍ଟିଭ୍ ଚଏସ୍ ଏଣ୍ଡ ସୋସିଆଲ୍ ୱେଲ୍‌ଫେୟାର' ଉପରେ ତାଙ୍କର ବିସ୍ତୃତ ଗବେଷଣା କରିଥିଲେ । ପରେ ଲଣ୍ଡନ୍ ସ୍କୁଲ୍ ଅଫ୍ ଇକନମିକ୍ସ୍‌ରେ ଅକ୍ସ୍ ଫୋର୍ଡ଼ ବିଶ୍ୱବିଦ୍ୟାଳୟ ଏବଂ ନଫିଲ୍ଡ଼୍ ମହାବିଦ୍ୟାଳୟରେ ଅଧ୍ୟାପକ ହେଲେ । ସେ ବାଲ୍ୟକାଳରେ ମରୁଡ଼ି ଓ ଦୁର୍ଭିକ୍ଷର ଦୃଶ୍ୟ ଦେଖିଥିଲେ । ଏହା ତାଙ୍କର ପ୍ରାଣକୁ ସତତ ଆନ୍ଦୋଳିତ କରୁଥିଲା । ତେଣୁ ଅନୁନ୍ନତ ଏବଂ ବିକାଶମୁଖୀ ଦେଶମାନଙ୍କର ଅବହେଳିତ ଜନତାଙ୍କ ପାଖରେ ଖାଦ୍ୟପେୟର ଜିପରି ଅଭାବ ନରହିବ ସେ ଦିଗରେ ପ୍ରଫେସର ସେନ୍ ଚିନ୍ତାରତ ଥିଲେ । ବର୍ତ୍ତମାନର ଅବସ୍ଥାରେ ଉନ୍ନତି କରାଇବା ଦିଗରେ ଗ୍ରହଣୀୟ ସାମାଜିକ ଅର୍ଥନୀତି ବଳରେ ସମାଜ, ସଂସ୍କାର କରିବା ପାଇଁ ସେ ପ୍ରଶାସନ ଓ ନୀତି ନିର୍ଦ୍ଧାରକମାନଙ୍କ ସମ୍ମୁଖରେ ତାଙ୍କ ଗବେଷଣାର ତଥ୍ୟଗୁଡ଼ିକ ଉପସ୍ଥାପନ କଲେ । ତାଙ୍କ ପ୍ରଦର୍ଶିତ ମାର୍ଗ ଅନୁସରଣ କରିବା ଫଳରେ ଦେଶର ଦାରିଦ୍ର୍ୟ ଦୂରୀକରଣ, ଦୁର୍ଭିକ୍ଷ ସମସ୍ୟା ସମାଧାନ, ସାମାଜିକ ଅନଗ୍ରସରତା, ଲିଙ୍ଗଭେଦ ସମସ୍ୟା, ରାଜନୈତିକ ଉଦାରତା ଇତ୍ୟାଦି ଅନେକ କ୍ଷେତ୍ରରେ ସଂସ୍କାର କରିବାରେ ଅଦ୍ଭୁତ ସଫଳତା ମିଳିଲା ।

ପ୍ରଫେସର ସେନ୍ ନବନୀତା ଦେବ ସେନ୍‌ଙ୍କୁ ବିବାହ କରିଥିଲେ । ନବନୀତା ଜଣେ ଖ୍ୟାତନାମା ବିଦୁଷୀ ଏବଂ ଲେଖିକା । ତାଙ୍କର ଅନ୍ତରା ଏବଂ ନନ୍ଦନା ନାମ୍ନୀ ଦୁଇଟି କନ୍ୟା । ଅନ୍ତରା ଜଣେ ସାମ୍ବାଦିକ ଏବଂ ନନ୍ଦନା ଜଣେ ବଲିଉଡ୍ ଅଭିନେତ୍ରୀ । ତେବେ ଏହି ବିବାହ ବନ୍ଧନ ବେଶୀଦିନ ତିଷ୍ଠି ପାରିନଥିଲା । ୧୯୭୧ ମସିହାରେ ସେମାନେ ପରସ୍ପରଠାରୁ ବିଚ୍ଛିନ୍ନ ହେଲେ । ତା'ର ଦୁଇବର୍ଷ ପରେ ସେ ଇଭା କଲୋର୍ନି ନାମ୍ନୀ ଜଣେ ଜିଓ୍ୱିସ୍ ମହିଳାଙ୍କୁ ବିବାହ କଲେ । କନ୍ୟା ଇନ୍ଦ୍ରାଣୀ ଏବଂ ପୁତ୍ର କବୀରଙ୍କୁ ଜନ୍ମ ଦେବାପରେ ଇଭାଙ୍କର ପାକସ୍ଥଳୀ କର୍କଟ ରୋଗରେ ମୃତ୍ୟୁ ହେଲା । ଦ୍ୱିତୀୟ ପତ୍ନୀଙ୍କ ମୃତ୍ୟୁପରେ ଇମା ଜର୍ଜିଆ ରଥ ସିଲ୍ଡ଼୍ ନାମ୍ନୀ ଜଣେ ଅର୍ଥଶାସ୍ତ୍ର ଐତିହାସିକଙ୍କୁ ସେ ବିବାହ କରିଛନ୍ତି ।

ପାରିବାରିକ ଜୀବନରେ ଅନେକ ଝଡ଼ଝଞ୍ଜାର ସମ୍ମୁଖୀନ ହୋଇବି ସେ ସମାଜର ଅବହେଳିତ ଅନୁନ୍ନତବର୍ଗଙ୍କ କଲ୍ୟାଣ ପାଇଁ ତାଙ୍କର ଗବେଷଣା ଅବିରତ ଭାବେ ଚଳାଇଛନ୍ତି । କେବଳ ଭାରତ ନୁହେଁ ପୃଥିବୀର ସମସ୍ତ ଦେଶ ତାଙ୍କ ପ୍ରଦର୍ଶିତ ଅର୍ଥନୈତିକ ଦର୍ଶନକୁ ଅନୁସରଣ କରୁଛି । ଭାରତର ଏହି ମହାନ୍ ଅର୍ଥନୀତିଜ୍ଞ ୧୯୯୯ ମସିହାରେ ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ 'ଭାରତ ରତ୍ନ'ରେ ବିମଣ୍ଡିତ ହୋଇଛନ୍ତି । ସମଗ୍ର ବିଶ୍ୱରୁ ଶ୍ରଦ୍ଧା, ସମ୍ମାନ ଓ ସ୍ୱୀକୃତି ଯେପରି ତାଙ୍କର ସହଚର ସାଜିଛି ।

* * *

# ଗୋପୀନାଥ ବର୍ଦ୍ଦଲୋଇ



୧୮୯୦-୧୮୫୦

ଭାରତରତ୍ନ ୧୯୯୯

**ସ୍ୱା**ଧୀନତା ପୂର୍ବବର୍ତ୍ତୀ କାଳରେ ଆସାମ ଭାରତର ସର୍ବବୃହତ୍ତମ ରାଜ୍ୟ ଥିଲା । ବର୍ତ୍ତମାନ ତାହା ବିଭାଜିତ ୭ଟି ରାଜ୍ୟରେ ପରିଣତ ହୋଇଛି । କେନ୍ଦ୍ରୀୟ ଆସାମରେ ୧୮୯୦ ମସିହା ଜୁନ୍ ୬ ତାରିଖ ଦିନ ଗୋପୀନାଥ ବର୍ଦ୍ଦଲୋଇ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ଡ଼କ୍ଟର ବୁଦ୍ଧେଶ୍ୱର ବର୍ଦ୍ଦଲୋଇ ଏବଂ ମାତା ପରମେଶ୍ୱରୀ ଦେବୀ । ଆସାମର ନୌଗଣ୍ଡ ଜିଲ୍ଲାରେ ରୋହା ଗ୍ରାମରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ସରକାରୀ ଡ଼ାକ୍ତର ଭାବେ ବେଶ୍ ପ୍ରଖ୍ୟାତ ଥିଲେ । ଗୋପୀନାଥ ବର୍ଦ୍ଦଲୋଇଙ୍କୁ ମାତ୍ର ୧୨ ବର୍ଷ ବୟସରେ ତାଙ୍କର ମାତା ଦେହତ୍ୟାଗ କଲେ । ମାତାଙ୍କର ମୃତ୍ୟୁପରେ ବଡ଼ ଭଉଣୀ ଶଶୀକାନ୍ତା ଦେବୀଙ୍କ ଲାଳନପାଳନରେ ସେ ବଢ଼ିଥିଲେ ।

ତାଙ୍କ ପିତାଙ୍କର ବାରମ୍ବାର ସ୍ଥାନାନ୍ତର ହେଉଥିଲା । ତେଣୁ ଗୋପୀନାଥ ରୋହା, ମଙ୍ଗଲାଦାଇ ଏବଂ ବର୍କେଟା– ଏହି ତିନୋଟି ସ୍ଥାନରେ ଶିକ୍ଷାଗ୍ରହଣ କରିଥିଲେ । ଶେଷରେ ତାଙ୍କ ପରିବାର ଗୌହାଟୀରେ ସ୍ଥାୟୀ ଭାବେ ବସବାସ କଲେ ଏବଂ ଗୋପୀନାଥ ତାଙ୍କର ଗୌହାଟୀ ସ୍ଥିତ କଟନ୍ କଲେଜିଏଟ୍ ସ୍କୁଲ୍‌ରେ ମାଟ୍ରିକ୍ ପରୀକ୍ଷା ପାଶ୍ କଲେ । ପରେ ସେ କଲିକତାର ସ୍କଟିସ୍ ଚର୍ଚ୍ଚ କଲେଜରେ ଇତିହାସରେ ଅନର୍ସ ନେଇ ଅଧ୍ୟାପନା କଲେ । କଲିକତା ବିଶ୍ୱବିଦ୍ୟାଳୟରୁ ସେ ସ୍ନାତକତ୍ତୋର ଡ଼ିଗ୍ରୀ ୧୯୧୪ ମସିହାରେ ହାସଲ କଲେ । ସ୍କୁଲ ଏବଂ କଲେଜ ଅଧ୍ୟୟନ ସମୟରେ ସେ ଜଣେ ଦକ୍ଷ କ୍ରିକେଟ ଖେଳାଳୀ ଭାବେ ପରିଚିତ ଥିଲେ ।

ଏମ୍.ଏ ପାଶ୍ କରିବା ପରେ ସେ ଗୌହାଟୀ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଭାବେ ଯୋଗ ଦେଲେ । କିନ୍ତୁ ୧୯୧୭ ମସିହାରେ ସେ ଏହି ପଦବୀ ଛାଡ଼ି ଆଇନ ଶାସ୍ତ୍ର ଅଧ୍ୟୟନ କରି ଓକିଲାତି ବ୍ୟବସାୟ କରିବା ପାଇଁ ମନସ୍ଥ କଲେ । ତାଙ୍କ ଜୀବନର ଆଦ୍ୟ କାଳରେ ସେ ମାଣିକ୍ ବାନ୍ଦ ବରୁଆ, ପଞ୍ଚବଟୀ ଆଶ୍ରମର ସ୍ୱାମୀ ସୁରେଶ୍ୱରାନନ୍ଦ ଏବଂ ପରବର୍ତ୍ତୀ ଜୀବନରେ ସେ ତରୁଣ ରାମ ଫୁକନ୍ ଏବଂ ନବୀନ ଚନ୍ଦ୍ର ଗର୍ଗଲୋଇଙ୍କ ପରି ବ୍ୟକ୍ତିତ୍ୱଙ୍କ ସଂସ୍ପର୍ଶରେ ଆସି ସେମାନଙ୍କ ଭାବଧାରାରେ ପ୍ରଭାବିତ ହୋଇଥିଲେ ।

ସେତେବେଳେ ଗାନ୍ଧୀଜୀଙ୍କର ଅସହଯୋଗ ଆନ୍ଦୋଳନ ସାରା ଦେଶରେ ଚାଲିଥାଏ । ଗାନ୍ଧିଜୀଙ୍କ ଦ୍ୱାରା ପ୍ରଭାବିତ ହୋଇ ସେ ଆଇନ୍ ବ୍ୟବସାୟ ତ୍ୟାଗ କରି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । ସେଥିପାଇଁ ୧୯୨୨ ମସିହାରେ ତାଙ୍କୁ ଜେଲ୍ ଭୋଗିବାକୁ ପଡ଼ିଲା । ୧୯୨୬ ମସିହାରେ ଗୌହାଟୀଠାରେ କଂଗ୍ରେସର ଅଧିବେଶନ ହେଲା । ସେହି ଅଧିବେଶରେ ଅଭ୍ୟର୍ଥନା କମିଟିରେ ତାଙ୍କୁ ସାଧାରଣ ସଂପାଦକ ଭାବେ ମନୋନୀତ କରାଯାଇଥିଲା । ସେତେବେଳେକୁ ତାଙ୍କୁ ମାତ୍ର ୩୬ ବର୍ଷ ବୟସ । ଆସାମରେ ଚାଲିଥିବା ସ୍ୱାଧୀନତା ସଂଗ୍ରାମର ମୁଖ୍ୟଭାବେ ସେ ପଦାରୂଢ଼ ହେଲେ । ସେଥିପାଇଁ ୧୯୪୦ ମସିହାରେ ଏବଂ ପୁନର୍ବାର ୧୯୪୨ ମସିହାରେ ତାଙ୍କୁ ଜେଲ୍ ଭୋଗିବାକୁ ପଡ଼ିଥିଲା । ୧୯୩୭ ମସିହାରେ ସେ ରାଜ୍ୟ ବିଧାନସଭାରେ କଂଗ୍ରେସ ଦଳର ନେତା ଭାବେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ବିଧାନସଭା ଗୃହରେ ପ୍ରଚାର କରିବା ଆରମ୍ଭ କଲେ । ୧୯୩୮ ମସିହାରେ ତାଙ୍କୁ ମୁଖ୍ୟମନ୍ତ୍ରୀତ୍ୱ ପଦବୀ ମିଳିଥିଲା ଏବଂ ଏହାକୁ ସେ ସଂଗ୍ରାମ ଅଧିକ ସଂପ୍ରସାରିତ କରିବା ଉଦ୍ଦେଶ୍ୟରେ ଏକ ଅସ୍ତ୍ରରୂପେ ପ୍ରୟୋଗ କଲେ । ବ୍ରିଟିଶ୍ ସରକାରଙ୍କର ଦମନଲୀଳା ବିରୁଦ୍ଧରେ ସେ ଯୁଦ୍ଧଘୋଷଣା କଲେ ।

ଶ୍ରୀଯୁକ୍ତ ବର୍ଦ୍ଦଲୋଇ ୧୯୩୯ ମସିହାରେ ମୁଖ୍ୟମନ୍ତ୍ରୀତ୍ୱ ପଦ ତ୍ୟାଗ କଲେ । ବ୍ରିଟିଶ୍ ସାମ୍ରାଜ୍ୟବାଦର ପ୍ରତିବାଦ କରି ସେ ତାଙ୍କର ଇସ୍ତଫାପତ୍ର ଦେଇଥିଲେ । ୧୯୪୧ ମସିହାରେ ସେ ବ୍ୟକ୍ତିଗତ ସତ୍ୟାଗ୍ରହ ଆନ୍ଦୋଳନରେ ଭାଗ ନେଇ ବନ୍ଦୀ ହେଲେ । ସେଥିରେ ଭାରତର ଐକ୍ୟ, ସଂହତି, ରାଜ୍ୟର ସାର୍ବଭୌମତ୍ୱ ଏବଂ ଆସାମ ପ୍ରତି ଅର୍ଥନୈତିକ ସୁବିଚାର ଏବଂ ଅନ୍ୟାନ୍ୟ ସମସ୍ୟା ଆଦି ବିଷୟରେ ବିଭିନ୍ନ ସଭାସମିତିରେ ତାଙ୍କର ମତ ଉପସ୍ଥାପନ କଲେ । ଜୋରାହାଟ୍‌ର ଜେଲ୍‌ରେ ଥିଲାବେଳେ ୧୯୪୦–୪୧ ମସିହାରେ ସେ ତାଙ୍କର ଭାଷଣରେ ଭାରତର ଐକ୍ୟ ଏବଂ ରାଜ୍ୟମାନଙ୍କର ସାର୍ବଭୌମତ୍ୱ ପାଇଁ ପୁନର୍ବାର ଦାବି କଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସରିବା ପରେ କଂଗ୍ରେସ ପୁନର୍ବାର ଶାସନକୁ ଫେରିଲା । ୧୯୪୬ ମସିହାର ନିର୍ବାଚନରେ ବର୍ଦ୍ଦଲୋଇ ପୁନର୍ବାର ତାଙ୍କର ଅଫିସ୍ ଫେରି ପାଇଲେ । ଏକ ବିକାଶଶୀଳ ଆସାମର ପୁର୍ନଗଠନ ପାଇଁ ସେ ସ୍ୱାଧୀନତାର ପୂର୍ବରୁ ଏବଂ ପରବର୍ତ୍ତୀ କାଳରେ ପ୍ରୟାସ ଜାରି ରଖିଲେ ।

ଗୋପୀନାଥ ବର୍ଦ୍ଦଲୋଇ ଶିକ୍ଷାର ବିକାଶ ଏବଂ ପ୍ରସାର ପାଇଁ ସର୍ବଦା ଆଗ୍ରହୀ ଥିଲେ । ୧୯୪୮ ମସିହାରେ ଗୌହାଟୀ ବିଶ୍ୱବିଦ୍ୟାଳୟ ସ୍ଥାପନରେ ତାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ତା ଛଡ଼ା ଆସାମର କୃଷିମହାବିଦ୍ୟାଳୟ, ଆସାମ ମେଡ଼ିକାଲ କଲେଜ ଏବଂ ଆସାମର ପଶୁଚିକିତ୍ସା ମହାବିଦ୍ୟାଳୟ ଏବଂ ରାଜ୍ୟରେ ଅନ୍ୟାନ୍ୟ ବୈଷୟିକ ଶିକ୍ଷା ପ୍ରତିଷ୍ଠାନ ଗୁଡ଼ିକ ପ୍ରତିଷ୍ଠା କରିବାରେ ତାଙ୍କର ପ୍ରଶଂସନୀୟ ଉଦ୍ୟମ ଯୋଗୁ ହିଁ ସମ୍ଭବପର ହୋଇଛି ।

ଗୋପୀନାଥ ବର୍ଦ୍ଦଲୋଇ ସମାଜରେ ଲୋକପ୍ରିୟ ନାମରେ ପରିଚିତ ଥିଲେ । ଅଧିକାଂଶ ସମୟରେ ଲୋକେ ତାଙ୍କୁ ଲୋକପ୍ରିୟ ବର୍ଦ୍ଦଲୋଇ ବୋଲି ସମ୍ବୋଧନ କରୁଥିଲେ । ସେ ଆସାମ ଜନସାଧାରଣଙ୍କର ନାନା ଉନ୍ନତି ନିମନ୍ତେ ନିଜକୁ ଉତ୍ସର୍ଗ କରି ଦେଇଥିଲେ । ବିଶେଷ କରି ଦୁର୍ବଳ ଶ୍ରେଣୀ, ଜନଜାତି ଏବଂ ଆଦିବାସୀମାନଙ୍କର ମଙ୍ଗଳ ପାଇଁ ସେ ସଦା ସର୍ବଦା କାର୍ଯ୍ୟରତ ଥିଲେ । ଆଦିବାସୀମାନଙ୍କୁ ସାର୍ବୋଭୌମତ୍ୱ ଦେବାପାଇଁ ସେ ସାମ୍ବିଧାନିକ ସବ୍‌କମିଟିର ମୁଖ୍ୟ ଥିଲାବେଳେ ଷଷ୍ଠ ଅଧାୟରେ ଯେଉଁ ବଳିଷ୍ଠ ଯୁକ୍ତି ଦେଖାଇଛନ୍ତି ତାହା ଏହି ଦୁର୍ବଳ ଶ୍ରେଣୀ ପ୍ରତି ଥିବା ତାଙ୍କର ନିଷ୍ଠା ଏବଂ ଅନୁରକ୍ତିର ଯଥେଷ୍ଟ ପ୍ରମାଣ ଦେଇଥାଏ । ଆଦିବାସୀ ଜନସାଧାରଣଙ୍କର କଲ୍ୟାଣ ଛଡ଼ା ସେ ଅନ୍ୟାନ୍ୟ ଅନେକ କ୍ଷେତ୍ରରେ ମଧ୍ୟ ତାଙ୍କର ଆଗ୍ରହ ଦେଖାଉଥିଲେ । ଖେଳ କସରତଠାରୁ ଆରମ୍ଭ କରି ସଙ୍ଗୀତ, ସାହିତ୍ୟଠାରୁ

ଆରମ୍ଭ କରି ଥିଏଟରର ଉନ୍ନତି ପାଇଁ ତାଙ୍କର ଚେଷ୍ଟା ଅବିରତ ଥିଲା । ଜେଲ୍ ଭୋଗୁଥିବା ସମୟରେ ସେ ଅନେକ ମୁନିଋଷିଙ୍କର ଜୀବନୀ ରଚନା କରିଛନ୍ତି । ତାଙ୍କର ଏହି କାଳଜୟୀ ରଚନା ମାନଙ୍କରେ ମାନବିକତାର ମନ୍ତ୍ର ବାରମ୍ବାର ଉଚ୍ଚାରିତ ହୋଇଛି ।



ଦେଶ ପରାଧୀନ ଥିଲାବେଳେ ଏକ ବ୍ରିଟିଶ କଲୋନୀ ସେତେବେଳର ଆସାମର ଉତ୍ତର ପୂର୍ବ ପର୍ବତମାଳାରେ ସ୍ଥାପନ କରିବାର ଯୋଜନା ଥିଲା । ତା ଛଡ଼ା ମନ୍ତ୍ରିମଣ୍ଡଳର ଯୋଜନା ଅନୁସାରେ ଆସାମକୁ ବେଙ୍ଗଲ ସାଙ୍ଗରେ ମିଶ୍ରଣ କରାଇବାର ପ୍ରସ୍ତାବ ଥିଲା । ମୁସ୍‌ଲିମ୍‌ଲିଗ୍ ମଧ୍ୟ ପ୍ରସ୍ତାବ ରଖିଥିଲା ଆସାମକୁ ପୂର୍ବ ପାକିସ୍ଥାନ ବର୍ତ୍ତମାନର ବାଙ୍ଗଲା ଦେଶରେ ମିଶ୍ରଣ କରାଇବା ପାଇଁ । ଏ ସବୁର ଘୋର ବିରୋଧ କରିଥିଲେ ଶ୍ରୀଯୁକ୍ତ ବର୍ଦ୍ଦଲୋଇ । ତାଙ୍କର ବଳିଷ୍ଠ ଯୁକ୍ତି ଏବଂ ସାହସିକ ଭୂମିକା ଫଳରେ ଏ ସବୁ କାର୍ଯ୍ୟ ସଂପାଦିତ ହୋଇପାରିନଥିଲା । ଫଳରେ ଆସାମ ରାଜ୍ୟର ବାସିନ୍ଦା ମାନଙ୍କର ମନୋବଳ ବୃଦ୍ଧି ପାଇଥିଲା । ସେଇଥିପାଇଁ ବର୍ଦ୍ଦଲୋଇଙ୍କୁ ଆସାମର ରକ୍ଷାକର୍ତ୍ତା ବୋଲି ଅନେକ ନାମିତ କରିଥାନ୍ତି । ତାଙ୍କ ସାହାସରେ ଅଭିଭୂତ ହୋଇ ଲୌହ ମାନବ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ତାଙ୍କୁ ସେରେ ଆସାମ ବା ଆସାମର ସିଂହ ନାମରେ ନାମିତ କରିଛନ୍ତି ।

ଗୋପୀନାଥ ବର୍ଦ୍ଦଲୋଇ ଜଣେ ଦୀର୍ଘ କାୟ ସୌମ୍ୟ ଦର୍ଶନ ବ୍ୟକ୍ତି ଥିଲେ । ଖୁବ୍ ସରଳ ଜୀବନଯାପନ ସହିତ ସେ ସାରା ଜୀବନ ଖଦୀ ପରିଧାନ କରୁଥିଲେ । ସେ ଗଭୀର ଧର୍ମବିଶ୍ୱାସୀ ଥିଲେ । ସଂଗୀତ ଗାନ କରିବାରେ ତାଙ୍କର ପାରଦର୍ଶିତା ଥିଲା । ସେ ଯେତେବେଳେ ଭକ୍ତି ସଂଗୀତ ପରିବେଷଣ କରୁଥିଲେ ଶ୍ରୋତାମାନେ ମନ୍ତ୍ରମୁଗଧ ହୋଇଯାଉଥିଲେ । ୧୯୯୯ ମସିହା ଜାନୁୟାରୀ ୩୦ ତାରିଖ ଦିନ ଗୋପୀନାଥ ବର୍ଦ୍ଦଲୋଇଙ୍କୁ ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତ ରତ୍ନରେ ଭୂଷିତ କରାଗଲା । ତେବେ ଏହି ସମ୍ମାନ ଗ୍ରହଣ କରିବା ପାଇଁ ସେ ଇହଜଗତରେ ନ ଥିଲେ ।

***

# ଲତା ମଙ୍ଗେସ୍କର



୧୯୨୯

ଭାରତରତ୍ନ - ୨୦୦୧

**ସୁ**ପ୍ରସିଦ୍ଧ ଗାୟିକା ଲତା ମଙ୍ଗେସ୍କର କେବଳ ଭାରତବର୍ଷ ନୁହେଁ ପୃଥିବୀର ପ୍ରାୟ ପ୍ରତ୍ୟେକ ଦେଶରେ ସୁପରିଚିତା । ଭାରତ ବର୍ଷର ପ୍ରତ୍ୟେକଟି ରାଜ୍ୟରେ ପ୍ରତ୍ୟେକ ଶ୍ରେଣୀର ବ୍ୟକ୍ତିଙ୍କ ପାଖରେ ସେ ଶ୍ରଦ୍ଧା ଓ ସମ୍ମାନର ପାତ୍ରୀ ।

୧୯୨୯ ମସିହା ସେପ୍ଟେମ୍ବର ୮ ତାରିଖ ଦିନ ମଧ୍ୟପ୍ରଦେଶର ଇନ୍ଦୋର ସହରରେ ସେ ଜନ୍ମଗ୍ରହଣ କରିଥିଲେ । ସେ ପ୍ରାୟ ପଚାଶ ବର୍ଷ ଧରି ହିନ୍ଦୀ ଚଳଚ୍ଚିତ୍ର ଜଗତର ବିଭିନ୍ନ ନାୟିକା ମାନଙ୍କ ପାଇଁ ପ୍ରଚ୍ଛଦପଟ୍ଟ ଗାୟିକା ଭାବେ କଣ୍ଠଦାନ କରିଛନ୍ତି । ଗତ ୫୦ ବର୍ଷରୁ ଅଧିକ କାଳ କଣ୍ଠଦାନ କରିବା ମଧ୍ୟରେ ସେ ତାଙ୍କର ଗାୟନ କଳା ମଧ୍ୟରେ ୩୦,୦୦୦ରୁ ଅଧିକ ଗୀତ ଗାଇଛନ୍ତି । ଗିନିଜ୍ ବୁକ୍ ଅଫ୍

ୱର୍ଲଡ୍ ରେକର୍ଡରେ ତାଙ୍କର ନାମ ସ୍ଥାନ ପାଇଛି । ତା ପରେ ବି ସେ ଅନେକ ଗୀତ ଗାଇଛନ୍ତି ଏବଂ ଅନେକ ସମାଲୋଚକଙ୍କ ମତରେ ଏପର୍ଯ୍ୟନ୍ତ ସେ ୪୦,୦୦୦ରୁ ଅଧିକ ଗୀତରେ କଣ୍ଠଦାନ କରିଛନ୍ତି ।

ଲତାଙ୍କ ପିତା ଦିନାନାଥ ମଙ୍ଗେସ୍କର ଗୋଟିଏ ଥିଏଟର କମ୍ପାନୀର ମାଲିକ ଥିଲେ । ତେଣୁ ଲତାଙ୍କୁ ମାତ୍ର ୫ ବର୍ଷ ବୟସରୁ ସେ ପିତାଙ୍କଠାରୁ ଶାସ୍ତ୍ରୀୟ ସଂଗୀତ ଶିକ୍ଷା କରିବାର ସୁଯୋଗ ପାଇଥିଲେ । ଅତି ଅଳ୍ପ ବୟସରୁ ସେ ରାଗ ସଂଗୀତର କଠିନ ସୂତ୍ର ଗୁଡ଼ିକୁ ଆୟତ୍ତ କରିବାର ପାରଦର୍ଶିତା ଦେଖାଇଥିଲେ । ତାଙ୍କ କଣ୍ଠ ସଂଗୀତରୁ ତାଙ୍କର ଦକ୍ଷତା ଦେଖି ମନେହେଉଥିଲା ଯେପରି ଏହା ଭଗବତ କୃପାରୁ ତାଙ୍କ ନିକଟକୁ ଆସିଛି ।

ଲତା ମଙ୍ଗେସ୍କର ଯେତେବେଳେ ମୁମ୍ବାଇର ଚିତ୍ର ଜଗତରେ ଗୀତ ଗାଇବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ, ସେତେବେଳେ ଯେଉଁ ଗାୟିକାମାନେ ଚଳଚ୍ଚିତ୍ର ଶିଳ୍ପରେ ଆସ୍ଥାନ ଜମେଇଥିଲେ ସେମାନେ ମୁଖ୍ୟତଃ ନାକରେ ଗାଉଥିଲେ ଏବଂ ସେହି ପ୍ରକାରର ଗୀତ ସେତେବେଳେ ଜନପ୍ରିୟ ହେଉଥିଲା । ସମ୍‌ସଦ୍ ବେଗମ୍, ଜୁହ୍ରାବାହାନ୍ ଆଦି ଗାୟିକା ଏହି ଶ୍ରେଣୀର ଥିଲେ । ତେଣୁ ଲତା ଗୀତ ଗାଇବା ପାଇଁ ଇଚ୍ଛା ପ୍ରକାଶ କଲାବେଳେ ତାଙ୍କ ସ୍ୱରକୁ ନାପସନ୍ଦ କରାଯାଇଥିଲା । ତାଙ୍କ ସ୍ୱର ଅତି ହାଇପିଚ୍ ଏବଂ କ୍ଷୀଣ ବୋଲି କୁହାଯାଇଥିଲା । ତେବେ ୧୯୪୨ ମସିହାରେ ତାଙ୍କ ପିତାଙ୍କର ଅକାଳ ବିୟୋଗ ହେବାଯୋଗୁଁ ଲତା ପରିବାରର ବୋଝ ସମ୍ଭାଳିବା ପାଇଁ କିଛି ରୋଜଗାର କରିବା ଆବଶ୍ୟକ ପଡ଼ିଲା । ସେ ହିନ୍ଦୀ ଏବଂ ମରାଠୀ ଭାଷାରେ ଆଠଟି ଚିତ୍ରରେ ଗୀତ ଗାଇଥିଲେ । ୧୯୪୨ ମସିହାରେ ପ୍ରଥମେ ସେ ଯେଉଁ ଗୀତଟି ଗାଇଥିଲେ ଦୁଃଖର କଥା ସେ ଗୀତଟିକୁ ଚିତ୍ରରୁ ବାଦ୍ ଦିଆଯାଇଥିଲା ।

୧୯୪୮ ମସିହାରେ ତାଙ୍କୁ ଏକ ସୁଯୋଗ ମିଳିଥିଲା ଗୁଲାମ ହାଇଦର୍‌ଙ୍କର ଚିତ୍ର ମଜବୁର୍‌ରେ । ୧୯୪୯ରେ ମାନ୍‌ସନ୍, ଦୁଲାରୀ, ବର୍ଷାତ୍ ଏବଂ ଅନ୍ଦାଜ୍‌ରେ ତାଙ୍କର ଗୀତଗୁଡ଼ିକ ଖୁବ୍ ଜନପ୍ରିୟତା ହାସଲ କରିଥିଲା । ସେହି ଚାରୋଟି ଗୀତରେ ଏକ ନୂତନ ଯୁଗର ଶୁଭାରମ୍ଭ ହେଲା । ତାର ଏକ ବର୍ଷ ମଧ୍ୟରେ ପ୍ରଚ୍ଛଦପଟ୍ଟ ଗାୟନ କଳାର ରୂପରେଖ ସଂପୂର୍ଣ୍ଣ ଭାବେ ବଦଳି ଗଲା । ତାର ପରବର୍ତ୍ତୀ ବର୍ଷ ମାନଙ୍କରେ ଲତା ମଙ୍ଗେସ୍କର ସର୍ବଶ୍ରେଷ୍ଠ ଏବଂ ଅପ୍ରତିଦ୍ୱନ୍ଦୀ ପ୍ରଚ୍ଛଦପଟ୍ଟ ଗାୟିକା ଭାବେ ରାଜୁତି ଆରମ୍ଭ କଲେ । ୧୯୫୦ ଦଶକରେ ତାଙ୍କ ଭଉଣୀ ଆଶା ଭୋସ୍‌ଲେ ମଧ୍ୟ ପ୍ରସିଦ୍ଧି ହାସଲ କଲେ ଏବଂ ଦୁଇ ଭଉଣୀ ମିଶି ହିନ୍ଦୀ ଚଳଚ୍ଚିତ୍ର ଜଗତର ପ୍ରମୁଖ ପ୍ରଚ୍ଛଦପଟ୍ଟ



ଗାୟିକା ଭାବେ ପ୍ରସିଦ୍ଧି ହାସଲ କଲେ । ୬୦ ଏବଂ ୭୦ ଦଶକରେ ତାଙ୍କର ସୁମଧୁର ସଂଗୀତ ଗୁଡ଼ିକ ଜନମାନସକୁ ପାଗଳ ପ୍ରାୟ କରିଦେଲା । ଏପରିକି ଅନେକ ଏଇ ଦୁ ଇ ଭ ଉ ଣୀ ଙ୍କୁ ଏକଚାଟିଆ ବ୍ୟବସାୟ କରୁଛନ୍ତି ବୋଲି ଅଭିଯୋଗ କଲେ । ତେବେ ୮୦ ଦଶକରେ ସେ ତାଙ୍କର ଗୀତ ଗାଇବା ଅନେକ ହ୍ରାସ କରିଦେଇଥିଲେ । ତଥାପି ଇତିମଧ୍ୟରେ ସେ ଭାରତର ୨୦ଟି ଭାଷାରେ ଗୀତ ଗାଇଛନ୍ତି । ଏବଂ କେବଳ ହିନ୍ଦୀ ନୁହେଁ ମରାଠୀ ଗୁଜୁରାଟୀ ସମେତ ଭାରତର ଏ ସମସ୍ତ ପ୍ରାଦେଶିକ ଭାଷାରେ ତାଙ୍କର ଗୀତ ଗୁଡ଼ିକ ଆଦୃତ ହୋଇଛି । ୧୯୯୦ ମସିହାରେ ଲତା ମଙ୍ଗେସ୍‌କର ତାଙ୍କର ନିଜସ୍ୱ ଚିତ୍ର ପ୍ରଯୋଜନା ଆରମ୍ଭ କଲେ । ତାଙ୍କର ପ୍ରଥମ ଏବଂ ଶେଷ ଚିତ୍ର ଲେକିନ୍ ବହୁଳ ଭାବେ ବ୍ୟବସାୟରେ କ୍ଷତିଗ୍ରସ୍ତ ହେଲା ।

ଏହି ପ୍ରସିଦ୍ଧ ଗାୟିକାଙ୍କର ନାମ ଜନ୍ମବେଳେ ହେମା ଥିଲା । ତାଙ୍କ ପିତା ଦିନେଶ୍ ମଙ୍ଗେସକରଙ୍କ ଏକ ନାଟକ ଭାବବନ୍ଧନରେ ଥିବା ଏକ ଚରିତ୍ର ଲତିକାଙ୍କ ନାମ ଅନୁସାରେ ପରେ ହେମା ନାମ ପରିବର୍ତ୍ତିତ ହୋଇ ଲତା ରଖାଗଲା । ଚିତ୍ର ଜଗତରେ ସମସ୍ତେ ତାଙ୍କୁ ଶ୍ରଦ୍ଧା ଓ ସମ୍ମାନର ସହିତ ଲତାଜୀ ବା ଲତା ତାଇ ଡ଼ାକନ୍ତି । ତାଙ୍କର ପିତା ପଣ୍ଡିତ ଦୀନାନାଥ ମଙ୍ଗେସକର, ମାତା ଶୁଦ୍ଧମତି, ଭାଇ ହୃଦୟନାଥ ମଙ୍ଗେସକର ଏବଂ ଭଉଣୀ ମାନେ ହେଲେ ଆଶା ଭୋସ୍‌ଲେ, ଉଷା ମଙ୍ଗେସକର ଏବଂ ମୀନା କପୁର । ପରିବାରରେ ପ୍ରାୟ ସମସ୍ତେ ସଂଗୀତ, ନାଟ୍ୟକଳା ତଥା ଚିତ୍ରଜଗତ ସହିତ ଜଡ଼ିତ ଥିଲେ । ସେ ସ୍କୁଲକୁ ଆଦୌ ଯାଇନାହାନ୍ତି କହିଲେ ଚଳେ । ତାଙ୍କର ପାଠପଢ଼ା କେବଳ ସଂଗୀତରେ ହିଁ ହୋଇଥିଲା । ତାଙ୍କୁ ଯେତେବେଳେ ପ୍ରଥମେ ସ୍କୁଲ୍‌କୁ ଛଡ଼ାଗଲା ସେ ସେଠାରେ ଅନ୍ୟପିଲାମାନଙ୍କୁ ଗୀତ ପଢ଼ାଇଲେ । ତାଙ୍କର ଶିକ୍ଷକ କ୍ଷୁବ୍ଧ ହୋଇ ଗୀତ ଗାଇବା ବନ୍ଦ କରିବାକୁ କହିବାରୁ ଲତା ଆଉ

ସ୍କୁଲ୍‌କୁ ଗଲେ ନାହିଁ । ସେହି ଗୋଟିଏ ଦିନର ସ୍କୁଲ ପରେ ତାଙ୍କର ସ୍କୁଲକୁ ଯିବା ବନ୍ଦ ରହିଲା । ସେ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଂଗୀତରେ ଉସ୍ତାଦ ଅମାନତ୍ ଅଲ୍ଲୀ ଖାଁ ଭେନ୍‌ଡ଼ୀ ବଜାର ୱାଲେ ଏବଂ ଶାସ୍ତ୍ରୀୟ ସଂଗୀତ ଅମାନତ୍ ଖାଁ ଦେବସ୍‌ୱାଲେ ଏମାନଙ୍କଠାରୁ ଶିକ୍ଷା କରିଥିଲେ । ତା ଛଡ଼ା ଉସ୍ତାଦ ବଡ଼େ ଗୁଲାମ ଅଲ୍ଲୀ ଖାଁଙ୍କର ପଟ୍ଟଶିଷ୍ୟ ପଣ୍ଡିତ ତୁଳସୀ ଦାସ ଶର୍ମାଙ୍କ ଠାରୁ ମଧ୍ୟ ସେ ସଂଗୀତ ଶିକ୍ଷା କରିଥିଲେ । ଥରେ ସେତେବେଳର ପ୍ରସିଦ୍ଧ କଳାକାର ଦିଲ୍ଲୀପ କୁମାର ଲତାଙ୍କର ହିନ୍ଦୀ ଉଚ୍ଚାରଣରେ ମରାଠୀ ଗନ୍ଧ ରହୁଛି ବୋଲି ଅଭିଯୋଗ କରିଥିଲେ । ତେଣୁ ସେ ଜଣେ ମୌଲବୀଙ୍କ ଠାରୁ ହିନ୍ଦୁସ୍ଥାନୀ ମଧ୍ୟ ଶିଖିଥିଲେ । ଲତା ମଙ୍ଗେସକରଙ୍କର ପ୍ରିୟ ଗାୟକ ହେଲେ କେ.ଏଲ୍ ସହେଗଲ୍ । ୧୯୪୨ ମସିହାରେ ମାତ୍ର ୧୩ ବର୍ଷ ବୟସରେ ସେ ମରାଠୀ ଚଳଚ୍ଚିତ୍ର ପାଇଁ ସଂଗୀତ ଗାନ କରିଥିଲେ । ଦୁଃଖର କଥା ଏହି ଗୀନଟି ସେହି ଚଳଚ୍ଚିତ୍ରରୁ ବାଦ୍ ଦିଆଯାଇଥିଲା । ୧୯୪୩ ମସିହାରେ ତାଙ୍କର ପ୍ରଥମ ଗୀତ 'ମାତାଏ ସପୁତ୍ କୀ ଦୁନିଆ ବଦଲ୍ ଦେ ତୁ' ଏବଂ ୧୯୪୫ ମସିହାରେ 'ମାତା ତେରେ ଚରଣୋମେ ପଡ଼ି ମା' ଚିତ୍ର ପାଇଁ ଗାଇଥିଲେ । ୧୯୪୬ରେ 'ପା ଲାଗୁ କରଜୋଡ଼ି ଆପ୍‌କୀ ସେବା ମେ' ଏବଂ ୧୯୪୮ରେ ମଜବୁର୍ ଚିତ୍ରପାଇଁ ଦିଲ୍‌ମେରା ତୋଡ଼ା, ୧୯୪୯ରେ 'ଆୟେଗା ଆନେୱାଲା' ମହଲ ଚିତ୍ର ପାଇଁ ଗାଇ ପ୍ରଚ୍ଛଦପଟ ଗାୟିକା ହିସାବରେ ତାଙ୍କର ସ୍ଥାନ ଦୃଢ଼ୀଭୂତ କରିଥିଲେ । ତାଙ୍କ ଗାଇଥିବା କେତେକ ଅମର ଗୀତ ମଧ୍ୟରେ ମଧୁମତୀର ଆଜାରେ ପରଦେଶୀ, ମୋଗଲାଇଆଜମ୍‌ର ପ୍ୟାର କିଆ ତୋ ଡ଼ର୍‌ନା କ୍ୟା, ଦିଲ୍ ଆପ୍‌ନା ୱର ପ୍ରିତ୍ ପରାୟିର ଅଜିବ୍ ଦାସ୍ତାହେଁ ୟେ, ବିଶ୍ ସାଲ୍ ବାଦ୍‌ର କହିଁ ଦୀପ୍ ଜଲେ କହିଁ ଦିଲ୍, ଅନ୍‌ପଢ଼ର ଆପକି ନଜରୌଁ ନେ ସମ୍‌ଝା ଆଦି ପ୍ରଧାନ । ୧୯୬୩ ମସିହାରେ ଭାରତ ଚୀନ ଯୁଦ୍ଧ ପରେ ସେ ''ୟେ ମେରେ ବତନ୍ କେ ଲୋଗୌଁ'' ଗାଇ ଇତିହାସ ରଚିଥିଲେ । ସେତେବେଳର ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଏ ଗୀତ ଶୁଣି କାନ୍ଦି ପକାଇଥିଲେ । ତା ପରେ ଓ କୌନ୍ ଥୀ ଚିତ୍ରର ଲଗଜା ଗଲେ ଏବଂ ନୈନା ବରଷେ ରିମ୍‌ଝିମ୍, ତଥା ଗାଇଡ୍ ଚଳଚିତ୍ରର ଆଜ୍‌ଫିର ଜିନେ କା ତମ୍ମନା ହୈ ଏବଂ ପିୟା ତୋସେ ନୈନା ଲାଗେରେ, ମେରା ସାୟା ଚଳଚିତ୍ର ପାଇଁ ତୁ ଜହାଁ ଜହାଁ ଚଲେଗା, ପ୍ରେମ ପୂଜାରୀ ପାଇଁ ରଙ୍ଗୀଲାରେ, ସର୍ମିଲୀ ପାଇଁ ଖିଲ୍‌ତେ ହେଁ ଗୁଲ୍ ୟହାଁ, ପକିଜା ପାଇଁ ଚଲ୍‌ତେ ଚଲ୍‌ତେ ଏବଂ ଇନ୍‌ହି ଲୋଗନେ, ଅଭିମାନ ପାଇଁ ପିୟା ବିନା, ପରିଚୟ ପାଇଁ ବିତିନା ବିତାୟେ, କୋରା କାଗଜ ପାଇଁ ରୁଠେ

ଛୁଠେ ପିୟା, ଲେକିନ୍ ପାଇଁ ୟାରା ସିଲି ସିଲି, ଦିଲ୍‌ସେ ପାଇଁ ଜିୟା ଜଲେ, ଓ୍ୱାନ୍ ଟୁ କା ଫୋର୍ ପାଇଁ ଖାମୁସିଆ ଗୁନ୍‌ଗୁନାନେ ଲଗି ଏବଂ ଲଗନ୍ ପାଇଁ ଓ ପାଲନ ହାରେ ଆଦି ଗୀତ ଚିର ସ୍ମରଣୀୟ ହୋଇ ରହିଛି । ୨୦୦୧ ମସିହା ପରଠାରୁ ସେ ତାଙ୍କର ଗୀତ ଗାଇବାକୁ ଅତି ସୀମିତ କରିଦେଇଛନ୍ତି । ତେବେ ତାଙ୍କର ଜୀବନରେ ଯେଉଁ ସବୁ ମାଇଲ୍ ଖୁଣ୍ଟମାନ ସେ ଅତିକ୍ରମ କରିଛନ୍ତି ତନ୍ମଧ୍ୟରେ ୧୯୭୪ ମସିହାରେ ଗିନିଜ୍ ବୁକ୍ ଅଫ୍ ଓ୍ୱାର୍ଲଡ ରେକର୍ଡ ଲତା ମଙ୍ଗେସ୍‌କରଙ୍କୁ ପୃଥିବୀର ସବୁଠାରୁ ଅଧିକ ଗୀତ ରେକର୍ଡ କରିଥିବା ବ୍ୟକ୍ତି ଭାବେ ସମ୍ମାନିତ କରିଛନ୍ତି । ସେଥିରେ ଲେଖାଯାଇଛି ଯେ ୧୯୪୮ ଠାରୁ ୧୯୭୪ ମସିହା ମଧ୍ୟରେ ସେ ୨୫,୦୦୦ରୁ ଅଧିକ ଗୀତ ଗାଇଛନ୍ତି ଏବଂ ୨୦ଟି ଭାରତୀୟ ଭାଷାରେ ତାଙ୍କର ଗୀତ ରେକର୍ଡ କରାଯାଇଛି । ୧୯୭୪ ମସିହାରେ ସେ ଲଣ୍ଡନର ରୟାଲ୍ ଆଲବର୍ଟ ହଲ୍‌ରେ ପ୍ରଥମ କନ୍‌ସର୍ଟ ବିଦେଶରେ କରିଥିଲେ । ଏବଂ ୧୯୮୪ ଏବଂ ତତ୍‌ପରବର୍ତ୍ତୀ ସଂସ୍କରଣମାନଙ୍କରେ ପୁନର୍ବାର ଲତାମଙ୍ଗେସକରଙ୍କୁ ପୃଥିବୀର ସବୁଠାରୁ ଅଧିକ ଗୀତ ରେକର୍ଡିଂ କରିଥିବା ବ୍ୟକ୍ତି ଭାବରେ ନାମିତ କରାଯାଇଛି ଏବଂ ସେ ୧୯୮୭ ମସିହା ପର୍ଯ୍ୟନ୍ତ ୩୦,୦୦୦ ପର୍ଯ୍ୟନ୍ତ ଗୀତ ରେକର୍ଡିଂ କରିଥିବା କୁହାଯାଇଛି । ୧୯୯୯ ମସିହାରେ ଏକ ଫରାସୀ କମ୍ପାନୀ ଲତାଙ୍କ ନାମରେ ଲତା ୟୁ ଡ଼ି ପରଫିଉମ୍ ନାମକ ଏକ ଫରଫିଉମ୍‌ର ନାମକରଣ କରିଛନ୍ତି । ୧୯୯୯ ମସିହାରେ ତାଙ୍କୁ ରାଜ୍ୟସଭାକୁ ମନୋନୀତ କରାଯାଇଥିଲା । ୨୦୦୧ ମସିହାରେ ସେ ପୁନେ ଠାରେ ମାଷ୍ଟର ଦିନାନାଥ ମଙ୍ଗେସକର ହସ୍‌ପିଟାଲ ସ୍ଥାପନ କରିଥିଲେ । ତାହା ଲତା ମଙ୍ଗେସକର ମେଡ଼ିକାଲ ଫାଉଣ୍ଡେସନ୍ ଦ୍ୱାରା ପରିଚାଳିତ ହେଉଅଛି ।

ଲତା ମଙ୍ଗେସକରଙ୍କୁ ଭାରତବର୍ଷ ତଥା ବିଦେଶରେ ଅନେକ ଦେଶ ପୁରସ୍କୃତ ଏବଂ ସମ୍ମାନିତ କରିଛନ୍ତି । ୧୯୮୦ ମସିହାରେ ସାଉଥ୍ ଆମେରିକାର ଗୋଆନା ସ୍ଥିତ ଜର୍ଜକମ୍ ଠାରେ ସେ ସହରର ଚାବି ତାଙ୍କୁ ପ୍ରଦାନ କରାଯାଇଥିଲା । ଏହି ସମ୍ମାନ ଅତି ବିଶିଷ୍ଟ ବ୍ୟକ୍ତିମାନଙ୍କୁ ହିଁ ଦିଆଯାଇଥାଏ । ସେହି ବର୍ଷ ସାଉଥ୍ ଆମେରିକାର ସୁରିନମ୍‌ଠାରେ ତାଙ୍କୁ ସମ୍ମାନଜନକ ନାଗରିକତ୍ୱ ପ୍ରଦାନ କରାଯାଇଥିଲା । ଏହା ମଧ୍ୟ ଏକ ବିରାଟ ସମ୍ମାନ । ୧୯୮୫ ମସିହା ଜୁନ୍ ୯ ତାରିଖରେ କାନାଡ଼ାର ଟୋରଣ୍ଟୋ ସହରରେ ସେ ପଦାର୍ପଣ କରିଥିବା ଯୋଗୁଁ ତାଙ୍କୁ ସମ୍ମାନ ଦେବାପାଇଁ ସେ ଦିନକୁ ଏସିଆ ଦିବସ ଭାବେ ପାଳନ କରାଯାଇଥିଲା ।

୧୯୮୭ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାର ହଷ୍ଟନ୍‌ରେ ତାଙ୍କୁ ସମ୍ମାନଜନକ ନାଗରିକତ୍ୱ ଦିଆଯାଇ ସମ୍ମାନିତ କରାଯାଇଥିଲା । ୨୦୦୪ ମସିହାରେ ତାଙ୍କ ଗୀତ ୱାଦା ନା ତୋଡ଼୍, ୱାଦା ନା ତୋଡ଼୍ ହଲିଉଡ୍ ଚଳଚ୍ଚିତ୍ର ଇଟର୍‌ନାଲ୍ ସନ୍‌ସାଇନ୍ ଅଫ୍ ଦ ସ୍ପଟ୍‌ଲେସ୍ ମାଇଣ୍ଡ୍ ପାଇଁ ଏହି ଚଳଚ୍ଚିତ୍ରର ସାଉଣ୍ଡ ଟ୍ରାକ୍‌ରେ ବ୍ୟବହୃତ ହୋଇଥିଲା । ଏହା ତାଙ୍କ ପାଇଁ ଏକ ଗୌରବର ବିଷୟ । ୨୦୦୭ ମସିହାରେ ତାଙ୍କୁ ଫ୍ରାନ୍ସର ଲେଜିଅନ୍ ଅଫ୍ ଅନର ନାମକ ସର୍ବଶ୍ରେଷ୍ଠ ନାଗରିକ ସମ୍ମାନରେ ସମ୍ମାନିତ କରାଯାଇଥିଲା ।

ବିଭିନ୍ନ ଆନ୍ତର୍ଜାତିକ ସମ୍ମାନ ସାଙ୍ଗକୁ ଭାରତବର୍ଷରେ ମଧ୍ୟ ତାଙ୍କୁ ଅନେକ ସମ୍ମାନ ମିଳିଛି । ତାଙ୍କର ଗୀତ ପାଇଁ ତାଙ୍କୁ ତିନି ଥର ଜାତୀୟ ଚଳଚ୍ଚିତ୍ର ସମ୍ମାନ ଦିଆଯାଇଛି । ଆଠ ଥର ସେ ଫିଲିମ୍ ଫେୟାର ପୁରସ୍କାର ପାଇବା ପରେ ନୂତନ ପିଢ଼ିର କଳାକାର ମାନଙ୍କୁ ଉତ୍ସାହିତ କରିବାପାଇଁ ସେ ଆଉ ଫିଲିମ୍ ଫେୟାର ଏବଂ ନ୍ୟାସନାଲ୍ ଆୱାର୍ଡ ନେବାକୁ ଅନିଚ୍ଛା ପ୍ରକାଶ କରିଛନ୍ତି । ଏହା ତାଙ୍କର ମହନୀୟତାର ପରିଚୟ ଦିଏ । ୧୯୬୯ ମସିହାରେ ତାଙ୍କୁ ପଦ୍ମଭୂଷଣ, ୧୯୯୯ ମସିହାରେ ପଦ୍ମବିଭୂଷଣ ଏବଂ ୨୦୦୧ ମସିହାରେ ଆମ ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନରେ ସମ୍ମାନିତ କରାଯାଇଛି । ଏହି ସମ୍ମାନ ପାଇବାରେ କଣ୍ଠଶିଳ୍ପୀ ଭାବରେ ସେ ଏମ୍.ଏସ୍ ଶୁଭଲକ୍ଷ୍ମୀଙ୍କ ପରେ ଦ୍ୱିତୀୟ ଗାୟିକା । ୨୦୦୮ ମସିହାରେ ଭାରତବର୍ଷର ୬୦ ତମ ସ୍ୱାଧୀନତା ଦିବସ ପାଳନ କରିବା ଅବସରରେ ତାଙ୍କୁ 'ଆୱାର୍ଡ ଫର୍ ଲାଇଫ୍ ଟାଇମ୍ ଆଚିଭ୍‌ମେଣ୍ଟ' ପ୍ରଦାନ କରାଯାଇଛି ।

* * *

# ଉସ୍ତାଦ ବିସ୍‌ମିଲ୍ଲା ଖାଁ



୧୯୧୬-୨୦୧୦

ଭାରତରତ୍ନ - ୨୦୦୧

**ବି**ହାର ପ୍ରଦେଶର ଡୁମ୍‌ରାଓ ସହରର ଭିରଙ୍ଗ ରାଉତ ଗଳିରେ ପୈଗମ୍ବର ଖାଁ ଏବଂ ମିଠାନ୍ ଖାଁଙ୍କର ଦ୍ୱିତୀୟ ସନ୍ତାନ ଭାବେ ବିସ୍‌ମିଲ୍ଲା ଖାଁ ୧୯୧୬ ମସିହାରେ ଜନ୍ମଗ୍ରହଣ କରିଥିଲେ । ଜନ୍ମରୁ ତାଙ୍କ ନାଁ କମରୁଦ୍ଦିନ୍ ଥିଲା । ତାଙ୍କ ବଡ଼ଭାଇଙ୍କ ନାଁ ସାମସୁଦ୍ଦିନ୍‌ଙ୍କ ନାଁ ସାଙ୍ଗରେ ମେଳ ଖୁଆଇ ତାଙ୍କର ନାମ ବି କମରୁଦ୍ଦିନ୍ ରଖାଯାଇଥିଲା । ତାଙ୍କର ଜେଜେ ବାପା ରସୁଲ୍ ବକ୍ସ ଖାଁ ନବଜନ୍ମିତ ଶିଶୁକୁ ଦେଖିବା ପରେ ହଠାତ୍ ବିସ୍‌ମିଲ୍ଲା ଉଚ୍ଚାରଣ କରିଥିଲେ । ଏବଂ ପରେ ତାଙ୍କର ଜେଜେ ବାପାଙ୍କର ଏହି ଉଚ୍ଚାରଣକୁ ସମ୍ମାନ ଜଣାଇ ତାଙ୍କର ନାମ ବିସ୍‌ମିଲ୍ଲା ଖାଁ ରଖାଯାଇଥିଲା । ତାଙ୍କୁ ମାତ୍ର ୬ ବର୍ଷ ବୟସ ହୋଇଥିଲାବେଳେ ସେ ବନାରସସ୍ଥିତ ମାମୁଁଘରକୁ ଚାଲିଯାଇଥିଲେ । ମାମୁଁଘର

ଗଙ୍ଗାନଦୀ କୂଳରେ ଅବସ୍ଥିତ ଥିଲା । ବନାରସର ପ୍ରସିଦ୍ଧ ବିଶ୍ୱନାଥଙ୍କ ପୀଠ ସହିତ ଯେଉଁ ସେହେନାଇ ବାଦକ ସଂଯୁକ୍ତ ଥିଲେ ସେ ହେଉଛନ୍ତି ଆଲିବକ୍ସ ବିଲାୟ ତୁଲ୍ଲା । ଏହି ପ୍ରସିଦ୍ଧ ସେହେନାଇ ବାଦକ ହିଁ ବିସ୍‌ମିଲ୍ଲା ଖାଁଙ୍କ ମାମୁଁ । ତାଙ୍କରି ଘରେ ରହି ତାଙ୍କଠାରୁ ସେହେନାଇ ଶିକ୍ଷା କରିବାର ସୌଭାଗ୍ୟ ମିଳିଥିଲା ।

ସେ ନିଜେ ଜଣେ ନୈଷ୍ଠିକ ସିଆ ସଂପ୍ରଦାୟର ମୁସଲମାନ ଥିଲେ । କିନ୍ତୁ ଅନ୍ୟାନ୍ୟ ଅଧିକାଂଶ ଭାରତୀୟ ସଂଗୀତଜ୍ଞଙ୍କ ପରି ବିସ୍‌ମିଲ୍ଲା ଖାଁ ମଧ୍ୟ ବାଗ୍‌ଦେବୀ ସରସ୍ୱତୀଙ୍କର ଭକ୍ତ ଥିଲେ । ବାଗ୍ ଏବଂ କଳାର ଦେବୀ ମା ସରସ୍ୱତୀଙ୍କର ଆରାଧନା କରୁଥିଲେ । ସେ ଅଧିକାଂଶ ସମୟରେ ହିନ୍ଦୁ ମନ୍ଦିର ମାନଙ୍କରେ ସେହେନାଇ ବାଦନ କରୁଥିଲେ । ତା ମଧ୍ୟରେ ବନାରସସ୍ଥିତ ପ୍ରସିଦ୍ଧ ବିଶ୍ୱନାଥଙ୍କ ମନ୍ଦିର ଅନ୍ୟତମ । ତା ଛଡ଼ା ପ୍ରେମ ରାଉତଙ୍କ ପରି ଧର୍ମଗୁରୁମାନଙ୍କ ପାଇଁ ମଧ୍ୟ ସେ ସେହେନାଇ ବାଦନ କରୁଥିଲେ ।

ବିସ୍‌ମିଲ୍ଲା ଖାଁ ସେହେନାଇ ବାଦନ କରିବା ପୂର୍ବରୁ ଏହା ଏକ ଶାସ୍ତ୍ରୀୟ ବାଦ୍ୟଯନ୍ତ୍ର ରୂପେ ସ୍ୱୀକୃତ ହୋଇନଥିଲା । ବୋଧହୁଏ ସେହେନାଇକୁ ଏହି ସ୍ୱୀକୃତି ମିଳିବା ପାଇଁ ବିସ୍‌ମିଲ୍ଲା ଖାଁଙ୍କର ଅବଦାନ ଅତୁଳନୀୟ । ୧୯୩୭ ମସିହାରେ ସର୍ବଭାରତୀୟ ସଂଗୀତ ଅଧିବେଶନ କଲିକତା ମହାନଗରୀରେ ଅନୁଷ୍ଠିତ ହେଲା । ତହିଁରେ ବିସ୍‌ମିଲ୍ଲା ଖାଁଙ୍କର ସେହେନାଇ ବାଦନ ସହିତ ବିସ୍‌ମିଲ୍ଲା ଖାଁଙ୍କର ଉପସ୍ଥିତି ଏହି ସଂଗୀତ ମହାସଭାର କେନ୍ଦ୍ରବିନ୍ଦୁ ଭାବେ ପରିଲକ୍ଷିତ ହୋଇଥିଲା । ସେହେନାଇ ନାମ ସହିତ ତାଙ୍କ ନାମ ଏପରି ଭାବେ ଏକାକାର ହୋଇଯାଇଥିଲା ଯେ ସେ ଦୁହେଁ ଏକ ଓ ଅଭିନ୍ନ ବୋଲି ମନେ ହେଉଥିଲେ ।

ଓସ୍ତାଦ୍ ବିସ୍‌ମିଲ୍ଲା ଖାଁଙ୍କ ସଂଗୀତ, ଜୀବନଶୈଳୀ ଏବଂ ଧର୍ମ ବିଶ୍ୱାସ ଆଦିରେ ଏକ ବିଶେଷ ସ୍ୱାତନ୍ତ୍ର୍ୟ ଲକ୍ଷ୍ୟ କରାଯାଇଥାଏ । ତାଙ୍କର ଜୀବନଶୈଳୀରେ ସେ ପ୍ରାଥମିକ ଦିନ ଗୁଡ଼ିକରେ ଯେଉଁଭଳି ଏକ ନିରଳସ ସରଳ ଜୀବନଯାପନ କରୁଥିଲେ ଉତ୍କର୍ଷର ଶୀର୍ଷବିନ୍ଦୁରେ ଥାଇ ଗୌରବର ଦିଗ୍‌ବଳୟକୁ ଛୁଇଁବା ପରେ ବି ତାଙ୍କର ଜୀବନ ଶୈଳୀ ପୂର୍ବବତ୍ ଅପରିବର୍ତ୍ତିତ ରହିଥିଲା । ତାଙ୍କର ସଂଗୀତର ମାଧୁର୍ଯ୍ୟ ଏତେ ସ୍ୱତନ୍ତ୍ର ଯେ ସଂଗୀତ ଶୁଣୁଥିବା ବେଳେ ଶ୍ରୋତା ଆଖିବୁଜି ମୁଗ୍ଧ ଚକିତ ହୋଇ ଭିନ୍ନ ଏକ ରାଜ୍ୟରେ ବିଚରଣ କରେ । ଯେପରି ଶରୀରରୁ ଆତ୍ମା ଯାଇ ପରମାତ୍ମାର କୋଳରେ ଳାନାତାୟା ଗୀତ ଶୁଣୁଥାଏ । ତାଙ୍କର ଦେଶପ୍ରିୟତା ଏବଂ ଧର୍ମ ଭାବରେ ମଧ୍ୟ ଏକ ସ୍ୱତନ୍ତ୍ରତା ତାଙ୍କ

ବ୍ୟକ୍ତିତ୍ୱକୁ ଅସାମାନ୍ୟ କରି ଗଢ଼ି ତୋଳିଥିଲା । (ମୁସଲମାନ୍ ହେଲେ ବି ହିନ୍ଦୁ, ଖ୍ରୀଷ୍ଟିୟାନ୍ ଆଦି ଅନ୍ୟାନ୍ୟ ଧର୍ମକୁ ସମାନ ଦୃଷ୍ଟିରେ ଦେଖୁଥିଲେ । ତାଙ୍କର ଏହି ସମଭାବ ଦୃଷ୍ଟି ଆଜିଯାଏଁ ଅନ୍ୟମାନଙ୍କ ପାଇଁ ଦୃଷ୍ଟାନ୍ତ ହୋଇ ରହିଛି । ସେ କଳାପ୍ରତି ଏତେ ଉତ୍ସର୍ଗୀକୃତ ଥିଲେ ଯେ ତାଙ୍କ ବେଗମ୍ (ସ୍ତ୍ରୀ)ଙ୍କ ଅକାଳ ବିୟୋଗ ପରେ ସେ ସେହେନାଇକୁ ହିଁ ନିଜର ବେଗମ୍ ବୋଲି ସମ୍ବୋଧନ କରୁଥିଲେ । ତାଙ୍କୁ ସମ୍ମାନ ଜଣାଇବା ଉଦ୍ଦେଶ୍ୟରେ ତାଙ୍କ ମୃତ୍ୟୁ ପରେ ତାଙ୍କ ମରଶରୀର ସହିତ ସେ ବଜାଉଥିବା ସେହେନାଇକୁ ମଧ କବର ଦିଆଯାଇଥିଲା । ତାଙ୍କର ବାର୍ତ୍ତାରେ ସର୍ବଦା ସେ ଶାନ୍ତି ଏବଂ ପ୍ରେମର ବାର୍ତ୍ତା ପ୍ରଚାର କରିଛନ୍ତି । ସେ କହୁଥିଲେ ''ସମଗ୍ର ବିଶ୍ୱ ନଷ୍ଟ ହୋଇଯାଇ ପାରେ ତଥାପି ସଂଗୀତ ବଞ୍ଚିରହିବ ।'' ତାଙ୍କ ଭାଷାରେ ସଂଗୀତର କୌଣସି ନିର୍ଦ୍ଦିଷ୍ଟ ଜାତି, ଧର୍ମ, ଗୋଷ୍ଠୀ ନ ଥାଏ । ତାହା ସମସ୍ତଙ୍କର, ତାହା ସମସ୍ତଙ୍କ ପାଇଁ ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଯେତେବେଳେ ଭାରତ ବର୍ଷ ସ୍ୱାଧୀନତା ପ୍ରାପ୍ତି ହେଲା, ସେ ଅବକାଶରେ ଐତିହାସିକ ଲାଲ୍‌କିଲ୍ଲାଠାରେ ସ୍ୱାଧୀନ ଭାରତର ତ୍ରିରଙ୍ଗା ପତାକା ପଣ୍ଡିତ ଜବାହାର୍‌ଲାଲ୍ ନେହେରୁଙ୍କ ଦ୍ୱାରା ଉତ୍ତୋଳନ କରାଯାଇଥିଲା । ଏହି ପରିପ୍ରେକ୍ଷୀରେ ବିସ୍‌ମିଲ୍ଲା ଖାଁ ସେହେନାଇ ବାଦନ କରୁଥିଲେ । ୧୯୫୦ ମସିହା ଜାନୁୟାରୀ ୨୬ ତାରିଖ ଦିନ ଭାରତ ଏକ ସାଧାରଣତନ୍ତ୍ର ଘୋଷିତ ହେବା ସମୟରେ ଓସ୍ତାଦ୍ ବିସ୍‌ମିଲ୍ଲା ଖାଁଙ୍କ ସେହେନାଇ ପୁନର୍ବାର ଭାସି ଆସିଲା ରାଗ୍‌କାଫିର ମଧୁର ରାଗରେ । ତା ପରଠାରୁ ପ୍ରତିବର୍ଷ ଅଗଷ୍ଟ ୧୫ ତାରିଖ ଦିନ ଭାରତ ବର୍ଷ ତାର ସ୍ୱାଧୀନତା ଦିବସ ପାଳନ କଲାବେଳେ ଦୂରଦର୍ଶନ ଏବଂ ଆକାଶବାଣୀରୁ ବିସ୍‌ମିଲ୍ଲା ଖାଁଙ୍କ ସେହେନାଇ ବାଦନ ନିୟମିତ ଭାବେ ବାଜି ଆସୁଛି । ପଣ୍ଡିତ ଜବାହାରଲାଲ୍ ନେହେରୁ ପ୍ରଧାନମନ୍ତ୍ରୀ ଥିବା ସମୟରେ ବିସ୍‌ମିଲ୍ଲା ଖାଁ ବଞ୍ଚିଥିବା ପର୍ଯ୍ୟନ୍ତ ଲାଲ୍‌କିଲ୍ଲାରୁ ପ୍ରଧାନମନ୍ତ୍ରୀଙ୍କ ଭାଷଣ ଶେଷ ହେବା ପରେ ବିସ୍‌ମିଲ୍ଲା ଖାଁଙ୍କର ସେହେନାଇ ବାଦନ ଏକ ନିୟମିତ କାର୍ଯ୍ୟକ୍ରମ ଭାବେ ପ୍ରସାରିତ ହେଉଥିଲା ।

ବିସ୍‌ମିଲ୍ଲା ଖାଁ ଭାରତୀୟ ଚଳଚ୍ଚିତ୍ର ଜଗତରେ ମଧ କେତେକ ଅଭୁଲା ସ୍ମୃତି ଛାଡ଼ି ଯାଇଛନ୍ତି । ସେ ଡ଼କ୍ଟର ରାଜକୁମାରଙ୍କ ସାନାଡି ଆପାନ୍ନା ଚଳଚ୍ଚିତ୍ରରେ ଆପାନ୍ନା ଭୂମିକା ପାଇଁ ସେହେନାଇ ବାଦନ କରିଥିଲେ । ସତ୍ୟଜିତ୍ ରାୟଙ୍କ ଜଲ୍‌ସା ଘର ଚଳଚ୍ଚିତ୍ରରେ ସେ ଅଭିନୟ କରିଥିଲେ ଏବଂ ସେହେନାଇ ବାଦନ କରିଥିଲେ । ପ୍ରସିଦ୍ଧ ଚଳଚ୍ଚିତ୍ର ଗୁଞ୍ଜ ଉଠି ସେହେନାଇରେ ସେ ସେହେନାଇ ବାଦନ କରିଥିଲେ । ଏହା ୧୯୫୯ ମସିହାରେ ମୁକ୍ତିଲାଭ

କରିଥିଲା । ପ୍ରସିଦ୍ଧ ନିର୍ଦ୍ଦେଶକ ଗୌତମ ଘୋଷଙ୍କ ନିର୍ଦ୍ଦେଶନାରେ ସାଙ୍ଗେ ମିଲ୍‌ସେ ମୁଲାକାତ୍ ନାମକ ଏକ ପ୍ରାମାଣିକ ଚଳଚିତ୍ର ଏହି ପ୍ରସିଦ୍ଧ ସେହେନାଇ ବାଦକଙ୍କ ଜୀବନ ଉପରେ ନିର୍ମିତ ହୋଇଛି ।



ସାଧାରଣତଃ ବିସ୍‌ମିଲ୍ଲା ଖାଁ କାହାରିକୁ ତାଙ୍କର ଶିଷ୍ୟତ୍ୱ ଦେବାପାଇଁ ଆଗ୍ରହ ପ୍ରକାଶ କରିନଥିଲେ । ବର୍ତ୍ତମାନ ନାମଧାରୀ ଶିଖ୍ ମାନଙ୍କର ଅଧକ୍ଷ ସଦ୍‌ଗୁରୁ ଜଗ୍‌ଜିତ୍ ସିଂଙ୍କ ସହିତ ୧୯୮୫ ମସିହାରେ ଉସ୍ତାଦ ଖାଁଙ୍କର ସାକ୍ଷାତ ହୋଇଥିଲା । ସେଠାରେ ବଲ୍‌ଜିତ୍ ସିଂ ନାମଧାରୀ ଜଣେ ଖୁବ୍ ଦକ୍ଷ ଯୁବକ ତାଙ୍କ ଦୃଷ୍ଟି ଗୋଚର ହେଲେ । ସେ ଜଣେ ତାର୍ ସେହେନାଇ ବାଦକ ଏବଂ ତାର୍ ସେହେନାଇ ଉପରେ ତାଙ୍କର ବେଶ୍ ଦକ୍ଷତା ଥିଲା ଭଳି ମନେ ହେଲା । ତାଙ୍କୁ ଶିଷ୍ୟତ୍ୱ ଦେବାପାଇଁ ଉସ୍ତାଦ ଖାଁ ରାଜି ହେଲେ । ସଦ୍‌ଗୁରୁ ଜଗ୍‌ଜିତ୍ ସିଂଜୀ ଏବଂ ଉସ୍ତାଦ ବିସ୍‌ମିଲ୍ଲା ଖାଁଙ୍କ ମଧ୍ୟରେ ପାରସ୍ପରିକ ସମ୍ମାନ ଏବଂ ସଦ୍‌ଭାବ ରହିଥିଲା । ୧୯୯୯ ମସିହାରେ ସେ ଆଉ ଦୁଇଜଣ ତାର୍ ସେହେନାଇ ଛାତ୍ରଙ୍କୁ ନିଜର ଶିଷ୍ୟତ୍ୱ ଦେଇଥିଲେ । ସେମାନେ ହେଲେ କିର୍‌ପାଲ୍ ସିଂ ଏବଂ ଗୁର୍‌ବଲ୍ ସିଂ ।

୨୦୦୬ ମସିହା ଅଗଷ୍ଟ ୧୭ ତାରିଖ ଦିନ ସେ ହଠାତ୍ ଅସୁସ୍ଥ ହୋଇପଡ଼ିଲେ ଏବଂ ତାଙ୍କୁ ବନାରସସ୍ଥିତ ହେରିଟେଜ୍ ହସ୍‌ପିଟାଲ୍‌କୁ ଚିକିତ୍ସା ପାଇଁ ଅଣାଗଲା । ସେଠାରେ ମାତ୍ର ୪ ଦିନ ଅବସ୍ଥାନ କରିବା ପରେ ଅଗଷ୍ଟ ୨୧ ତାରିଖ ଦିନ ସେ ହୃଦ୍‌ଘାତ ଜନିତ ମୃତ୍ୟୁବରଣ କଲେ । ତାଙ୍କର ୫ ପୁଅ, ତିନି ଝିଅ ଏବଂ ଅନେକ ନାତି ନାତୁଣୀ ଏବଂ ଅଣନାତି, ଅଣନାତୁଣୀ ରହିଛନ୍ତି ।

ତାଙ୍କ ମୃତ୍ୟୁରେ ସାରା ଦେଶ ମର୍ମାହତ ହୋଇଥିଲା । ଭାରତ ସରକାର ଗୋଟିଏ ଦିନ ଜାତୀୟ ଶୋକ ପାଳନ କରିଥିଲେ । ପୁରୁଣା ବନାରସର ଫତେମେ କବରସ୍ଥାନରେ ତାଙ୍କ ଦେହକୁ ଲଗାଇ ତାଙ୍କର ସେହେନାଇକୁ ବି କବର ଦିଆଯାଇଥିଲା । ଗୋଟିଏ ଲିମ୍ବ ଗଛ ମୂଳେ ତାଙ୍କୁ ଚିରଦିନ ପାଇଁ ବିଶ୍ରାମ ଦିଆଯାଇଛି । ରାଷ୍ଟ୍ରୀୟ ସମ୍ମାନ ସ୍ୱରୂପ ତାଙ୍କୁ

ଭାରତୀୟ ସୈନ୍ୟବାହିନୀ ୨୧ଟି ଗନ୍ ସାଲ୍ୟୁଟ୍ ଦେଇଥିଲେ । ନୂଆଦିଲ୍ଲୀ ସ୍ଥିତ ସଂଗୀତ ନାଟକ ଏକାଡ଼େମୀ ୨୦୦୭ ମସିହାରେ ଉସ୍ତାଦ ବିସ୍‌ମିଲ୍ଲା ଖାଁ ସ୍ମୃତି ଏବଂ ସମ୍ମାନ ପାଇଁ ଯୁବ ପୁରସ୍କାର ଘୋଷଣା କରିଛନ୍ତି । ସଂଗୀତ, ନୃତ୍ୟ ଏବଂ ଅଭିନୟ କ୍ଷେତ୍ରରେ ଦେଶର ସର୍ବଶ୍ରେଷ୍ଠ ଯୁବ କଳାକାରଙ୍କୁ ପ୍ରତିବର୍ଷ ଏହି ପୁରସ୍କାର ପ୍ରଦାନ କରାଯାଉଛି ।

ଉସ୍ତାଦ ବିସ୍‌ମିଲ୍ଲା ଖାଁ ଯେଉଁ ସ୍ତରର ସଂଗୀତଜ୍ଞ ଥିଲେ ତାଙ୍କ ପାଇଁ ଯେ କୌଣସି ପୁରସ୍କାର ବା ସମ୍ମାନ ନଗଣ୍ୟ କୁହାଯାଇପାରେ । ଶାନ୍ତି, ମୈତ୍ରୀ, ସ୍ନେହ, ଭାତୃଭାବ, କରୁଣା, କ୍ଷମା ଆଦି ପ୍ରତ୍ୟେକ ମହାମାନବିକତାରେ ସେ ପରିପୂର୍ଣ୍ଣ ଥିଲେ । ପାର୍ଥିବ ଜଗତର କୌଣସି ଦିଗ ତାଙ୍କୁ ବିଶେଷ ପ୍ରଭାବିତ କରୁନଥିଲା । ସେହେନାଇ ପରି ମାଙ୍ଗଳିକ ଧ୍ୱନିର ବାହକ ଯାହାଙ୍କ ଆୟୁଧ, ସେପରି ଭଳି ଜଣେ ଯୋଗଜନ୍ମା ମହାପୁରୁଷଙ୍କ ପାଦ ତଳେ ସବୁ ସମ୍ମାନ ଆସି ସମୁଦ୍ର ଲହରୀ ପରି ପ୍ରତିଦିନ ଅଜାଡ଼ି ପଡୁଥିଲା । ସେ ସବୁର ତାଲିକା ପ୍ରସ୍ତୁତ କରିବା କୌଣସି ବ୍ୟକ୍ତି ପକ୍ଷରେ ଏତେ ସହଜ ନୁହେଁ । ତେବେ ତା ଭିତରୁ କେବଳ ଏଠାରେ କେତୋଟିର ଉଲ୍ଲେଖ କରାଯାଇପାରେ । ୧୯୫୬ ମସିହାରେ ସେ ସଂଗୀତ ନାଟକ ଏକାଡ଼େମୀ ପୁରସ୍କାର ପାଇଥିଲେ । ୧୯୬୧ରେ ପଦ୍ମଶ୍ରୀ, ୧୯୬୮ରେ ପଦ୍ମଭୂଷଣ ଏବଂ ୧୯୮୦ ମସିହାରେ ପଦ୍ମବିଭୂଷଣ ପୁରସ୍କାର ମିଳିଥିଲା । ଇରାନ୍ ସାଧାରଣ ତନ୍ତ୍ରରୁ ୧୯୯୨ ମସିହାରେ ତାଙ୍କୁ ତଲାର୍ ମ୍ୟୁଜିକ୍ ପୁରସ୍କାରରେ ସମ୍ମାନିତ କରାଯାଇଥିଲା ଏବଂ ୧୯୯୪ ମସିହାରେ ତାଙ୍କୁ ସଂଗୀତ ନାଟକ ଏକାଡ଼େମୀର ଫେଲୋ ଭାବେ ସମ୍ମାନିତ କରାଯାଇଥିଲା । ଶେଷରେ ୨୦୦୧ ମସିହାରେ ତାଙ୍କୁ ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ ଭାରତରତ୍ନରେ ଭୂଷିତ କରାଯାଇଥିଲା । ସେ ପାଇଥିବା ଅନ୍ୟାନ୍ୟ ପୁରସ୍କାର ମାନଙ୍କ ମଧ୍ୟରେ ମଧ୍ୟପ୍ରଦେଶ ସରକାର ତାଙ୍କୁ ତାନ୍‌ସେନ୍ ପୁରସ୍କାର, କଲିକତା ସର୍ବଭାରତୀୟ ସଂଗୀତ ଅଧିବେଶନରେ ତାଙ୍କୁ ତିନିଥର ପୁରସ୍କୃତ କରାଯାଇଛି ଏବଂ ୧୯୩୦ ମସିହାରେ ଆହ୍ଲାବାଦ ସର୍ବଭାରତୀୟ ସଂଗୀତ ଅଧିବେଶନରେ ତାଙ୍କୁ ଶ୍ରେଷ୍ଠ ବାଦକ ଆଖ୍ୟା ଦିଆଯାଇଛି । ଶାନ୍ତି ନିକେତନ, ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ ଏବଂ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ତାଙ୍କୁ ସମ୍ମାନଜନକ ଡକ୍ଟରେଟ୍ ଉପାଧି ମିଳିଥିଲା । ସଂଗୀତ ଜଗତରେ ତାଙ୍କର ପରାକାଷ୍ଠା ପାଇଁ ସେ ସାରାବିଶ୍ୱରେ ସମ୍ମାନିତ ହୋଇଛନ୍ତି । ମନ୍ଟ୍ରିୟଲ୍, ସ୍କାନିଂ ଆର୍ଟ ଫେଷ୍ଟିଭାଲ୍, ଓସାକା ଟ୍ରେଡ୍‌ଫେୟାର ଆଦି ସ୍ଥାନରେ ତାଙ୍କୁ ସମ୍ମାନିତ କରାଯାଇଛି । ସେ ସେହେନାଇ ବାଦନ ଦ୍ୱାରା ସାରାବିଶ୍ୱବାସୀଙ୍କର ହୃଦୟ ଜୟ କରିବାରେ ସମର୍ଥ ହୋଇଛନ୍ତି ।

***

# ପଣ୍ଡିତ ଭୀମସେନ ଯୋଶୀ



୧୯୨୨

ଭାରତରତ୍ନ-୨୦୦୮

କର୍ଣ୍ଣାଟକ ରାଜ୍ୟର ଉତ୍ତର ଭାଗରେ ଅବସ୍ଥିତ ଗଡ଼ାଗ ସହରରେ ଗୋଟିଏ କାନାଡ଼ିଗା ପରିବାରରେ ଭୀମସେନ ଯୋଶୀ ୧୯୨୨ ମସିହା ଫେବୃୟାରୀ ୪ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ଗୁରାଚାର୍ଯ୍ୟ ଯୋଶୀ ଜଣେ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକ ଥିଲେ । ଭୀମସେନଙ୍କର ମୋଟ୍ ୧୬ଟି ଭାଇ ଭଉଣୀ ଥିଲେ । ସୀମିତ ସମ୍ବଳରେ ଗୁରାଚାର୍ଯ୍ୟ ତାଙ୍କର ବିରାଟ ପରିବାର ଚଳାଇବା କଷ୍ଟକର ହେଉଥାଏ । ଅର୍ଥନୈତିକ ଅନଟନ ମଧ୍ୟରେ ଭୀମସେନଙ୍କର ବାଲ୍ୟକାଳ, କୈଶୋର ଓ ଆଦ୍ୟ ଯୌବନ କଟିଥିଲା । ତା ସାଙ୍ଗକୁ ଅଳ୍ପ ବୟସରେ ତାଙ୍କର ମାତାଙ୍କର ମୃତ୍ୟୁ ହୋଇଥିଲା । ତାଙ୍କର ଲାଳନ ପାଳନ ସାବତ ମା' କରିଥିଲେ ।



ସେତେବେଳର ପ୍ରଥା ଅନୁସାରେ ଅତି ଅଳ୍ପ ବୟସରେ ସୁନନ୍ଦା ନାମ୍ନୀ ଜଣେ ବାଳିକା ସହିତ ତାଙ୍କର ବିବାହ ସଂପର୍ଣ୍ଣ ହେଲା । କିଛିଦିନ ମଧ୍ୟରେ ତାଙ୍କର ଦୁଇଟି ପୁତ୍ର ସନ୍ତାନ ଜାତ ହେଲେ । ରାଜେନ୍ଦ୍ର ଏବଂ ଆନନ୍ଦ । କିନ୍ତୁ ପରବର୍ତ୍ତୀ ସମୟରେ ଭୀମସେନଙ୍କୁ ଆଉଥରେ ବିବାହ କରିବାକୁ ପଡ଼ିଥିଲା । ତାଙ୍କର ଜଣେ ସହକଳାକାର ଭର୍ସଲାଙ୍କୁ ସେ ବିବାହ କଲେ । ଭର୍ସଲାଙ୍କ ଔରସରୁ ଦୁଇଟି ପୁତ୍ର ଏବଂ ଗୋଟିଏ କନ୍ୟା ମଧ୍ୟ ଜାତ ହେଲେ । ଭୀମସେନଙ୍କର ଏହି ସର୍ବମୋଟ ୫ଟି ସନ୍ତାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ଲଘୁ ଶାସ୍ତ୍ରୀୟ ସଂଗୀତ ସହିତ ସଂପର୍କିତ ହୋଇଛନ୍ତି ।

ବିବାହ ବନ୍ଧନରେ ଛନ୍ଦି ହୋଇ ଘରସଂସାର କରିବା ପରେ ମଧ୍ୟ ଭୀମସେନ ଯୋଶୀଙ୍କର ସଂଗୀତ ସାଧନାର ପିପାସା ମେଣ୍ଟି ନ ଥାଏ । ଅତି ବାଲ୍ୟକାଳରୁ ସେ ସଂଗୀତ ପ୍ରତି ଆକର୍ଷିତ ଥିଲେ । ଏହା ଶିକ୍ଷା କରିବା ପାଇଁ ଯେ କୌଣସି ପ୍ରକାରର କଷ୍ଟ ସ୍ୱୀକାର କରିବା ପାଇଁ ପ୍ରସ୍ତୁତ ଥିଲେ । ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ସାଧାରଣତଃ ଗୁରୁ ଶିଷ୍ୟ ପଦ୍ଧତିରେ ଖେୟାଲ୍ ଏବଂ ଶାସ୍ତ୍ରୀୟ ସଂଗୀତ ଶିକ୍ଷା ଦିଆଯାଉଥିଲା । ଭୀମସେନ ତାଙ୍କର ବାଲ୍ୟକାଳରେ ଅବଦୁଲ୍ କରିମ୍ ଖାଁଙ୍କର ଏକ ସଂଗୀତ ରେକର୍ଡ଼ ଶୁଣି ତହିଁରେ ଖୁବ୍ ପ୍ରଭାବିତ ହୋଇଥିଲେ । ପ୍ରକୃତପକ୍ଷେ ସେହି ସଂଗୀତ ଶୁଣିବା ପରଠାରୁ ହିଁ ଭୀମସେନ ନିଜେ ଜଣେ ସଂଗୀତଜ୍ଞ ହେବାର ସ୍ୱପ୍ନ ଦେଖିଥିଲେ । ମାତ୍ର ୧୧ ବର୍ଷ ବୟସ ବେଳେ ୧୯୩୩ ମସିହାରେ ଭୀମସେନ ଉପଯୁକ୍ତ ଗୁରୁ ସନ୍ଧାନରେ ଗୃହତ୍ୟାଗୀ ହେଲେ । ଗଡ଼ାଗ ଠାରେ ରେଳଯାତ୍ରା କରି ଅନିର୍ଦ୍ଦିଷ୍ଟ ପଥରେ ଯାତ୍ରା କରିବାକୁ ଆରମ୍ଭ କଲେ । ରେଳରେ ବସିଥିବା ସମୟରେ ଗୀତ ଗାଇ ସହଯାତ୍ରୀମାନଙ୍କୁ ମୁଗ୍ଧ କରିଥିଲେ । ସହଯାତ୍ରୀମାନେ ତାଙ୍କଠାରୁ ଜାଣିବାକୁ ପାଇଲେ ଯେ ସେ ସଂଗୀତ ଶିକ୍ଷା କରିବା ପାଇଁ ଗୁରୁଙ୍କ ସନ୍ଧାନରେ ବାହାରିଛନ୍ତି । ଟିକେଟ୍ କାଟିବା ତ ଦୂର କଥା ଖାଇବାକୁ ମଧ୍ୟ ପାଖରେ ପଇସାଟିଏ ନାହିଁ । ତାଙ୍କ କଥା ଶୁଣି ସହଯାତ୍ରୀମାନଙ୍କ ମନରେ ଦୟା ଜାତ ହେଲା । ସେମାନେ ସମସ୍ତେ କିଛି କିଛି ଅର୍ଥ ଦାନ କଲେ । ସେହି ଅର୍ଥରେ ସେ ପ୍ରଥମେ ଧଡଓ୍ୱାର ଗଲେ ଏବଂ ତା ପରେ ସେ

# ପଣ୍ଡିତ ଭୀମସେନ ଯୋଶୀ



୧୯୨୨

ଭାରତରତ୍ନ – ୨୦୦୮

**କ**ର୍ଣ୍ଣାଟକ ରାଜ୍ୟର ଉତ୍ତର ଭାଗରେ ଅବସ୍ଥିତ ଗଡ଼ାଗ ସହରରେ ଗୋଟିଏ କାନାଡ଼ିଗା ପରିବାରରେ ଭୀମସେନ ଯୋଶୀ ୧୯୨୨ ମସିହା ଫେବ୍ରୁୟାରୀ ୪ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ଗୁରାଚାର୍ଯ୍ୟ ଯୋଶୀ ଜଣେ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକ ଥିଲେ । ଭୀମସେନଙ୍କର ମୋଟ୍ ୧୬ଟି ଭାଇ ଭଉଣୀ ଥିଲେ । ସୀମିତ ସମ୍ବଳରେ ଗୁରାଚାର୍ଯ୍ୟ ତାଙ୍କର ବିରାଟ ପରିବାର ଚଳାଇବା କଷ୍ଟକର ହେଉଥାଏ । ଅର୍ଥନୈତିକ ଅନଟନ ମଧ୍ୟରେ ଭୀମସେନଙ୍କର ବାଲ୍ୟକାଳ, କୈଶୋର ଓ ଆଦ୍ୟ ଯୌବନ କଟିଥିଲା । ତା ସାଙ୍ଗକୁ ଅଳ୍ପ ବୟସରେ ତାଙ୍କର ମାତାଙ୍କର ମୃତ୍ୟୁ ହୋଇଥିଲା । ତାଙ୍କର ଲାଳନ ପାଳନ ସାବତ ମା' କରିଥିଲେ ।



ସେତେବେଳର ପ୍ରଥା ଅନୁସାରେ ଅତି ଅଳ୍ପ ବୟସରେ ସୁନନ୍ଦା ନାମ୍ନୀ ଜଣେ ବାଳିକା ସହିତ ତାଙ୍କର ବିବାହ ସଂପର୍ଣ୍ଣ ହେଲା । କିଛିଦିନ ମଧ୍ୟରେ ତାଙ୍କର ଦୁଇଟି ପୁତ୍ର ସନ୍ତାନ ଜାତ ହେଲେ । ରାଜେନ୍ଦ୍ର ଏବଂ ଆନନ୍ଦ । କିନ୍ତୁ ପରବର୍ତ୍ତୀ ସମୟରେ ଭୀମସେନଙ୍କୁ ଆଉଥରେ ବିବାହ କରିବାକୁ ପଡ଼ିଥିଲା । ତାଙ୍କର ଜଣେ ସହକଳାକାର ଭର୍ତ୍ସଲାଙ୍କୁ ସେ ବିବାହ କଲେ । ଭର୍ତ୍ସଲାଙ୍କ ଔରସରୁ ଦୁଇଟି ପୁତ୍ର ଏବଂ ଗୋଟିଏ କନ୍ୟା ମଧ୍ୟ ଜାତ ହେଲେ । ଭୀମସେନଙ୍କର ଏହି ସର୍ବମୋଟ ୫ଟି ସନ୍ତାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ଲଘୁ ଶାସ୍ତ୍ରୀୟ ସଂଗୀତ ସହିତ ସଂପର୍କିତ ହୋଇଛନ୍ତି ।

ବିବାହ ବନ୍ଧନରେ ଛନ୍ଦି ହୋଇ ଘରସଂସାର କରିବା ପରେ ମଧ୍ୟ ଭୀମସେନ ଯୋଶୀଙ୍କର ସଂଗୀତ ସାଧନାର ପିପାସା ମେଣ୍ଟି ନ ଥାଏ । ଅତି ବାଲ୍ୟକାଳରୁ ସେ ସଂଗୀତ ପ୍ରତି ଆକର୍ଷିତ ଥିଲେ । ଏହା ଶିକ୍ଷା କରିବା ପାଇଁ ଯେ କୌଣସି ପ୍ରକାରର କଷ୍ଟ ସ୍ୱୀକାର କରିବା ପାଇଁ ପ୍ରସ୍ତୁତ ଥିଲେ । ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ସାଧାରଣତଃ ଗୁରୁ ଶିଷ୍ୟ ପଦ୍ଧତିରେ ଖେୟାଲ୍ ଏବଂ ଶାସ୍ତ୍ରୀୟ ସଂଗୀତ ଶିକ୍ଷା ଦିଆଯାଉଥିଲା । ଭୀମସେନ ତାଙ୍କର ବାଲ୍ୟକାଳରେ ଅବଦୁଲ୍ କରିମ୍ ଖାଁଙ୍କର ଏକ ସଂଗୀତ ରେକର୍ଡ ଶୁଣି ତହିଁରେ ଖୁବ୍ ପ୍ରଭାବିତ ହୋଇଥିଲେ । ପ୍ରକୃତପକ୍ଷେ ସେହି ସଂଗୀତ ଶୁଣିବା ପରଠାରୁ ହିଁ ଭୀମସେନ ନିଜେ ଜଣେ ସଂଗୀତଜ୍ଞ ହେବାର ସ୍ୱପ୍ନ ଦେଖିଥିଲେ । ମାତ୍ର ୧୧ ବର୍ଷ ବୟସ ବେଳେ ୧୯୩୩ ମସିହାରେ ଭୀମସେନ ଉପଯୁକ୍ତ ଗୁରୁ ସନ୍ଧାନରେ ଗୃହତ୍ୟାଗୀ ହେଲେ । ଗଡ଼ାଗ ଠାରେ ରେଳଯାତ୍ରା କରି ଅନିର୍ଦ୍ଦିଷ୍ଟ ପଥରେ ଯାତ୍ରା କରିବାକୁ ଆରମ୍ଭ କଲେ । ରେଳରେ ବସିଥିବା ସମୟରେ ଗୀତ ଗାଇ ସହଯାତ୍ରୀମାନଙ୍କୁ ମୁଗ୍ଧ କରିଥିଲେ । ସହଯାତ୍ରୀମାନେ ତାଙ୍କଠାରୁ ଜାଣିବାକୁ ପାଇଲେ ଯେ ସେ ସଂଗୀତ ଶିକ୍ଷା କରିବା ପାଇଁ ଗୁରୁଙ୍କ ସନ୍ଧାନରେ ବାହାରିଛନ୍ତି । ଟିକେଟ୍ କାଟିବା ତ ଦୂର କଥା ଖାଇବାକୁ ମଧ୍ୟ ପାଖରେ ପଇସାଟିଏ ନାହିଁ । ତାଙ୍କ କଥା ଶୁଣି ସହଯାତ୍ରୀମାନଙ୍କ ମନରେ ଦୟା ଜାତ ହେଲା । ସେମାନେ ସମସ୍ତେ କିଛି କିଛି ଅର୍ଥ ଦାନ କଲେ । ସେହି ଅର୍ଥରେ ସେ ପ୍ରଥମେ ଧଡୱାର ଗଲେ ଏବଂ ତା ପରେ ସେ

ବୁଲେଇ ଗଲେ । ପରେ ସେ ଅନେକ ସ୍ଥାନ ବୁଲିଛନ୍ତି । ଗ୍ୱାଲିଅର୍‌ର ମହାଦେବ ମ୍ୟୁଜିକ୍ ସ୍କୁଲ୍‌ରେ ବି ସେ ପଦାର୍ପଣ କଲେ । ସେତେବେଳେ ଗ୍ୱାଲିୟରର ମହାରାଜାଙ୍କ ଦ୍ୱାରା ପ୍ରସିଦ୍ଧ ସରୋଜ ବାଦକ ହନିଫ୍ ଅଲ୍ଲୀ ଖାଁଙ୍କ ଅଧକ୍ଷତାରେ ଏହି ସଂଗୀତ ବିଦ୍ୟାଳୟ ପରିଚାଳିତ ହୋଇଥିଲା । ଏହା ପରେ ପ୍ରାୟ ୩ ବର୍ଷ କାଳ ସେ ଦିଲ୍ଲୀ, କୋଲକାତା, ଗ୍ୱାଲିୟର, ଲକ୍ଷ୍ନୌ, ରାମପୁର ଆଦି ଅନେକ ସ୍ଥାନ ଗୁରୁ ଅନ୍ୱେଷଣରେ ବୁଲିଲେ । ଏପଟେ ସେ ଗୁରୁଙ୍କ ଅନ୍ୱେଷଣ କରୁଥିବା ସମୟରେ ଅନ୍ୟ କ୍ଷେତ୍ରରେ ତାଙ୍କର ପିତା ଗୁରାଚାର୍ଯ୍ୟ ଭୀମସେନଙ୍କୁ ଖୋଜୁଥାନ୍ତି । ଜଳନ୍ଧରଠାରେ ଆକସ୍ମିକ ଭାବେ ପିତା ପୁତ୍ରଙ୍କର ଭେଟ ହୋଇଥିଲା ଏବଂ ଗୁରାଚାର୍ଯ୍ୟ ଭୀମସେନଙ୍କୁ ଧରି ଫେରିଆସିଥିଲେ ।

୧୯୩୬ ମସିହାରେ ଧାର୍‌ୱାରର ବାସିନ୍ଦା ରାମଭାଉ କୁଣ୍ଡଗୋଲକର ଭୀମସେନଙ୍କର ଗୁରୁ ହେବା ପାଇଁ ସ୍ୱୀକୃତି ଦେଲେ । ରାମଭାଉ ଜନସମାଜରେ ସ୍ୱାମୀ ଗନ୍ଧରପତି ନାମରେ ପରିଚିତ ଥିଲେ । ରାମଭାଉଙ୍କ ଘରେ ଭୀମସେନ ରହି ତାଙ୍କଠାରୁ ପାରମ୍ପରିକ ଗୁରୁ ଶିଷ୍ୟ ପଦ୍ଧତିରେ ସଂଗୀତ ଶିକ୍ଷା ଗ୍ରହଣ କଲେ । ସଂଗୀତ ଶିକ୍ଷା ପାଇଁ ନିର୍ଦ୍ଦିଷ୍ଟ କୌଣସି ସମୟ ନ ଥାଏ । ଗୁରୁ ଯେ କୌଣସି ସମୟରେ ଶିଷ୍ୟଙ୍କୁ ଶିକ୍ଷା ଦେଉଥିଲେ । ପରିବାରର ବିଭିନ୍ନ କାର୍ଯ୍ୟ ସଂପାଦନ କରିବା ସହିତ ସଂଗୀତ ଶିକ୍ଷା ମଧ କରୁଥିଲେ । ତାଙ୍କ ସହିତ ଅନ୍ୟ ଜଣେ କଣ୍ଠଶିଳ୍ପୀ ଗଙ୍ଗୁବାଇ ହେଙ୍ଗଲ ମଧ ଗୁରୁଙ୍କ ପାଖରେ ରହି ସଂଗୀତ ଶିକ୍ଷା କରୁଥିଲେ । ୧୯୪୦ ମସିହା ପର୍ଯ୍ୟନ୍ତ ଭୀମସେନ ଯୋଶୀ ସ୍ୱାମୀ ଗନ୍ଧରପତିଙ୍କ ପାଖରେ ରହି ସଂଗୀତ ଶିକ୍ଷା କରିଥିଲେ ।

ଭୀମସେନ୍ ଯୋଶୀ ୧୯୪୩ ମସିହାରେ ମୁମ୍ବାଇ ଚାଲିଆସିଲେ । ସେଠାରେ ଜଣେ ବେତାର ଶିଳ୍ପୀ ଭାବେ କାର୍ଯ୍ୟରେ ଯୋଗଦେଲେ । ତାଙ୍କୁ ମାତ୍ର ୧୯ ବର୍ଷ ବୟସ ବେଳେ ସେ ପ୍ରଥମ ସିଧାପ୍ରସାରଣରେ ଭାଗ ନେଇଥିଲେ । ତାଙ୍କୁ ମାତ୍ର ୨୨ ବର୍ଷ ହୋଇଥିଲା ବେଳେ ଏଚ୍.ଏମ୍.ଭି ରେକର୍ଡ କମ୍ପାନୀ ତାଙ୍କର କେତେକ ହିନ୍ଦୀ ଏବଂ କାନାଡ଼ା ଭାଷାରେ ଭକ୍ତି ସଂଗୀତ ସମ୍ବଳିତ ରେକର୍ଡ ପ୍ରକାଶ କରିଥିଲେ ।

ସଂଗୀତ ସମାଲୋଚକ ଏବଂ ସଂଗୀତ ପ୍ରେମୀ ଉଭୟଙ୍କ ଦ୍ୱାରା ଭୀମସେନ ଯୋଶୀଙ୍କର କଣ୍ଠ ସଂଗୀତ ଆଦୃତ ହୋଇଛି । ତାଙ୍କର କଣ୍ଠରେ ଥିବା ସ୍ୱଚ୍ଛତା ଏବଂ ଅନ୍ୟ କେତେକ ବିଶେଷ ଗୁଣ ତାଙ୍କୁ ଜଣେ ଅନନ୍ୟ ଶିଳ୍ପୀ ରୂପେ ଗଢ଼ି ତୋଳିଥିଲା । ତାଙ୍କ ଦ୍ୱାରା ପରିବେଶିତ ଶାସ୍ତ୍ରୀୟ ସଂଗୀତ ଧାରାର ନିର୍ଭୁଲ୍ ସ୍ୱରଲିପି, ଘୂର୍ଣ୍ଣିତ ଶ୍ରୁତିମଧୁର

ଗାନ ଏବଂ ତାଳ ଉପରେ ଥିବା ନିୟନ୍ତ୍ରଣ ଶ୍ରୋତାର ହୃଦୟକୁ ସମ୍ମୋହିତ କରିଥାଏ । ତାଙ୍କର ଯାହା କିଛି କହିବାର ଥାଏ ସେ ତାଙ୍କର ଅଦ୍ଭୁତ ସ୍ୱର ମାଧୁରୀର ଯାଦୁକାରୀ ଭାଷାରେ ପ୍ରକାଶ କରିଥାନ୍ତି । ତାଙ୍କ କଣ୍ଠ ସଂଗୀତ ପରିବେଷଣ ସମୟରେ ଯେପରି ତାଙ୍କର ସ୍ଥୂଳ ଶରୀର ପାର୍ଥିବ ଜଗତରୁ ବାହାରି ଆସି ବିଚରଣ କରେ ମହାଶୂନ୍ୟରେ ଏକ ସ୍ୱର୍ଗୀୟ ମଣ୍ଡଳରେ । ଅନେକ ସମୟରେ ସେ ସରଗମ୍ ଏବଂ ତିହାଇର ବ୍ୟବହାର କରନ୍ତି । କେତେଗୁଡ଼ିଏ ରାଗ, ତାଙ୍କର ଅତିପ୍ରିୟ ଏବଂ ଅଧିକାଂଶ ସମୟରେ ସେ ସେହି ରାଗକୁ ପରିବେଷଣ କରିଥାନ୍ତି । ତାଙ୍କର ସବୁଠାରୁ ପ୍ରିୟ ରାଗ ମାନଙ୍କ ମଧ୍ୟରେ ସୁଧାକଲ୍ୟାଣ, ମିହାଚିତୋଡ଼ି, ପୁରିଆ ଧନଶ୍ରୀ, ମୁଲ୍‌ତାନୀ, ଧ୍ୱନ୍‌ତଲାକି, ଦରବାରୀ ଏବଂ ରାମକଲୀ ରାଗ ଅନ୍ୟତମ । ଅବଦୁଲ୍ କରିମ୍ ଖାଁଙ୍କ ବ୍ୟତୀତ ଭୀମସେନ ଆଉ କେତେକ ବିଶିଷ୍ଟ ସଂଗୀତଜ୍ଞଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ସେମାନଙ୍କ ମଧ୍ୟରେ କେଶର ବାଈ କର୍କର, ବେଦମାସ୍ତା ଏବଂ ଉସ୍ତାଦ ଅମୀର ଖାଁ ଅନ୍ୟତମ । ନିଜର ପାରମ୍ପାରିକ କିରାନା ଘରାନାର ସରଂଚନାକୁ ନ୍ୟଷ୍ଟି ଭାବେ ସରଂକ୍ଷଣ କରି ଅନ୍ୟ କେତେକ ପ୍ରଭାବଶାଳୀ ସଂଗୀତଜ୍ଞଙ୍କର ସଂଗୀତ ଧାରାକୁ ମିଶ୍ରଣ କରି ଭୀମସେନ ତାଙ୍କର ନିଜସ୍ୱ ଶୈଳୀର ଉଦ୍ଭାବନ କଲେ । ଭୀମସେନଙ୍କର ନିଜସ୍ୱ ଶୈଳୀ ସଂଗୀତ ପ୍ରେମୀ ଜନତାଙ୍କ ଦ୍ୱାରା ବହୁଳ ଭାବେ ଆଦୃତ ହେଲା ।

ନିଜେ ଜଣେ ଶାସ୍ତ୍ରୀୟ ସଂଗୀତର ଉପାସକ ହେଲେ ହେଁ କେତେକ ଚଳଚ୍ଚିତ୍ରରେ ସେ ପ୍ରଚ୍ଛଦପଟ ଗାୟକ ଭାବେ କଣ୍ଠଦାନ କରିଛନ୍ତି । ମାନା ଦେ ଙ୍କ ସହିତ ବସନ୍ତ ବାହାର ଚିତ୍ରରେ, ପଣ୍ଡିତ ଜସରାଜଙ୍କ ସହିତ ମୋ ଭାଇ ବୀରବଲରେ ଏବଂ ଅନ୍ୟ କେତେକ ତାମିଲ ଚଳଚ୍ଚିତ୍ରରେ ସେ କଣ୍ଠଦାନ କରିଥିଲେ । ୧୯୫୮ରେ ମୁକ୍ତିଲାଭ କରିଥିବା ଚଳଚ୍ଚିତ୍ର ତାନସେନ୍ ଏବଂ ୧୯୮୫ ମସିହାରେ ମୁକ୍ତିଲାଭ କରିଥିବା ଆଙ୍ଖେଁ ଚଳଚ୍ଚିତ୍ରରେ ମଧ୍ୟ ଭୀମସେନଙ୍କର କଣ୍ଠସ୍ୱର ଶୁଣିବାକୁ ମିଳିଥାଏ ।

କର୍ଣ୍ଣାଟକ ରାଜ୍ୟରେ ଭକ୍ତି ସଂଗୀତ ପାଇଁ ଭୀମସେନ ଯୋଶୀ ଘରେ ଘରେ ସୁପରିଚିତ । ତାଙ୍କର ଦଶଭାଇ ଆଲ୍‌ବମ୍ ରାଜ୍ୟର ପ୍ରାୟ ପ୍ରତି ଘରେ ଦେଖିବାକୁ ମିଳିଥାଏ । ଭାରତୀୟ ଜାତୀୟ ଏକତା ଉପରେ ପ୍ରସ୍ତୁତ ସଂଗୀତ ଭିଡ଼ିଓ 'ମିଲେସୁର ମେରା ତୁହ୍ମାରା'ର ପ୍ରଥମ ଦୁଇଧାଡ଼ି ଗାଇ ସେ ଏହାର ଶୁଭାରମ୍ଭ କରି ସାରା ଦେଶରେ ସୁପରିଚିତ ହୋଇଥିଲେ । ସଂଗୀତର ଜଣେ ଆଜୀବନ ଉତ୍ସର୍ଗୀକୃତ ପୂଜାରୀ ଭାବେ

ସେ ସୁପରିଚିତ । ତାଙ୍କ ଗୁରୁଙ୍କ ସ୍ମୃତିରେ ହଓ୍ଵାଇ ଗନ୍ଧର୍ବ ସଂଗୀତ ମହୋତ୍ସବ ନାମରେ ଉଲେଘରେ ପ୍ରତିବର୍ଷ ଡ଼ିସେମ୍ବର ମାସରେ ଏକ ବାର୍ଷିକ ସଂଗୀତ ଅନୁଷ୍ଠାନର ଆୟୋଜନ କରୁଛନ୍ତି । ଏଥିରେ ପ୍ରତିବର୍ଷ ଦେଶ ଏବଂ ଦେଶ ବାହାରୁ ବିଶିଷ୍ଟ ଶାସ୍ତ୍ରୀୟ ସଂଗୀତଜ୍ଞମାନେ ଯୋଗ ଦିଅନ୍ତି । କଣ୍ଠ ସଂଗୀତ ପରିବେଷଣ ସାଙ୍ଗକୁ ସଂଗୀତର ବିଭିନ୍ନ ଦିଗ ଉପରେ ବାଦକ ମାନଙ୍କର ଆଲୋଚନା ହୋଇଥାଏ । ପଣ୍ଡିତ ଭୀମସେନ ଯୋଶୀ ଜଣେ ଶାସ୍ତ୍ରୀୟ ସଂଗୀତଜ୍ଞ ହୋଇଥିଲେ ହେଁ ତାଙ୍କର ନାନାବିଧ କୃତି ତଥା ସରଳ ଆମାୟିକ ବ୍ୟବହାର ପାଇଁ ସେ ଅତ୍ୟନ୍ତ ଲୋକପ୍ରିୟ । ତାଙ୍କର ବହୁବିଧ କୃତିତ୍ୱ ପାଇଁ ୧୯୭୨ ମସିହାରେ ପଦ୍ମଶ୍ରୀ, ୧୯୭୬ ମସିହାରେ ସଂଗୀତ ନାଟକ ଏକାଡ଼େମୀ ପୁରସ୍କାର, ୧୯୮୫ ମସିହାରେ ପଦ୍ମଭୂଷଣ ଏବଂ ସେହି ମସିହାରେ ଶ୍ରେଷ୍ଠ ପୁରୁଷ ପ୍ରଚ୍ଛଦପଟ୍ଟ ଗାୟକ ଭାବେ ଜାତୀୟ ପୁରସ୍କାର ପାଇଛନ୍ତି । ୧୯୮୬ ମସିହାରେ ତାଙ୍କର ପ୍ରଥମ ପ୍ଲାଟିନମ୍ ଡ଼ିସ୍କ ଉନ୍ମୋଚିତ ହୋଇଥିଲା ଏବଂ ୧୯୯୯ ମସିହାରେ ତାଙ୍କୁ ଭାରତର ଦ୍ୱିତୀୟ ସର୍ବୋଚ୍ଚ ନାଗରିକ ସମ୍ମାନ ପଦ୍ମବିଭୂଷଣରେ ଭୂଷିତ କରାଯାଇଥିଲା । ତାଙ୍କର ସଂଗୀତ ସାଧନା ପ୍ରତି ନିଷ୍ଠା ଏବଂ ଅଙ୍ଗୀକାରବଦ୍ଧତା ଯୋଗୁଁ ୨୦୦୦ ମସିହାରେ ଆଦିତ୍ୟ ବିକ୍ରମ ବିର୍ଲା କଳାଶିଖା ପୁରସ୍କାର, ୨୦୦୧ ମସିହାରେ କାନାଡ଼ା ବିଶ୍ୱବିଦ୍ୟାଳୟ ତରଫରୁ ନରଜା ପୁରସ୍କାର ମିଳିଥିଲା । ୨୦୦୨ ମସିହାରେ ତାଙ୍କୁ ମହାରାଷ୍ଟ୍ର ସରକାର ମହାରାଷ୍ଟ୍ର ଭୂଷଣ ପୁରସ୍କାର ପ୍ରଦାନ କରିଥିଲେ । ୨୦୦୩ ମସିହାରେ କେରଳ ସରକାର ସ୍ୱାତୀ ସଂଗୀତ ପୁରସ୍କାରମ୍ ପ୍ରଦାନ କରିଥିଲେ ଏବଂ ୨୦୦୫ ମସିହାରେ ତାଙ୍କୁ କର୍ଣ୍ଣାଟକ ରତ୍ନ ପୁରସ୍କାରରେ ବିଭୂଷିତ କରାଯାଇଥିଲା । ତା'ର ତିନି ବର୍ଷ ପରେ ଭାରତର ସର୍ବଶ୍ରେଷ୍ଠ ନାଗରିକ ସମ୍ମାନ ଭାରତରତ୍ନରେ ତାଙ୍କୁ ଭୂଷିତ କରାଗଲା । ତା ପରେ ପଣ୍ଡିତ ଯୋଶୀଙ୍କୁ ୨୦୦୮ ମସିହାରେ ସ୍ୱାମୀ ହରିଦାସ ଆଓ୍ଵାର୍ଡ ଏବଂ ୨୦୦୯ ମସିହାରେ ଦିଲ୍ଲୀ ସରକାର ଜୀବନ ବ୍ୟାପୀ ବା ଲାଇଫ୍ ଟାଇମ୍ ଆଚିଭ୍‌ମେଣ୍ଟ ଆଓ୍ଵାର୍ଡ ପ୍ରଦାନ କରିଛନ୍ତି ।

* * *

## ଚିନ୍ତାମଣି ନାଗେଶ ରାମଚନ୍ଦ୍ର ରାଓ



୧୯୩୪

ଭାରତ ରତ୍ନ - ୨୦୧୩

### ଚିନ୍ତାମଣି ନାଗେଶ ରାମଚନ୍ଦ୍ର ରାଓ

ଚିନ୍ତାମଣି ନାଗେଶ ରାମଚନ୍ଦ୍ର ରାଓ ସଂକ୍ଷିପ୍ତରେ ପ୍ରଫେସର ସିଏନ୍‌ଆର୍ ରାଓ ଭାବେ ପରିଚିତ । ଶ୍ରୀ ରାଓ ଜଣେ ରସାୟନ ଶାସ୍ତ୍ରବିତ୍ । ମୁଖ୍ୟତଃ କଠିନ ଅବସ୍ଥା ଏବଂ ସଂରଚନା ରସାୟନ ବିଦ୍ୟା ଉପରେ ତାଙ୍କର ଗବେଷଣା କରିଛନ୍ତି । ଅଧୁନା ସେ ଭାରତର

ପ୍ରଧାନମନ୍ତ୍ରୀଙ୍କ ସାଇଣ୍ଟିଫିକ୍ ଆଡ୍‌ଭାଇଜରୀ କାଉନ୍‌ସିଲ୍‌ର ମୁଖ୍ୟ ଭାବେ ଅବସ୍ଥାପିତ । ଶ୍ରୀ ରାଓଙ୍କୁ ପୃଥିବୀର ବିଭିନ୍ନ ଦେଶସ୍ଥିତ ୬୦ଟି ବିଶ୍ୱବିଦ୍ୟାଳୟରୁ ଡ଼କ୍ଟରେଟ୍ ପ୍ରଦାନ କରାଯାଇଛି । ତାଙ୍କର ବିଜ୍ଞତା ପ୍ରସୂତ ୧୫୦୦ରୁ ଊର୍ଦ୍ଧ୍ୱ ରସାୟନ ବିଦ୍ୟା ସମ୍ବନ୍ଧିତ ପ୍ରବନ୍ଧ ପୃଥିବୀର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି । ପୃଥିବୀର ସମସ୍ତ ବିକଶିତ ଦେଶମାନଙ୍କଦ୍ୱାରା ପ୍ରଦତ୍ତ ସର୍ବଶ୍ରେଷ୍ଠ ବୈଜ୍ଞାନିକ ପୁରସ୍କାରରେ ସେ ସମ୍ମାନିତ ହୋଇଛନ୍ତି । ପ୍ରାୟ ସମସ୍ତ ମୁଖ୍ୟ ବିଜ୍ଞାନ ସମ୍ବନ୍ଧୀୟ ସଂଗଠନର ସେ ସଭ୍ୟ ହୋଇଛନ୍ତି ।

ବାଙ୍ଗାଲୋରରେ ଏକ କନ୍ନଡ଼ ପରିବାରରେ ୧୯୩୪ ମସିହା ଜୁନ୍ ୩୦ ତାରିଖ ଦିନ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ହନୁମନ୍ତ ନାଗେଶ୍ୱର ରାଓ ଏବଂ ମାତାଙ୍କ ନାମ ନାଗମ୍ମା ନାଗେଶ୍ୱର ରାଓ । ବାପା-ମା'ଙ୍କର ସେ ଏକମାତ୍ର ସନ୍ତାନ ଥିଲେ । ତାଙ୍କ ବାପା-ମା ଶିକ୍ଷିତ ହୋଇଥିବାରୁ ପରିବାରରେ ପାଠପଢ଼ା ପାଇଁ ଅନୁକୂଳ ପରିବେଶ ସୃଷ୍ଟି ହୋଇଥିଲା । ବାଲ୍ୟକାଳରୁ ମା'ଙ୍କଠାରୁ ହିନ୍ଦୁ ସାହିତ୍ୟ ଓ ଗଣିତ ଏବଂ ବାପାଙ୍କଠାରୁ ଇଂରେଜୀ ଶିକ୍ଷା କରିଥିଲେ ସିଏନ୍‌ଆର୍ । ସେ ପ୍ରାଥମିକ ବିଦ୍ୟାଳୟରେ ନପଢ଼ି ମା' ଓ ବାପାଙ୍କ ଦ୍ୱାରା ଘରୋଇ ଭାବେ ଶିକ୍ଷାଲାଭ କଲେ । ୧୯୪୦ ମସିହାରେ ସେ ସିଧାସଳଖ ମି.ଇ. ସ୍କୁଲ୍‌ରେ ନାମ ଲେଖାଇଲେ । ତାଙ୍କୁ ସେତେବେଳେ ମାତ୍ର ୬ ବର୍ଷ ବୟସ ହୋଇଥିଲା । ତାଙ୍କ ଶ୍ରେଣୀରେ ସେ ସର୍ବକନିଷ୍ଠ ହେଲେ ହେଁ ତାଙ୍କଠାରୁ ବୟସରେ ଢ଼େର ବଡ଼ ପିଲାମାନଙ୍କୁ ସେ ଗଣିତ ଓ ଇଂରାଜୀରେ ପାଠ ପଢ଼ାଉଥିଲେ । ୧୯୪୪ ମସିହାରେ ସେ ପ୍ରଥମ ଶ୍ରେଣୀରେ ୭ମ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେତେବେଳେ ଖୁସୀ ହୋଇ ବାପା ହନୁମନ୍ତ ରାଓ ତାଙ୍କୁ ଚାରିଅଣା (ବର୍ତ୍ତମାନର ୨୫ ପଇସା) ପୁରସ୍କାର ସ୍ୱରୂପ ଦେଇଥିଲେ । ତା' ପରେ ବାସବାନଗୁଡ଼ୀ ସ୍ଥିତ ଆଚାର୍ଯ୍ୟ ପାଠଶାଳା ହାଇସ୍କୁଲ୍‌ରେ ସେ ପଢ଼ିବାକୁ ଗଲେ । ଏହି ସ୍କୁଲ୍‌ରୁ ହିଁ ରସାୟନ ଶାସ୍ତ୍ର ପ୍ରତି ତାଙ୍କର ଆଗ୍ରହ ସୃଷ୍ଟି ହୋଇଥିଲା । ଭାରତର ସ୍ୱାଧୀନତା ବର୍ଷ (୧୯୪୭)ରେ ସେ ମାଟ୍ରିକ୍ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ବାଙ୍ଗାଲୋରସ୍ଥିତ କେନ୍ଦ୍ରୀୟ ମହାବିଦ୍ୟାଳୟରେ ସେ ବି.ଏସ୍.ସି. ପଢ଼ିଲେ । ଏହି ସମୟରେ ଶ୍ରୀ ରାଓ ଭାବ ପ୍ରକାଶ ଏବଂ ସଂସ୍କୃତ ଭାଷାରେ ଦକ୍ଷତା ହାସଲ କଲେ । ସ୍ନାତକ ହେଲାବେଳକୁ ତାଙ୍କୁ ମାତ୍ର ସତର ବର୍ଷ ବୟସ ହୋଇଥିଲା । ପ୍ରଥମେ ସେ ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍‌ସର କେମିକାଲ୍ ଇଂଜିନିଅରିଂରେ ସ୍ନାତକୋତ୍ତର ଶିକ୍ଷା ପାଇବା ପାଇଁ ଇଚ୍ଛା କରିଥିଲେ । କିନ୍ତୁ ତାଙ୍କର ଜଣେ ଶିକ୍ଷକ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଯୋଗଦେବା ପାଇଁ ପ୍ରବର୍ତ୍ତାଇ ଥିଲେ । ଦୁଇବର୍ଷ ପରେ ସେ ବିଏଚ୍‌ୟୁରୁ

ରସାୟନ ବିଦ୍ୟାରେ ଏମ୍.ଏସ୍.ସି.ରେ ପ୍ରଥମଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ୧୯୫୩ ମସିହାରେ ଆଇ.ଆଇ.ଟି. କାନପୁରରେ ପି.ଏଚ୍.ଡ଼ି. କରିବା ପାଇଁ ତାଙ୍କୁ ଅନୁମତି ମିଳିଥିଲା । ଠିକ୍ ସେହି ସମୟରେ ଏକକାଳୀନ ୪ଟି ବିଦେଶୀ ବିଶ୍ୱବିଦ୍ୟାଳୟ ମଧ୍ୟ ପି.ଏଚ୍.ଡ଼ି. କରିବା ପାଇଁ ଶ୍ରୀ ରାଓଙ୍କୁ ଆମନ୍ତ୍ରଣ କଲେ । ଏମ୍.ଆଇ.ଟି., ପେନ୍, କଲମ୍ବିଆ ଏବଂ ପର୍ଦ୍ଦୁ ବିଶ୍ୱବିଦ୍ୟାଳୟ ତାଙ୍କୁ ଆର୍ଥିକ ଅନୁଦାନ ବି ଦେବାପାଇଁ ଆଗ୍ରହ ପ୍ରକାଶ କଲେ । ଶେଷରେ ଶ୍ରୀ ରାଓ ପର୍ଦ୍ଦୁ ବିଶ୍ୱବିଦ୍ୟାଳୟକୁ ପି.ଏଚ୍.ଡ଼ି. ପାଇଁ ଚୟନ କଲେ । ତାଙ୍କର ପ୍ରଥମ ଗବେଷଣାତ୍ମକ ପ୍ରବନ୍ଧ ଆଗ୍ରା ବିଶ୍ୱବିଦ୍ୟାଳୟର ଜର୍ଣ୍ଣାଲ୍ ଅଫ୍ ରିସର୍ଚ୍ଚରେ ୧୯୫୪ ମସିହାରେ ପ୍ରକାଶିତ ହେଲା । ଶ୍ରୀ ରାଓ ମାତ୍ର ଦୁଇ ବର୍ଷ ୯ ମାସ ଅବଧିରେ ତାଙ୍କ ପି.ଏଚ୍.ଡ଼ି. ହାସଲ କଲେ । ସେତେବେଳେ ସେ ମାତ୍ର ୨୪ ବର୍ଷର ଯୁବକ ।

୧୯୫୯ ମସିହାରେ ରାଓ ବାଙ୍ଗାଲୋର୍‌କୁ ଫେରିଆସି ଆଇ.ଆଇ.ଏସ୍.ସି.ରେ ଜଣେ ଲେକ୍‌ଚରର୍ ଭାବେ ଚାକିରୀରେ ଯୋଗଦାନ କଲେ । ମାସକୁ ମାତ୍ର ୫୦୦ ଟଙ୍କାର ଦରମା ପାଇ ୬ ଜଣ ପି.ଏଚ୍.ଡ଼ି. ଛାତ୍ରଙ୍କୁ ନେଇ ସେ ନିଜର ଗବେଷଣା ଆରମ୍ଭ କଲେ । ମାତ୍ର ୩ ବର୍ଷ ପରେ ସେ ଆଇ.ଆଇ.ଟି.ର ରସାୟନ ବିଜ୍ଞାନ ବିଭାଗରେ ସ୍ଥାୟୀ ନିଯୁକ୍ତି ପତ୍ର ପାଇଲେ । ଆଇ.ଆଇ.ଟି ନିର୍ଦ୍ଦେଶକ ପି. କେ. କେଲ୍‌କର୍ ତାଙ୍କୁ ବିଭାଗୀୟ ମୁଖ୍ୟ ଭାବେ ନିଯୁକ୍ତ କଲେ । ରାଓ ସେହି ଅନୁଷ୍ଠାନରେ ୧୯୬୩ ଠାରୁ ୧୯୭୬ ମସିହାଯାଏଁ ରହିଲେ । ୧୯୬୪ ମସିହାରେ ସାର୍ ସି.ଭି. ରମଣ ଖବର ଦେଲେ ଯେ, ରାଓ ଇଣ୍ଡିଆନ୍ ଏକାଡ଼େମୀ ଅଫ୍ ସାଇନ୍‌ସେସ୍‌ର ଜଣେ ସଭ୍ୟ ଭାବେ ନିର୍ବାଚିତ



ହୋଇଛନ୍ତି । ୧୯୭୬ ମସିହାରେ ସେ ଆଇ.ଆଇ.ଏସ୍.ସି.କୁ ଫେରିଆସି ସେଠାରେ କଠିନ ଅବସ୍ଥା ଏବଂ ସଂରଚନା ରସାୟନ ବିଦ୍ୟାର ଏକ ବିଭାଗ ସ୍ଥାପନ କଲେ । ୧୯୮୪ ମସିହାରୁ ୧୯୯୪ ମସିହାଯାଏଁ ସେ ଆଇ.ଆଇ.ଏସ୍.ସି.ର ନିର୍ଦ୍ଦେଶକ ପଦଭାର ବହନ କଲେ । ତା'ଛଡ଼ା ସେ ପର୍ଦ୍ଦୁ ବିଶ୍ୱବିଦ୍ୟାଳୟର ପରିବେଶିକ ଅଧ୍ୟାପକ ଭାବେ ବି କାର୍ଯ୍ୟ କରୁଥିଲେ । ଅକ୍ସଫୋର୍ଡ, କାମ୍ବ୍ରିକ୍, କାଲିଫର୍ଣ୍ଣିଆ ଏବଂ ସାନ୍ତା ବର୍ବେରା ବିଶ୍ୱବିଦ୍ୟାଳୟମାନଙ୍କରେ ବି ସେ ପରିଦର୍ଶକ ଅଧ୍ୟାପକ କାର୍ଯ୍ୟ ତୁଲାଉଥିଲେ । ୧୯୮୩-୮୪ ମସିହାରେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଏବଂ କିଙ୍ଗ୍ସ୍ କଲେଜ୍ କେମ୍ବ୍ରିଜ୍‌ର ଜବାହାରଲାଲ୍ ନେହେରୁ ଅଧ୍ୟାପକ ଭାବେ ସେ ଶିକ୍ଷାଦାନ କରିଥିଲେ ।

ଅଧୁନା ଶ୍ରୀ ରାଓ ଏକାଧାରରେ ଜାତୀୟ ଗବେଷଣା ଅଧ୍ୟାପକ, ଲିନସ୍ ପଲିଙ୍ଗ୍ ଗବେଷଣା ଅଧ୍ୟାପକ ଏବଂ ଜବାହାରଲାଲ୍ ନେହେରୁ ସେଣ୍ଟର୍ ଫର୍ ଆଡଭାନ୍ସଡ ସାଇଣ୍ଟିଫିକ୍ ରିସର୍ଚ୍ଚ ବାଙ୍ଗାଲୋର୍‌ର ଅବୈତନିକ ସଭାପତି । ୨୦୦୫ ମସିହା ଜାନୁଆରୀ ମାସରେ ପ୍ରଧାନମନ୍ତ୍ରୀଙ୍କ ସାଇଣ୍ଟିଫିକ୍ ଆଡଭାଇଜରୀ କାଉନ୍‌ସିଲ୍‌ର ଚେଆର ଭାବେ ନିଯୁକ୍ତି ପାଇଲେ । ୧୯୮୫ ଠାରୁ ୧୯୮୯ ମସିହାଯାଏଁ ବି ସେ ଏହି ପଦବୀରେ ରହିଥିଲେ । ଇଣ୍ଟରନ୍ୟାସନାଲ୍ ସେଣ୍ଟର୍ ଫର୍ ମାଟେରିଆଲ୍ ସାଇନ୍‌ସେସ୍ (ଆଇ.ଆଇ.ଏମ୍.ଏସ୍.)ର ବି ସେ ନିର୍ଦ୍ଦେଶକ ଅଛନ୍ତି ।

କଠିନ ଅବସ୍ଥା ଏବଂ ପଦାର୍ଥିକ ରସାୟନ କ୍ଷେତ୍ରରେ ଶ୍ରୀ ରାଓ ପୃଥିବୀର ସର୍ବଶ୍ରେଷ୍ଠ ବୈଜ୍ଞାନିକମାନଙ୍କ ମଧ୍ୟରେ ଅନ୍ୟତମ । ଗତ ୫୦ ବର୍ଷ ମଧ୍ୟରେ ଏହି କ୍ଷେତ୍ରରେ ତାଙ୍କର ଅଶେଷ ଅବଦାନ ରହିଛି । ସେ ଅସ୍ଥାୟୀ ଧାତବ ଅକ୍ସାଇଡ୍ ଉପରେ ଯେଉଁ ଗବେଷଣା କରିଛନ୍ତି ତାହା ଯୋଗୁଁ ପଦାର୍ଥର ଗୁଣ ଏବଂ ସଂରଚନା ରସାୟନ ବିଷୟରେ ଅନେକ ମୌଳିକ ତଥ୍ୟ ତଥା ପ୍ରକ୍ରିୟା ଅଧିକ ବୋଧଗମ୍ୟ ହୋଇପାରିଛି । ପଦାର୍ଥର ଦ୍ୱିସ୍ତରୀୟ ଅକ୍ସାଇଡ୍ ସଂଶ୍ଳେଷଣ (ଯଥା : $La_2CuO_4$) କରିବାରେ ଶ୍ରୀ ରାଓ ପୃଥିବୀରେ ଜଣେ ଅଗ୍ରଗଣ୍ୟ ବ୍ୟକ୍ତି । ତାଙ୍କ ଗବେଷଣା ପ୍ରସୂତ ଅନେକ ତଥ୍ୟ ବୃହଦାକାୟ ଚୁମ୍ବକୀୟ ପ୍ରତିରୋଧ ଏବଂ ଅତ୍ୟୁଚ୍ଚ ଉତ୍ତାପ ପରିବାହିତା କ୍ଷେତ୍ରକୁ ଆଶାତୀତ ଭାବେ ପ୍ରଭାବିତ କରିଛି । ଅକ୍ସାଇଡ୍ ସେମିକଣ୍ଡକ୍ଟରଗୁଡ଼ିକର ଭବିଷ୍ୟତରେ ଅନେକ କାମରେ ଲାଗିବ । ତା'ଛଡ଼ା ନାନୋ-ବସ୍ତୁ ତଥା ସଂକର ବସ୍ତୁ କ୍ଷେତ୍ରରେ ତାଙ୍କର ଅପରିସୀମ ଦାନ ରହିଛି । ପ୍ରାୟ ୧୫୦୦ ଗବେଷଣାତ୍ମକ ନିବନ୍ଧ ତାଙ୍କ ଦ୍ୱାରା ରଚିତ ହୋଇଛି । ଶ୍ରୀ ରାଓଙ୍କ ଦ୍ୱାରା

ରଚିତ ୪୫ଟି ବୈଜ୍ଞାନିକ ତଥ୍ୟ ସମ୍ବଳିତ ପୁସ୍ତକ ପୃଥିବୀର ବିଭିନ୍ନ ରାଷ୍ଟ୍ରରେ ବୈଜ୍ଞାନିକ ମହଲରେ ଖୁବ୍ ଆଦୃତ ହୋଇଛି ।

୧୯୬୦ ମସିହାରେ ସି.ଏନ୍.ଆର୍ ରାଓ ଶ୍ରୀମତୀ ଇନ୍ଦୁମତୀ ରାଓଙ୍କୁ ବିବାହ କରିଥିଲେ । ସଂଜୟ ଓ ସୁଚିତ୍ରା ନାମରେ ତାଙ୍କର ଦୁଇଟି ସନ୍ତାନ । ସଞ୍ଜୟ ରାଓ ବାଙ୍ଗାଲୋରର ବିଦ୍ୟାଳୟମାନଙ୍କରେ ବିଜ୍ଞାନକୁ ଲୋକପ୍ରିୟ କରିବା କାର୍ଯ୍ୟରେ ନିୟୋଜିତ । ତାଙ୍କର ଝିଅ ସୁଚିତ୍ରାଙ୍କ ସ୍ୱାମୀ କେ.ଏମ୍. ଗଣେଷ ଇଣ୍ଡିଆନ୍ ଇନଷ୍ଟିଚ୍ୟୁଟ୍ ଅଫ୍ ସାଇନ୍ସ୍ ଏଜୁକେସନ୍ ଆଣ୍ଡ୍ ରିସର୍ଚ୍ଚ, ପୁନେର ଅଧ୍ୟକ୍ଷ ସି.ଏନ୍.ଆର୍. ରାଓ ତାଙ୍କ ବ୍ୟକ୍ତିଗତ ଜୀବନରେ ମୋବାଇଲ୍ ଫୋନ, ଲାପଟପ୍ ଆଦିଠାରୁ ନିଜକୁ ଦୂରେଇ ରଖନ୍ତି । ଏପରିକି ଲାପ୍‌ଟପ୍‌ରେ ସେ ନିଜର ମେଲ୍ କେବେ ନିଜେ ଦେଖନ୍ତି ନାହିଁ । କେବଳ ଏବଂ କେବଳ ତାଙ୍କ ସ୍ତ୍ରୀଙ୍କ ସହିତ କଥାବାର୍ତ୍ତା ହେବାପାଇଁ ସେ ମୋବାଇଲ୍ ଫୋନ୍ ବ୍ୟବହାର କରନ୍ତି ।

ସି.ଏନ୍.ଆର୍. ରାଓଙ୍କ ଜୀବନ ବିଜ୍ଞାନ ଓ ଗବେଷଣାପାଇଁ ସଂପୂର୍ଣ୍ଣ ରୂପେ ସମର୍ପିତ । ଗତ ୫୦ ବର୍ଷ କାଳ ସେ ବିଭିନ୍ନ ଗବେଷଣା କରିଛନ୍ତି । ତାଙ୍କର କର୍ମକ୍ଷେତ୍ର ପୃଥିବୀର ପ୍ରାୟ ପ୍ରତ୍ୟେକ ଦେଶକୁ ପ୍ରସାରିତ ହୋଇଛି । ସେହିପରି ପ୍ରତ୍ୟେକ ଉନ୍ନତ ଦେଶମାନଙ୍କରୁ ତାଙ୍କ ସମ୍ମାନ ଓ ପୁରସ୍କାର ଆଦି ପ୍ରଦାନ କରାଯାଇଛି । ସେ ପାଇଥିବା ପୁରସ୍କାରଗୁଡ଼ିକର ସୁଦୀର୍ଘ ତାଲିକା ରହିଛି ।

୧୯୬୧ ମସିହାରେ ଡ଼ିଏସ୍‌ସି ଉପାଧି ପାଇଥିଲେ ଶ୍ରୀ ରାଓ । ୧୯୬୭ ମସିହାରେ ଇଂଲଣ୍ଡର ଫାରାଡ଼େ ସୋସାଇଟି ତାଙ୍କୁ ମାର୍ଲୋ ମେଡ଼ାଲ୍ ପ୍ରଦାନ କଲେ । ୧୯୬୮ ମସିହାରେ ରସାୟନ ବିଜ୍ଞାନରେ ପାରଦର୍ଶିତା ପାଇଁ ଶାନ୍ତି ସ୍ୱରୂପ ଭଟନାଗର ପୁରସ୍କାର, ୧୯୭୩ ମସିହାରେ ଯେଦାନାପଲୀ ମେଡ଼ାଲ୍ ଓ ପୁରସ୍କାର, ୧୯୭୫ ମସିହାରେ ସି.ଭି.ରମଣ ପୁରସ୍କାର (ୟୁନିଭର୍‌ସିଟି ଗ୍ରାଣ୍ଟସ୍ କମିଶନ), ଏବଂ ୧୯୮୦ ମସିହାରେ ଇଣ୍ଡିଆନ୍ ନାସନାଲ୍ ସାଇନ୍ସ ଏକାଡ଼େମୀ ଠାରୁ ଏସ୍.ଏନ୍. ବୋଷ ମେଡ଼ାଲ୍ ଗ୍ରହଣ କରିଥିଲେ । ଏହାଛଡ଼ା ୧୯୮୧ ମସିହାରେ ଲଣ୍ଡନ୍‌ର ରୟାଲ୍ ସୋସାଇଟି ଅଫ୍ କେମିଷ୍ଟ୍ରି ପୁରସ୍କାର, ୧୯୮୯ ମସିହାରେ ଚେକୋସ୍ଲୋଭାକିଆରୁ ହବ୍ରୋଭସ୍କି ଗୋଲ୍‌ଡ୍ ମେଡ଼ାଲ୍, ୧୯୯୦ ମସିହାରେ ଇଣ୍ଡିଆନ୍ ସାଇନ୍ସ୍ ଏକାଡ଼େମୀର ମେଘନାଥ ଶାହା ପୁରସ୍କାର, ୧୯୯୬ ମସିହାରେ ୟୁନେସ୍କୋର ଆଇନ୍‌ଷ୍ଟାଇନ୍ ଗୋଲ୍‌ଡ୍ ମେଡ଼ାଲ୍, ୨୦୦୦ ମସିହାରେ ରୟାଲ୍ ସୋସାଇଟି ଅଫ୍ ଲଣ୍ଡନ୍‌ର କେମିଷ୍ଟ୍ରି ଗୋଲ୍‌ଡ ମେଡ଼ାଲ୍, ପୁଣିଥରେ ୨୦୦୦



ମସିହାରେ ରୟାଲ୍ ସୋସାଇଟିଠାରୁ ହୁଗ୍ସ୍ ମେଡ଼ାଲ୍ ପାଇଥିଲେ । ୨୦୦୪ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ଡ଼ି ଏସ୍‌ସି ଉପାଧି, ୨୦୦୪ ମସିହାରେ ଇଣ୍ଟରନାସନାଲ୍ ୟୁନିଅନ୍ ଅଫ୍ ମାଟେରିଆଲ୍ ରିସର୍ଚ୍ଚଠାରୁ ସୋମିୟା ପୁରସ୍କାର ଏବଂ ସେହିବର୍ଷ ଇଣ୍ଡିଆ ସାଇନ୍‌ସ ଆୱାର୍ଡ଼, ଟେଲ୍ ଅବିବ୍ ବିଶ୍ୱବିଦ୍ୟାଳୟରୁ ୨୦୦୫ ମସିହାରେ ଡ୍ୟାନ୍ ଡ଼ାଭିଡ୍ ପ୍ରାଇଜ୍ ପାଇଥିଲେ । ଏତଦ୍ ଭିନ୍ନ ବିଶ୍ୱର ପ୍ରାୟ ଅଧିକାଂଶ ବିଜ୍ଞାନ ସଂଗଠନମାନଙ୍କର ସେ ସକ୍ରିୟ ସଭ୍ୟ ରହିଛନ୍ତି । ତନ୍ମଧ୍ୟରେ ନାସନାଲ୍ ଏକାଡ଼େମୀ ଅଫ୍ ସାଇନ୍‌ସେସ୍, ସର୍ବିଆନ୍ ଏକାଡ଼େମୀ ଅଫ୍ ସାଇନ୍‌ସ, ଆଦିର ମେମ୍ବର ଅଛନ୍ତି । ଏତଦ୍‌ଭିନ୍ନ ସ୍ଲୋଭାକିଆ, ବ୍ରାଜିଲ୍, ସ୍ପେନ୍, କୋରିଆ, ଆଫ୍ରିକା ଆଦି ଦେଶର ଏକାଡ଼େମୀ ଅଫ୍ ସାଇନ୍‌ସେସ୍‌ର ମଧ୍ୟ ସେ ସକ୍ରିୟ ସଭ୍ୟ । ଆମେରିକାନ୍ ଫିଲୋସଫିକାଲ୍ ସୋସାଇଟି, ପଣ୍ଟିଫିସିଆଲ୍ ଏକାଡ଼େମୀର ବି ସେ ଆଜୀବନ ସଭ୍ୟ ।

ଯେଉଁସବୁ ବିଶ୍ୱବିଦ୍ୟାଳୟରୁ ସେ ସମ୍ମାନଜନକ ଡ଼ିଏସ୍‌ସି ଉପାଧି ପାଇଛନ୍ତି, ତନ୍ମଧ୍ୟରୁ ବର୍ଦ୍ଦିୟୁ, କଲୋରାଡ଼ୋ, ଖାରତୁମ୍, ଲିଭରପୁଲ୍, ନର୍ଥ ୱେଷ୍ଟର୍ଣ୍ଣ, ନଭୋସିବିସ୍କ, ଅକ୍ସଫୋର୍ଡ, ପର୍ଦ୍ଦୁ, ଷ୍ଟେଲେନ୍‌ବୋସ, ଯୋଶେଫ୍ ଫରିଅର୍, ୱେଲସ୍, ରୋକ୍ଲ, ନଟର ଡ଼େମ୍, ଉପ୍‌ସାଲା, ଆଲିଗଡ଼୍ ମୁସଲିମ୍, ଆନ୍ନା, ବନାରସ୍, ବେଙ୍ଗଲ୍ ଇଂଜିନିଅରିଂ, ବାଙ୍ଗାଲୋର୍, ବର୍ଦ୍ଧିୱାନ୍, ବୁନ୍ଦେଲଖଣ୍ଡ, ଦିଲ୍ଲୀ, ହାଇଦ୍ରାବାଦ, ଇଗ୍ନୁ, ଆଇଆଇଟି, ମୁମ୍ବାଇ, ଖଡଗପୁର, ଦିଲ୍ଲୀ, ପାଟନା, ଜେଏନ୍‌ୟୁ, କଲ୍ୟାଣୀ, କର୍ଣ୍ଣାଟକ, କୋଲକତା, କୁଭେମ୍ପୁ, ଲକ୍ଷ୍ନୌ, ମାଙ୍ଗାଲୋର୍, ମଣିପୁର, ମହୀଶୂର, ଓସମାନିଆ, ପଞ୍ଜାବ, ରୁର୍‌କୀ, ସିକିମ୍ ମନିପାଲ୍, ଏସ୍‌ଆର୍‌ଏମ. ଶ୍ରୀ ଭେଙ୍କଟେଶ୍ୱର,ବିଦ୍ୟାସାଗର ଏବଂ ବିଶ୍ୱେଶ୍ୱରିଆ ଟେକ୍‌ନୋଲଜିକାଲ୍ ବିଶ୍ୱବିଦ୍ୟାଳୟ ଅନ୍ୟତମ ।

ତାଙ୍କୁ ମିଳିଥିବା ବିଭିନ୍ନ ପୁରସ୍କାରର ତାଲିକା ଏତେ ଦୀର୍ଘଯେ, ସବୁ ଏହି କ୍ଷୁଦ୍ର ନିବନ୍ଧରେ ପ୍ରକାଶ କରିବା ହୁଏତ ସମ୍ଭବପର ହୋଇନପାରେ । ତେବେ ତାଙ୍କର ଅନ୍ୟାନ୍ୟ ପୁରସ୍କାର / କୃତିତ୍ୱ ମଧ୍ୟରେ ତାଙ୍କୁ ବଙ୍ଗଳା ଦେଶର ଏକାଡ଼େମୀ ଅଫ୍ ସାଇନ୍‌ସେସ୍‌ର ବୈଦେଶିକ ଫେଲୋ ଆଖ୍ୟା ମିଳିଛି । ୨୦୦୮ ମସିହାରେ ୱାର୍ଲ୍ଡ୍ ଏକାଡ଼େମୀ ଅଫ୍ ସାଇନ୍‌ସେସ୍ ତାଙ୍କୁ ଅବ୍‌ଦୁଲ୍ ସଲାମ୍ ପୁରସ୍କାର ଦେଇ ସମ୍ମାନିତ କରିଛି । ଜାପାନର ନିହନ କିକାୟୀ ସିମ୍ବନ୍‌ଙ୍କ ପ୍ରଦତ୍ତ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାରେ ଉତ୍କର୍ଷତା ପାଇଁ ନିକେଇ ଏସିଆ ପୁରସ୍କାର ୨୦୦୮ ମସିହାରେ ଶ୍ରୀ ରାଓଙ୍କୁ ମିଳିଛି । ୨୦୧୦ ମସିହାରେ ଜର୍ମାନୀର କେମିକାଲ୍ ସୋସାଇଟି ତାଙ୍କୁ ସମ୍ମାନଜନକ ଅଗଷ୍ଟ-ୱିଲ୍‌ହେମ୍-ଭନ୍-ହଫ୍‌ମ୍ୟାନ୍ ପୁରସ୍କାର ପ୍ରଦାନ କରିଛି । ୨୦୧୩ ମସିହାରେ ଋଷିଆର ଏକାଡ଼େମୀ ଅଫ୍ ସାଇନ୍‌ସେସ୍ ତାଙ୍କୁ ବିଜ୍ଞାନ କ୍ଷେତ୍ରରେ ଅନ୍ତରାଷ୍ଟ୍ରୀୟ ସହଯୋଗୀତା ପାଇଁ ପୁରସ୍କୃତ କରିଛି । ସେହିବର୍ଷ ଚାଇନାର ଏକାଡ଼େମୀ ଅଫ୍ ସାଇନ୍‌ସେସ୍‌କୁ ସେ ବୈଦେଶିକ ସଭ୍ୟ ଭାବେ ନିର୍ବାଚିତ ହୋଇଛନ୍ତି । ୨୦୧୧ ମସିହାରେ ଆଇଆଇଟି ପାଟନା ଦ୍ୱାରା ସେ ଖ୍ୟାତି ସମ୍ପନ୍ନ ଶିକ୍ଷକ ଭାବେ ସମ୍ମାନିତ କରିଛନ୍ତି ।

ସିଏନ୍‌ଆର୍ ରାଓଙ୍କର ବିଜ୍ଞାନ କ୍ଷେତ୍ରରେ ଅସାଧାରଣ ପ୍ରତିଭା ରହିଛି । ଶ୍ରୀରାଓଙ୍କୁ ୧୯୭୪ ମସିହାରେ ଭାରତ ସରକାର ପଦ୍ମଶ୍ରୀ ସମ୍ମାନ ପ୍ରଦାନ କଲେ । ୧୯୮୫ ମସିହାରେ ତାଙ୍କୁ ପଦ୍ମଭୂଷଣ ସମ୍ମାନ ମିଳିଲା । ୨୦୦୧ ମସିହାରେ କର୍ଣ୍ଣାଟକ ରାଜ୍ୟ ସରକାର ତାଙ୍କୁ କର୍ଣ୍ଣାଟକ ରତ୍ନ ପଦବୀରେ ସମ୍ମାନିତ କଲେ । ୨୦୧୪ ମସିହାରେ ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ "ଭାରତ ରତ୍ନ" ଶ୍ରୀ ରାଓଙ୍କୁ ପ୍ରାପ୍ତ ହେଲା । ସି ଭି ରମଣ ଏବଂ ଏ.ପି.ଜେ. ଅବ୍ଦୁଲ କଲାମଙ୍କ ପରେ ଶ୍ରୀ ରାଓ ଭାରତ ରତ୍ନ ସମ୍ମାନ ପାଇବାରେ ତୃତୀୟ ବୈଜ୍ଞାନିକ ।

ଶ୍ରୀ ଚିନ୍ତାମଣି ନାଗେଶ ରାମଚନ୍ଦ୍ର ରାଓଙ୍କ ଗବେଷଣା ଲବ୍ଧ ଅନେକ ଉଦ୍ଭାବିତ ତଥ୍ୟ ସମାଜର ଅଶେଷ କଲ୍ୟାଣ ସାଧନ କରୁଛି । ବର୍ତ୍ତମାନ ତାଙ୍କୁ ଅଶି ବର୍ଷ ବୟସ । ଏହି ବୟସରେ ବି ତାଙ୍କ ଗବେଷଣାର ଧାରା ଥମିଯାଇନାହିଁ । ବରଂ ପ୍ରତିବର୍ଷ ଏହା ବିଶ୍ୱର ବିଭିନ୍ନ ରାଷ୍ଟ୍ରକୁ ପ୍ରସାରିତ ହେବାରେ ଲାଗିଛି । ଅପରିସୀମ ଜ୍ଞାନ, ଅଦମ୍ୟ ପ୍ରଚେଷ୍ଟା ଏବଂ ଅତୁଳନୀୟ କର୍ତ୍ତବ୍ୟନିଷ୍ଠା ତାଙ୍କୁ ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନର ଅଧିକାରୀ କରାଇପାରିଛି ।

* * *

# ସଚିନ୍ ରମେଶ ତେନ୍ଦୁଲକର



୧୯୭୩

ଭାରତ ରତ୍ନ - ୨୦୧୩

କ୍ରିକେଟ୍ ଜଗତର ସବୁଠାରୁ ଜଣାଶୁଣା ନାମ ସଚିନ୍ ତେନ୍ଦୁଲକର । ତାଙ୍କର ସଂପୂର୍ଣ୍ଣ ନାମ ସଚିନ୍ ରମେଶ ତେନ୍ଦୁଲକର । ଜନ୍ମ ୨୪ ଅପ୍ରେଲ୍ ୧୯୭୩ ମସିହା । ୧୧ ବର୍ଷ ବେଳୁ ସେ କ୍ରିକେଟ୍ ଖେଳ ଅଭ୍ୟାସ କଲେ ଏବଂ ମାତ୍ର ୧୬ ବର୍ଷ ବୟସରେ ପ୍ରଥମ କରି ପାକିସ୍ଥାନ ଟିମ୍ ବିରୁଦ୍ଧରେ ଟେଷ୍ଟ କ୍ରିକେଟ୍ ଖେଳିବା ଆରମ୍ଭ କଲେ । ଘରୋଇ କ୍ରିକେଟ୍‌ରେ ମୁମ୍ବାଇ ଦଳ ଏବଂ ଅନ୍ତରାଷ୍ଟ୍ରୀୟ କ୍ରିକେଟ୍‌ରେ ଭାରତ ବର୍ଷ ପାଇଁ

ପ୍ରତିନିଧିତ୍ୱ କରି ପ୍ରାୟ ୨୪ ବର୍ଷ କାଳ ସେ ଅନେକ କୀର୍ତ୍ତିମାନ ସୃଷ୍ଟି କରିଛନ୍ତି । କ୍ରିକେଟ୍ ଇତିହାସରେ ଏପର୍ଯ୍ୟନ୍ତ ତାଙ୍କ ସମକକ୍ଷ ଅନ୍ୟ କୌଣସି ବ୍ୟକ୍ତି ଦୃଷ୍ଟିଗୋଚର ହୋଇନାହାନ୍ତି । ଅନ୍ତଃରାଷ୍ଟ୍ରୀୟ କ୍ରିକେଟ୍‌ରେ ୧୦୦ଟି ଶତକ ପୂରଣ କରିବାରେ ସେ ଏକମାତ୍ର ବ୍ୟକ୍ତି । ଏକ ଦିବସୀୟ କ୍ରିକେଟର୍ ଦ୍ୱିଶତକ ରନ୍ କରିବାରେ ସେ ପ୍ରଥମ ବ୍ୟକ୍ତି । ଅନ୍ତଃରାଷ୍ଟ୍ରୀୟ କ୍ରିକେଟ୍‌ରେ ସଚିନ୍ ହିଁ ଏକମାତ୍ର ବ୍ୟକ୍ତି ଯିଏ ୩୦,୦୦୦ ରନ୍ କରିପାରିଛନ୍ତି । ବିଭିନ୍ନ ପ୍ରକାରର ସ୍ୱୀକୃତ କ୍ରିକେଟ୍‌ରେ ସେ ପୃଥିବୀର ୧୬ତମ ଏବଂ ଭାରତର ପ୍ରଥମ ବ୍ୟକ୍ତି ଭାବେ ୫୦,୦୦୦ ରନ୍ ପୂରଣ କରିପାରିଛନ୍ତି ।

୨୦୦୨ ମସିହାରେ ଉଇଜ୍‌ଡେନ୍ କ୍ରିକେଟ୍‌ରସ୍ ଆଲମାନାକ୍ କ୍ରିକେଟ୍ ଇତିହାସର କିମ୍ବଦନ୍ତୀ ପୁରୁଷ ଡନ୍ ବ୍ରାଡ଼ମ୍ୟାନ୍‌ଙ୍କ ପରେ ସଚିନ୍‌ଙ୍କୁ ସର୍ବଶ୍ରେଷ୍ଠ ଟେଷ୍ଟ ମ୍ୟାଚ୍ ଖେଳାଳୀ ଭାବେ ମାନ୍ୟତା ଦେଇଥିଲେ । ଏକ ଦିବସୀୟ ଖେଳରେ ବି ଭି ଭି ଆନ୍. ରିଚ୍ଚଡସ୍‌ଙ୍କ ପରେ ପରବର୍ତ୍ତୀ ଶ୍ରେଷ୍ଠ ଖେଳାଳୀର ଆଖ୍ୟା ମିଳିଥିଲା । ସଚିନ୍ ଭାରତ ପାଇଁ ୬ ଥର ବିଶ୍ୱକପ୍ ପ୍ରତିଯୋଗୀତାରେ ଭାଗ ନେଇଥିଲେ । ୨୦୧୧ ବିଶ୍ୱକପ୍‌ରେ ଭାରତକୁ ବିଶ୍ୱକପ୍ ଜିତାଇବାରେ ତାଙ୍କର ଯୋଗଦାନ ଉଲ୍ଲେଖନୀୟ ଥିଲା । ୨୦୦୩ ମସିହାରେ ହୋଇଥିବା ବିଶ୍ୱକପ୍‌ରେ ଭାରତ ପରାଜିତ ହୋଇଥିଲେ ହେଁ ସଚିନ୍‌ଙ୍କୁ ପ୍ଲେଆର୍ ଅଫ୍ ଦି ଟୁର୍ଣ୍ଣାମେଣ୍ଟ ପୁରସ୍କାର ପ୍ରାପ୍ତ ହୋଇଥିଲା । ଦକ୍ଷିଣ ଆଫ୍ରିକାରେ ୨୦୧୩ ମସିହାରେ ଉଇଜ୍‌ଡେନ୍ କ୍ରିକେଟ୍ ଆଲ୍‌ମାନାକ୍ ଦ୍ୱାରା ସେ ବିଶ୍ୱର ସର୍ବକାଳୀନ ସର୍ବଶ୍ରେଷ୍ଠ ଏକାଦଶ ମଧ୍ୟରେ ନାମିତ ହୋଇଥିଲେ । ପ୍ରକାଶ ଥାଉକି, ଏଭଳି ମର୍ଯ୍ୟାଦାପୂର୍ଣ୍ଣ ଦଳରେ ସେ ଏକମାତ୍ର ଭାରତୀୟ ଥିଲେ ।



ପୁରସ୍କାର, ସମ୍ମାନ, ପଦପଦବୀ ଆଦି ସଚିନ୍‌ଙ୍କ ପାଦକୁ ଅବିରତ ଧୋଇ ଚାଲିଥିଲା । ୧୯୯୪ ମସିହାରେ ଅର୍ଜୁନ ପୁରସ୍କାର, ୧୯୯୭ ମସିହାରେ ରାଜୀବ ଗାନ୍ଧି ଖେଳ ରନ୍ତ୍ ପୁରସ୍କାର, ୧୯୯୯ ମସିହାରେ ପଦ୍ମଶ୍ରୀ ଏବଂ ୨୦୦୮ରେ ପଦ୍ମବିଭୂଷଣ

ପୁରସ୍କାରରେ ସମ୍ମାନିତ ହୋଇଥିଲେ । ସେ କ୍ରିକେଟ୍‌ରୁ ସନ୍ୟାସ ନେବା ଅବସରରେ ଭାରତ ସରକାର ତାଙ୍କୁ "ଭାରତ ରତ୍ନ" ଉପାଧିରେ ସମ୍ମାନିତ କରିବା ବିଷୟ ଘୋଷଣା କଲେ (୧୬ ନଭେମ୍ବର, ୨୦୧୩) । ଏପର୍ଯ୍ୟନ୍ତ "ଭାରତ ରତ୍ନ" ଉପାଧି ପ୍ରାପ୍ତ ସମସ୍ତ ବ୍ୟକ୍ତିଙ୍କ ମଧ୍ୟରେ ସେ କନିଷ୍ଠତମ । ଭାରତର ପ୍ରଥମ ଖେଳାଳୀ ଭାବେ ସେ ଏହି ଉପାଧି ପାଇଛନ୍ତି । ଏହାଛଡ଼ା ୨୦୧୦ ମସିହାରେ ଆଇସିସି ଦ୍ୱାରା ସେ ସାର୍ ଗାରଫିଲ୍‌ଡ୍ ସୋବର୍ସ ଟ୍ରଫି ଦ୍ୱାରା ସମ୍ମାନିତ ହୋଇଛନ୍ତି । କ୍ରୀଡ଼ା ଜଗତରେ ତାଙ୍କର ଅତୁଳନୀୟ ଅବଦାନର ପରିମାଣ ସ୍ୱରୂପ ସେ ରାଷ୍ଟ୍ରପତିଙ୍କ ଦ୍ୱାରା ୨୦୧୨ ମସିହାରେ ମନୋନୀତ ହୋଇ ରାଜ୍ୟସଭାର ସଭ୍ୟ ଭାବେ ଯୋଗାଦନ କରିଛନ୍ତି । ୨୦୧୨ ମସିହାରେ ଅର୍ଡ଼ର୍ ଅଫ୍ ଅଷ୍ଟ୍ରେଲିଆରେ ସେ ଅବୈତନିକ ସଭ୍ୟ ହେବାର ଗୌରବ ହାସଲ କରିଛନ୍ତି ।

ପ୍ରାୟ ୨୪ ବର୍ଷ କାଳ ଅନ୍ତଃରାଷ୍ଟ୍ରୀୟ କ୍ରିକେଟ୍ ଖେଳିବା ପରେ ତେନ୍ଦୁଲକର ୨୦୧୨ ମସିହା ଡ଼ିସେମ୍ବର ମସିହାରେ ଏକ ଦିବସୀୟ କ୍ରିକେଟ୍, ଅକ୍ଟୋବର ୨୦୧୩ରେ ୨୦-୨୦ କ୍ରିକେଟ୍ ଏବଂ ପରେ ୧୬ ନଭେମ୍ବର ୨୦୧୩ରେ ସମସ୍ତ ପ୍ରକାରର କ୍ରିକେଟ୍ ଖେଳରୁ ସନ୍ୟାସ ନେବା ବିଷୟ ଘୋଷଣା କଲେ । ତାଙ୍କର ପ୍ରିୟ ୱାଙ୍ଖେଡ଼େ ଷ୍ଟାଡ଼ିଅମ୍ (ମୁମ୍ବାଇ)ଠାରେ ୱେଷ୍ଟଇଣ୍ଡିଜ୍ ବିରୁଦ୍ଧରେ ସେ ତାଙ୍କର ଶେଷ ମ୍ୟାଚ୍ ଖେଳିଥିଲେ । ସନ୍ୟାସ ନେବା ପୂର୍ବରୁ ସେ ସର୍ବମୋଟ ୨୦୦ଟି ଟେଷ୍ଟ ମ୍ୟାଚ୍, ୪୬୩ ଏକ ଦିବସୀୟ ମ୍ୟାଚ୍ ଏବଂ ଗୋଟିଏ ୨୦-୨୦ ଅନ୍ତଃରାଷ୍ଟ୍ରୀୟ ମ୍ୟାଚ୍ ଖେଳି ସର୍ବମୋଟ୍ ୩୪,୩୫୭ ରନ୍ ସ୍କୋର୍ କରିଥିଲେ । ଏହାଛଡ଼ା ସେ ସ୍ୱୀକୃତିପ୍ରାପ୍ତ ୩୧୦ଟି ପ୍ରଥମ ଶ୍ରେଣୀ ମ୍ୟାଚ୍ ଖେଳି, ୨୫,୩୯୬ ରନ୍ ଏବଂ ୫୫୧ଟି ତାଲିକାଭୁକ୍ତ ମ୍ୟାଚ୍ ଖେଳି, ୨୧,୯୯୯ ରନ୍ ସ୍କୋର୍ କରିଛନ୍ତି । ଟେଷ୍ଟ୍ ମ୍ୟାଚ୍‌ରେ ତାଙ୍କର ହାରାହାରି ରନ୍ ସମ୍ମାନକନକ ୫୩.୭୮ ଏବଂ ଏକ ଦିବସୀୟ ଖେଳରେ ଏହା ୪୪.୮୩ ରନ୍ ରହିଛି । ଏହାଛଡ଼ା, ସେ ଟେଷ୍ଟମ୍ୟାଚ୍‌ରେ ବିପକ୍ଷ ଦଳର ୪୬ଟି ୱିକେଟ୍ ନେଇଛନ୍ତି । ଏକ ଦିବସୀୟ ମ୍ୟାଚ୍‌ରେ ସେ ପାଇଥିବା ୱିକେଟ୍ ସଂଖ୍ୟା ହେଉଛି ୧୫୪ । ଏକ ଦିବସୀୟ ମ୍ୟାଚ୍‌ରେ ସେ ଦୁଇଥର ୫ ଉଇକେଟ୍ ହାସଲ୍ କରିବାରେ ସକ୍ଷମ ହୋଇଛନ୍ତି । ଫିଲ୍‌ଡ଼ିଂରେ ମଧ୍ୟ ସଚିନ୍ ତାଙ୍କର ପରାକାଷ୍ଠା ଦେଖାଇ ଟେଷ୍ଟ୍ ମ୍ୟାଚ୍‌ରେ ୧୧୫ଟି କ୍ୟାଚ୍ ଏବଂ ଏକ ଦିବସୀୟ ମ୍ୟାଚ୍‌ରେ ୧୪୦ଟି କ୍ୟାଚ୍ ନେବାରେ ସକ୍ଷମ ହୋଇଛନ୍ତି ।

ଏହି ବିଶ୍ୱବନ୍ଦିତ କ୍ରିକେଟ୍ ଖେଳାଳୀ ସଚିନ୍ ତେନ୍ଦୁଲକର ବାନ୍ଦ୍ରାସ୍ଥିତ ନିର୍ମଲ୍ ନର୍ସିଂ ହୋମ୍‌ରେ ୧୯୭୩ ମସିହା ଏପ୍ରିଲ୍ ୨୪ ତାରିଖ ଦିନ ଜନ୍ମ ନେଇଥିଲେ । ପିତା

ରମେଶ ତେନ୍ଦୁଲ୍‌କର ଏବଂ ତାଙ୍କର ଦ୍ୱିତୀୟ ପତ୍ନୀ ରଜନୀଙ୍କ ଗର୍ଭରୁ ସଚିନ୍ ଜନ୍ମ ନେଇଥିଲେ । ତାଙ୍କ ବାପାଙ୍କ ପ୍ରିୟ ସଙ୍ଗୀତକାର ସଚିନ୍ ଦେବ ବର୍ମନ୍‌ଙ୍କ ନାମାନୁସାରେ ସଚିନ୍‌ଙ୍କ ନାମକରଣ କରାଯାଇଥିଲା । ରମେଶ ତେନ୍ଦୁଲ୍‌କର ଜଣେ ଖ୍ୟାତନାମା ମରାଠୀ ଔପନ୍ୟାସିକ ଥିଲେ । ପ୍ରଥମ ସ୍ତ୍ରୀଙ୍କ ଗର୍ଭରୁ ନୀତିନ୍ ଏବଂ ଅଜିତ୍ ନାମକ ଦୁଇ ପୁତ୍ର ଏବଂ ସବିତା ନାମ୍ନୀ କନ୍ୟା ଜାତ ହୋଇଥିଲେ । ଶୈଶବରେ ସଚିନ୍ ସ୍କୁଲ୍‌ର ଅନ୍ୟାନ୍ୟ ପିଲାମାନଙ୍କ ସହିତ ଖୁବ୍ ଝଗଡ଼ା କରୁଥିଲେ । ତାଙ୍କର ଦୁଷ୍ଟାମୀ ପ୍ରବୃତ୍ତିର ଉପଶମ କରିବା ପାଇଁ ବଡ଼ଭାଇ ଅଜିତ୍ ସଚିନ୍‌ଙ୍କୁ ନେଇ ୧୯୮୪ ମସିହାରେ କ୍ରିକେଟ୍ କୋଚ୍ ରମାକାନ୍ତ ଅର୍ଚ୍ଚେକରଙ୍କ ତତ୍ତ୍ୱାବଧାନରେ ଛାଡ଼ିଥିଲେ । ଦାଦରସ୍ଥିତ ଶିବାଜୀ ପାର୍କରେ ଆର୍ଚ୍ଚେକର କୋଚିଙ୍ଗ୍ ଦେଉଥିଲେ । ପ୍ରଥମରୁ ହିଁ ଅର୍ଚ୍ଚେକର ସଚିନ୍‌ଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଲେ । କିନ୍ତୁ ସଚିନ୍ ଆଶାନୁରୂପ ପ୍ରଗତି କଲେ ନାହିଁ । ସଚିନ୍‌ଙ୍କୁ ସ୍ୱାଧୀନଭାବେ ଖେଳିବାକୁ ଦେଲେ ତା'ର ପ୍ରକୃତ ପରାକାଷ୍ଠା ଜାଣି ହେବ ବୋଲି ଅଜିତ୍ ଅର୍ଚ୍ଚେକରଙ୍କୁ ଜଣାଇଲେ । ତେଣୁ ସଚିନ୍‌ଙ୍କ ଅଗୋଚରରେ ରହି ଅର୍ଚ୍ଚେକର ତାଙ୍କ ଖେଳ ଉପରେ ନଜର ରଖିଲେ । ଆଶ୍ଚର୍ଯ୍ୟ କଥା ଯେ, ତା' ପରଠାରୁ ସେ ଖୁବ୍ ଦ୍ରୁତ ହାରରେ ପ୍ରଗତି କରିବାକୁ ଲାଗିଲେ । ଅଜିତ୍ ସଚିନ୍‌ଙ୍କଠାରୁ ବୟସରେ ୧୦ ବର୍ଷ ବଡ଼ । ତାଙ୍କ କ୍ରିକେଟ୍ ଜୀବନରେ ଅଜିତ୍‌ଙ୍କ ସକାରାତ୍ମକ ଭୂମିକାକୁ ସଚିନ୍ ଅନେକବାର ସ୍ୱୀକାର କରିଛନ୍ତି ।



ପ୍ରତ୍ୟେକ ଦିନ ସକାଳେ ଓ ସଂଧ୍ୟାରେ ଶିବାଜୀ ପାର୍କଠାରେ ଅର୍ଚ୍ଚେକରଙ୍କ ତତ୍ତ୍ୱାବଧାନରେ ସଚିନ୍ କ୍ରିକେଟ୍ ଅଭ୍ୟାସ କରନ୍ତି । ଘଣ୍ଟା ଘଣ୍ଟା ଧରି ଖେଳିବା ପରେ ସେ ଥକିଗଲେ ଅର୍ଚ୍ଚେକର ଷ୍ଟମ୍ପ୍ ଉପରେ ଏକ ଟଙ୍କା ରଖିଦେଇ ଯେଉଁ ବୋଲର୍ ତେନ୍ଦୁଲକରଙ୍କୁ ଆଉଟ୍ କରିବ ସେ ଟଙ୍କାଟି ପାଇବ ବୋଲି ଆହ୍ୱାନ ଜଣାଉଥିଲେ । ଯଦି କୌଣସି ବୋଲର୍ ତାଙ୍କୁ ଆଉଟ୍ କରିନପାରନ୍ତି ଟଙ୍କାଟି ତେନ୍ଦୁଲ୍‌କାର୍ ପାଉଥିଲେ । ଏହି ଉପାୟରେ ତେନ୍ଦୁଲ୍‌କାର୍‌ଙ୍କୁ ଯେଉଁ ତେରଗୋଟି ମୁଦ୍ରା ଗୁରୁଙ୍କଠାରୁ ପୁରସ୍କାର ସ୍ୱରୂପ ମିଳିଥିଲା । ତାହା ତାଙ୍କ ଜୀବନର ଶ୍ରେଷ୍ଠ ସମ୍ପତ୍ତି ବୋଲି ସେ ମନେ କରନ୍ତି ।

ବାଲ୍ୟକାଳରୁ ସଚିନ୍‌ଙ୍କ ପ୍ରତିଭାର ଆଭାଷ ମିଳିଥିଲା । ତାଙ୍କ ସାଙ୍ଗ ସାଥୀଙ୍କଠାରୁ ଆରମ୍ଭ କରି କ୍ରିକେଟ୍ ବିଶେଷଜ୍ଞ ମହଲ୍‌ରେ ବି ତାଙ୍କ ବିଷୟରେ ଚର୍ଚ୍ଚା ହେବା ଆରମ୍ଭ ହୋଇଗଲା । ମୁମ୍ବାଇର ଜନ୍ ବ୍ରାଇଟ୍ କ୍ରିକେଟ୍ କ୍ଲବ୍, ତରଫରୁ ଅତି କମ୍ ବୟସରୁ ସେ ପ୍ରସିଦ୍ଧ କଙ୍ଗା ଲିଗ୍ ଟୁର୍ଣ୍ଣାମେଣ୍ଟ୍‌ରେ ନିୟମିତ ଭାବେ ଅଂଶଗ୍ରହଣ କଲେ । ତାଙ୍କୁ ୧୪ ବର୍ଷ ହେଲାବେଳେ ଚେନାଇସ୍ଥିତ ଏମ୍ଆର୍ଏଫ୍ ପେସ୍ ଫାଉଣ୍ଡେସନ୍‌ରେ ବିଖ୍ୟାତ ଦ୍ରୁତ ବୋଲର୍ ଡେ଼ନିସ୍ ଲିଲିଙ୍କଠାରୁ ପେସ୍ ବୋଲିଙ୍ଗ୍‌ରେ ତାଲିମ୍ ନେବାପାଇଁ ଗଲେ । କିନ୍ତୁ ଡେ଼ନିସ୍ ଲିଲି ସଚିନ୍‌ଙ୍କୁ ବ୍ୟାଟିଙ୍ଗ୍ ବିଷୟରେ ଅଧିକ ଧ୍ୟାନ ଦେବା ପାଇଁ ପରାମର୍ଶ ଦେଲେ । କିଛି ଦିନ ପରେ ଖ୍ୟାତାନାମା ବ୍ୟାଟ୍‌ସ୍‌ମ୍ୟାନ୍ ସୁନୀଲ ଗାଭାସ୍କର ସଚିନ୍‌ଙ୍କୁ ଏକ ଯୋଡ଼ା ବ୍ୟାଟିଙ୍ଗ୍ ପ୍ୟାଡ୍ ଉପହାର ଦେଲେ । ଗାଭାସ୍କରଙ୍କଠାରୁ ପାଇଥିବା ଏହି ଉପହାର ସଚିନ୍‌ଙ୍କୁ ଖୁବ୍ ଉତ୍ସାହିତ କରିଥିଲା । ଠିକ୍ ୨୦ ବର୍ଷ ପରେ ସେ ସୁନୀଲ ଗାଭାସ୍କାରଙ୍କ ୩୪ଟି ଟେଷ୍ଟମ୍ୟାଚ୍ ଶତକର ରେକର୍ଡ ଅତିକ୍ରମ କରିଥିଲେ ୧୯୮୮ ମସିହାରେ ତାଙ୍କର ବାଲ୍ୟବନ୍ଧୁ ବିନୋଦ କାମ୍ବଲୀଙ୍କ ସହ ମିଶି ସେ ଅପରାଜିତ ୬୬୪ ରନ୍ ସ୍କୋର୍ କଲେ । ଲର୍ଡ ହାରିସ୍ ସିଲ୍ଡ ଇଣ୍ଟର୍ ସ୍କୁଲ୍ ଟୁର୍ଣ୍ଣାମେଣ୍ଟରେ ସେଣ୍ଟ୍ ଜାଭିଅର୍ ସ୍କୁଲ୍ ବିରୁଦ୍ଧରେ ସେ ଓ ବିନୋଦ କାମ୍ବଲୀ ଏହି କୀର୍ତ୍ତିମାନ ସ୍ଥାପନ କରିଥିଲେ । ଏହି ମ୍ୟାଚ୍‌ରେ ତେନ୍ଦୁଲକର୍ ୩୨୬ (ଅପରାଜିତ) ରନ୍ କରିଥିଲେ ଏବଂ ଟୁର୍ଣ୍ଣାମେଣ୍ଟ୍‌ରେ ଏକ ହଜାର ରନ୍‌ରୁ ଅଧିକ କରିଥିଲେ । ୨୦୦୬ ମସିହାରେ ତାଙ୍କର ଏହି କୀର୍ତ୍ତିମାନକୁ ହାଇଦ୍ରାବାଦର ଏକ ୧୩ ବର୍ଷରୁ କମ୍ ଟୁର୍ଣ୍ଣାମେଣ୍ଟ୍‌ରେ ଦୁଇଜଣ ଛାତ୍ର ଭଂଗ କଲେ ।



ସଚିନ୍‌ଙ୍କ ଦୀର୍ଘ ୨୪ ବର୍ଷର କ୍ରିକେଟ୍ ଜୀବନ ଆରମ୍ଭ ହୋଇଥିଲା । ୧୯୮୭ ମସିହା ନଭେମ୍ବର ୧୪ ତାରିଖରେ । ମୁମ୍ବାଇ ଟିମ୍ ପାଇଁ ସେ ରଣଜୀ ଟ୍ରଫିରେ ଖେଳିବା ପାଇଁ ମନୋନିତ ହେଲେ । କିନ୍ତୁ ୮୭-୮୮ ମସିହା ମ୍ୟାଚ୍ ମାନଙ୍କରେ ତାଙ୍କୁ ଖେଳିବାର ସୁଯୋଗ ମିଳିଲା ନାହିଁ । ସେ କେବଳ ଅତିରିକ୍ତ ଖେଳାଳୀ ହିସାବରେ ପରିଗଣିତ ହେଲେ । କିନ୍ତୁ ୧୯୮୮ ଡ଼ିସେମ୍ବର ୧୧ ତାରିଖ ଦିନ ସେ ପ୍ରଥମ କରି ରଣଜୀ ମ୍ୟାଚ୍ ଗୁଜୁରାଟ୍

ବିପକ୍ଷରେ ଖେଳି ପ୍ରଥମ ମ୍ୟାଚ୍‌ରେ ଏକ ଶତକ ମାରି ଜାତୀୟ ଟିମ୍ ଚୟନକର୍ତ୍ତାମାନଙ୍କୁ ଚମକୃତ କରିଥିଲେ । ପ୍ରଥମ ଶ୍ରେଣୀୟ ମ୍ୟାଚରେ ପ୍ରଥମ ପଦାର୍ପଣରେ ଶତକ ପୂରଣ କରିବାରେ ସେ ଭାରତର ସର୍ବକନିଷ୍ଠ ଖେଳାଳୀ ହେଲେ । ତା'ପରେ ପରେ



ଦେଓଧର ଟ୍ରଫି ଏବଂ ଦୁଲିପ୍ ଟ୍ରଫିରେ ସେ ଲଗାତର ଶତକ ଅର୍ଜନ କଲେ । ୮୮-୮୯ ବର୍ଷରେ ସେ ମୁମ୍ବାଇ ଟିମ୍‌ରେ ସର୍ବାଧିକ ରନ୍ ସ୍କୋରର୍ ହେଲେ । ତା'ପର ଇରାନୀ ଟ୍ରଫି ମ୍ୟାଚ୍‌ରେ ବି ସେ ଅପରାଜିତ ଶତକ ଅର୍ଜନ କରିବାର ଗୌରବ ହାସଲ କଲେ । ପ୍ରଥମ ପଦାର୍ପଣରେ ସମସ୍ତ ଘରୋଇ ଟୁର୍ଣ୍ଣାମେଣ୍ଟରେ ଶତକ ଅର୍ଜନ କରିବାରେ ସଚିନ୍ ପ୍ରଥମ ଖେଳାଳୀ ।

୧୯୮୯ ମସିହାରେ ପ୍ରଥମ କରି ଟେଷ୍ଟମ୍ୟାଚ୍ ଖେଳିବାପାଇଁ ସଚିନ୍ ସୁଯୋଗ ପାଇଲେ । ଭାରତ ପାକିସ୍ଥାନ ମ୍ୟାଚ୍ କରାଚୀଠାରେ ଖେଳାଗଲା । ପ୍ରଥମ ମ୍ୟାଚ୍‌ରେ ମାତ୍ର ୧୫ ରନ୍ କରି ସେ ଆଉଟ୍ ହୋଇଥିଲେ ହେଁ ତାଙ୍କର ଶୈଳୀ ସମସ୍ତଙ୍କୁ ପ୍ରଭାବିତ କରିପାରିଥିଲା । ଚତୁର୍ଥ ଏବଂ ଅନ୍ତିମ ଟେଷ୍ଟ ମ୍ୟାଚ୍‌ରେ (ସିଆଲ୍‌କୋଟ୍) ସଚିନ୍‌ଙ୍କ ନାକରେ ବଲ୍ ବାଜିବା ଫଳରେ ସେ ରକ୍ତାକ୍ତ ହୋଇଥିଲେ ହେଁ କୌଣସି ଚିକିତ୍ସା ସହାୟତା ଗ୍ରହଣ କରିବା ପାଇଁ ଅନିଚ୍ଛା ପ୍ରକାଶ କରି ବ୍ୟାଟିଙ୍ଗ୍ କରିଥିଲେ । ଅନ୍ୟ ଏକ ୨୦-୨୦ ମ୍ୟାଚ୍‌ରେ ମାତ୍ର ୧୮ଟି ବଲ୍‌ର ସମ୍ମୁଖୀନ ହୋଇ ସେ ୫୩ ରନ୍ ସ୍କୋର୍ କରିଥିଲେ । ମାତ୍ର ୧୬ ବର୍ଷ ୩୦୫ ଦିନ ବୟସ ହୋଇଥିଲା ବେଳେ ସଚିନ୍ ଭାରତ ପାଇଁ ଟେଷ୍ଟମ୍ୟାଚ୍ ଖେଳିଥିଲେ । ଏତେ କମ୍ ବୟସରୁ ଏଯାବତ କେହି ଆମ ଦେଶପାଇଁ ଟେଷ୍ଟ ମ୍ୟାଚ୍ କ୍ରିକେଟ୍ ଖେଳିନାହାନ୍ତି ।

ତେନ୍ଦୁଲ୍‌କର୍ ଧୀରେ ଧୀରେ ପାହାଚ ପରେ ପାହାଚ ଚଢ଼ି ଚାଲିଲେ । ଇଂଲଣ୍ଡ ବିରୁଦ୍ଧରେ ଓଲ୍‌ଡ ଟ୍ରାଫୋର୍ଡ (ମାଂଚେଷ୍ଟର୍) ପଡ଼ିଆରେ ଖେଳି ସଚିନ୍ ତାଙ୍କ ଜୀବନର ପ୍ରଥମ ଶତକ ହାସଲ କରିଥିଲେ । ତାଙ୍କ ଖେଳର ଶୈଳୀରେ ଇଂଲଣ୍ଡର ଗଣମାଧ୍ୟମ ବି

ମୁଗ୍ଧ ହୋଇ ତାଙ୍କର ଉଚ୍ଛ୍ୱସିତ ପ୍ରଶଂସା କରିଥିଲା । ୧୯୯୧-୯୨ ଅଷ୍ଟ୍ରେଲିଆ ଗସ୍ତ ବେଳେ ସିଡ଼ନୀ ଏବଂ ପର୍ଥ ଟେଷ୍ଟମ୍ୟାଚ୍‌ରେ ଯଥାକ୍ରମେ ୧୪୮ ଓ ୧୧୮ ରନ୍ ସ୍କୋର୍ କଲେ ସଚିନ୍ । ସେତେବେଳେ ଅଷ୍ଟ୍ରେଲିଆ ପ୍ରସିଦ୍ଧ ବ୍ୟାଟ୍‌ସମ୍ୟାନ୍ ଆଲାନ୍ ବର୍ଡରଙ୍କୁ ହୁଗ୍‌ସ୍ କହିଥିଲେ, "ଏହି ଛୋଟିଆ ମଣିଷଟି ଦିନେ ତୁମଠାରୁ ଅଧିକ ରନ୍ ସ୍କୋର୍ କରିବ" । ସେଦିନ ହୁଗ୍‌ସ୍ ଯାହା ଭବିଷ୍ୟବାଣୀ ଶୁଣାଇଥିଲେ ତାହା ପରବର୍ତ୍ତୀ ସମୟରେ ଅକ୍ଷରେ ଅକ୍ଷରେ ସତ ହେଲା ।

ତେନ୍ଦୁଲ୍‌କର୍ ବ୍ୟାଟ୍‌ରୁ ଯେପରି ରନ୍‌ର ବନ୍ୟା ହେଉଥିଲା । ଯେତେଥର ସେ ବ୍ୟାଟିଂ କରିବା ପାଇଁ ଯାଆନ୍ତି ଆମ ଦେଶର କୋଟି କୋଟି ଯୁବକ ଆକାଂକ୍ଷିତ ଥାଆନ୍ତି ଏକ ଶତକ ବା ଦ୍ୱିଶତକ ପାଇଁ । ଅନେକ ପାରଦର୍ଶୀ ବୋଲରଙ୍କୁ ସେ ଧୂଳି ଚଟାଇଛନ୍ତି । ପାକିସ୍ତାନର ଅବଦୁଲ୍ କାଦିର୍, ଅଷ୍ଟ୍ରେଲିଆର ସେନ୍ ୱାର୍ଣ୍ଣ ଆଦି ବୋଲର୍ ତେନ୍ଦୁଲ୍‌କାରଙ୍କ ବ୍ୟାଟ୍‌ର ପ୍ରହାର ଫଳରେ ମ୍ୟାଚ୍ ପର ରାତ୍ରିରେ ଶୋଇପାରି ନାହାନ୍ତି ବୋଲି ସ୍ୱୀକାର କରିଛନ୍ତି । ଅନେକ ବାର ତେନ୍ଦୁଲକାର୍ ଏକା ଏକା ଭାରତକୁ ଅନେକ ମ୍ୟାଚ୍ ଜିତାଇଛନ୍ତି । ତାଙ୍କ ଦୀର୍ଘ କ୍ୟାରିଅର୍‌ରେ ସେ ଏତେ କୀର୍ତ୍ତିମାନ ସ୍ଥାପନ କରିଛନ୍ତି ଯେ, ସେସବୁ ବର୍ଣ୍ଣନା କରିବା ସହଜ ନୁହେଁ । ୧୯୯୬ ମସିହାରେ ଭାରତୀୟ କ୍ରିକେଟ୍ ଦଳର କ୍ୟାପ୍‌ଟେନ୍ ଦାୟିତ୍ୱ ସଚିନ୍‌ଙ୍କୁ ମିଳିଥିଲା । କିନ୍ତୁ ତାଙ୍କ ଅଧିନାୟକତ୍ୱରେ ଦଳକୁ ଆଶାନୁରୂପ ସଫଳତା ମିଳିନଥିଲା । ସେ ଦୁଇ ଦଫା କ୍ୟାପ୍‌ଟେନ୍ ହୋଇଛନ୍ତି । ତାଙ୍କ ଅଧିନାୟକତ୍ୱରେ ଭାରତ ୨୫ଟି ଟେଷ୍ଟ ମ୍ୟାଚ୍ ଖେଳି ୪ଟି ମ୍ୟାଚ୍‌ରେ ଜିତିଛି । ୯ଟିରେ ହାରିଛି ଏବଂ ୧୨ଟି ମ୍ୟାଚ୍ ଅମୀମାଂସିତ ରହିଛି । ଏକ ଦିବସୀୟ ମ୍ୟାଚ ତାଙ୍କ ଅଧିନାୟକତ୍ୱରେ ୭୩ଟି ଖେଳି ଭାରତ ୨୩ଟି ଜିତିଛି । ୪୩ଟି ହାରିଛି । ୨ଟି ଅମିଂମାସିତ ରହିଛି । ୬ଟି ମ୍ୟାଚ୍ ବାତିଲ୍ ହୋଇଛି । ତାଙ୍କ ଅଧିନାୟକତ୍ୱ ଫଳପ୍ରଦ ହେଉନଥିବା ଲକ୍ଷ୍ୟକରି ସେ ସ୍ୱତଃ ଏହି ପଦବୀ ପରିତ୍ୟାଗ କରି କନିଷ୍ଠ ଖେଳାଳୀଙ୍କ ଅଧୀନରେ ଖେଳିବାକୁ ଇଚ୍ଛା ପ୍ରକାଶ କରିଥିଲେ । ତେବେ ତାଙ୍କ ଜୀବନରେ କିଛି କିଛି ସମୟ ଏଭଳି ଆସିଛି, ସେ ଅନେକ ସମାଲୋଚନାର ସମ୍ମୁଖୀନ ହୋଇଛନ୍ତି । ଅନେକ କ୍ରିକେଟ୍ ପଣ୍ଡିତ ସେ ଅବସର ଗ୍ରହଣ କରିବା ପାଇଁ ମତ ଦେଇଛନ୍ତି । କହୁଣୀରେ ଆଘାତ ଯୋଗୁଁ କିଛି ଦିନ ସେ ଟିମ୍‌ରେ ଯୋଗଦେବା ପାଇଁ ଅକ୍ଷମ ହୋଇଛନ୍ତି । ତଥାପି ସବୁ ସମାଲୋଚନା ଏବଂ କ୍ଷତକୁ ଭୁଲିଯାଇ ସେ ପୁନର୍ବାର ତାଙ୍କ କର୍ମକ୍ଷେତ୍ରକୁ ଓହ୍ଲାଇଛନ୍ତି ଏବଂ ପୁଣିଥରେ ତାଙ୍କ ବ୍ୟାଟ୍ ଗର୍ଜନ କରିଛି । ରନ୍‌ର ବର୍ଷା ହୋଇଛି । ଭାରତ ଜିତିଛି ।

୨୦୧୨ ମସିହା ମାର୍ଚ୍ଚ ମାସ ୧୬ ତାରିଖ ଦିନ ତେନ୍ଦୁଲ୍‌କାର ତାଙ୍କ ଜୀବନର ୧୦୦ ତମ ଶତକ ଅର୍ଜନ କଲେ । ଏସିଆ କପ୍‌ରେ ବାଂଲାଦେଶ ବିପକ୍ଷରେ ତାଙ୍କର ଏହି କୀର୍ତ୍ତିମାନ ସ୍ଥାପିତ ହେଲା । ତେନ୍ଦୁଲ୍‌କାର୍ ଅଷ୍ଟ୍ରେଲିଆ ବିପକ୍ଷରେ ୧୧ଟି ଟେଷ୍ଟ ଶତକ ଏବଂ ୯ଟି ଏକଦିବସୀୟ ଶତକ ପୂରଣ କରିଛନ୍ତି । ସେହିପରି ଶ୍ରୀଲଙ୍କା ବିରୁଦ୍ଧରେ ୯ଟି ଟେଷ୍ଟ ଶତକ ଏବଂ ୮ଟି ଏକଦିବସୀୟ ଶତକ, ଦକ୍ଷିଣ ଆଫ୍ରିକା ବିରୁଦ୍ଧରେ ୭ଟି ଟେଷ୍ଟ ଶତକ ଏବଂ ୫ଟି ଏକଦିବସୀୟ ଶତକ, ଇଂଲଣ୍ଡ ବିରୁଦ୍ଧରେ ୭ଟି ଟେଷ୍ଟ ଶତକ ଓ ୨ଟି ଏକଦିବସୀୟ ଶତକ, ନିଉଜିଲାଣ୍ଡ୍ ବିରୁଦ୍ଧରେ ୪ଟି ଟେଷ୍ଟ ଶତକ ଏବଂ ୫ଟି ଏକ ଦିବସୀୟ ଶତକ, ୱେଷ୍ଟଇଣ୍ଡିଜ୍ ବିରୁଦ୍ଧରେ ୩ଟି ଟେଷ୍ଟ ଶତକ ଓ ୪ଟି ଏକଦିବସୀୟ ଶତକ, ଜିମ୍ବାୱେ ବିରୁଦ୍ଧରେ ୩ଟି ଟେଷ୍ଟ ଶତକ ଏବଂ ୫ଟି ଏକଦିବସୀୟ ଶତକ, ପାକିସ୍ଥାନ ବିରୁଦ୍ଧରେ ୨ଟି ଟେଷ୍ଟ ଶତକ ଏବଂ ୫ଟି ଏକ ଦିବସୀୟ ଶତକ, ବାଂଲାଦେଶ ବିରୁଦ୍ଧରେ ୫ଟି ଟେଷ୍ଟ୍ ଶତକ ଏବଂ ଗୋଟିଏ ଏକଦିବସୀୟ ଶତକ, କେନିଆ ବିରୁଦ୍ଧରେ ୪ଟି ଏକଦିବସୀୟ ଶତକ ଏବଂ ନାମିବିଆ ବିରୁଦ୍ଧରେ ଗୋଟିଏ ଏକ ଦିବସୀୟ ଅନ୍ତରାଷ୍ଟ୍ରୀୟ ଶତକ ଅର୍ଜନ କରିଛନ୍ତି ।

ଏହି କ୍ରମରେ ଟେଷ୍ଟମ୍ୟାଚ୍ ଇତିହାସରେ ସେ ସର୍ବାଧିକ ଶତକ (୫୧) ଏବଂ ଏକ ଦିବସୀୟ ଖେଳରେ ବି ସର୍ବାଧିକ ଶତକ(୪୯) କୀର୍ତ୍ତିମାନ ସ୍ଥାପନ କରିଛନ୍ତି । ଟେଷ୍ଟ, ଏକଦିବସୀୟ ଏବଂ ୨୦-୨୦ ମ୍ୟାଚ୍‌ର ରନ୍ ସଂଖ୍ୟା ମିଶାଇ ସେ ଏକମାତ୍ର ଖେଳାଳୀ ଯେ କି, ୩୦,୦୦୦ରୁ ଅଧିକ ରନ୍ ଅର୍ଜନ କରିପାରିଛନ୍ତି । ଘରୋଇ କ୍ରିକେଟ୍‌କୁ ମିଶାଇଲେ ସେ ୫୦, ୦୦୦ ରନ୍‌ରୁ ଅଧିକ ସ୍କୋର୍ କରିଛନ୍ତି । ପୃଥିବୀର ସେ ଏକମାତ୍ର ଖେଳାଳୀ ଭାବେ ଦେଶପାଇଁ ସର୍ବାଧିକ ୨୦୦ଟେଷ୍ଟ୍ ମ୍ୟାଚ୍ ଖେଳିଛନ୍ତି । ସର୍ବାଧିକ ଏକ ଦିବସୀୟ ମ୍ୟାଚ(୪୬୩) ଖେଳିବାର ସୁଯୋଗ ବି ତେନ୍ଦୁଲ୍‌କାର୍‌ଙ୍କୁ ମିଳିଛି । ଗୋଟିଏ ବର୍ଷରେ ୧୦୦୦ରୁ ଅଧିକ ରନ୍ ସେ ୭ ଥର ସ୍କୋର୍ କରିଛନ୍ତି । ସେ ପ୍ରଥମ ଖେଳାଳୀଭାବେ ଏକ ଦିବସୀୟ ଖେଳରେ ଦ୍ୱିଶତକ ଅର୍ଜନ କରିଛନ୍ତି ।

ତାଙ୍କର ବର୍ଣ୍ଣିଳ ଖେଳ ଜୀବନରେ ସେ ୧୩ ଥର ମ୍ୟାନ୍ ଅଫ୍ ଦ ମ୍ୟାଚ୍ ପୁରସ୍କାର ଟେଷ୍ଟମ୍ୟାଚ୍‌ରେ ପାଇଛନ୍ତି । ୪ଥର ମ୍ୟାନ୍ ଅଫ୍ ଦ ସିରିଜ୍ ପୁରସ୍କାର ପାଇଛନ୍ତି । ବିଶ୍ୱକପ୍ ପ୍ରତିଯୋଗୀତାମାନଙ୍କରେ ତାଙ୍କର ସଫଳତା ସର୍ବଦା ସାମ୍ୟତା ରକ୍ଷା କରିଛି । ୧୯୯୬ ବିଶ୍ୱକପ୍‌ରେ ସେ ସର୍ବାଧିକ ରନ୍ (୫୨୩) ହାସଲ କରିଥିଲେ । ସେହିପରି ୨୦୦୩ ବିଶ୍ୱକପ୍‌ରେ ମଧ ତାଙ୍କର ସର୍ବାଧିକ ୬୭୩ ରନ୍ ହୋଇଥିଲା । ୨୦୧୧

ବିଶ୍ୱକପ୍‌ରେ ଇଂଲଣ୍ଡ ବିରୁଦ୍ଧରେ ଶତକ ହାସଲ କରି ସେ ବିଶ୍ୱକପ୍‌ରେ ସର୍ବାଧିକ ଶତକ(୬) ହାସଲ କରିବା ସହ ପ୍ରଥମ ଖେଳାଳୀ ଭାବେ ବିଶ୍ୱକପ୍‌ରେ ୨୦୦୦ରନ୍ ପୂରଣ କରିଥିଲେ ।

୨୦୧୩ ମସିହାରେ ତେନ୍ଦୁଲକାର୍‌ଙ୍କ ଫଟୋ ଚିତ୍ର ସମ୍ବଳିତ ଏକ ପୋଷ୍ଟାଲ୍ ଷ୍ଟାମ୍ପ ଭାରତୀୟ ଡ଼ାକ ବିଭାଗ ଦ୍ୱାରା ପ୍ରଚଳିତ ହେଲା । ମଦର ଟେରେସାଙ୍କ ପରେ ସେ ଦ୍ୱିତୀୟ ଭାରତୀୟ ଭାବେ ନିଜ ଜୀବନ କାଳ ମଧ୍ୟରେ ଏପରି ଗୌରବର ଅଧିକାରୀ ହେଲେ ।

ତେନ୍ଦୁଲକାର୍ ୨୨ ବର୍ଷ ବୟସରେ ଅଞ୍ଜଳି ନାମକ ଜଣେ ଶିଶୁ ଚିକିତ୍ସା ବିଶେଷଜ୍ଞଙ୍କୁ ବିବାହ କଲେ । ୧୯୯୪ ମସିହାରେ ନିଉଜିଲାଣ୍ଡଠାରେ ତାଙ୍କର ବିବାହ ସମ୍ପନ୍ନ ହୋଇଥିଲା । ସାରା (ଝିଅ) ଏବଂ ଅର୍ଜୁନ (ପୁଅ) ନାମକ ଦୁଇଟି ସନ୍ତାନର ସେ ଜନକ । ଅର୍ଜୁନ ପିତାଙ୍କ ପଦାଙ୍କ ଅନୁସରଣ କରି ଜଣେ କ୍ରିକେଟ ଖେଳାଳୀ ହେବା ପାଇଁ ଚେଷ୍ଟାରତ । ସେ କିନ୍ତୁ ଜଣେ ବାମହାତି ଖେଳାଳୀ ।୨୦୧୩ ମସିହାରେ ମୁମ୍ବାଇର ୧୪ ବର୍ଷରୁ କମ୍ ବୟସ୍କଙ୍କ ଟିମ୍‌ରେ ଖେଳିବାପାଇଁ ସେ ମନୋନୀତ ହୋଇଛନ୍ତି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ସଚିନ୍ ତେନ୍ଦୁଲକାର୍ ଡ଼ାହାଣ ହାତରେ ବ୍ୟାଟିଙ୍ଗ୍ ଏବଂ ବୋଲିଂ ବି କରନ୍ତି । କିନ୍ତୁ ସେ ବାମ ହାତରେ ଲେଖାଲେଖି କରନ୍ତି । ବୋଧହୁଏ ତାଙ୍କ ପୁତ୍ର (ଅର୍ଜୁନ)ଙ୍କୁ ଏହି ଗୁଣସୂତ୍ର ବାମହାତି ଖେଳାଳୀ କରାଇଛି ।

ସଚିନ୍ ଜଣେ ଧର୍ମବିଶ୍ୱାସୀ । ସତ୍ୟ ସାଇବାବାଙ୍କ ଉପରେ ସଚିନ୍‌ଙ୍କର ପ୍ରଗାଢ଼ ବିଶ୍ୱାସ । ସତ୍ୟସାଇବାବାଙ୍କ ନିଧନ ପରେ ସଚିନ୍ ଦୁଃଖରେ ମ୍ରିୟମାଣ ହୋଇ ନିଜର ଜନ୍ମଦିନ ପାଳନକୁ ରଦ୍ଦ କରିଥିଲେ । ସେ ନିଜ ପରିବାର ସହ ଗଣେଶ ଚତୁର୍ଥୀ ପାଳନ କରନ୍ତି । ସାଧାରଣତଃ ଭିଡ଼ କମିଗଲା ପରେ ରାତିରେ ସେ ନିରୋଳାରେ ମନ୍ଦିରକୁ ଦେବଦର୍ଶନ ପାଇଁ ଯାଆନ୍ତି ।

ବ୍ୟବସାୟ କ୍ଷେତ୍ରରେ ବି ସଚିନଙ୍କୁ ଅଶେଷ ସଫଳତା ମିଳିଛି । ତାଙ୍କର ଅପାର ଲୋକପ୍ରିୟତା ଯୋଗୁଁ କ୍ରିକେଟ୍ ଜଗତର ବ୍ୟବସାୟରେ ୱାର୍ଲଡ୍-ଟେଲ୍ କମ୍ପାନୀ ସହ ୧୯୯୫ ମସିହାରେ ୫ ବର୍ଷ ପାଇଁ ୩୦ କୋଟି ଟଙ୍କାର ଏକ ଚୁକ୍ତି ସ୍ୱାକ୍ଷର କରିଥିଲେ । ୨୦୦୧ ମସିହାରେ ପୁନର୍ବାର ସେହି କମ୍ପାନୀ ୫ ବର୍ଷ ପାଇଁ ୮୦ କୋଟି ଟଙ୍କାର ଚୁକ୍ତିପତ୍ର ଲେଖିଲା । ୨୦୦୬ ମସିହାରେ ୩ ବର୍ଷ ପାଇଁ ସାଚି ଏବଂ ସାଚି କମ୍ପାନୀର ଆଇକୋନିକ୍ସ ପାଇଁ ୧୮୦ କୋଟି ଟଙ୍କାର ଚୁକ୍ତିପତ୍ର ଲେଖିଥିଲେ । ଏହାଛଡ଼ା ସେ

ତିନୋଟି ରେଷ୍ଟୁରାଣ୍ଟ (ତେନ୍ଦୁଲକାର'ସ୍-କୋଲାବା, ମୁମ୍ବାଇ), ଏବଂ ସଚିନ୍'ସ୍ (ମୁଲୁନ୍ଦ, ମୁମ୍ବାଇ ଏବଂ ବାଙ୍ଗାଲୋର) ଖୋଲିଛନ୍ତି । ୨୦୦୭ ମସିହାରୁ ଫ୍ୟୁଚର ଗ୍ରୁପ୍ ଏବଂ ମନିପାଲ୍ ଗ୍ରୁପ୍ ସହିତ ମିଶି ସେ ସ୍ୱାସ୍ଥ୍ୟସେବା ସାମଗ୍ରୀ ଏବଂ କ୍ରୀଡ଼ା ସାମଗ୍ରୀ ଉତ୍ପାଦନ କରିବାରେ ପ୍ରୟାସ କରିଛନ୍ତି । ଏହା ଏସ୍ ଡ୍ରାଇଭ୍ ଏଣ୍ଡ୍ ସଚ୍ ବ୍ରାଣ୍ଡ୍ ନାମରେ ପରିଚିତ । ଆଇଏସ୍ଏଲ୍ (ଇଣ୍ଡିଆନ୍ ସକର ଲିଗ୍) ଖେଳରେ କେରଳ ବ୍ଲାଷ୍ଟର୍ ଟିମ୍‌ରେ ତାଙ୍କର ଯୁଗ୍ମ ମାଲିକାନା ରହିଛି ।

୨୦୦୩ ମସିହାରେ ଫୋର୍ବସ୍ କମ୍ପାନୀ ଦ୍ୱାରା ପ୍ରକାଶିତ ଖେଳାଳୀମାନଙ୍କ ସୂଚୀରେ ପୃଥିବୀର ଦାମୀ ଖେଳାଳୀଙ୍କ ମଧ୍ୟରେ ୫୧ ତମ ସ୍ଥାନରେ ସଚିନ୍ ଥିଲେ । ତେବେ ଭାରତରେ ସେ ସବୁଠାରୁ ଦାମୀ କ୍ରିକେଟ୍ ଖେଳାଳୀ ଭାବେ ସ୍ୱୀକୃତ ହୋଇଛନ୍ତି ।

ସଚିନ୍‌ଙ୍କ କ୍ୟାରିଅର୍ ମଧ୍ୟରେ ବିଭିନ୍ନ ନାମୀ ଦାମୀ କମ୍ପାନୀ ତାଙ୍କୁ ପୃଷ୍ଠପୋଷକତା କରିଛନ୍ତି । ତନ୍ମଧ୍ୟରେ (୧୯୯୦ରୁ ଅଦ୍ୟାବଧି) ପେପ୍‌ସୀ (୧୯୯୨-୨୦୦୯), ଆକ୍ସନ୍ ସୁଜ୍, (୧୯୯୫-୨୦୦୦) ଏମ୍‌ଆର୍‌ଏଫ, (୧୯୯୯-୨୦୦୯) ଆଦିଦାସ, (୨୦୦୦-୨୦୧୦) ବ୍ରିଟାନିଆ, (୨୦୦୧-୨୦୦୭) ଫିଏଟ୍ ପାଲିଓ, (୨୦୦୧-୨୦୦୩) ଟିଭିଏସ୍, (୨୦୦୨-୦୫) ଇସ୍‌ପିଏନ ଷ୍ଟାର ସ୍ପୋର୍ଟସ, (୨୦୦୨ରୁ ଅଦ୍ୟାବଧି) ସନ୍‌ଫିଷ୍ଟ, (୨୦୦୭-୧୩) କ୍ୟାନନ୍, (୨୦୦୬-୦୯) ଏଆର୍‌ଟେଲ୍, (୨୦୦୪-୦୮) ରେନଲଡ୍, (୨୦୦୭ରୁ ଅଦ୍ୟାବଧି) ଜି-ହାନ୍‌ଜ, (୨୦୦୫-୦୭) ସାନ୍ୟୋ-ବିପିଏଲ୍, (୨୦୦୭ରୁ ଅଦ୍ୟାବଧି) ତୋଷିବା, (୨୦୧୦ରୁ ଅଦ୍ୟାବଧି) କଲ୍‌ଗେଟ୍-ପାମୋଲିଭ୍, (୨୦୧୧-୧୨) ଫିଲିପ୍‌ସ୍, (୧୧-୧୨) ଭିସା, (୧୧-୧୨) କଷ୍ଟ୍ରଲ୍-ଇଣ୍ଡିଆ, (୧୧-୧୨) ଉଜାଲା ଟେକ୍‌ନୋବ୍ରାଇଟ୍, (୨୦୧୧-୧୩) କୋକାକୋଲା, ଏବଂ ମୁସାଫିର୍ ଡ଼ଟ୍ କମ୍ (୨୦୧୩ରୁ ଅଦ୍ୟାବଧି) ଅନ୍ୟତମ । ଏହାଛଡ଼ା ଜାତୀୟ ଏଡ଼ସ୍ ସଚେତନତା କାର୍ଯ୍ୟକ୍ରମ ତଥା ଜାତୀୟ ଅଣ୍ଡା ସମନ୍ୱୟ ସମିତିର ମୁଖପାତ୍ର ଭାବେ ଯଥାକ୍ରମେ ୨୦୦୫



ମସିହା ଏବଂ ୨୦୦୩ -୦୫ ମସିହାରେ କାର୍ଯ୍ୟ ସମ୍ପାଦନ କରିଛନ୍ତି । ଲୁମିନସ୍ ଇଣ୍ଡିଆର ମୁଖପାତ୍ର ଭାବେ ୨୦୧୦ ମସିହାରୁ ଅଦ୍ୟାବଧି ସେ କାର୍ଯ୍ୟ କରୁଛନ୍ତି ।

ତେନ୍ଦୁଲକର ଜଣେ ଶାନ୍ତ, ସରଳ, ନମ୍ର ଏବଂ ଦରଦୀ ମଣିଷ । ଅନ୍ୟର ଦୁଃଖ ତାଙ୍କୁ ବିଚଳିତ କରିଥାଏ । ମୁମ୍ବାଇର ଏକ ବେସରକାରୀ ସଂସ୍ଥା ଅପନାଳୟ ମାର୍ଫତ୍‌ରେ ସେ ପ୍ରତିବର୍ଷ ୨୦୦ ଦୁସ୍ଥ ଅସହାୟ ଶିଶୁଙ୍କର ପୃଷ୍ଠପୋଷକତା ପୂର୍ବକ ତାଙ୍କର ଭରଣପୋଷଣ କରିଥାନ୍ତି । ଏହି ସଂସ୍ଥା (ଅପନାଳୟ) ତାଙ୍କର ଶାଶୁ ଶ୍ରୀମତୀ ଆନାବେଲ୍ ମେହଟାଙ୍କ ଦ୍ୱାରା ପରିଚାଳିତ । କ୍ରୁସେଡ୍ ଏଗେନ୍‌ଷ୍ଟ କ୍ୟାନସର୍ ନାମକ ସଂସ୍ଥା ପାଇଁ ତେନ୍ଦୁଲକରଙ୍କ ଆହ୍ୱାନ୍ କ୍ରମେ ୧.୦୨ କୋଟି ଟଙ୍କା ସଂଗୃହୀତ ହୋଇଥିଲା । ୧୪୦ଟି ସରକାରୀ ସ୍କୁଲରେ ବାଳିକାମାନଙ୍କ ପାଇଁ ଶୌଚାଳୟ ନିର୍ମାଣ ପାଇଁ ୫ କୋଟି ଟଙ୍କା ସଂଗ୍ରହ କରିବା ଲକ୍ଷ୍ୟନେଇ ସେ ୨୦୧୧ ମସିହା ସେପ୍ଟେମ୍ବର ୧୮ ତାରିଖ ଦିନ ଏନ୍‌ଡ଼ିଟିଭିରେ ଏକକାଳୀନ ୯ ଘଣ୍ଟା କାଳ ଏକ ପ୍ରଚାର କରିବା ଫଳରେ ଧାର୍ଯ୍ୟ ଲକ୍ଷ୍ୟଠାରୁ ଅଧିକ (ମୋଟ ୭କୋଟି) ଅର୍ଥ ସଂଗୃହୀତ ହୋଇଥିଲା ।

ଏହି ମହାନ୍ କ୍ରିକେଟରଙ୍କ ଗୌରବ ଗାଥାକୁ ଲିପିବଦ୍ଧ କରିବା ପାଇଁ ଅନେକ ପୁସ୍ତକ ପ୍ରକାଶିତ ହୋଇଛି । ତନ୍ମଧ୍ୟରୁ ଗୁଲୁ ଏଜେକଏଲ୍ ଲିଖିତ "ସଚିନ୍ : ଦି ଷ୍ଟୋରୀ ଅଫ୍ ଦ ୱାର୍ଲଡ୍‌ସ ଗ୍ରେଟେଷ୍ଟ ବ୍ୟାଟସ୍‌ମ୍ୟାନ୍", ଏବଂ "ଦି ଏଟୁକେଡ୍ ଅଫ୍ ସଚିନ୍ ତେନ୍ଦୁଲକର୍", ବୈଭବପୁରଣ୍ଡରେ ପ୍ରଣିତ "ସଚିନ୍ ତେନ୍ଦୁଲକର୍- ଏ ଡ଼େଫିନିଟିଭ୍ ବାୟୋଗ୍ରାଫି" ପ୍ରଧାନ ।

ଏହାଛଡ଼ା ପିଟଲ୍ ମରେଙ୍କ ପ୍ରଣିତ "ସଚିନ୍ ତେନ୍ଦୁଲକର୍ -ମାଷ୍ଟର୍ ଫୁଲ୍", ବିଜୟ ସନ୍ଥନମ୍‌ଙ୍କ ରଚିତ "ଇଫ୍ କ୍ରିକେଟ୍ ଇଜ୍ ଏ ରିଲିଜିଅନ୍ - ସଚିନ୍ ଇଜ୍ ଗଡ୍", ନୀଳିମା ଆଥଲ୍ୟେ ରଚିତ "ମାଷ୍ଟର୍ ଷ୍ଟ୍ରୋକ୍ : ୧୦୦ ସେଂଚୁରୀଜ୍ ଅଫ୍ ସଚିନ୍ ତେନ୍ଦୁଲକର୍" । ଧର୍ମେନ୍ଦ୍ର ପନ୍ଥଙ୍କ ପ୍ରଣିତ "ସଚିନ୍ କେ ଶୌ ଶତକ"ଏବଂ ଶେଷରେ ସ୍ୱୟଂ ସଚିନ୍ ତେନ୍ଦୁଲକର୍ ରଚିତ ଆତ୍ମଜୀବନୀ ପୁସ୍ତକ "ପ୍ଲେଇଂ ଇଟ୍ ମାଇ ୱେ" ପୁସ୍ତକମାନଙ୍କରେ ସଚିନ୍‌ଙ୍କ ବିଷୟରେ ବର୍ଣ୍ଣନା କରାଯାଇଛି ।

ସଚିନ୍ ତେନ୍ଦୁଲକର ଦେଶ ପାଇଁ ଖେଳି ଯେଉଁ ଜନପ୍ରିୟତା ହାସଲ କରିଛନ୍ତି ତାହା ଅତୁଳନୀୟ । କେହି ତାଙ୍କୁ 'ଲିଟିଲ୍ ମାଷ୍ଟର୍' କହିଛନ୍ତି ତ କେହି କେହି 'ମାଷ୍ଟର୍ ବ୍ଲାଷ୍ଟର' ସମ୍ବୋଧନ କରିଛନ୍ତି । ଅନେକେ ପ୍ରଶଂସକଙ୍କ ମତରେ ସେ ଜଣେ ସୁପର

ହୀରୋ । ଏପରିକି ସଚିନଙ୍କୁ କେହି କେହି 'ଭଗବାନ' ବୋଲି ବି କହିଥାନ୍ତି । ଅନେକ ପ୍ରଶଂସକ କହନ୍ତି "କ୍ରିକେଟ୍ ମୋର ଧର୍ମ ଏବଂ ସଚିନ୍ ମୋର ଭଗବାନ" । ଅଷ୍ଟ୍ରେଲିଆର କ୍ରିକ୍‌ଇନ୍‌ଫୋରେ ପ୍ରକାଶିତ ହେଲା "ପୃଥିବୀରେ ସର୍ବାଧିକ ପୂଜା ପାଉଥିବା ବ୍ୟକ୍ତି ହେଉଛନ୍ତି ତେନ୍ଦୁଲକର । ମାଥ୍ୟୁ ହେଡେନ୍ ଥରେ କହିଥିଲେ, "ମୁଁ ଭଗବାନଙ୍କୁ ଦେଖିଛି । ସେ ଭାରତ ପାଇଁ ୪ ନମ୍ବର ସ୍ଥାନରେ ବ୍ୟାଟିଂ କରନ୍ତି ।" ତେବେ ସଚିନ୍ ନମ୍ରତାର ସହ କହନ୍ତି, "ମୁଁ ଭଗବାନ ନୁହେଁ । ମୁଁ ଭୁଲ୍ କରେ । ଭଗବାନ ଭୁଲ କରନ୍ତି ନାହିଁ ।"

ଆଧୁନିକ ଯୁଗର କର୍ମଯୋଗୀ ତେନ୍ଦୁଲକର୍ କେବଳ ତାଙ୍କ ସହ-ଖେଳାଳୀଙ୍କ ପାଇଁ ନୁହେଁ ବରଂ ସମଗ୍ର ବିଶ୍ୱର ଯୁବ ସଂପ୍ରଦାୟ ପାଇଁ ନିଷ୍ଠା ଏବଂ ଏକାଗ୍ରତାର ପ୍ରତୀକ ହୋଇ ଉଭା ହୋଉଛନ୍ତି । ସଫଳତା ତାଙ୍କୁ ଆତ୍ମହରା କରିନାହିଁ କିମ୍ବା ବିଫଳତା ତାଙ୍କ ପାଇଁ ନକାରାତ୍ମକ ହୋଇନାହିଁ । ଅକ୍ଳାନ୍ତ ପରିଶ୍ରମ, ଅବିରତ ଅଭ୍ୟାସ ଏବଂ ଅଭେଦ୍ୟ ଆତ୍ମବିଶ୍ୱାସ ତାଙ୍କୁ ସଫଳତାର ଶୀର୍ଷରେ ପହଞ୍ଚାଇ ପାରିଛି । ମାତ୍ର ୫ ଫୁଟ୍ ୫ ଇଞ୍ଚ୍ ଉଚ୍ଚତାର ପାର୍ଥିବ ଶରୀର ତାଙ୍କର । କିନ୍ତୁ ଏଭେରେଷ୍ଟ ଉଚ୍ଚତାର ବ୍ୟକ୍ତିତ୍ୱ । ତାଙ୍କୁ ସମ୍ମାନ ଜଣାଇ ଭାରତ ସରକାର ତେନ୍ଦୁଲକର୍‌ଙ୍କୁ ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ 'ଭାରତରତ୍ନ' ୨୦୧୩ରେ ଭୂଷିତ କରିଛନ୍ତି ।

* * *

# ମଦନ ମୋହନ ମାଲବ୍ୟ



୧୮୬୧

ଭାରତ ରତ୍ନ - ୨୦୧୪

ମଦନ ମୋହନ ମାଲବ୍ୟ ଜଣେ ପ୍ରସିଦ୍ଧ ଶିକ୍ଷାବିଦ୍ ଏବଂ ରାଜନୀତିଜ୍ଞ । ଭାରତର ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଅବଦାନ ଅତୁଳନୀୟ । ଭାରତୀୟ ଜାତୀୟ କଂଗ୍ରେସ୍‌ର ସେ ୪ଥର ସଭାପତି ପଦରେ ରହିଥିଲେ । ମହାତ୍ମା ଗାନ୍ଧିଙ୍କ ଯେପରି ଶ୍ରଦ୍ଧାରେ ଲୋକେ 'ବାପୁ' ନାମରେ ଜାଣୁଥିଲେ, ସେହିପରି ମଦନ ମୋହନଙ୍କୁ ଅନୁଗାମୀମାନେ ତାଙ୍କୁ 'ମହାମାନ୍ୟ' ଆଖ୍ୟା ଦେଇଥିଲେ ।

ବାରଣାସୀର ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ୧୯୧୬ ମସିହାରେ ତାଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ଏହା ଏସିଆ ମହାଦେଶର ସର୍ବବୃହତ୍ ଆବାସିକ ବିଶ୍ୱବିଦ୍ୟାଳୟ । ସମଗ୍ର ବିଶ୍ୱରେ ଏହା ଅନ୍ୟତମ ବୃହତ୍ ବିଶ୍ୱବିଦ୍ୟାଳୟ ଭାବେ ପ୍ରଖ୍ୟାତ । ଏହାର ଛାତ୍ର ସଂଖ୍ୟା ୩୫୦୦୦ରୁ ଅଧିକ । କଳା, ବିଜ୍ଞାନ, ଇଂଜିନିଅରିଂ, ଚିକିତ୍ସା ବିଜ୍ଞାନ, କୃଷି, ଆଇନ୍ ଏବଂ ପ୍ରଯୁକ୍ତି ବିଦ୍ୟା ଇତ୍ୟାଦି ସମସ୍ତ ବିଷୟରେ ଏହି ବିଶ୍ୱବିଦ୍ୟାଳୟ ଶିକ୍ଷାଦାନ କରିଥାଏ । ମାଳବୀୟ ବିଶ୍ୱବିଦ୍ୟାଳୟ କୁଳପତିଭାବେ ୧୯୧୯ ମସିହାରୁ ୧୯୩୮ ମସିହା ଯାଏଁ କାର୍ଯ୍ୟ କରିଛନ୍ତି ।

ଭାରତୀୟ ଜାତୀୟ କଂଗ୍ରେସର ସଭାପତି ଭାବେ ୧୯୦୯, ୧୯୧୩, ୧୯୧୯ ଓ ୧୯୩୨ ମସିହାରେ ସେ ନିର୍ବାଚିତ ହୋଇ କଂଗ୍ରେସକୁ ନେତୃତ୍ୱ ପ୍ରଦାନ କରିଥିଲେ । କିନ୍ତୁ ୧୯୩୪ ମସିହାରେ ସେ କଂଗ୍ରେସ ଦଳ ପରିତ୍ୟାଗ କରି ହିନ୍ଦୁ ମହାସଭାର ଅନ୍ୟତମ ପ୍ରାରମ୍ଭିକ ସଦସ୍ୟ ହେଲେ ।

୧୯୦୯ ମସିହାରେ ଭାରତରେ ଇଂରେଜ ଶାସନ, ଚାଲିଥିଲା ବେଳେ ମାଳବୀୟ 'ଦି ଲିଡ଼ର' ନାମକ ଏକ ପ୍ରଭାବଶାଳୀ ଦୈନିକ ଖବର କାଗଜ ସଂପାଦନା ଆରମ୍ଭ କରିଥିଲେ । ୧୯୨୪ ମସିହାରୁ ୧୯୪୬ ମସିହା ଯାଏଁ ସେ 'ହିନ୍ଦୁସ୍ଥାନ ଟାଇମ୍ସ' ଖବର କାଗଜର ଚେଆରମ୍ୟାନ୍ ଥିଲେ । ତାଙ୍କ ପ୍ରଚେଷ୍ଟାରେ ୧୯୩୬ ମସିହାରେ ଏହି ଖବର କାଗଜର ହିନ୍ଦୀ ସଂସ୍କରଣ 'ହିନ୍ଦୁସ୍ଥାନ ଦୈନିକ' ପ୍ରକାଶିତ ହୋଇଥିଲା ।

ଜନନାୟକ ରାଷ୍ଟ୍ରବାଦୀ ମହାମାନ୍ୟ ପଣ୍ଡିତ ମଦନମୋହନ ମାଳବୀୟଙ୍କୁ ମରଣୋତ୍ତର ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ 'ଭାରତ ରତ୍ନ'ରେ ୨୦୧୪ ମସିହା ୨୫ ଡ଼ିସେମ୍ବର (ତାଙ୍କର ୧୫୩ ତମ ଜନ୍ମ ବାର୍ଷିକୀ)ରେ ସମ୍ମାନିତ କରାଯାଇଛି ।

ମଦନ ମୋହନ ମାଳବୀୟ ୧୮୬୧ ମସିହା ଡ଼ିସେମ୍ବର ୨୫ ତାରିଖ ଦିନ ଆଲ୍ଲାହାବାଦଠାରେ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ପଣ୍ଡିତ ବ୍ରିଜନାଥ ଏବଂ ମାତା ଶ୍ରୀମତୀ ମୁନା ଦେବୀ । ମାଲୱାରୁ ଆସି ଆଲ୍ଲାହାବାଦରେ ବସବାସ କରୁଥିବାରୁ ସେମାନଙ୍କୁ ମାଳବୀୟ କୁହାଯାଉଥିଲା । ତାଙ୍କର ପ୍ରକୃତ ସାଙ୍ଗିଆ ଥିଲା ବ୍ୟାସ । ମାଳବୀୟଙ୍କ ପିତା ପଣ୍ଡିତ ବ୍ରିଜନାଥ ସଂସ୍କୃତ ଭାଷାରେ ଜଣେ ଜ୍ଞାନୀ ପଣ୍ଡିତ ଥିଲେ ଏବଂ ସେ ଭାଗବତ କଥା ଗାନ କରି ଘରର ପୋଷଣ କରୁଥିଲେ ।

ମଦନ ମୋହନଙ୍କର ପାଠପଢ଼ା ସଂସ୍କୃତ ପାଠଶାଳାରୁ ଆରମ୍ଭ ହୋଇଥିଲା । କିନ୍ତୁ ପରେ ସେ ଇଂରାଜୀ ସ୍କୁଲରେ ପଢ଼ିଥିଲେ । ପ୍ରଥମେ ହରଦେବଙ୍କ ଧର୍ମ ଜ୍ଞାନୋପଦେଶ

ପାଠଶାଳାରୁ ପ୍ରାଥମିକ ଶିକ୍ଷା ଶେଷ କରିବା ପରେ ସେ ଆଲ୍ଲାହାବାଦ ଜିଲ୍ଲା ସ୍କୁଲ୍‌ରେ ପାଠ ପଢ଼ିଥିଲେ । ସେହି ସମୟରୁ ଏକ ଛଦ୍ମନାମ (ମକରନ୍ଦ)ରେ ସେ କବିତା ଲେଖିବା ଆରମ୍ଭ କଲେ । କବିତାଗୁଡ଼ିକ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା ।

୧୮୭୯ ମସିହାରେ ସେ ମୀର କେନ୍ଦ୍ରୀୟ ମହାବିଦ୍ୟାଳୟ(ବର୍ତ୍ତମାନର ଆଲ୍ଲାହାବାଦ୍ ବିଶ୍ୱବିଦ୍ୟାଳୟ)ରୁ ମାଟ୍ରିକ୍ୟୁଲେସନ୍ ପାସ୍ କଲେ । ମାଳବୀୟଙ୍କ ପରିବାର ଆର୍ଥିକ ଅନାଟନ ଭିତରେ କାଳାତିପାତ କରୁଥିଲେ । କୋଲକତାର ହାରିସନ୍ କଲେଜର ଅଧ୍ୟକ୍ଷ ମାଳବୀୟଙ୍କୁ ଏକ ମାସିକ ବୃତ୍ତି ଦେବାରୁ ସେ କଲିକତା ବିଶ୍ୱବିଦ୍ୟାଳୟରୁ ବି.ଏ. ପାସ୍ କଲେ । ତା'ପରେ ସଂସ୍କୃତରେ ଏମ୍.ଏ. ପଢ଼ିବା ପାଇଁ ସେ ମନସ୍ଥ କଲେ ହେଁ ପରିବାରର ଆର୍ଥିକ ଦୁଃସ୍ଥିତି ଏଥିରେ ଅନ୍ତରାୟ ହେଲା । ତେଣୁ ବାଧହୋଇ ସେ ଆଲ୍ଲାହାବାଦର ଏକ ସରକାରୀ ଉଚ୍ଚ ବିଦ୍ୟାଳୟରେ ସହକାରୀ ଶିକ୍ଷକ ଭାବେ ଚାକିରୀରେ ଯୋଗଦାନ କଲେ ।

ତତ୍‌କାଳୀନ ପରମ୍ପରା ଅନୁସାରେ ମାତ୍ର ୧୬ ବର୍ଷ ବୟସରେ ସେ ମୀର୍ଜାପୁରର ଶ୍ରୀମତୀ କୁନ୍ଦନ ଦେବୀଙ୍କୁ ବିବାହ କରିଥିଲେ । ସେମାନଙ୍କ ଔରସରୁ ୫ଟି ପୁତ୍ର ସନ୍ତାନ ଏବଂ ୫ଟି କନ୍ୟାସନ୍ତାନ ଜାତ ହେଲେ । ସେମାନଙ୍କ ମଧ୍ୟରୁ ୪ଟି ପୁଅ ରମାକାନ୍ତ, ରାଧାକାନ୍ତ, ମୁକୁନ୍ଦ ଏବଂ ଗୋବିନ୍ଦ ତଥା ୨ଟି ଝିଅ ରମା ଏବଂ ମାଳତୀ ବଞ୍ଚିଲେ ।

ମହାମାନ୍ୟଙ୍କ ଜ୍ୟେଷ୍ଠପୁତ୍ର ଶ୍ରୀ ରମାକାନ୍ତ ମାଳବୀୟ ନାଥଦ୍ୱାରା ଏବଂ ଶିରିଡ଼ିର ଦେୱାନ୍ ଥିଲେ । ତାଙ୍କ ଜୀବନର ସମସ୍ତ ଉପାର୍ଜନ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟକୁ ସେ ଦାନ କରିଛନ୍ତି । ରମାକାନ୍ତଙ୍କ ଜ୍ୟେଷ୍ଠପୁତ୍ର ଥିଲେ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଧର ମାଳବୀୟ । ତାଙ୍କ ଧର୍ମପତ୍ନୀ ସରସ୍ୱତୀ ମାଳବୀୟଙ୍କୁ ବର୍ତ୍ତମାନ ୯୨ ବର୍ଷ ବୟସ । ସେ ହିଁ ବର୍ତ୍ତମାନ ମାଳବୀୟ ପରିବାରର ଏକ ମାତ୍ର ଜୀବିତ ବ୍ୟକ୍ତି । ତାଙ୍କର ଜ୍ୟେଷ୍ଠପୁତ୍ର ଡ଼କ୍ଟର ରାକୀଟ ମାଳବୀୟ ବର୍ତ୍ତମାନ ମାଳବୀୟ ପରିବାରର କର୍ତ୍ତା ଏବଂ ଉତ୍ତରାଧିକାରୀ ।

କଲିକତାଠାରେ ୧୮୮୬ ମସିହାରେ ହୋଇଥିବା ଭାରତୀୟ ଜାତୀୟ କଂଗ୍ରେସର ଦ୍ୱିତୀୟ ଅଧିବେଶନରେ ଯୋଗଦେଇ ମଦନ ମୋହନ ତାଙ୍କ ରାଜନୈତିକ ଜୀବନ ଆରମ୍ଭ କରିଥିଲେ । ଦାଦାଭାଇ ନାଓରୋଜୀ ଏଥିରେ ସଭାପତିତ୍ୱ କରୁଥିଲେ । ଏହି ସଭାରେ ମଦନମୋହନ ଭାରତର ଶାସନରେ ଭାରତୀୟଙ୍କ ପ୍ରତିନିଧିତ୍ୱ ଆବଶ୍ୟକ ବୋଲି କହିଥିଲେ ।

ମଦନମୋହନଙ୍କ ଭାଷଣ ଦାଦାଭାଇଙ୍କ ସମେତ କଲାକାଙ୍କର ଇଷ୍ଟେଟ୍‌ର ରାଜା ରାମପାଲ୍ ସିଂହଙ୍କୁ ଚମତ୍କୃତ କଲା । ରାମପାଲ ସିଂହ ମଦନମୋହନଙ୍କୁ ତାଙ୍କଦ୍ୱାରା ପ୍ରକାଶିତ ହିନ୍ଦୀ ସାପ୍ତାହିକ ହିନ୍ଦୁସ୍ଥାନର ସମ୍ପାଦନା ଦାୟୀତ୍ୱ ନେବା ପାଇଁ ଆମନ୍ତ୍ରଣ କଲେ । ଅଢ଼େଇ ବର୍ଷ ଏହି ଦାୟୀତ୍ୱ ନିର୍ବାହ କରିବା ପରେ ସେ ଆଲ୍ଲାହବାଦ ଆସି ଏଲ୍‌ଏଲ୍‌ବି ଅଧ୍ୟୟନ କଲେ । ସେହି ସମୟରେ 'ଇଣ୍ଡିଆନ୍ ୟୁନିଅନ୍' ନାମକ ଏକ ଇଂରାଜୀ ଦୈନିକପତ୍ରର ଯୁଗ୍ମ ସଂପାଦକ କାର୍ଯ୍ୟ ମଧ୍ୟ ତୁଲାଇଲେ । ୧୮୯୧ ମସିହାରେ ଆଲ୍ଲାହବାଦ ଜିଲ୍ଲା କୋର୍ଟ ଏବଂ ୧୮୯୩ରେ ଆଲ୍ଲାହବାଦ ହାଇକୋର୍ଟରେ ଆଇନ୍ ବ୍ୟବସାୟ କଲେ ।



୧୯୧୯ ମସିହାରେ ମଦନମୋହନ ମାଲବୀୟ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ହେଲେ । ୧୯୧୮ରେ ମଧ୍ୟ ସେ କଂଗ୍ରେସର ସଭାପତି ହୋଇଥିଲେ । ମଦନ ମୋହନ ଜଣେ ମଧ୍ୟମ ପନ୍ଥୀ ନେତା ଭାବେ ପରିଚିତ । ୧୯୧୬ର ଲକ୍ଷ୍ନୌ ସନ୍ଧିରେ ମୁସଲମାନଙ୍କ ପାଇଁ ଦିଆଯାଇଥିବା ଭିନ୍ନ ବିଭରକୁ ସେ ବିରୋଧ କରୁଥିଲେ । ଏହି ସମୟରେ ମହାତ୍ମାଗାନ୍ଧୀ ହିଁ ତାଙ୍କୁ "ମହାମାନ୍ୟ" ଆଖ୍ୟା ଦେଇଥିଲେ ।

ସମାଜରେ ଶିକ୍ଷାର ପ୍ରସାର ଏବଂ ସମାଜସେବାରେ ସମ୍ପୂର୍ଣ୍ଣ ମନୋନିବେଶ କରିବା ଉଦ୍ଦେଶ୍ୟରେ ମଦନମୋହନ ତାଙ୍କର ଲୋଭନୀୟ ଆଇନ୍ ବ୍ୟବସାୟକୁ ୧୯୧୧ ମସିହାରେ ସଂପୂର୍ଣ୍ଣ ରୂପେ ବର୍ଜନ କଲେ । ସନ୍ୟାସ ଧର୍ମର ପାରମ୍ପରିକତା ରକ୍ଷା କରି ସେ ସମାଜର ସାହାଯ୍ୟରେ ଜୀବନଧାରଣ ବ୍ରତ ନେଲେ । ଚୌରୀଚୌରା କେଶରେ ୧୭୭ ଜଣ ସ୍ୱାଧୀନତା ସଂଗ୍ରାମୀଙ୍କୁ ଯେତେବେଳେ ବ୍ରିଟିଶ୍ କୋର୍ଟ ଫାଶୀ ହୁକୁମ୍ ଦେଲେ ମଦନ ମୋହନ ପୁନର୍ବାର ସଂଗ୍ରାମୀମାନଙ୍କ ସପକ୍ଷରେ କୋର୍ଟରେ ହାଜର ହେଲେ । ତାଙ୍କ ଯୁକ୍ତି ବଳରେ ତନ୍ମଧ୍ୟରୁ ୧୫୬ ଜଣଙ୍କୁ ନିର୍ଦ୍ଦୋଷରେ ଖଲାସ କରାଇଥିଲେ ।

୧୯୧୨ ମସିହାରୁ ୧୯୨୬ ଯାଏଁ ସେ ଇମ୍ପେରିଆଲ୍ କାଉନ୍‌ସିଲ୍ ଏବଂ ସେଣ୍ଟ୍ରାଲ୍ ଲେଜିସଲେଟିଭ୍ ଆସେମ୍ବ୍ଲିର ସଭ୍ୟ ରହିଥିଲେ । ମାଲବୀୟ ଅସହଯୋଗ

ଆନ୍ଦୋଳନର ଜଣେ ଗୁରୁତ୍ୱପୂର୍ଣ୍ଣ ସଭ୍ୟ ଥିଲେ । କିନ୍ତୁ କଂଗ୍ରେସ୍‌ର ତୁଷ୍ଟିକରଣ ନୀତି ବିରୁଦ୍ଧରେ ସେ ସ୍ୱର ଉଠାଇଥିଲେ । ଖିଲାଫତ୍ ଆନ୍ଦୋଳନରେ କଂଗ୍ରେସର ଯୋଗଦାନକୁ ସେ ପସନ୍ଦ କରୁନଥିଲେ ।

୧୯୨୮ ମସିହାରେ ମଦନ ମୋହନ, ଲାଲା ଲଜପତ୍ ରାୟ, ଜବାହାରଲାଲ୍ ନେହେରୁ ଏବଂ ଅନ୍ୟାନ୍ୟମାନଙ୍କ ସହ ମିଶି ସାଇମନ୍ କମିଶନ୍ ବିରୁଦ୍ଧରେ ପ୍ରଦର୍ଶନ କଲେ । ସେତେବେଳେ ଇଂଲଣ୍ଡରେ ଯେପରି "ବ୍ରିଟିଶ୍ ଜିନିଷ କିଣ – ବ୍ରିଟିଶ୍ ପଦାର୍ଥ ବ୍ୟବହାର କର" ଅଭିଯାନ ଚାଲିଥିଲା । ଠିକ୍ ସେଇ ଢ଼ାଞ୍ଚାରେ ସେ ୧୯୩୨ ମସିହା ମେ' ମାସ ୩୦ ତାରିଖରେ "ସ୍ୱଦେଶୀ କିଣ" ଇସ୍ତାହାର ପ୍ରସ୍ତୁତ କଲେ । ୧୯୩୦ ମସିହାରେ ସେ ପ୍ରଥମ ଗୋଲ୍ ଟେବୁଲ୍ ବୈଠକରେ ଯୋଗ ଦେଇ ଥିଲେ ।



ଆଇନ୍ ଅମାନ୍ୟ ଆନ୍ଦୋଳନରେ ଯୋଗଦେଇ ୧୯୩୨ ମସିହା ଏପ୍ରିଲ୍ ୨୫ ତାରିଖରେ ସେ ଜେଲ୍‌କୁ ଗଲେ । ଦିଲ୍ଲୀରେ ତାଙ୍କ ସହିତ ଆଉ ପ୍ରାୟ ୪୫୦ଜଣଙ୍କୁ ଜେଲ୍‌ଦଣ୍ଡ ଭୋଗିବାକୁ ପଡ଼ିଲା । ତା'ର ଅଳ୍ପ ଦିନ ପୂର୍ବରୁ ସରୋଜିନୀ ନାଇଡୁ ମଧ୍ୟ ବନ୍ଦୀ ହୋଇଥିଲେ ।

୧୯୩୨ ମସିହା ସେପ୍ଟେମ୍ବର ୨୫ ତାରିଖ ଦିନ ପୁନା ସନ୍ଧି ନାମକ ଏକ ଚୁକ୍ତି ଡକ୍ଟର ଆମ୍ବେଦକର (ହିନ୍ଦୁମାନଙ୍କ ମଧ୍ୟରେ ଥିବା ଦଳିତ ସଂପ୍ରଦାୟ ତରଫରୁ) ଏବଂ ମାଲବୀୟ (ଅନ୍ୟାନ୍ୟ ହିନ୍ଦୁ ସଂପ୍ରଦାୟଙ୍କ ତରଫରୁ)ଙ୍କ ମଧ୍ୟରେ ସ୍ୱାକ୍ଷରିତ ହେଲା । ଏହି ଚୁକ୍ତିରେ ଦଳିତ ଶ୍ରେଣୀ ସଂପ୍ରଦାୟ ପାଇଁ ଅସ୍ଥାୟୀ ବ୍ୟବସ୍ଥାପକ ସଭାରେ ସାଧାରଣ ନିର୍ବାଚନ ଗୋଷ୍ଠୀରେ ହିଁ କିଛି ଆସନ ସଂରକ୍ଷିତ କରାଯିବାର ବ୍ୟବସ୍ଥା ରହିଲା । ଫଳରେ ପୂର୍ବରୁ ବ୍ରିଟିଶ୍ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ସାଂପ୍ରଦାୟିକ ଆୱାର୍ଡ଼ ପ୍ରସ୍ତାବରେ ଥିବା ୭୧ ଆସନ ପରିବର୍ତ୍ତେ ଦଳିତ ବର୍ଗଙ୍କୁ ୧୪୬ ଆସନ୍ ମିଳିଲା । ପରବର୍ତ୍ତୀ ସମୟରେ ଦଳିତ ବର୍ଗ ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତି ବର୍ଗ ଆଖ୍ୟା ପାଇଲେ ।

ସଂଖ୍ୟାଲଘୁଙ୍କ ପାଇଁ ସ୍ୱତନ୍ତ୍ର ଆସନ ସଂରକ୍ଷଣ ପ୍ରସ୍ତାବ ବିରୁଦ୍ଧରେ ମାଳବୀୟ ଏବଂ ମାଧବ ଶ୍ରୀହରି ପ୍ରତିବାଦସ୍ୱରୂପ କଂଗ୍ରେସ ଦଳ ତ୍ୟାଗ କଲେ । ସେ ଅନ୍ୟ କେତେକ ସହକର୍ମୀଙ୍କ ସମର୍ଥନରେ କଂଗ୍ରେସ ନାସନାଲିଷ୍ଟ ପାର୍ଟି ଗଠନ କରି ୧୯୩୪ ନିର୍ବାଚନ ଲଢ଼ିଲେ । ତାଙ୍କ ପାର୍ଟିକୁ ୧୨ଟି ଆସନ ମିଳିଥିଲା ।

ସାମ୍ବାଦିକତା କ୍ଷେତ୍ରରେ ବି ମାଲବ୍ୟ ବ୍ରିଟିଶ୍ ରାଜ ସମୟରେ ବିଚକ୍ଷଣତା ଦର୍ଶାଇଥିଲେ । ୧୮୮୭ ମସିହାରେ ହିନ୍ଦୀ ଖବରକାଗଜର ସଂପାଦକ ଭାବେ ତାଙ୍କ ସାମ୍ବାଦିକତା ଜୀବନ ଆରମ୍ଭ ହୋଇଥିଲା । ୧୯୮୯ ମସିହାରେ ଇଂରାଜୀ ଦୈନିକ ସମ୍ବାଦପତ୍ର 'ଇଣ୍ଡିଆନ୍ ୟୁନିଅନ୍'ର ସଂପାଦକ ହେଲେ । ଲକ୍ଷ୍ନୌରେ ଓକିଲାତି କରୁଥିବା ସମୟରେ ସେ ନିଜର ଏକ ହିନ୍ଦୀ ସାପ୍ତାହିକ 'ଅଭ୍ୟୁଦୟ" ପ୍ରକାଶ କରୁଥିଲେ (୧୯୦୭ ମସିହା -୧୯୦୯ ମସିହା) ।

ଇଂରେଜ ସରକାର ୧୯୦୮ ମସିହାରେ ଭାରତୀୟ ଖବରକାଗଜର ସ୍ୱାଧୀନତାକୁ ନିୟନ୍ତ୍ରଣ କରିବା ଉଦ୍ଦେଶ୍ୟରେ ଏକ ପ୍ରେସ୍ ଏବଂ ନିଉଜ୍‌ପେପର୍ ଆକ୍ଟ ପାରିତ କଲେ । ଏହାର ପ୍ରତିବାଦରେ ମାଲବ୍ୟ ଏକ ଅଭିଯାନ ଚଳାଇ ଆଲ୍ଲାହବାଦଠାରେ ଏକ ସର୍ବଭାରତୀୟ ସମ୍ମିଳନୀ ଡ଼କାଇଥିଲେ ।

ଏହି ଅଭିଯାନକୁ ସଫଳ କରିବା ପାଇଁ ଦେଶରେ ଏକ ଇଂରେଜୀ ଖବର କାଗଜର ଆବଶ୍ୟକତା ଅନୁଭବ କରି ମୋତିଲାଲ୍ ନେହେରୁଙ୍କ ସହାୟତାରେ "ଦି ଲିଡ଼ର୍ ସମ୍ବାଦପତ୍ରର ସଂପାଦକ ଭାବେ ୧୯୦୯ରୁ ୧୯୧୧ ମସିହା ଯାଏଁ ଏବଂ ସଭାପତି ଭାବେ ୧୯୧୧ରୁ ୧୯୧୯ ମସିହା ଯାଏଁ କାର୍ଯ୍ୟଭାର ସମ୍ଭାଳିଥିଲେ । ୧୯୧୦ରୁ ସେ 'ମର୍ଯ୍ୟାଦା' ନାମକ ଏକ ହିନ୍ଦୀ ଖବରକାଗଜ ପ୍ରକାଶିତ କଲେ । ୧୯୨୪ ମସିହାରେ ଲାଲା ଲଜପତ୍ ରାୟ, ଏମ୍.ଆର୍. ଜୟକର ଏବଂ ଶିଳ୍ପପତି ଘନଶ୍ୟାମ୍ ଦାସ ବିରଳା ଆଦିଙ୍କ ସହାୟତାରେ 'ହିନ୍ଦୁସ୍ଥାନ୍ ଟାଇମ୍‌ସ' ପତ୍ରିକାର ଦାୟୀତ୍ୱ ନେଇ ଏହି ସମ୍ବାଦପତ୍ରକୁ ଅକାଳରେ ବନ୍ଦ ହୋଇଯିବାରୁ ରକ୍ଷା କରିଥିଲେ । ୧୯୨୪ରୁ ୧୯୪୬ ମସିହା ଯାଏଁ ସେ ହିନ୍ଦୁସ୍ଥାନ ଟାଇମ୍‌ସ୍‌ର ଚେଆର୍‌ମ୍ୟାନ ପଦରେ ରହିଥିଲେ । ତାଙ୍କରି ପ୍ରୟାସ ଫଳରେ ଏହାର ହିନ୍ଦୀ ସଂସ୍କରଣ ୧୯୩୬ ମସିହାଠାରୁ ପ୍ରକାଶିତ ହେଲା । ଆଜିକାଲି ଏହି ସମ୍ବାଦପତ୍ରର ମାଲିକାନା ସ୍ୱତ୍ତ୍ୱ ବିରଳା ପରିବାର ପାଖରେ ରହିଛି । ୧୯୦୩ ମସିହାରୁ ବନାରସ୍ ହିନ୍ଦୁ ବିଶ୍ୱବିଦ୍ୟାଳୟ ତରଫରୁ ସନାତନ ଧର୍ମ ନାମକ ଏକ ପତ୍ରିକା ପ୍ରକାଶନ କରିଥିଲେ ।



୧୯୧୧ ମସିହାରେ ଆନି ବେସାନ୍ତ ମଦନମୋହନଙ୍କୁ ଭେଟି ବନାରସଠାରେ ଏକ ହିନ୍ଦୁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ ସିଦ୍ଧାନ୍ତ ନେଲେ । କେନ୍ଦ୍ରୀୟ ହିନ୍ଦୁ ମହା ବିଦ୍ୟାଳୟ (୧୮୯୮ ମସିହାରେ ଆନିବେସାନ୍ତଙ୍କ ଦ୍ୱାରା ପ୍ରତିଷ୍ଠିତ)ର ସମସ୍ତ ଟ୍ରଷ୍ଟ ଏହି ମହାବିଦ୍ୟାଳୟକୁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଏକ ଅଂଶ ହେବ ବୋଲି ସରକାରଙ୍କ ପ୍ରସ୍ତାବରେ ସମ୍ମତି ଦେଲେ । ପାର୍ଲାମେଣ୍ଟର ଅନୁମୋଦନ (ବି.ଏଚ୍.ୟୁ. ଆକ୍ଟ -୧୯୧୫) କ୍ରମେ ୧୯୧୬ ମସିହାରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇ ଏଯାବତ ଦେଶର ଏକ ଅଗ୍ରଣୀ ଶିକ୍ଷା ଅନୁଷ୍ଠାନ ହୋଇ ରହିଛି । ସେ ୧୯୩୯ ମସିହାରେ ବିଶ୍ୱ ବିଦ୍ୟାଳୟର କୁଳପତି ପଦରୁ ଅବ୍ୟାହତି ନେଲେ । ସର୍ବପଲ୍ଲୀ ରାଧାକ୍ରିଷ୍ଣନ ତାଙ୍କ ପରେ କୁଳପତି ହେଲେ ।

ସାମାଜିକ ସଂସ୍କାର ଦିଗରେ ବି ମାଲବୀୟଙ୍କ ଅବଦାନ ଅତୁଳନୀୟ ଥିଲା । ଅସ୍ପୃଶ୍ୟତା ନିବାରଣ ଏବଂ ହରିଜନ ଆନ୍ଦୋଳନରେ ସେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ୧୯୩୩ ମସିହାରେ ହରିଜନ ସେବକ ସଂଘର ସଭାରେ ସେ ସଭାପତିତ୍ୱ କରିଥିଲେ । ସେ କହୁଥିଲେ, "ଯଦି ଆତ୍ମା ନିର୍ମଳ ଏବଂ ଅବିନଶ୍ୱର ବୋଲି ତୁମେ ସ୍ୱୀକାର କରୁଛ, ତେବେ ତୁମେ କିମ୍ବା ତୁମ ଧର୍ମ କୌଣସି ବ୍ୟକ୍ତିର ସଂସ୍ପର୍ଶରେ ଦୂଷିତ ହେବାର ଆଂଶକା ନାହିଁ ।" ଅସ୍ପୃଶ୍ୟତା ସମସ୍ୟାର ସମାଧାନ ପାଇଁ ସେ ହିନ୍ଦୁ ଉପାୟ ଅବଲମ୍ବନ କରି ତଥାକଥିତ ଅସ୍ପୃଶ୍ୟମାନଙ୍କୁ ମନ୍ତ୍ରଦୀକ୍ଷା ଦେଇଥିଲେ ।

ଦେବାଳୟମାନଙ୍କରେ ଜାତିପ୍ରଥାର ଉଚ୍ଛେଦ ପାଇଁ ସେ ଅନେକ ସଂସ୍କାରମୂଳକ କାର୍ଯ୍ୟ କରିଥିଲେ । ହିନ୍ଦୁ ମନ୍ଦିରମାନଙ୍କରେ ସମସ୍ତଙ୍କ ପ୍ରବେଶ ଅଧିକାର ପାଇଁ ସେ ଅନେକ ଚେଷ୍ଟା କରିଥିଲେ ।

'ସତ୍ୟମେବ ଜୟତେ' ସ୍ଲୋଗାନ୍‌କୁ ମାଲବ୍ୟ ଜନପ୍ରିୟ କରାଇଥିଲେ । ମାଲବୀୟଙ୍କ ନାମାନୁସାରେ ଆଲ୍ଲାହବାଦ୍, ଲକ୍ଷ୍ନୌ, ଦିଲ୍ଲୀ, ଭୋପାଳ, ଦୁର୍ଗ ଏବଂ ଜୟପୁରରେ ମାଲବ୍ୟ

ନଗରମାନ ସ୍ଥାପିତ/ନାମିତ ହୋଇଛି । ଜବଲପୁର ସହରର ଏକ ମୁଖ୍ୟ ଛକକୁ ତାଙ୍କ ନାମାନୁସାରେ 'ମାଲବ୍ୟ ଚୌକ' କରାଯାଇଛି ।

୧୯୬୧ ମସିହାରେ ତାଙ୍କର ଜନ୍ମ ଶତବାର୍ଷିକୀ ଅବସରରେ ଭାରତୀୟ ଡ଼ାକବିଭାଗ ଏକ ଷ୍ଟାମ୍ପ ପ୍ରବର୍ତ୍ତନ କରିଥିଲେ । ପୁନଶ୍ଚ ୨୦୧୧ ମସିହାରେ ତାଙ୍କର ୧୫୦ ତମ ଜନ୍ମବାର୍ଷିକୀରେ ଆଉ ଗୋଟିଏ ଷ୍ଟାମ୍ପ ତାଙ୍କ ନାମାନୁସାରେ ପ୍ରବର୍ତ୍ତିତ ହୋଇଥିଲା ।

ଜୟପୁରରେ ମାଲବୀୟ ନାସନାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍‌ନୋଲଜୀ (ଏମ୍‌ଏନ୍‌ଆଇଟି) ଏବଂ ଗୋରଖପୁରରେ ମଦନ ମହୋନ ୟୁନିଭରସିଟି ଅଫ୍ ଟେକ୍‌ନୋଲଜୀ ତାଙ୍କ ନାମ ଅନୁସାରେ ପ୍ରତିଷ୍ଠିତ ହୋଇଛି । ତାଙ୍କ ସ୍ମୃତିରେ ଭାରତରେ ଅନ୍ୟାନ୍ୟ ଅନେକ ଅନୁଷ୍ଠାନ ଓ ହଷ୍ଟେଲ୍ ନାମିତ ହୋଇଛି । ଆଇ.ଆଇ.ଟି., ଖଡଗପୁର, ଆଇ.ଆଇ.ଟି., ରୁର୍‌କୀ, ବିଟ୍‌ସ୍ ପିଲାନୀ ଏବଂ ହାଇଦ୍ରାବାଦ୍ କ୍ୟାମ୍ପସ୍ ଇତ୍ୟାଦି ତନ୍ମଧ୍ୟରେ ପ୍ରଧାନ । ତାଙ୍କର ଜନ୍ମଦିନକୁ 'ମହାମାନ୍ୟ ଦିବସ' ଭାବେ ଶ୍ରୀଗୌଡ଼ ବିଦ୍ୟାମନ୍ଦିର, ଇନ୍ଦୋର୍‌ଠାରେ ପାଳନ କରାଯାଏ(୨୫ ଡ଼ିସେମ୍ବର) ।

ହରିଦ୍ୱାରଠାରେ ଗଂଗା ମା'ଙ୍କ ଆରତି ସେ ଆରମ୍ଭ କରିଥିଲେ । ଆଜିଯାଏଁ ସେହି କାର୍ଯ୍ୟକ୍ରମ ଚାଲିଛି । ତାଙ୍କ ସ୍ମୃତିରେ ଗଙ୍ଗା ଘାଟର ଅପର ପାର୍ଶ୍ୱରେ ଥିବା ଏକ ଛୋଟ ଦ୍ୱୀପକୁ ତାଙ୍କ ସ୍ମୃତିରେ ମାଲବୀ-ଦ୍ୱୀପ କୁହାଯାଏ ।

ସଂସଦ ଭବନର କେନ୍ଦ୍ରୀୟ କକ୍ଷରେ ମହାମାନ୍ୟ ମାଳବ୍ୟଙ୍କର ଏକ ସଂପୂର୍ଣ୍ଣ ତୈଳ ଚିତ୍ର ତତ୍‌କାଳୀନ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ରପ୍ରସାଦଙ୍କ ଦ୍ୱାରା ଉନ୍ମୋଚିତ ହୋଇଥିଲା । ତାଙ୍କର ଏକ ପୂର୍ଣ୍ଣ ଅବୟବ ମୂର୍ତ୍ତି ୧୯୬୧ ମସିହାରେ ଡ଼କ୍ଟର ଏସ୍.ରାଧାକ୍ରିଷ୍ଣନ୍‌ଙ୍କ ସାମ୍ନାରେ ଅନାବରଣ କରାଯାଇଥିଲା । ଆସେମ୍ବ୍ଲିହଲ୍‌ର ମୁଖ୍ୟ ଫାଟକ ସାମ୍ନାରେ ମାଲବ୍ୟଙ୍କର ଏକ ଆବକ୍ଷ ପ୍ରତିମୂର୍ତ୍ତି ଦିଲ୍ଲୀର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ଡ଼କ୍ଟର ଏଏନ୍ ଝାଙ୍କ ଦ୍ୱାରା ୧୯୭୧ ମସିହାରେ ଉନ୍ମୋଚିତ ହୋଇଥିଲା ।

ଦିଲ୍ଲୀର ଦୀନଦୟାଲ୍ ମାର୍ଗଠାରେ ତତ୍‌କାଳୀନ ରାଷ୍ଟ୍ରପତି ଏ. ପି. ଜେ. ଅବୁଲକାଲମ୍‌ଙ୍କ କରକମଳରେ ୨୦୦୮ ଡ଼ିସେମ୍ବର ୨୫ ତାରିଖ ଦିନ ମହାମାନ୍ୟ ମଦନ ମୋହନ ମାଲବ୍ୟ ଜାତୀୟ ସ୍ମାରକୀର ଶୁଭ ଉନ୍ମୋଚନ କରାଯାଇଥିଲା ।

ମାଲବ୍ୟଙ୍କ କର୍ମମୟ ଜୀବନରେ ସେ ଅନେକ କବିତା, ଏବଂ ରାଜନୈତିକ ଓ ସାମାଜିକ ସମସ୍ୟାର ବିଶ୍ଳେଷଣାତ୍ମକ ପ୍ରବନ୍ଧ ରଚନା କରିଛନ୍ତି । ତାଙ୍କ ଦ୍ୱାରା ପ୍ରଣିତ ପୁସ୍ତକମାନଙ୍କ ମଧ୍ୟରେ "ଏ କ୍ରିଟିସଜମ୍ ଅଫ୍ ମଣ୍ଟେଗୁ ଚେମ୍ସ୍ ପୋର୍ଟ୍ ପ୍ରପୋଜାଲ୍ସ୍ ଅଫ୍ ଇଣ୍ଡିଆନ୍ କନଷ୍ଟିଚ୍ୟୁସନାଲ୍ ରିଫର୍ମ" ଅନ୍ୟତମ ।

ମହାମାନ୍ୟଙ୍କ ଜୀବନୀ ଆଧାରିତ ଅନେକ ପୁସ୍ତକ ପ୍ରକାଶିତ ହୋଇଛି । "ମାଲବୀୟଜୀ - ଏ ବ୍ରିଫ୍ ସ୍କେଚ୍ ଅଫ୍ ପଣ୍ଡିତ ମଦନ ମୋହନ ମାଲବୀୟ" (ଲେଖକ : ବି.କେ.ଅକ୍କଡ଼), ମାଲବୀୟଜୀ - ଏ ବିବ୍ଲିଓଗ୍ରାଫି ଅଫ୍ ପଣ୍ଡିତ ମଦନ ମୋହନ ମାଲବୀୟ (ଲେଖକ୍ : ସାୟାଜୀ ରାଓ), ରୋଲ୍ ଅଫ୍ ପଣ୍ଡିତ ମଦନ ମୋହନ ମାଲବୀୟ ଇନ୍ ଆୱାର୍ ନାସନାଲ୍ ଲାଇଫ୍ ପଲିଟିକାଲ୍ ଷ୍ଟଡ଼ି(ଲେଖକ : ସୁନ୍ଦରଲାଲ୍ ଗୁପ୍ତା) ଆଦି ପ୍ରଧାନ । ଏହା ବ୍ୟତୀତ ପରମାନନ୍ଦ, ଶ୍ରୀରାମ ବକ୍ସି, ସୀତାରାମ ଚତୁର୍ବେଦୀ ଏବଂ ଏସ୍. କେ. ମାଇତି ଆଦି ଲେଖକମାନେ ମଧ୍ୟ ଏହି ଜନନାୟକଙ୍କ ବିଷୟରେ ପୁସ୍ତକମାନ ରଚନା କରିଛନ୍ତି ।

ମହାମାନ୍ୟଙ୍କର ୮୪ ବର୍ଷର କର୍ମମୟ ଜୀବନ ଦେଶ ଓ ଦଶ ପାଇଁ ସମର୍ପିତ ହୋଇଥିଲା । ଜୀବନର ଶେଷକ୍ଷଣଯାଏଁ ସେ ଭାରତର ସ୍ୱାଧୀନତା, ଶିକ୍ଷାର ପ୍ରସାର ଏବଂ ସାମାଜିକ ସଂସ୍କାର ବିଷୟରେ ଚିନ୍ତା କରୁଥିଲେ । ପ୍ରତ୍ୟେକ ପ୍ରତିବନ୍ଧକ ଅତିକ୍ରମ କରିବାରେ ସେ ପାରଙ୍ଗମତା ଦର୍ଶାଇଥିଲେ । କିନ୍ତୁ ଜୀବନର ଅନ୍ତିମ ସତ୍ୟ "ମୃତ୍ୟୁ" ନିକଟରେ ସେ ହାରିଗଲେ । ଦେଶର ସ୍ୱାଧୀନତା ପାଇଁ ସୁଦୃଢ଼ ଭିତ୍ତିପ୍ରସ୍ତର ପକାଇଥିଲେ ହେଁ ସ୍ୱାଧୀନ ଭାରତକୁ ଦେଖିବା ପୂର୍ବରୁ ଇହଲୀଳା ସମ୍ବରଣ କଲେ । ୧୯୪୬ ମସିହା ନଭେମ୍ବର ୧୨ ତାରିଖ ଦିନ ତାଙ୍କର ମହାପ୍ରୟାଣ ହେଲା ।

୨୦୧୪ ମସିହା ଡ଼ିସେମ୍ବର ୨୪ ତାରିଖ ଦିନ (ତାଙ୍କର ଜନ୍ମତିଥିରୁ ପୂର୍ବଦିନ) ଭାରତ ସରକାର ତାଙ୍କୁ ମରଣୋତ୍ତର ସର୍ବୋଚ୍ଚ ନାଗରିକ ସମ୍ମାନ "ଭାରତ ରତ୍ନ"ରେ ବିଭୂଷିତ କଲେ ।

* * *

# ଅଟଳ ବିହାରୀ ବାଜପେୟୀ



୧୯୨୪

ଭାରତ ରତ୍ନ - ୨୦୧୪

ଭାରତର ଏକାଦଶ ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ ଗୋଆଲିଅରଠାରେ ୧୯୨୪ ମସିହା ଡ଼ିସେମ୍ବର ୨୫ ତାରିଖ ଦିନ ଏକ ମଧ୍ୟବିତ୍ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଶ୍ରୀ କୃଷ୍ଣ ବିହାରୀ ବାଜପେୟୀ ଜଣେ କବି ଓ ସ୍କୁଲ ଶିକ୍ଷକ ଥିଲେ । ପିଲାଦିନେ ଅଟଳ ବିହାରୀ ଗୋଆଲିଅର୍ ନିକଟସ୍ଥ ଗୋରକୀ ସରସ୍ୱତୀ ଶିଶୁ ମନ୍ଦିର ଏବଂ ପରେ ଭିକ୍ଟୋରିଆ କଲେଜ (ବର୍ତ୍ତମାନ ଲକ୍ଷ୍ମୀବାଈ

କଲେଜ)ରେ ଶିକ୍ଷାଗ୍ରହଣ କରିଥିଲେ । ହିନ୍ଦୀ, ଇଂରାଜୀ ଏବଂ ସଂସ୍କୃତରେ ଡ଼ିଷ୍ଟିଂସନ୍ ପାଇ ସେ ସ୍ନାତକ ହୋଇଥିଲେ । ତା'ପରେ କାନପୁରସ୍ଥିତ ଦୟାନନ୍ଦ ଆଂଲୋବେଦିକ କଲେଜ୍‌ରୁ ରାଜନୀତି ବିଜ୍ଞାନରେ ଏମ୍.ଏ. ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ଜଣେ ସାମାଜିକ କର୍ମୀ ଭାବରେ ତାଙ୍କର କର୍ମମୟ ଜୀବନର ଶୁଭାରମ୍ଭ ଗୋଆଲିଅର୍ ମାଟିରୁହିଁ ହୋଇଥିଲା । ଆର୍ଯ୍ୟ ସମାଜର ଯୁବ ସଂଗଠନ ଆର୍ଯ୍ୟକୁମାର ସଭାର ସେ ସାଧାରଣ ସଂପାଦକ ଭାବେ ୧୯୪୪ ମସିହାରେ କାର୍ଯ୍ୟଭାର ବହନ କଲେ । ୧୯୩୯ମସିହାରୁ ସେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ (ଆର୍‌ଏସ୍‌ଏସ୍) ର ସ୍ୱୟଂସେବକ ହୋଇଥିଲେ । ବାବା ସାହେବ ଆମ୍ରେଙ୍କ ଦ୍ୱାରା ପ୍ରଭାବିତ ହୋଇ ୧୯୪୦-୪୪ ମସିହାରେ ସେ ବିଭିନ୍ନ ଅଧିକାରୀ ତାଲିମ୍ କ୍ୟାମ୍ପରେ ଯୋଗ ଦେଇ ଶେଷରେ ୧୯୪୭ ମସିହାରେ ଜଣେ ନିୟମିତ ପ୍ରଚାରକ ଭାବେ ଆର୍‌ଏସ୍‌ଏସ୍ ପାଇଁ କାର୍ଯ୍ୟରତ ହେଲେ । ଦୀନଦୟାଲ୍ ଉପାଧ୍ୟାୟଙ୍କ ସଂପାଦିତ ରାଷ୍ଟ୍ରଧାରଣା (ହିନ୍ଦୀ ମାସିକ), ପାଞ୍ଚଜନ୍ୟ (ହିନ୍ଦୀ ସାପ୍ତାହିକ) ଏବଂ ଦୈନିକ ସଂବାଦପତ୍ର ସ୍ୱଦେଶ ଏବଂ ବୀର ଅର୍ଜୁନ ପାଇଁ ନିୟମିତ ଲେଖାଲେଖି କଲେ । ସାମାଜିକ କାର୍ଯ୍ୟପାଇଁ ତାଙ୍କର ଏକନିଷ୍ଠତା ଏବଂ ବଚନବଦ୍ଧତା ଯୋଗୁଁ ସେ ବିବାହ କଥା ଚିନ୍ତା ନକରି ସାରାଜୀବନ ଅବିବାହିତ ରହିବା ପାଇଁ ବ୍ରତ ନେଲେ ।

୧୯୪୨ ମସିହାରେ 'ଭାରତ ଛାଡ଼' ଆନ୍ଦୋଳନରୁ ହିଁ ବାଜପେୟୀଙ୍କ ରାଜନୈତିକ ଜୀବନର ସୂତ୍ରପାତ ହେଲା । ସେ ଓ ତାଙ୍କର ବଡ଼ଭାଇ ପ୍ରେମ୍‌ଙ୍କୁ ବ୍ରିଟିଶ ସରକାର ୨୩ ଦିନ ପାଇଁ ଜେଲ୍ ଦଣ୍ଡ ଦେଲେ । ଆଉ କେବେ ଏପରି ଆନ୍ଦୋଳନାତ୍ମକ କାର୍ଯ୍ୟରେ ଯୋଗଦେବେ ନାହିଁ ବୋଲି ତାଙ୍କଠାରୁ ଲେଖାଇ ନେବା ପରେ ବ୍ରିଟିଶ ସରକାରଙ୍କଠାରୁ ସେ ମୁକୁଳି ଆସିଥିଲେ ।

୧୯୫୧ ମସିହାରେ ନୂଆକରି ଗଢ଼ି ଉଠିଥିବା ଭାରତୀୟ ଜନ ସଂଘ ଦଳ ପାଇଁ ଦୀନଦୟାଲ୍ ଉପାଧ୍ୟାୟଙ୍କ ସହିତ ମିଶି କାମ କରିବା ପାଇଁ ବାଜପେୟୀଙ୍କ ନାମ ଆର୍‌ଏସ୍‌ଏସ୍ ଦ୍ୱାରା ସୁପାରିଶ କରାଗଲା । ଏହି ଦଳର ସାଧାରଣ ସଂପାଦକ ଭାବେ ସେ ଉତ୍ତର ଅଂଚଳ ଦାୟିତ୍ୱରେ ରହିଲେ । ଦିଲ୍ଲୀରେ ତାଙ୍କ କାର୍ଯ୍ୟାଳୟ ଥିଲା । ଖୁବ୍ କମ୍ ସମୟରେ ଦଳର ନେତା ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କର ସେ ଖୁବ୍ ପ୍ରିୟପାତ୍ର ଏବଂ ନିକଟତମ ବ୍ୟକ୍ତି ଭାବେ ନିଜକୁ ପ୍ରତିଷ୍ଠିତ କରାଇ ପାରିଥିଲେ । ଶ୍ୟାମା ପ୍ରସାଦ ମୁଖାର୍ଜୀ କାଶ୍ମୀରରେ

ଅଣ କାଶ୍ମୀରୀ ଭାରତୀୟମାନଙ୍କୁ ହେଉଥିବା କୁତ୍ସିତ ବ୍ୟବହାର ବିରୁଦ୍ଧରେ ଆମରଣ ଅନଶନ କରି ଜେଲ୍‌ରେ ଥାଇ ମୃତ୍ୟୁବରଣ କଲେ(୧୯୫୭), ସେହିବର୍ଷ ପ୍ରଥମଥର ପାଇଁ ବଳରାମପୁର ନିର୍ବାଚନମଣ୍ଡଳୀରୁ ବାଜପେୟୀ ଲୋକସଭାକୁ ନିର୍ବାଚିତ ହେଲେ । ପ୍ରଥମ ଥର ଲୋକସଭାରେ ପଦାର୍ପଣ କରିଥିଲେ ହେଁ ତାଙ୍କର ଭାଷଣ ଶୁଣି ତତ୍‌କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ୍ ନେହେରୁ ବିମୋହିତ ହୋଇ ଭବିଷ୍ୟବାଣୀ କରିଥିଲେ ଯେ, "ଦିନେ ବାଜପେୟୀ ଭାରତର ପ୍ରଧାନମନ୍ତ୍ରୀ ହେବେ ।"



ତାଙ୍କର ଅସାଧାରଣ ବାଗ୍ମୀତା ଏବଂ ଅଦ୍ୱିତୀୟ ସାଂଗଠିନକ ଦକ୍ଷତା ଯୋଗୁଁ ଦୀନଦୟାଲ୍ ଉପାଧ୍ୟାୟଙ୍କ ଦେହାନ୍ତ ପରେ ସେ ହିଁ ଜନସଂଘ ଦଳର ସଭାପତି ଆସନ ଅଳଙ୍କୃତ କରିଥିଲେ ଏବଂ ନାନାଜୀ ଦେଶମୁଖ, ବଲ୍‌ରାଜ ମାଧୋକ ଏବଂ ଲାଲ୍‌କୃଷ୍ଣ ଆଡଭାନୀଙ୍କ ସହ ମିଶି ଏହି ଦଳକୁ ଜାତୀୟ ସ୍ତରରେ ପ୍ରତିଷ୍ଠିତ କରିପାରିଲେ ।

୧୯୯୬ ମସିହାରେ ଦେଶର ପ୍ରଧାନମନ୍ତ୍ରୀ ହେବା ପୂର୍ବରୁ ବାଜପେୟୀଙ୍କୁ ଅନେକ ଉତ୍‌ଥାନ ପତନର ସମ୍ମୁଖୀନ ହେବାକୁ ପଡ଼ିଛି । ୧୯୭୫ ମସିହାରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧି ଦେଶରେ ଆଭ୍ୟନ୍ତରିଣ ଜରୁରୀ ପରିସ୍ଥିତି ଘୋଷଣା କଲେ । ଲୋକତନ୍ତ୍ର ବିରୋଧୀ ଏହି ଆଦେଶ ବିରୋଧରେ ସମସ୍ତ ବିରୋଧୀ ଦଳ ନେତାମାନେ ଆନ୍ଦୋଳନ କଲେ । ବାଜପେୟୀଙ୍କ ସମେତ ସମସ୍ତ ଆନ୍ଦୋଳନକାରୀ ନେତାମାନଙ୍କୁ ଦମନ କରି ଶ୍ରୀମତୀ ଗାନ୍ଧି ସେମାନଙ୍କୁ ବନ୍ଦୀ କଲେ । ପରେ ୧୯୭୭ ମସିହାରେ ପୁନର୍ବାର ନିର୍ବାଚନ ହେଲା । ସମାଜ ସଂସ୍କାରକ ବିପ୍ଳବୀ ନେତା ଜୟପ୍ରକାଶ ନାରାୟଣଙ୍କ ଆହ୍ୱାନ କ୍ରମେ ସମସ୍ତ ବିପକ୍ଷ ଦଳ କଂଗ୍ରେସ ଦଳ ବିରୁଦ୍ଧରେ ଏକଜୁଟ୍ ହୋଇ ଜନତା ଦଳ ଗଠନ କଲେ । ଏହି ଦଳରେ ଜନସଂଘ ମଧ୍ୟ ମିଳିତ ହେଲା ।

୧୯୭୭ ମସିହାର ସାଧାରଣ ନିର୍ବାଚନରେ ଜନତା ଦଳ ବିପୁଳ ବିଜୟ ହାସଲ କରି ଶ୍ରୀ ମୋରାର୍ଜୀ ଦେଶାଇଙ୍କ ପ୍ରଧାନମନ୍ତ୍ରିତ୍ୱରେ ସରକାର ଗଠନ କଲା ।

ବାଜପେୟୀ ଉକ୍ତ ମନ୍ତ୍ରିମଣ୍ଡଳରେ ବିଦେଶ ମନ୍ତ୍ରୀ ଭାବେ କାର୍ଯ୍ୟଭାର ସମ୍ଭାଳିଲେ । ତାଙ୍କ ମନ୍ତ୍ରିତ୍ୱ ସମୟରେ ସେ ପ୍ରଥମ ଭାରତୀୟ ହିସାବରେ ଜାତିସଂଘର ସାଧାରଣ ପରିଷଦରେ ହିନ୍ଦୀ ଭାଷାରେ ତାଙ୍କ ଭାଷଣ ଦେଇଥିଲେ । ୧୯୭୯ ମସିହାରେ ଏହି ମନ୍ତ୍ରିମଣ୍ଡଳ ଭାଙ୍ଗିଗଲା । ଏଇ ସଂକ୍ଷିପ୍ତ କାଳ ମଧ୍ୟରେ ବାଜପେୟୀ ଜାତୀୟ ଏବଂ ଅନ୍ତଃରଷ୍ଟ୍ରୀୟ ସ୍ତରରେ ନିଜକୁ ଜଣେ ରାଷ୍ଟ୍ରବାଦୀ ନେତା ଭାବେ ପ୍ରତିଷ୍ଠିତ କରାଇପାରିଥିଲେ ।

ସରକାରଙ୍କ ପତନ ସହିତ ଜନତା ପାର୍ଟିର ବି ବିଲୟ ଘଟିଲା । ସେହି ଅବସରରେ ବାଜପେୟୀ ତାଙ୍କର ପୁରାତନ ସହଯୋଗୀ, ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘର କର୍ମକର୍ତ୍ତା, ତାଙ୍କର ପୁରାତନ ବଂଧୁ ଲାଲକୃଷ୍ଣ ଆଡ଼ଭାନୀ ଏବଂ ଭୈରୋସିଂ ସେଖାୱାତ୍ ଆଦିଙ୍କୁ ନେଇ ଭାରତୀୟ ଜନତା ପାର୍ଟି (ବି.ଜେ.ପି.)ର ସ୍ଥାପନା କଲେ (୧୯୮୦) ସେ ବି.ଜେ.ପି.ର ପ୍ରଥମ ସଭାପତି ଭାବେ ନିର୍ବାଚିତ ହେଲେ ।

୧୯୮୪ ସାଧାରଣ ନିର୍ବାଚନରେ ବି.ଜେ.ପି. ପାର୍ଲାମେଣ୍ଟର ମାତ୍ର ଦୁଇଟି ସିଟ୍ ଜିତିଥିଲା । କିନ୍ତୁ ବାଜପେୟୀ ବିରୋଧୀ ଦଳର ନେତା ହେଲେ ।

ବିଶ୍ୱ ହିନ୍ଦୁ ପରିଷଦ ଏବଂ ଆର୍‌ଏସ୍‌ଏସ୍ ଇତି ମଧ୍ୟରେ ରାମ ଜନ୍ମଭୂମି ମନ୍ଦିର ଆନ୍ଦୋଳନ ଆରମ୍ଭ କଲେ । ଅଯୋଧ୍ୟାରେ ଭଗବାନ ରାମଚନ୍ଦ୍ରଙ୍କ ମନ୍ଦିର ନିର୍ମାଣ କରାଇବା ଏମାନଙ୍କ ଲକ୍ଷ୍ୟ ଥିଲା । ରାଜନୈତିକ ସ୍ତରରେ ବିଜେପି ଏହି ଆନ୍ଦୋଳନକୁ ସମର୍ଥନ କରୁଥିଲା ।



ପରବର୍ତ୍ତୀ କାଳରେ ୧୯୯୫ ମାର୍ଚ୍ଚ ମାସରେ ଗୁଜୁରାଟ ଏବଂ ମହାରାଷ୍ଟ୍ରରେ ବିଧାନସଭା ପାଇଁ ନିର୍ବାଚନରେ ବିଜୟ ହାସଲ କରି ବିଜେପି ଦଳ ଖୁବ୍ ଉତ୍ସାହିତ ହେଲା । ତା' ପୂର୍ବରୁ ୧୯୯୪ ମସିହାରେ କର୍ଣ୍ଣାଟକ ବିଧାନସଭା ନିର୍ବାଚନରେ ମଧ୍ୟ ବିଜେପି ଆଶାନୁରୂପ ବିଜୟ ଲାଭ କରିଥିଲା । ଏହାପରେ ୧୯୯୬ ମସିହା ପାର୍ଲାମେଣ୍ଟରେ ପାଇଁ ହୋଇଥିବା ସାଧାରଣ ନିର୍ବାଚନରେ ବିଜେପି ବିଜୟ ହାସଲ କଲା ।

୧୯୯୬ଠାରୁ ୨୦୦୪ ମସିହା ମଧ୍ୟରେ ଅଟଳ ବିହାରୀ ବାଜପେୟୀ ୩ଥର ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଅବଧି ପାଇଁ ଭାରତର ପ୍ରଧାନମନ୍ତ୍ରୀ ହୋଇଛନ୍ତି । ୧୯୯୬ ମସିହା ମେ' ମାସରେ ପ୍ରଥମ ଥର ପାଇଁ ସେ ପ୍ରଧାନମନ୍ତ୍ରୀ ହେଲେ । ସଂସଦରେ ବିଜେପି ସବୁଠାରୁ ବଡ଼ ଦଳ ହୋଇଥିବାରୁ ରାଷ୍ଟ୍ରପତି ଶଙ୍କର ଦୟାଲ୍ ଶର୍ମା ବାଜପେୟୀଙ୍କୁ ପ୍ରଧାନମନ୍ତ୍ରୀ ପଦରେ ଅଭିଷିକ୍ତ କଲେ । କିନ୍ତୁ ସଂସଦରେ ତାଙ୍କ ଦଳ ଆବଶ୍ୟକ ସଂଖ୍ୟା ଗରିଷ୍ଠତା ଦେଖାଇବାରେ ଅକ୍ଷମ ହେବାଯୋଗୁ ମାତ୍ର ୧୩ ଦିନ ଏହି ମନ୍ତ୍ରିମଣ୍ଡଳ ତିଷ୍ଠି ପାରିଥିଲା ।

୧୯୯୬ଠାରୁ ୧୯୯୮ ମଧ୍ୟରେ ଦୁଇଥର ମିଳିତ ସରକାରର ପତନ ହେବାପରେ ଲୋକସଭା ଭଂଗ କରାଯାଇ ପୁନର୍ବାର ନିର୍ବାଚନ କରାଗଲା । (୧୯୯୮) ଏହି ନିର୍ବାଚନରେ ସମଭାବପନ୍ନ ଅନେକ ଦଳ ବିଜେପି ନେତୃତ୍ୱରେ ସଂଗଠିତ ହୋଇ ଜାତୀୟ ଗଣତାନ୍ତ୍ରିକ ସାମ୍ମୁଖ୍ୟ (ଏନ୍.ଡ଼ି.ଏ.) ଗଠିନ କଲେ । ନିର୍ବାଚନରେ ବିପୁଳ ବିଜୟ ହାସଲ କରି ଏନ୍.ଡ଼ି.ଏ. ସରକାର ଗଠନ କଲା । ବାଜପେୟୀ ୨ୟ ଥର ପ୍ରଧାନମନ୍ତ୍ରୀ ହେଲେ । ଏଥରର ସରକାର ମଧ୍ୟ ଅନେକ ଅସୁବିଧାର ସମ୍ମୁଖୀନ ହେଲା । ସାମ୍ମୁଖ୍ୟରେ ଥିବା ଏଆଇଡ଼ିଏମକେ ଦଳ ତା'ର ସମର୍ଥନ ପ୍ରତ୍ୟାହାର କରି ନେବା ଯୋଗୁଁ ମାତ୍ର ଗୋଟିଏ ଭୋଟ୍‌ରେ ସରକାରର ପତନ ହେଲା । (୧୭, ଏପ୍ରିଲ୍ ୧୯୯୯) । ଏହି ସରକାରଙ୍କ ଅବଧି ଥିଲା ମାତ୍ର ୧୩ ମାସ ।

ମାତ୍ର ୧୩ ମାସ ପ୍ରଧାନମନ୍ତ୍ରୀତ୍ୱ କାଳରେ ବାଜପେୟୀ ଦେଶକୁ ଶକ୍ତିଶାଳୀ କରାଇବା ତଥା ଅନ୍ତଃରାଷ୍ଟ୍ରୀୟ ସ୍ତରରେ ଦେଶର ଶକ୍ତି ପ୍ରଦର୍ଶନ କରାଇବା ପାଇଁ ଅହରହ ପ୍ରୟାସ କରିଥିଲେ । ୧୯୯୮ ମସିହା ମେ' ମାସରେ ରାଜସ୍ଥାନର ପୋଖରାନଠାରେ ଭୂତଳ ଆଣବିକ ପରୀକ୍ଷା କରାଇ ସେ ଭାରତକୁ ପରମାଣୁ ଶକ୍ତି ସମ୍ପନ୍ନ ଦେଶମାନଙ୍କ ଗୋଷ୍ଠୀରେ ସାମିଲ କରାଇପାରିଥିଲେ । ଏହି ପରୀକ୍ଷାକୁ ଋଷିଆ ଏବଂ ଫ୍ରାନ୍ସ ପରି ଦେଶମାନେ ସମର୍ଥନ କଲେ ହେଁ ଆମେରିକା, କାନାଡ଼ା, ଜାପାନ ଓ ଇଂଲଣ୍ଡ ଆଦି ଦେଶ ଏହାର ବିରୋଧ କଲେ ଏବଂ ଭାରତକୁ ମିଳୁଥିବା ଅନେକ ଅନୁଦାନ ତଥା ବାଣିଜ୍ୟିକ ବିନିଯୋଗ ହ୍ରାସ କରିଦେଲେ । ଅନ୍ତଃରାଷ୍ଟ୍ରୀୟ ସ୍ତରରେ ପ୍ରତିବାଦର ସମ୍ମୁଖୀନ ହେଲେ ହେଁ ବାଜପେୟୀଙ୍କ ପ୍ରତି ଆଭ୍ୟନ୍ତରୀଣ ସମର୍ଥନ ବୃଦ୍ଧି ପାଇଲା ।

୧୯୯୮-୯୯ ମସିହାରେ ପାକିସ୍ତାନ ସହିତ କୂଟନୈତିକ ଶାନ୍ତି ପ୍ରକ୍ରିୟା ଆରମ୍ଭ କଲେ ବାଜପେୟୀ । ଫେବୃଆରୀ ୧୯୯୯ରେ ଐତିହାସିକ ଲାହୋର-ଦିଲ୍ଲୀ ବସ୍ ସେବା ଆରମ୍ଭ କରାଗଲା । କାଶ୍ମୀର ସମସ୍ୟା ଏବଂ ଅନ୍ୟାନ୍ୟ ଦ୍ୱିପାକ୍ଷିକ ଭୁଲ ବୁଝାମଣା ସମାଧାନ ପାଇଁ ସେ ଅନେକ ପଦକ୍ଷେପ ନେଲେ । ଫଳରେ ଲାହୋର ଡ଼ିକ୍ଲାରେସନ୍‌ର ସୂତ୍ରପାତ ହେଲା । ଦୁଇ ଦେଶ ମଧ୍ୟରେ ବାଣିଜ୍ୟିକ ସମ୍ପର୍କ ବୃଦ୍ଧି ସହିତ ପାରିସ୍ପରିକ ବନ୍ଧୁତ୍ୱ ଏବଂ ଦକ୍ଷିଣ ଏସିଆକୁ ଅଣ-ଆଣବିକ ଅଂଚଳରେ ପରିଣତ କରିବାର ସ୍ୱପ୍ନ ଦେଖୁଥିଲେ ବାଜପେୟୀ । ଫଳରେ ୧୯୯୮ ମସିହାରେ ଉଭୟ ଦେଶରେ ହୋଇଥିବା ଆଣବିକ ପରୀକ୍ଷା ପରେ ଦୁଇ ଦେଶ ମଧ୍ୟରେ ସୃଷ୍ଟି ହୋଇଥିବା ଉତ୍ତେଜନା ଉପଶମିତ ହେଲା ।

ଖବର ମିଳିଲା ଯେ, କାରଗିଲ୍ ସେକ୍ଟରରେ ଆତଙ୍କବାଦୀ ସଂଗଠନ ଏବଂ ବିନା ୟୁନିଫର୍ମରେ ପାକିସ୍ତାନୀ ସୈନିକମାନେ ପାକିସ୍ତାନୀ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ କାଶ୍ମୀର ସୀମାର ପାହାଡ଼ ଅଗ୍ରରେ ପ୍ରବେଶ କରି ଦ୍ରୁତ ଗତିରେ ଆଗକୁ ମାଡ଼ି ଆସୁଛନ୍ତି । କାରଗିଲ୍, ବଟାଲିକ୍ ଏବଂ ଅଖନୁର୍ ସେକ୍ଟରରେ ଏହି ଅନୁପ୍ରବେଶ ହୋଇଥିଲା । ଏହାର ମୁକାବିଲା କରିବା ପାଇଁ ଭାରତୀୟ ସୈନିକମାନଙ୍କୁ ତତ୍‌କ୍ଷଣାତ୍ ସେ ସବୁ ଅଂଚଳକୁ ପଠାଯାଇ ପାକିସ୍ତାନୀମାନଙ୍କୁ ଉଚିତ୍ ଜବାବ ଦିଆଗଲା । ଯୁଦ୍ଧ ୩ ମାସ କାଳ ଚାଲିଲା । ପ୍ରାୟ ୫୦୦ ଜବାନ୍ ଏବଂ ଅଫିସର୍ ସହିଦ୍ ହେଲେ । ଏହି ଯୁଦ୍ଧରେ ପାକିସ୍ତାନର ପ୍ରାୟ ୪୦୦୦ ସୈନିକ ପ୍ରାଣ ହରାଇଲେ । ଭାରତ ପ୍ରାୟ ଶତକଡ଼ା ୭୦ ଭାଗ ଅଂଚଳ ସେମାନଙ୍କ କବଳରୁ ମୁକ୍ତ କରିପାରିଲା । ସେହି ସମୟରେ ପାକିସ୍ତାନ ଭାରତ ବିରୁଦ୍ଧରେ ଆଣବିକ ହତିଆର୍ ପ୍ରୟୋଗ କରିବାର ଯୋଜନା କରୁଥିଲା । ତତ୍‌କାଳୀନ ଆମେରିକା ପ୍ରେସିଡ଼େଣ୍ଟ ବିଲ୍ କ୍ଲିଣ୍ଟନ୍ ନୱାଜ୍ ସରିଫଙ୍କୁ ଆମେରିକା ଡ଼କାଇ ଏପରି ହୀନ ଉଦ୍ୟମ ନକରିବା ପାଇଁ ତାଗିଦ୍ କରିବାରୁ ପାକିସ୍ତାନ ତହିଁରୁ ବିରତ ହେଲା । ଶେଷରେ ପାକିସ୍ତାନୀ ସୈନିକମାନେ ନିୟନ୍ତ୍ରଣ ରେଖାକୁ ଫେରିଯିବାକୁ ବାଧ୍ୟ ହେଲେ ।

ବାଜପେୟୀଙ୍କ ବଳିଷ୍ଠ ଏବଂ ସାହସିକ ପଦକ୍ଷେପ ପାଇଁ ସମଗ୍ର ଦେଶରେ ତାଙ୍କୁ ଭୂରି ଭୂରି ପ୍ରଶଂସା ମିଳିଲା । ଦେଶରେ ୨୬ ଜୁଲାଇ କାରଗିଲ୍ 'ବିଜୟ ଦିବସ' ରୂପେ ପାଳିତ ହେଲା ।

୧୯୯୯ ମସିହାରେ ହୋଇଥିବା ସାଧାରଣ ନିର୍ବାଚନରେ ବାଜପେୟୀଙ୍କ ନେତୃତ୍ୱରେ ଏନ୍.ଡ଼ି.ଏ. ପୁନର୍ବାର ବିଜୟ ଲାଭ କଲା । ବାଜପେୟୀ ୩ୟ ଥର ପାଇଁ ପ୍ରଧାନମନ୍ତ୍ରୀ ହେଲେ । ୨୧ଟି ଛୋଟ ବଡ଼ ଦଳକୁ ନେଇ ସରକାର ଗଠନ କରି ସେ ପ୍ରଥମ ଥର ପାଇଁ ସଂପୂର୍ଣ୍ଣ ୫ ବର୍ଷ ରାଜତ୍ୱ କଲେ ।

ସେ ହୃଦୟଙ୍ଗମ କଲେ ଯେ ଦେଶର ସାମାଜିକ ଓ ଅର୍ଥନୈତିକ ପ୍ରଗତି ପାଇଁ ଭିତ୍ତିଭୂମି ବିକାଶ ନିତାନ୍ତ ଆବଶ୍ୟକ । ପ୍ରଥମେ ଭାରତର ୪ଟି ମହାନଗରୀକୁ ଯାତାୟାତ ସୁବିଧା ଏବଂ ଗ୍ରାମାଞ୍ଚଳରମାନଙ୍କୁ ଯାତାୟାତର ସୁବନ୍ଦୋବସ୍ତ ପାଇଁ ଦିଲ୍ଲୀ, କୋଲକତା, ଚେନ୍ନାଇ ଏବଂ ମୁମ୍ବାଇକୁ ଥିବା ହାଇୱେର ସଂପ୍ରସାରଣ ଏବଂ ପ୍ରଧାନମନ୍ତ୍ରୀ ଗ୍ରାମ ସଡ଼କ ଯୋଜନା ମାଧ୍ୟମରେ ପ୍ରତ୍ୟେକ ଗ୍ରାମକୁ ପକ୍କା ସଡ଼କ କରିବାପାଇଁ ମନସ୍ଥ କଲେ । ତାଙ୍କର ଅନ୍ୟ ଏକ ସ୍ୱପ୍ନ ଥିଲା ଭାରତର ପ୍ରତ୍ୟେକ ବଡ଼ ବଡ଼ ନଦୀକୁ ପରସ୍ପର ସହିତ ଯୋଡ଼ି ଜଳ ସାଧନର ସୁବିନିଯୋଗ ତଥା ବନ୍ୟା ନିୟନ୍ତ୍ରଣ ପାଇଁ ଦେଶରେ ଏକ ସୁ-ସଂଯୋଜିତ ନଦୀ-ଜାଲକ ପ୍ରସ୍ତୁତ କରିବାପାଇଁ ୨୦୦୧ ମସିହାରେ ବାଜପେୟୀ ସରକାର ପ୍ରାଥମିକ ଏବଂ ମାଧ୍ୟମିକ ସ୍ତରରେ ଶିକ୍ଷାର ଗୁଣାତ୍ମକ ବିକାଶ ପାଇଁ ଶିକ୍ଷା ଅଭିଯାନ ଆରମ୍ଭ କଲେ ।



ବାଜପେୟୀଙ୍କର ଇଚ୍ଛା ଥିଲା ଦେଶ ଓ ପଡ଼ୋଶୀ ଦେଶମାନଙ୍କରେ ଦୀର୍ଘସ୍ଥାୟୀ ଶାନ୍ତି ଓ ସୌହାର୍ଦ୍ଦ୍ୟ ରହୁ । ସେଥିପାଇଁ ତାଙ୍କର ନିମନ୍ତ୍ରଣ କ୍ରମେ ତତ୍କାଳୀନ ପାକିସ୍ଥାନର ପ୍ରେସିଡ଼େଣ୍ଟ ପରଭେଜ୍ ମୁଶାରଫ୍ ଆଗ୍ରା ଶିଖର ବାର୍ତ୍ତାକୁ ନିମନ୍ତ୍ରିତ ହୋଇଥିଲେ । 'କାର୍‌ଗିଲ୍ ଅନୁପ୍ରବେଶର ମାଷ୍ଟର ମାଇଣ୍ଡ ଥିଲେ ମୁଶାରଫ୍ । ତଥାପି ପୁରାତନ ଶତ୍ରୁତାକୁ ଭୁଲି ଭବିଷ୍ୟତରେ ବନ୍ଧୁତା ସ୍ଥାପନ କରିବା ପାଇଁ ବାଜପେୟୀ ଏପରି ପଦକ୍ଷେପ ନେଇଥିଲେ ।

ମୁଶାରଫଙ୍କ ଭାରତ ରହଣି ଭିତରେ ଦିଲ୍ଲୀସ୍ଥିତ ତାଙ୍କର ଜନ୍ମସ୍ଥାନକୁ ବି ପରିଦର୍ଶନ କଲେ । କିନ୍ତୁ ୩ ଦିନ ବ୍ୟାପି ଅନେକ ଆୟୋଜନ ମୁଶାରଫଙ୍କ ଜିଦ୍ ଯୋଗୁ ଫସର୍ ଫାଟିଲା । କାଶ୍ମୀର ପ୍ରଶ୍ନକୁ ସେ ଆଲୋଚନାରୁ ବାଦ୍ ଦେବା ପାଇଁ ନାରାଜ ହେବାରୁ ଆଗ୍ରା ସମ୍ମିଳନୀ ବିଫଳ ହେଲା ।

ବାଜପେୟୀଙ୍କ ପ୍ରଧାନମନ୍ତ୍ରିତ୍ୱ କାଳରେ ସେ ଅନେକ ରାଜନୈତିକ ଝଡ଼ର ସମ୍ମୁଖୀନ ହୋଇଛନ୍ତି । ସେତେବେଳର ବିଜେପି ସଭାପତି ବାଙ୍ଗାରୁ ଲକ୍ଷ୍ମଣ, ଭାରତୀୟ ସେନାର ଉଚ୍ଚ ପଦସ୍ଥ ଅଧିକାରୀ ଏବଂ ଅନ୍ୟାନ୍ୟ ଏନ୍.ଡ଼ି.ଏ. ମେମ୍ବର କେତେକ ବ୍ୟବସାୟୀ ଏବଂ ଦଲାଲ୍ ମାନଙ୍କଠାରୁ ଉତ୍କୋଚ ଗ୍ରହଣ କରୁଥିବାର ଭିଡ଼ିଓ ଦୃଶ୍ୟ ତେହେଲ୍‌କା ସଂସ୍ଥା ପ୍ରଦର୍ଶନ କଲା । ତାଙ୍କ ମନ୍ତ୍ରୀମଣ୍ଡଳର ରକ୍ଷାମନ୍ତ୍ରୀ ଜର୍ଜ ଫର୍ଣ୍ଣାଡେଜ୍‌ଙ୍କ ନାମରେ ମଧ୍ୟ ବରାକ୍ ମିସାଇଲ୍ କିଣା ମାମଲାରେ କଳଙ୍କ ଲାଗିଲା । ସେଥିପାଇଁ ଫର୍ଣ୍ଣାଡେଜ୍‌ଙ୍କୁ ଇସ୍ତଫା ଦେବା ପାଇଁ ବାଧ୍ୟ କରାଗଲା ।

ଏସବୁ ବ୍ୟତିତ ୨୦୦୧ ମସିହାରେ ଦେଶର ପାର୍ଲାମେଣ୍ଟ ଉପରେ ଏକ ଆତଙ୍କବାଦୀ ଆକ୍ରମଣ ହୋଇଥିଲା । (୧୩.୨.୨୦୦୧) । ଆମର ସୁରକ୍ଷା ବାହିନୀଙ୍କ ତତ୍ପରତା ଯୋଗୁଁ ସମସ୍ତ ଆତଙ୍କବାଦୀ ପ୍ରାଣ ହରାଇଲେ । ଏହି ଆକ୍ରମଣକୁ ପାକିସ୍ଥାନ ନିନ୍ଦା କରିଥିଲେ ହେଁ ସମସ୍ତ ଆକ୍ରମଣକାରୀ ପାକିସ୍ଥାନୀ ବୋଲି ଚିହ୍ନଟ ହୋଇଥିଲେ । ତା'ଛଡ଼ା ଏହି ଆକ୍ରମଣର ଷଡ଼ଯନ୍ତ୍ର ପାକିସ୍ଥାନରେ କରାଯାଇଥିଲା ବୋଲି ଜଣାପଡ଼ିଥିଲା ।

୨୦୦୨ ମସିହାରେ ଗୁଜୁରାଟ (ଗୋଧରା)ରେ ହୋଇଥିବା ହିନ୍ଦୁମୁସଲମାନ ଦଙ୍ଗାରେ ଏକହଜାରରୁ ଅଧିକ ବ୍ୟକ୍ତି ପ୍ରାଣ ହରାଇଥିଲେ । ଦଙ୍ଗାକୁ ଦମନ କରିବା ପାଇଁ ବାଜପେୟୀ କିଛି ଖାସ୍ ପଦକ୍ଷେପ ନେଲେ ନାହିଁ ବୋଲି ଅନେକ ଆକ୍ଷେପ କରିଥିଲେ ।

୨୦୦୨-୦୩ ମସିହାରେ ବାଜପେୟୀଙ୍କ ସରକାର ଦେଶରେ ଅର୍ଥନୈତିକ ସଂସ୍କାର ଅନେକ କାର୍ଯ୍ୟକ୍ରମ ଆରମ୍ଭ କରିବା ଫଳରେ ଦେଶରେ ଜି.ଡ଼ି.ପି. ହାର ଶତକଡ଼ା ୬.୭ ଛୁଇଁଲା । ବିଦେଶୀ ପୁଞ୍ଜି ନିବେଶ, ସରକାରୀ ଏବଂ ବେସରକାରୀ ଶିଳ୍ପର ଭିତ୍ତିଭୂମିର ବିକାଶ, ନିଯୁକ୍ତି ସୁଯୋଗ ବୃଦ୍ଧି, ଅତ୍ୟାଧୁନିକ ଉନ୍ନତ ଆଇଟି ଇଣ୍ଡଷ୍ଟ୍ରିର ପ୍ରସାର, ସହରମାନଙ୍କ

ଆଧୁନିକୀକରଣ ଯୋଗୁଁ ଦେଶର ଛବି ଉଜ୍ଜ୍ୱଳ ଦେଖାଗଲା । ଉନ୍ନତ କୃଷି ଉତ୍ପାଦନ ମଧ୍ୟ ଅର୍ଥନୀତିକୁ ସାହାଯ୍ୟ କଲା ।

ଏହାଛଡ଼ା ଅନେକ ସଂସ୍କାର ମୂଳକ କାର୍ଯ୍ୟକ୍ରମ ତାଙ୍କ ସରକାର ହାତକୁ ନେଇ ସଫଳତା ହାସଲ କଲେ । କିନ୍ତୁ ଇତି ମଧ୍ୟରେ ତାଙ୍କର ସ୍ୱାସ୍ଥ୍ୟରେ ଅବନତି ଦେଖାଦେଲା । ମୁମ୍ବାଇସ୍ଥିତ ବିଚ୍ କ୍ୟାଣ୍ଡି ହସ୍‌ପିଟାଲ୍‌ରେ ତାଙ୍କର ଆଣ୍ଠୁର ଜଏଣ୍ଟ ରିପ୍ଲେସ୍‌ମେଣ୍ଟ ଅସ୍ତ୍ରୋପଚାର କରାଗଲା । କିନ୍ତୁ ତା' ସତ୍ତ୍ୱେ ବାଜପେୟୀ ତାଙ୍କର ପୂର୍ବସ୍ୱାସ୍ଥ୍ୟ ଫେରିପାଇଲେ ନାହିଁ । ୨୦୦୪ ମସିହା ସାଧାରଣ ନିର୍ବାଚନରେ ବିଜେପି ଏବଂ ଏନ୍‌ଡ଼ିଏ ପରାସ୍ତ ହେଲା । ୨୦୦୫ ମସିହା ଡ଼ିସେମ୍ବର ମାସରେ ବାଜପେୟୀ ସକ୍ରିୟ ରାଜନୀତିକୁ ସବୁ ଦିନ ପାଇଁ ସନ୍ୟାସ ନେବା ଘୋଷଣା କଲେ ।

ତାଙ୍କ ଜୀବନରେ ସେ ଲୋକସଭାକୁ ୧୦ଥର ଏବଂ ରାଜ୍ୟସଭାକୁ ଦୁଇଥର ନିର୍ବାଚିତ ହୋଇଛନ୍ତି । ପ୍ରଧାନମନ୍ତ୍ରୀ ପଦରେ ୩ ଥର ବସିଛନ୍ତି । ପାର୍ଲାମେଣ୍ଟରେ ତାଙ୍କର ତର୍କ ସର୍ବଦା ଉଦ୍ବୋଧିତ, ମର୍ଯ୍ୟାଦାପୂର୍ଣ୍ଣ ଏବଂ ହୃଦୟସ୍ପର୍ଶୀ ହେଉଥିଲା । ତାଙ୍କର ବିରୋଧୀମାନେ ମଧ୍ୟ ବାଜପେୟୀଙ୍କୁ ଶ୍ରଦ୍ଧା ଏବଂ ସମ୍ମାନ ଜଣାଉଥିଲେ । ୧୯୯୪ ମସିହାରେ ତାଙ୍କୁ ସର୍ବଶ୍ରେଷ୍ଠ ସାଂସଦ ପୁରସ୍କାର / ଆଖ୍ୟା ମିଳିଥିଲା ।

ନିଷ୍ପାପର ଏବଂ ନିଃସ୍ୱାର୍ଥପର ଦେଶସେବାରେ ସେ ନିଜର ଜୀବନକୁ ଉତ୍ସର୍ଗ କରିଥିଲେ । କୌଣସି ପୁରସ୍କାର ବା ପଦବୀ ଲାଳସା ନଥିଲା ତାଙ୍କର । ୧୯୯୨ ମସିହାରେ ତାଙ୍କୁ ପଦ୍ମବିଭୂଷଣ ଉପାଧି ମିଳିଥିଲା । ୧୯୯୩ ମସିହାରେ କାନପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ ଡ଼ି.ଲିଟ୍. ଉପାଧି ପ୍ରଦାନ କଲେ । ୧୯୯୪ ମସିହାରେ ତାଙ୍କୁ ଲୋକମାନ୍ୟ ତିଲକ ପୁରସ୍କାର ମିଳିଥିଲା । ସେହି ବର୍ଷ ତାଙ୍କ ଗୋବିନ୍ଦବଲ୍ଲଭ ପନ୍ଥ ପୁରସ୍କାର ବି ମିଳିଥିଲା । ୨୦୧୪ ମସିହାରେ ଭାରତର ସର୍ବୋଚ୍ଚ ନାଗରିକ ସମ୍ମାନ 'ଭାରତରତ୍ନ' ସେ ଭୂଷିତ ହୋଇଥିଲେ ।

ସ୍ୱଭାବରେ ବାଜପେୟୀ ଜଣେ ମାନବବାଦୀ କବି ଥିଲେ । ସାରାଜୀବନ ଦୟା କ୍ଷମା, ସ୍ନେହ ଭକ୍ତି ଆଦି ଭାବରେ ପରିପୂର୍ଣ୍ଣ ଥିଲେ । ରାଜନୀତିର ରୁଗ୍ଣ ସଂକୀର୍ଣ୍ଣତାକୁ

ଅତିକ୍ରମ କରି ମହାନ ଭାରତୀୟ ଭାବଧାରାରେ ତାଙ୍କର କବିତା ଆପ୍ଲୁତ ହେଉଥିଲା । ସେ ଗାଉଥିଲେ -

<u>ଆଓ ଫିରସେ ଦିୟା ଜଲାଏଁ</u>

ଭରୀ ଦୁପହରୀ ମେଂ ଅଂଧିୟାରା
ସୂରଜ ପରଛାଇ ସେ ହାରା
ଅନ୍ତରମେକା ନେହ ନିଚୋଡ଼େଂ, ବୁଝୀ ହୁଇ ବାତୀ ସୁଲଗାଏଁ
ଆଓ ଫିରସେ ଦିୟା ଜଲାଏଁ ॥
ହମ୍ ପଡ଼ାବ କୋ ସମଝେ ମଂଜିଲ୍
ଲକ୍ଷ୍ୟ ହୁଆ ଆଁଖୋଂ ସେ ଓଝଲ୍
ବର୍ତ୍ତମାନ୍ କେ ମୋହଜାଲମେଂ, ଆନେବାଲା କଲ୍ ନ ଭୁଲାଏଁ
ଆଓ ଫିରସେ ଦିୟା ଜଲାଏଁ ।
ଆହୁତି ବାକୀ, ଯଜ୍ଞ ଅଧୁରା
ଆପନୋଂ କେ ବିଜୋଂ ନେ ଘେରା
ଅନ୍ତିମ ଜୟକା ବଜ୍ର ବନାନେ, ନବ ଦଧୀଚି ହଡ୍‌ଡ଼ିଆଁ ଗଲାଏଁ
ଆଓ ଫିରସେ ଦିଆ ଜଲାଏଁ ॥

ତାଙ୍କର ଭାଷଣମାଳା ସଂକଳିତ ହୋଇ ଅନେକ ପୁସ୍ତକ ଆକାରରେ ପ୍ରକାଶିତ ହୋଇଛି । ତାଙ୍କର କବିତା ପୁସ୍ତକମାନଙ୍କ ମଧ୍ୟରେ ଟ୍ୱେଣ୍ଟିଓ୍ୱାଲ୍ ପୋଏମ୍ସ୍(୨୦୦୩), କ୍ୟା ଖୋୟା କ୍ୟା ପାୟା(୧୯୯୯), ମେରୀ ଇକାବନ କବିତାୟେଁ (୧୯୯୫), ଶ୍ରେଷ୍ଠ କବିତା (୧୯୯୭), ନୟୀ ଦିଶା (୧୯୯୯) - ଜଗଜୀତ ସିଂଙ୍କ ଆଲବମ୍ ଏବଂ ସମବେଦନା (୨୦୦୨) - ଜଗଜୀତ୍ ସିଂଙ୍କ ସହ ଆଲବମ୍ ।

ଅଟଳ ବିହାରୀ ବାଜପେୟୀଙ୍କ ପରି ନିଷ୍ଠାପର ରାଷ୍ଟ୍ରବାଦୀ ରାଜନୈତିକ ଖୁବ୍ ବିରଳ । ସେ ରାଜନୀତିରୁ ସନ୍ୟାସ ନେବା ପରେ ଲୋକସଭାରେ ଏକ ଅପୂରଣୀୟ ଶୂନ୍ୟସ୍ଥାନ ସୃଷ୍ଟି ହେଲା । ଅନେକ ସମୟରେ ରାଜନୀତିରେ ଯେତେବେଳେ ସେ ନିଜକୁ ଅସହାୟ ମନେ କରନ୍ତି ତାଙ୍କର କବିପ୍ରାଣ ଗାଇଉଠେ -

## ଜୀବନ ବୀତ୍ ଚଲା



କଲ୍ କଲ୍ କର୍‌ତେ ଆଜ
ହାତ୍‌ସେ ନିକଲେ ସାରେ
ଭୂତ ଭବିଷ୍ୟତକେ ଚିନ୍ତାମେଂ
ବର୍ତ୍ତମାନ କୀ ବାଜୀ ହାରେ
ପହରା କୋଇ କାମ ନ ଆୟା
ରସଘଟ୍ ରୀତ୍ ଚଲା
ଜୀବନ ବୀତ ଚଲା ॥
ହାନି ଲାଭ କେ ପଲଡ଼ୋଂ ମେଂ
ତୁଲତା ଜୀବନ ବ୍ୟାପାର ହୋ ଗୟା
ମୋଲ୍ ଲଗା ବିକନେ ବାଲେକା
ବିନା ବିକା ବେକାର ହୋ ଗୟା
ମୁଝେ ହାଟ୍ ମେଂ ଛୋଡ଼୍ ଅକେଲା
ଏକ ଏକ କର ମୀତ୍ ଚଲା
ଜୀବନ ବୀତ୍ ଚଲା ॥

୨୦୧୪ ମସିହାରେ ବାଜପେୟୀଙ୍କ ଉତ୍ସର୍ଗୀକୃତ ସମାଜସେବା ପାଇଁ ତାଙ୍କୁ 'ଭାରତ ରତ୍ନ'ରେ ସମ୍ମାନିତ କରିବା ସହ ତାଙ୍କର ଜନ୍ମଦିନ ୨୫ ଡିସେମ୍ବରକୁ ଜାତୀୟ ସୁଶାସନ ଦିବସ ରୂପେ ପାଳନ କରାଯାଉଛି ।

* * *

# ଡାକ୍ତର ରଥଙ୍କ ଅନ୍ୟ କେତେକ ଜନପ୍ରିୟ ପୁସ୍ତକ




**ମା'** ପେଟରେ ଭ୍ରୁଣ କିପରି ବଢ଼େ ତା'ର ବିସ୍ତୃତ ବର୍ଣ୍ଣନା । ସୁନ୍ଦର ଭାବେ ଚିତ୍ରିତ । ବାପା ଓ ମା' ପ୍ରତ୍ୟେକ ସପ୍ତାହରେ କ'ଣ କରିବେ ତା'ର ମାର୍ଗଦର୍ଶନ । ଡାଏରୀ ଲେଖିବା ପାଇଁ ବ୍ୟବସ୍ଥା । ''ଯେଉଁମାନଙ୍କର ମା' ହେବାର ଅଛି, ଯେଉଁମାନେ ବର୍ତ୍ତମାନ ଗର୍ଭବତୀ ଏବଂ ଯେଉଁମାନେ ମା' ହୋଇ ସାରିଛନ୍ତି ସମସ୍ତେ ପଢ଼ିବା ଉଚିତ । ଗୀତା, ଭାଗବତ ପରି ଏହି ବହି ପ୍ରତ୍ୟେକଙ୍କ ଘରେ ଖଣ୍ଡେ ଖଣ୍ଡେ ରହିବା ଉଚିତ ।'' ବୋର୍ଡ଼ ବନ୍ଧେଇ, ଏ-୪ ସାଇଜ୍, ୪ର୍ଥ ସଂସ୍କରଣ (ଓଡ଼ିଶା ବିଜ୍ଞାନ ଏକାଡେମୀ ଦ୍ୱାରା ସର୍ବଶ୍ରେଷ୍ଠ ଜନପ୍ରିୟ ବିଜ୍ଞାନ ପୁସ୍ତକ ପୁରସ୍କାର ପ୍ରାପ୍ତ)

**ପ୍ର**ଥମ ଥର ପାଇଁ ମା' ହେଉଥିବା ମହିଳାମାନେ ସନ୍ତାନ ଯତ୍ନ ବିଷୟରେ ଅନଭିଜ୍ଞ ଥାଆନ୍ତି । ତା'ର ପୋଷାକ, ସ୍ତନ୍ୟପାନ, ଖାଦ୍ୟପେୟ ଇତ୍ୟାଦିଠାରୁ ଆରମ୍ଭକରି ଗାଧୁଆପାଧୁଆ, ପରିଷ୍କାର ପରିଚ୍ଛନ୍ନତା, ଖେଳଣା ଚୟନ ଆଦି ପ୍ରତ୍ୟେକଟି କଥା ପ୍ରତି ମା'-ମାପାଙ୍କୁ ଧ୍ୟାନ ଦେବାକୁ ପଡ଼େ । ଶିଶୁର ଜନ୍ମଠାରୁ ପ୍ରଥମ ବର୍ଷର ଅବଧି ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏହି ସମୟରେ ଉପଯୁକ୍ତ ଯତ୍ନର ଅଭାବ ହେଲେ, ଶିଶୁର ଜୀବନ ପ୍ରତି ବିପଦ ଦେଖାଦିଏ । ପୁସ୍ତକରେ ପ୍ରଥମ ସପ୍ତାହରୁ ଆରମ୍ଭକରି ୫୨ ସପ୍ତାହ ଯାଏଁ ଶିଶୁର ଶାରୀରିକ ବୃଦ୍ଧି, ମାନସିକ ବିକାଶ ଏବଂ ପାରିବେଶିକ ଜ୍ଞାନ ଏବଂ ଆଙ୍ଗୀକ ଦକ୍ଷତାର ବିକାଶ ବିଷୟରେ ଆଲୋଚନା କରାଯାଇଛି । ବାପା-ମା'ମାନେ କେଉଁ ସପ୍ତାହରେ ଶିଶୁର କିପରି ଯତ୍ନ ନେବେ ସେ ବିଷୟରେ ରଙ୍ଗୀନ ଚିତ୍ର ଏବଂ ଲେଖା ମାଧ୍ୟମରେ ସରଳ ତଥା ବିଜ୍ଞାନ ସମ୍ମତ ତଥ୍ୟମାନ ଦିଆଯାଇଛି । ପ୍ରତ୍ୟେକ ପରିବାର ଏବଂ ପାଠାଗାର ପାଇଁ ଅବଶ୍ୟ ସଂଗ୍ରହଣୀୟ । ସ୍ୱାସ୍ଥ୍ୟକର୍ମୀମାନଙ୍କ ପାଇଁ ଗୀତା ଭାଗବତ ପରି ପୁସ୍ତକଟିଏ । ଉନ୍ନତ ଦେଶମାନଙ୍କରେ ନୂଆକରି ମା' ହେଉଥିବା ମହିଳାମାନଙ୍କୁ ଶିଶୁର ଯତ୍ନ ବିଷୟରେ ସଚେତନ କରିବା ପାଇଁ ଅନେକ ପ୍ରକାରର ରୁଚି ସମ୍ପନ୍ନ ଚିତ୍ର ସମ୍ୱଳିତ ପୁସ୍ତକ ମିଳିଥାଏ । ଏହି ପୁସ୍ତକଟି ଓଡ଼ିଆ ଭାଷାରେ ଥିବା ଶୂନ୍ୟସ୍ଥାନଟିକୁ ପୂରଣ କରିବା ପାଇଁ ଉଦ୍ଦିଷ୍ଟ ।
ଏ-୪ ସାଇଜ୍, ଦ୍ୱିରଙ୍ଗ ଛାପା, ୨ୟ ସଂସ୍କରଣ ।







**ବି**ଭିନ୍ନ ରୋଗର ଅନେକ ଲକ୍ଷଣ ଆମକୁ ବିଚଳିତ କରେ । ମୁଣ୍ଡବ୍ୟଥା, ବାନ୍ତି, ତରଳଝାଡ଼ା, ଆଲର୍ଜୀ, ଅନିଦ୍ରା ଆଦି ଅଗଣିତ ଲକ୍ଷଣ ଦ୍ୱାରା ଆମେ ଆକ୍ରାନ୍ତ ହେଉ । ଅନେକ ଅହେତୁକ ଆଶଙ୍କାରେ ଜର୍ଜରିତ ହୋଇ ପ୍ରକୃତ କର୍ତ୍ତବ୍ୟ ଭୁଲିଯାଉ । ପୁସ୍ତକଟିରେ ବିଭିନ୍ନ ରୋଗଲକ୍ଷଣରୁ କିପରି ରୋଗନିର୍ଣ୍ଣୟ କରିହେବ ଦର୍ଶାଯାଇଛି । ପୁସ୍ତକଟି ବହୁଳଭାବେ ଚିତ୍ର ସମ୍ୱଳିତ । ରୁଚି ସମ୍ପନ୍ନ । ସ୍ୱଳ୍ପ ଦାମ୍ । ଏ-୪ ସାଇଜ୍, ବୋର୍ଡ଼ ବନ୍ଧେଇ, ୨ୟ ସଂସ୍କରଣ ।




ଆଧୁନିକ ଜୀବନର ବ୍ୟସ୍ତତା, ତୀବ୍ର ଗତି, କୋଳାହଳ, ପ୍ରଦୂଷଣ, ମାନସିକ ଚାପ ଆଦି ଅନେକ କାରଣରୁ ମୁଣ୍ଡବ୍ୟଥା ହୁଏ । ପୁସ୍ତକରେ ମୁଣ୍ଡବ୍ୟଥାର ସମସ୍ତ କାରଣ ଆଲୋଚିତ । ଏହାର ଭୟାବହ ପରିଣତିରୁ ରକ୍ଷା ପାଇବାର ଯଥାର୍ଥ ମାର୍ଗ ଦର୍ଶାଯାଇଛି । ଏ ପର୍ଯ୍ୟନ୍ତ ପୁସ୍ତକର ନିର୍ଦ୍ଦେଶମାନି ଅନେକ ପାଠକ ମୁଣ୍ଡବ୍ୟଥାରୁ ରକ୍ଷା ପାଇଛନ୍ତି । (୨ୟ ସଂସ୍କରଣ)




'ମୁଣ୍ଡବ୍ୟଥା'ର ପାଠକ/ପାଠିକାମାନଙ୍କ ଅକୁଣ୍ଠ ପ୍ରଶଂସା ଏବଂ ଅକପଟ-ଅନୁରୋଧ ପରେ 'ବେକବ୍ୟଥା' ଲେଖାଯାଇଛି । ବେକବ୍ୟଥା ଓ ସର୍ଭାଇକାଲ୍ ସ୍ପଣ୍ଡିଲୋସିସ୍ ଆଦି ରୋଗ ସହଜରେ ପ୍ରତିରୋଧ କରି ହେବ । ଜୀବନଶୈଳୀରେ ପରିବର୍ତ୍ତନ ଆଣିପାରିଲେ ବେକବ୍ୟଥାରୁ ନିଜକୁ ରକ୍ଷା କରିହେବ ।




## ଆମ ସ୍ୱାସ୍ଥ୍ୟର ହିସାବ

ଡାକ୍ତରଙ୍କ ପ୍ରେସ୍କ୍ରିପ୍‌ସନ୍ ବୁଝିବା ପାଇଁ କିମ୍ବା ନିଜ ସ୍ୱାସ୍ଥ୍ୟର ହିସାବ ରଖିବା ପାଇଁ ଆଗ୍ରହୀ ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ଏକ ଅଦ୍ୱିତୀୟ ପୁସ୍ତକ । ଓଡ଼ିଆ ଭାଷାରେ ଏଭଳି ଉଦ୍ୟମ ସର୍ବପ୍ରଥମ । ମାନବ ଶରୀର, ସ୍ୱାସ୍ଥ୍ୟ, ଖାଦ୍ୟ ଓ ପୋଷଣ, ଶରୀରର ବୃଦ୍ଧି ଓ ବିକାଶ, ରୋଗ ବିଜ୍ଞାନ ଆଦି ପ୍ରତ୍ୟେକ ବିଷୟରେ ସାଧାରଣ ଜ୍ଞାନ ପାଇଁ ପୁସ୍ତକଟି ପ୍ରଥମ ଧାଡ଼ିରେ ସ୍ଥାନ ପାଇବ । କେବଳ ସାଧାରଣ ବ୍ୟକ୍ତିଙ୍କ ପାଇଁ ନୁହେଁ ବରଂ ପ୍ରତ୍ୟେକ ଡାକ୍ତର, ସେବିକା, ପରୀକ୍ଷଣାଗାରର ଟେକ୍‌ନିସିଆନ୍‌ମାନଙ୍କ ପାଇଁ ବି ଏହା ଏକ ହ୍ୟାଣ୍ଡବୁକ୍ ଭାବେ ସାହାଯ୍ୟ କରିବ ।



## ସମସ୍ତଙ୍କ ପାଇଁ ଖାଦ୍ୟ

ଶିଶୁଠାରୁ ଆରମ୍ଭକରି ବୟସ୍କ ବ୍ୟକ୍ତିମାନଙ୍କ ପାଇଁ ଉପଯୁକ୍ତ ଭୋଜନ ଓ ପୁଷ୍ଟିସାଧନ ପାଇଁ ଉଦ୍ଦିଷ୍ଟ ପୁସ୍ତକ । କେଉଁ ଖାଦ୍ୟରୁ କେଉଁ ପୌଷ୍ଟିକ ଉପାଦାନ କେତେ ପରିମାଣରେ ମିଳିଥାଏ ଏବଂ ତା'ର ଅଭାବରେ କ'ଣ କ୍ଷତି ହୁଏ – ସରଳ ଓ ସହଜ ଭାଷାରେ ବର୍ଣ୍ଣିତ ହୋଇଛି । ବିଭିନ୍ନ ପ୍ରକାର ରନ୍ଧନ ପ୍ରଣାଳୀ ସାଙ୍ଗକୁ ଖାଦ୍ୟ ନିରାପତ୍ତା ଓ ପୁଷ୍ଟି ବିଷୟରେ ପ୍ରାୟ ସମସ୍ତ ବିଜ୍ଞାନ ସମ୍ମତ ତଥ୍ୟ ଉପସ୍ଥାପିତ କରାଯାଇଛି । ସ୍ୱାସ୍ଥ୍ୟ ସଚେତନ ସବୁ ବର୍ଗର ବ୍ୟକ୍ତିଙ୍କ ପାଇଁ ଉପଯୋଗୀ ପୁସ୍ତକ । ପୁସ୍ତକଟି ଜାତୀୟ ପୁଷ୍ଟି ଅନୁଷ୍ଠାନ (ନାସନାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ନ୍ୟୁଟ୍ରିସନ୍, ହାଇଦ୍ରାବାଦ) ପ୍ରଦତ୍ତ ସମସ୍ତ ତଥ୍ୟକୁ ଭିତ୍ତିକରି ଓଡ଼ିଶାବାସୀଙ୍କ ପାଇଁ ଗ୍ରହଣୀୟ ଢାଞ୍ଚାରେ ପ୍ରସ୍ତୁତ ହୋଇଛି । (୨ୟ ସଂସ୍କରଣ)

## ସମସ୍ତଙ୍କ ପାଇଁ ପଥ୍ୟ



ସୁସ୍ଥ ବ୍ୟକ୍ତିଙ୍କ ପାଇଁ ଉପଯୁକ୍ତ ଖାଦ୍ୟ ଯେପରି ଅତ୍ୟାବଶ୍ୟକ, ଅସୁସ୍ଥ ବ୍ୟକ୍ତି ପାଇଁ ପଥ୍ୟ ସେପରି ଅପରିହାର୍ଯ୍ୟ । ଡାଇବିଟିସ୍‌ଠାରୁ ଆରମ୍ଭ କରି ଉଚ୍ଚରକ୍ତଚାପ, ଆଲର୍ଜୀ, ପେପ୍‌ଟିକ୍ ଅଲସର, ବାତରୋଗ, ଯକୃତ ଓ ବୃକକ ରୋଗୀ ସମସ୍ତଙ୍କୁ ସେମାନଙ୍କ ଅବସ୍ଥା ଉପଯୋଗୀ ପଥ୍ୟ ମିଳିବା ଏକାନ୍ତ ଜରୁରୀ । ଚିକିତ୍ସକ ଅଧିକାଂଶ ସମୟରେ ପଥ୍ୟ ବିଷୟରେ ସବିଶେଷ ତଥ୍ୟ ଦେବା ପାଇଁ ସମୟ ପାଆନ୍ତି ନାହିଁ । ପ୍ରତ୍ୟେକ ବ୍ୟକ୍ତିଙ୍କୁ ବିଭିନ୍ନ ଅସୁସ୍ଥତାରେ ଉପଯୁକ୍ତ ପଥ୍ୟ ବିଷୟରେ ସଚେତନ କରାଇବା ପୁସ୍ତକର ଉଦ୍ଦେଶ୍ୟ । ପ୍ରାୟ ଦୁଇବର୍ଷର ଅଧ୍ୟୟନ ଓ ଗବେଷଣା ପରେ ସମସ୍ତଙ୍କ ପାଇଁ ଖାଦ୍ୟ ଏବଂ ସମସ୍ତଙ୍କ ପାଇଁ ପଥ୍ୟ ପୁସ୍ତକ ଦୁଇଟି ଉଦିତ ହୋଇଛି । ଉଭୟ ପୁସ୍ତକ ପରସ୍ପରର ପରିପୂରକ । ପାଠକ/ପାଠିକାମାନଙ୍କ ପାଇଁ ଖୁବ୍ ଉପଯୋଗୀ । (୨ୟ ସଂସ୍କରଣ)



## ଏଡ୍‌ସ ଏକ ଆଲୋଚନା

ସମଗ୍ର ବିଶ୍ୱରେ ଏଡ୍‌ସ ରୋଗର ନାଁ ଶୁଣିଲା ମାତ୍ରେ ଦେହ ଭୟରେ କମ୍ପିଉଠେ । ତେବେ ରୋଗ ବିଷୟରେ ସଚେତନ ହେଲେ ନିଜକୁ ଏବଂ ପରିବାରକୁ ଏହି ରୋଗରୁ ରକ୍ଷା କରିହେବ । ଏଡ୍‌ସ ରୋଗ ସମ୍ବନ୍ଧରେ ଅନେକ ପୁସ୍ତକ ଓ ପ୍ରଚାରପତ୍ର ଆଦି ମିଳୁଛି । କିନ୍ତୁ ଡା. ରଥଙ୍କ ରଚିତ ''ଏଡ୍‌ସ ଏକ ଆଲୋଚନା'' ପୁସ୍ତକଟି ଅନେକ ପୁସ୍ତକ ମଧ୍ୟରେ ଅନନ୍ୟ । ସରଳ ଓ ସୁଖ ପାଠ୍ୟ ଭାଷା ସାଙ୍ଗକୁ ପ୍ରତ୍ୟେକ ପୃଷ୍ଠାରେ ଥିବା କାର୍ଟୁନ ଚିତ୍ରଗୁଡ଼ିକ ପୁସ୍ତକକୁ ସହଜ ଓ ବୋଧଗମ୍ୟ କରିଛି । ପାଠକ/ପାଠିକାଙ୍କ ପ୍ରାୟ ସମସ୍ତ ସନ୍ଦେହକୁ ଗଳ୍ପ ଓ ପ୍ରଶ୍ନୋତ୍ତର ମାଧ୍ୟମରେ ସମାଧାନ କରାଯାଇଛି । ସୁଖପାଠ୍ୟ ଏବଂ ସଂଗ୍ରହଣୀୟ ।(୨ୟ ସଂସ୍କରଣ)




**ଅ**ଦ୍ୟାବଧି ମୋଟ ୪୧ ଜଣ ମହାନ ବ୍ୟକ୍ତିଙ୍କୁ ଆମ ଦେଶର ସର୍ବୋଚ୍ଚ ନାଗରିକ ସମ୍ମାନ 'ଭାରତ ରତ୍ନ' ପ୍ରଦାନ କରାଯାଇଛି । ସମ୍ମାନିତ ସମସ୍ତ ବ୍ୟକ୍ତିଙ୍କ ସଂକ୍ଷିପ୍ତ ଜୀବନୀ ସମ୍ବଳିତ ହୋଇଥିବା ଏକମାତ୍ର ପୁସ୍ତକ । ଆଜିର ଯୁବ ସଂପ୍ରଦାୟ ଏହି ଯୁଗପୁରୁଷମାନଙ୍କ ଜୀବନୀ ପାଠକଲେ ଅନେକ ଉପାଦେୟ ତତ୍ତ୍ୱ ଆହରଣ କରିବା ପାଇଁ ସମର୍ଥ ହେବେ । ଘରୋଇ ତଥା ଆନୁଷ୍ଠାନିକ ପାଠାଗାର ଏବଂ ଜନ୍ମଦିନ ବିବାହ, ବ୍ରତ ଆଦି ଦିବସରେ ଉପହାର ପାଇଁ ସର୍ବୋତ୍ତମ ପୁସ୍ତକ ।




**ଔ**ଷଧର ଆକାଶଛୁଆଁ ଦାମ୍ ଯୋଗୁଁ ଅନେକ କ୍ଷେତ୍ରରେ ରୋଗର ଚିକିତ୍ସା କଷ୍ଟକର ହେଉଛି । ଏହି ପରିସ୍ଥିତିକୁ ଆୟତ୍ତାଧୀନ କରିବା ପାଇଁ ଜନୌଷଧ ବା ଜେନେରିକ୍ ମେଡ଼ିସିନ୍‌ର ପ୍ରଚଳନ ଓ ବ୍ୟବହାରକୁ କେନ୍ଦ୍ର ଏବଂ ରାଜ୍ୟ ସରକାରଙ୍କ ତରଫରୁ ପ୍ରୋତ୍ସାହିତ କରାଯାଉଛି । ବ୍ରାଣ୍ଡ ନାମରେ ଥିବା ଔଷଧ ଏବଂ ଜେନେରିକ୍ ମେଡ଼ିସିନ୍‌ରେ ଏକ ଓ ଅଭିନ୍ନ ଅଣୁ ଥିଲେହେଁ ଦାମରେ ଆକାଶ ପାତାଳ ପ୍ରଭେଦ ଥାଏ । ପୁସ୍ତକରେ ଜେନେରିକ୍ ମେଡ଼ିସିନ୍ ବା ଜନୌଷଧର ପ୍ରସାର ତଥା ଔଷଧର ସମୁଚିତ ବ୍ୟବହାର ସଙ୍ଗେ ସାଙ୍ଗକୁ ବିଭିନ୍ନ ସାଧାରଣ ରୋଗର କାରଣ ଓ ଲକ୍ଷଣ ବିଷୟରେ ଆଲୋଚନା କରାଯାଇଛି । ସାଧାରଣ ଚିକିତ୍ସା ଆଦିରେ ବ୍ୟବହୃତ ବିଭିନ୍ନ ସରଳ ଯନ୍ତ୍ରାଂଶ ମାନଙ୍କ ବିଷୟରେ ବି ବର୍ଣ୍ଣନା ଦିଆଯାଇଛି । ସ୍ୱାସ୍ଥ୍ୟ ସଚେତନ ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ଏବଂ ସରକାରୀ ଓ ବେସରକାରୀ କ୍ଷେତ୍ରରେ କାର୍ଯ୍ୟରତ ପ୍ରତ୍ୟେକ ସ୍ୱାସ୍ଥ୍ୟକର୍ମୀଙ୍କ ପାଇଁ ଲାଭଦାୟକ ପୁସ୍ତକ ।




**ବା**ତି ଲାଗିବାଠାରୁ ଆରମ୍ଭକରି ଅଗ୍ନିଦାହ ଯାଏଁ, ସାଧାରଣ କୀଟ ପତଙ୍ଗ ଦଂଶନଠାରୁ ଆରମ୍ଭକରି ନାକରୁ ରକ୍ତ ପଡ଼ିବା ଯାଏଁ ଏଭଳି ଅନେକ ଅସୁସ୍ଥତା ବେଳେ ଆମେ ବିଚଳିତ ଏବଂ ଆତଙ୍କିତ ହୋଇପଡୁ । ଆହତ ବ୍ୟକ୍ତିଙ୍କୁ ଡାକ୍ତରଖାନା ନେବା ଦରକାର ପଡ଼େ । ହୁଏତ ଅନେକ ସମୟରେ ତାହା ଘରୋଇ ଉପଚାର କିମ୍ବା ପ୍ରାଥମିକ ଚିକିତ୍ସାରେ ଆରୋଗ୍ୟ ହୋଇପାରେ । ଏହିଭଳି ୪୦ଟି ଅବସ୍ଥାରେ ଅସୁସ୍ଥ ବ୍ୟକ୍ତିର ଘରୋଇ ଉପଚାର ପୁସ୍ତକରେ ଚିତ୍ର ସହିତ ବର୍ଣ୍ଣିତ ହୋଇଛି । ପ୍ରତ୍ୟେକ ପରିବାର ଏବଂ ସମସ୍ତ ପାଠାଗାର ପାଇଁ ଉପାଦେୟ ।

**ପ୍ରାପ୍ତିସ୍ଥାନ :** ● ଏ.ଏଚ୍. ହୁଇଲର୍ ଆଣ୍ଡ୍ କୋ., ଭୁବନେଶ୍ୱର, କଟକ, ପୁରୀ, ଖୋର୍ଦ୍ଧା ଓ ବ୍ରହ୍ମପୁର ରେଲଷ୍ଟେସନ, ● ଝରଣା ରଥ ପବ୍ଲିସର୍ସ, ୪୦୯, ବନ୍ଦନା ଆପାର୍ଟମେଣ୍ଟସ୍, ଭୁବନେଶ୍ୱର-୨, ଫୋନ୍:୦୬୭୪-୨୪୩୩୦୭୧, ● ଗ୍ରନ୍ଥାଳୟ, ମାର୍କେଟ ବିଲ୍ଡିଂ, ଭୁବନେଶ୍ୱର ● ପଶ୍ଚିମ ପବ୍ଲିକେଶନ, ଭୁବନେଶ୍ୱର ● କାହାଣୀ, କଲ୍ୟାଣନଗର, କଟକ ଏବଂ ଓଡ଼ିଶାର ସମସ୍ତ ବଡ଼ ବଡ଼ ବହି ଦୋକାନ ।



ଡାକ୍ତର ରବିନାରାୟଣ ରଥ
ଏମ୍‌ବିବିଏସ୍, ପିଏଚ୍‌ଡି (ମେଡ଼ିସିନ୍)
ଡିପିପିଏଚ୍, ଡିଏମ୍‌ସିଏଚ୍

ଭାରତବର୍ଷର ସର୍ବୋଚ୍ଚ ନାଗରିକ ସମ୍ମାନ 'ଭାରତ ରତ୍ନ' । ଅଦ୍ୟାବଧି ୪୫ ଜଣ ଏହି ପଦବୀରେ ସମ୍ମାନିତ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କର ଜୀବନ ଏବଂ ଆଦର୍ଶ ଆମ ଜାତି ପାଇଁ ଗୋଟିଏ ଗୋଟିଏ ବତୀଖୁଣ୍ଟ । ଭାରତ ରତ୍ନ ପୁସ୍ତକରେ ଏହି ମହାମାନବ ମାନଙ୍କର ଜୀବନୀ ସହଜ ଏବଂ ସରଳ ଭାଷାରେ ବର୍ଣ୍ଣିତ । ପ୍ରତ୍ୟେକ ପରିବାର ଏବଂ ପାଠାଗାର ପାଇଁ ଉପଯୋଗୀ ଏହି ପୁସ୍ତକ । ପାଣ୍ଡୁଲିପି ସ୍ତରରୁ ଏହା ଅନେକ ପାଠକୀୟ ପ୍ରଶଂସା ପାଇଛି । ଓଡ଼ିଆ ଭାଷାର ପାଠିକା/ପାଠକଙ୍କ ପାଇଁ ପୁସ୍ତକଟି ଅବଶ୍ୟ ସଂଗ୍ରହଣୀୟ ।

- ପ୍ରକାଶିକା

